# କୋରାନର ଆଲୋକ

୨ୟ ଖଣ୍ଡ

ଲେଖକ, ଅନୁବାଦକ ଓ ପ୍ରକାଶକ
**ମୌଲବି ଶେଖ ମନସୁର, ବି. ଏ., ବି. ଏଲ୍.**

ପ୍ରଥମ ମୁଦ୍ରଣ
ମୁଦ୍ରାକର—ଶ୍ରୀ ନୀଳମଣି ରାଉତରାୟ, ପ୍ରଜାତନ୍ତ୍ର ପ୍ରେସ, କଟକ

ମୂଲ୍ୟ ଚାରିଟଙ୍କା ମାତ୍ର

## କୋରାନର ଆଲୋକ (୨ୟଖଣ୍ଡ)

# ସୂଚୀପତ୍ର

# ୧୦ ମ ଅଧ୍ୟାୟ

## ନାମ—ୟୁନୁସ

ମକ୍କାରେ ଅବତୀର୍ଣ୍ଣ । ଏଥିରେ ୧୧ଗୋଟି ବିଭାଗ ଏବଂ ଗୋ ୧୦୯ ଟି ଶ୍ଳୋକ ଅଛି
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

## ୧ମ ବିଭାଗ

ଅଲଫ୍, ଲମ୍, ର; ଏହା ଜ୍ଞାନପୂର୍ଣ୍ଣ ଗ୍ରନ୍ଥର ଶ୍ଳୋକ ସବୁ ଅଟେ ।୧।

ଏହା କଅଣ ଲୋକମାନଙ୍କ ପାଇଁ ବିସ୍ମୟକର ଯେ ଆମ୍ଭେ ସେମାନଙ୍କ ମଧ୍ୟରୁ ଜଣକ ପ୍ରତି ପ୍ରତ୍ୟାଦେଶ କରିଅଛୁଁ କି ତୁମ୍ଭେ ଲୋକମାନଙ୍କୁ (ଶାସ୍ତିର) ଭୟ ଦେଖାଅ ଏବଂ ବିଶ୍ୱାସକାରୀମାନଙ୍କୁ ସୁସମ୍ବାଦ ଦିଅ ଯେ ସେମାନଙ୍କର ପାଳନକର୍ତ୍ତାଙ୍କ ନିକଟରେ ସେମାନଙ୍କ ପାଇଁ ପ୍ରକୃତ ପଦମର୍ଯ୍ୟାଦା ରହିଅଛି । କିନ୍ତୁ ଅବିଶ୍ୱାସ-କାରୀମାନେ କହନ୍ତି, "ନିଶ୍ଚୟ ଏ ଜଣେ ପ୍ରକାଶ୍ୟ ଯାଦୁକର" ।୨।

ନିଶ୍ଚୟ ପରମେଶ୍ୱରହିଁ ତୁମ୍ଭମାନଙ୍କର ପାଳନକର୍ତ୍ତା ଯେକି ଛଅଦିନରେ ଆକାଶ ମଣ୍ଡଳ ଏବଂ ଭୂମଣ୍ଡଳକୁ ସୃଷ୍ଟିକଲେ,ତାପରେ ସିଂହାସନରେ ସୁପ୍ରତିଷ୍ଠିତ ହୋଇ କାର୍ଯ୍ୟସମୂହ ନିୟନ୍ତ୍ରିତ କରୁଅଛନ୍ତି; ତାଙ୍କ ଅନୁମତି ବ୍ୟତୀତ କେହି ସୁପାରିସ କରିପାରିବେ ନାହିଁ; ସେହି ତୁମ୍ଭମାନଙ୍କର ପାଳନକର୍ତ୍ତା ପରମେଶ୍ୱର,ଅତଏବ ତାଙ୍କର ଉପାସନା କର; ତାହାହେଲେ କଅଣ ତୁମ୍ଭେମାନେ ମନଯୋଗ ଦେବନାହିଁ ? ୩।

ତାଙ୍କର ଆଡକୁ ତୁମ୍ଭେମାନେ ସମସ୍ତେ ଫେରିଯିବ, ପରମେଶ୍ୱରଙ୍କ ଅଙ୍ଗୀକାର ସତ୍ୟ; ନିଶ୍ଚୟ ସେ ପ୍ରଥମେ ସୃଷ୍ଟି ଆରମ୍ଭ କରନ୍ତି, ତାପରେ ସେ ଏହାର ପୁନରାବୃତ୍ତି କରନ୍ତି, ଯଦ୍ୱାରା ସେ ବିଶ୍ୱାସ ସ୍ଥାପନକାରୀମାନଙ୍କୁ ଏବଂ ସତ୍‌କାର୍ଯ୍ୟକାରୀମାନଙ୍କୁ ନ୍ୟାୟ ସହିତ ପୁରସ୍କାର ପ୍ରଦାନ କରିବେ; ଏବଂ ଅବିଶ୍ୱାସକାରୀମାନଙ୍କୁ ଗରମ ଜଳ ପିଇବାକୁ ହେବ ଏବଂ କଠୋର ଶାସ୍ତି ଭୋଗ କରିବାକୁ ହେବ, କାରଣ ସେମାନେ ଅବିଶ୍ୱାସ କରିଅଛନ୍ତି ।୪।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋକ୯୮ରେ ପ୍ରେରିତ ପୁରୁଷ ୟୁନୁସ୍‌ଙ୍କ ବିଷୟ ଉଲ୍ଲେଖ ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ଏହି ଶ୍ଳୋକର ୧ମ ଅଂଶରେ ଯେଉଁ ସାଙ୍କେତିକ ବର୍ଣ୍ଣମାନ ଦିଆ ଯାଇଅଛି ତାହାର ସମ୍ପୂର୍ଣ୍ଣ ଶ୍ଳୋକ 'ଅନା ଅଲ୍ଲାହୋରାଇ' କିଆଯାଇ ଅଛି ଯାହାର ଭାବାର୍ଥ "ଆମ୍ଭେ ସର୍ବଦର୍ଶନକାରୀ ପରମେଶ୍ୱର" ଅଟେ । ୨ୟ ଅଧ୍ୟାୟ ୧ମ ଶ୍ଳୋକର ଟୀକା ଦେଖ ।

୨ । ସେମାନଙ୍କ ମଧ୍ୟରୁ ଜଣେ—ଅର୍ଥାତ୍ ମହାପୁରୁଷ ମୋହମ୍ମଦ ।

୩ । ଦେଖ ଟୀକା ୭ମ ଅଧ୍ୟାୟ ଶ୍ଳୋକ୫୪ର ।

୪ । ଯେଉଁମାନେ ପରଲୋକରେ ଅବିଶ୍ୱାସ କରନ୍ତି ସେମାନଙ୍କୁ ଲକ୍ଷ୍ୟ କରି ପରମେଶ୍ୱର କହୁଅଛନ୍ତି ଯେ ଲୋକମାନଙ୍କର କର୍ମଫଳ ଭୋଗ ନିମନ୍ତେ ଅର୍ଥାତ୍ ପୁଣ୍ୟ କାର୍ଯ୍ୟର ପୁରସ୍କାର ଏବଂ ପାପ କାର୍ଯ୍ୟର ଶାସ୍ତି ଭୋଗ କରିବା ନିମନ୍ତେ ମୃତ୍ୟୁ ପରେ ସେମାନଙ୍କର ପୁନର୍ଜୀବନ ଲାଭ ନିଶ୍ଚୟ ଘଟିବ ।

ସେହି ସୂର୍ଯ୍ୟଙ୍କୁ (ଦିନବେଳେ) ଜ୍ୟୋତିର୍ମୟ ଏବଂ ଚନ୍ଦ୍ରକୁ (ରାତିରେ) ଅଲୋକମୟ କରିଅଛନ୍ତି ଏବଂ ସେଥିପାଇଁ କକ୍ଷମାନ ନିର୍ଦ୍ଧାରିତ କରିଦେଇଅଛନ୍ତି ଯଦ୍ୱାରା ତୁମ୍ଭେମାନେ ବର୍ଷମାନଙ୍କର ଗଣନା ଓ ସଂଖ୍ୟା ଜାଣି ପାରିବ; ପରମେଶ୍ୱର ଏହାକୁ ସତ୍ୟ ସହିତ ସୃଷ୍ଟି କରିଅଛନ୍ତି; ସେ ଜ୍ଞାନୀ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ବର୍ଣ୍ଣନା କରିଅଛନ୍ତି ।୫।

ନିଶ୍ଚୟ ରାତି ଓ ଦିନର ପରିବର୍ତ୍ତନରେ ଏବଂ ପରମେଶ୍ୱର ଆକାଶ ମଣ୍ଡଳ ଓ ଭୂମଣ୍ଡଳରେ ଯାହା ସୃଷ୍ଟି କରିଅଛନ୍ତି ସେଥିରେ ଧର୍ମଭୀରୁମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୬।

ନିଶ୍ଚୟ ଯେଉଁମାନେ (ଶେଷ ବିଚାର ଦିନ) ଅମ୍ଭଙ୍କୁ ଭେଟିବାର ଆକାଂକ୍ଷା କରନ୍ତି ନାହିଁ ଏବଂ ପାର୍ଥିବ ଜୀବନରେ ସନ୍ତୁଷ୍ଟ ରହନ୍ତି ଏବଂ ସେଥିରେହିଁ ସନ୍ତୋଷଲାଭ କରନ୍ତି ଏବଂ ଯେଉଁମାନେ ଅମ୍ଭର ନିଦର୍ଶନମାନଙ୍କ ବିଷୟରେ ଅମନଯୋଗୀ ।୭।

ସେମାନେ ଯାହା ଅର୍ଜ୍ଜନ କରିଅଛନ୍ତି ସେଥିପାଇଁ ସେହିମାନଙ୍କରହିଁ ବାସସ୍ଥାନ ନରକ ।୮।

ନିଶ୍ଚୟ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି ସେମାନଙ୍କର ବିଶ୍ୱାସ ପାଇଁ ସେମାନଙ୍କର ପାଳନକର୍ତ୍ତା ସେମାନଙ୍କୁ ସୁପଥ ଦେଖାଇବେ; ସେମାନଙ୍କ (ବାସସ୍ଥାନ) ସୁଖସମ୍ପଦ ପୂର୍ଣ୍ଣ ସ୍ୱର୍ଗୋଦ୍ୟାନର ନିମ୍ନଦେଶରେ ନଦୀମାନେ ବହୁଥିବେ ।୯।

ସେଥିମଧ୍ୟରେ ସେମାନଙ୍କର ଆହ୍ୱାନ ହେବ, "ହେ ପରମେଶ୍ୱର । ତୁମ୍ଭେହିଁ ପବିତ୍ର" । ଏବଂ ସେଥିରେ ସେମାନଙ୍କର ସମ୍ଭାଷଣ ହେବ, "(ସଲାମ) ଶାନ୍ତି"। ଏବଂ ସେମାନଙ୍କର ଶେଷ ଆହ୍ୱାନ ହେବ, "ସମସ୍ତ ଜଗତର ପାଳନକର୍ତ୍ତା ପରମେଶ୍ୱରଙ୍କ ପାଇଁ ସର୍ବବିଧ ପ୍ରଶଂସା" ।୧୦।

## ୨ୟ ବିଭାଗ

ଏବଂ ଯଦି ପରମେଶ୍ୱର ମାନବମାନଙ୍କ ପାଇଁ ଅମଙ୍ଗଳ ଦେବାରେ ସତ୍ୱରତା କରନ୍ତେ, ଯେପରି ସେମାନେ ମଙ୍ଗଳ ପାଇବା ପାଇଁ ସତ୍ୱରତା କରିଥାନ୍ତି, ତାହାହେଲେ ସେମାନଙ୍କ ପାଇଁ ସେମାନଙ୍କର ଅଦୃଷ୍ଟ ମୀମାଂସିତ ହୋଇଯାଆନ୍ତା; କିନ୍ତୁ ଯେଉଁମାନେ ଅମ୍ଭଙ୍କୁ ଭେଟିବାର ଆକାଂକ୍ଷା କରନ୍ତି ନାହିଁ, ଅମ୍ଭେ ସେମାନଙ୍କୁ ସେମାନଙ୍କର ଅବାଧ୍ୟତାରେ ଅନ୍ଧ ଭାବରେ ଭ୍ରମିବା ପାଇଁ ଛାଡ଼ିଦେଉ ।୧୧।

---

୫-୮ । ଏହି ଶ୍ଲୋକମାନଙ୍କରେ ନାସ୍ତିକ ଓ ଜଡ଼ବାଦୀମାନଙ୍କର ମତ ଖଣ୍ଡନ କରାଯାଇଅଛି । ବିଶ୍ୱ ଜଗତର ଅଦ୍ଭୁତ ସୃଷ୍ଟି କୌଶଳ ବିଷୟରେ ଚିନ୍ତା କଲେ ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଅସ୍ତିତ୍ୱ ନିଶ୍ଚୟ ଉପଲବ୍ଧ ହୋଇପାରିବ । ଏବଂ ୮ର୍ଥ ଶ୍ଲୋକରେ ସ୍ପଷ୍ଟ ବର୍ଣ୍ଣିତ ହୋଇଅଛି ଯେ କର୍ମଫଳ ଭୋଗ ନିମନ୍ତେ ପରଲୋକରେ ପୁନର୍ଜୀବନ ଲାଭ ନିଶ୍ଚୟ ଘଟିବ । ସୁତରାଂ ପାର୍ଥିବ ଜୀବନକୁ ସର୍ବସ୍ୱ ଏବଂ ଚରମ ଲକ୍ଷ୍ୟ ମନେ କରିବା ଭ୍ରମାତ୍ମକ ଅଟେ ।

୯ । ୧୦ । ଏହି ଦୁଇ ଶ୍ଲୋକରେ ବିଶ୍ୱାସକାରୀ ସତ୍‌କର୍ମଶୀଳ ଲୋକମାନଙ୍କର ପରଲୋକର ପୁରସ୍କାର ବିଷୟ ବର୍ଣ୍ଣିତ ହୋଇଅଛି । ସେଠାରେ ପବିତ୍ରତା ଓ ଶାନ୍ତି ପୂର୍ଣ୍ଣମାତ୍ରାରେ ବିରାଜମାନ କରିବ ।

୧୧ । ମନୁଷ୍ୟମାନେ ପରମେଶ୍ୱରଙ୍କଠାରୁ ସୁଖସ୍ୱାଚ୍ଛନ୍ଦ୍ୟ ଶୀଘ୍ର ଶୀଘ୍ର ଲାଭ ନିମନ୍ତେ ପ୍ରାର୍ଥନା କରନ୍ତି ଏବଂ ପରମେଶ୍ୱର ନିଜ କରୁଣାରୁ ସେମାନଙ୍କୁ ଶୀଘ୍ର ଶୀଘ୍ର ଦାନ କରିଥାନ୍ତି । ସେହିପରି ମାନବ ଜାତିର ଅବାଧ୍ୟତା ହେତୁ ପରମେଶ୍ୱର ଯଦି ସେମାନଙ୍କୁ ଶାସ୍ତି ଦେବାରେ ସତ୍ୱରତା କରନ୍ତେ, ତେବେ ମାନବ ଜାତି ଅତି ଶୀଘ୍ର ଧ୍ୱଂସ ହୋଇଯାଆନ୍ତେ । ମାତ୍ର ପରମେଶ୍ୱର ମାନବଜାତି ପ୍ରତି ତାଙ୍କର ଅପାର କରୁଣା ହେତୁ ଶୀଘ୍ର ଶାସ୍ତି ନ ଦେଇ ସେମାନଙ୍କୁ ଅବସର ଦିଅନ୍ତି । ମାତ୍ର ଯେତେବେଳେ ସେମାନେ ସୀମା ଲଙ୍ଘନ କରନ୍ତି, ସେତେବେଳେ ସେମାନଙ୍କୁ କଠୋର ଶାସ୍ତି ପ୍ରଦାନ କରନ୍ତି ।

ଏବଂ ଯେତେବେଳେ ମନୁଷ୍ୟକୁ ଅମଙ୍ଗଳ ସ୍ପର୍ଶ କରେ ସେତେବେଳେ ସେ ଶୋଇଥିବା ଅବସ୍ଥାରେ ଅଥବା ବସିଥିବା କିମ୍ବା ଠିଆ ହୋଇଥିବା ଅବସ୍ଥାରେ ଅମ୍ଭଙ୍କୁ ଡାକେ; ତାପରେ ଯେତେବେଳେ ଅମ୍ଭେ ତାହାଠାରୁ ଅମଙ୍ଗଳ ଦୂର କରିଦେଉଁ ସେତେବେଳେ ସେ ଚାଲିଯାଏ, ଯେପରିକି ସେ ତାହାକୁ ସ୍ପର୍ଶ କରିଥିବା ଅମଙ୍ଗଳ ପାଇଁ ଅମ୍ଭକୁ କଦାପି ଡାକି ନାହିଁ; ଏହିପରି ସୀମାଲଙ୍ଘନକାରୀମାନଙ୍କ କାର୍ଯ୍ୟସବୁ ସେମାନଙ୍କ ପାଇଁ ସୁଶୋଭିତ କରାହୁଏ ।୧୨।

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପୂର୍ବେ ଅତ୍ୟାଚାରୀ ସମ୍ପ୍ରଦାୟମାନଙ୍କୁ ଧ୍ୱଂସ କରି ଦେଇଅଛୁଁ; ଏବଂ ସେମାନଙ୍କ ନିକଟ ପ୍ରେରିତ ପୁରୁଷ ସମୁଜ୍ଜ୍ୱଳ ନିଦର୍ଶନମାନଙ୍କ ସହିତ ଆସିଥିଲେ, ମାତ୍ର ସେମାନେ ବିଶ୍ୱାସ କଲେ ନାହିଁ, ଏହିପରି ଅମ୍ଭେ ଅପରାଧୀ ସମ୍ପ୍ରଦାୟକୁ ପ୍ରତିଫଳ ଦେଇଥାଉଁ ।୧୩।

ତାପରେ ଅମ୍ଭେ ସେମାନଙ୍କ ପରେ ତୁମ୍ଭମାନଙ୍କୁ ଭୂପୃଷ୍ଠରେ ପ୍ରତିନିଧି କରିଅଛୁଁ, କାରଣ ଅମ୍ଭେ ଦେଖିବୁଁ ଯେ ତୁମ୍ଭେମାନେ କିପରି କାର୍ଯ୍ୟ କରୁଅଛ ।୧୪।

ଏବଂ ଯେତେବେଳେ ଅମ୍ଭର ଉଜ୍ଜ୍ୱଳ ନିଦର୍ଶନମାନ ସେମାନଙ୍କ ନିକଟରେ ପଢ଼ାହୁଏ, ସେତେବେଳେ ଯେଉଁମାନେ ଅମ୍ଭଙ୍କୁ ଭେଟିବାର ଆକାଙ୍କ୍ଷା କରନ୍ତି ନାହିଁ ସେମାନେ କହନ୍ତି, "ଏହାଛଡ଼ା ଅନ୍ୟ କୋରାନ ଆଣ ଅଥବା ଏହାକୁ ବଦଳାଇ ଦିଅ"; ତୁମ୍ଭେ କୁହ, "ଅମ୍ଭ ପକ୍ଷରେ ଏହା ସମ୍ଭବ ନୁହେ ଯେ ଅମ୍ଭେ ନିଜ ପକ୍ଷରୁ ଏହାକୁ ବଦଳାଇବୁଁ; ଅମ୍ଭ ପ୍ରତି ଯାହା ଆଦେଶ ହୋଇଅଛି ତାହାଛଡ଼ା ଅମ୍ଭେ ଅନୁସରଣ କରୁନାହୁଁ ଯଦି ଅମ୍ଭେ ନିଜ ପାଳନକର୍ତ୍ତାଙ୍କର ଅବାଧ୍ୟତା ଆଚରଣ କରୁଁ ନିଶ୍ଚୟ ଅମ୍ଭଙ୍କୁ ମହାଦିବସର ଶାସ୍ତିର ଆଶଙ୍କା ଅଛି" ।୧୫।

ତୁମ୍ଭେ କୁହ, "ଯଦି ପରମେଶ୍ୱର ଇଚ୍ଛା କରିଥାଆନ୍ତେ ତେବେ ଅମ୍ଭେ ଏହା ତୁମ୍ଭମାନଙ୍କ ନିକଟ ପାଠ କରି ନଥାନ୍ତୁ ଏବଂ ସେ ତୁମ୍ଭମାନଙ୍କୁ ଏହା ଜଣାଇ ନଥାନ୍ତେ; ବାସ୍ତବରେ ଅମ୍ଭେ ଏଥିପୂର୍ବେ ତୁମ୍ଭମାନଙ୍କ ମଧ୍ୟରେ ଜୀବନର ଏକାଂଶ କଟାଇ ଅଛୁଁ, ତଥାପି କଅଣ ତୁମ୍ଭେମାନେ ବୁଝିପାରୁନାହଁ ?" ।୧୬।

---

୧୨ । ପରମେଶ୍ୱର ମନୁଷ୍ୟମାନଙ୍କୁ ସେମାନଙ୍କର ଅବାଧ୍ୟତା ହେତୁ ଶାସ୍ତି ସ୍ୱରୂପ ସେମାନଙ୍କ ପ୍ରତି ଅମଙ୍ଗଳ ବିଧାନ କଲାପରେ ସେମାନେ ସେଥିରୁ ରକ୍ଷା ପାଇବା ପାଇଁ ପରମେଶ୍ୱରଙ୍କୁ ଡାକନ୍ତି । ମାତ୍ର ପରମେଶ୍ୱର ସେମାନଙ୍କୁ ସେଥିରୁ ରକ୍ଷା କଲାପରେ ସେମାନେ କୃତଜ୍ଞତା ଜ୍ଞାପନ ଏବଂ ଅବାଧ୍ୟତାରୁ ବିରତ ହେବା ପରିବର୍ତ୍ତେ ପରମେଶ୍ୱରଙ୍କୁ ଭୁଲି ଯାଇ ପୁନଶ୍ଚ ଅବାଧ୍ୟତାରେ ଲିପ୍ତ ହୁଅନ୍ତି । ଏହିପରି ବାରମ୍ବାର କରିବା ହେତୁ ଶେଷରେ ଅବାଧ୍ୟତା ସେମାନଙ୍କର ପ୍ରକୃତିଗତ ହୋଇ ପଡ଼େ ।

୧୫ । ପବିତ୍ର କୋରାନ ଗ୍ରନ୍ଥରେ ଅଂଶୀବାଦିତା ବିରୁଦ୍ଧରେ ଆଦେଶ ବାଣୀ ଅବତୀର୍ଣ୍ଣ ହେବାରୁ ଅଂଶୀବାଦୀମାନେ ଅସନ୍ତୁଷ୍ଟ ହୋଇ ମହାପୁରୁଷ ମୋହମ୍ମଦଙ୍କୁ କହିଲେ, ଯଦି ତୁମ୍ଭେ ଏହି କୋରାନକୁ ବଦଳାଇ ଅଂଶୀବାଦିତା ସପକ୍ଷରେ ପ୍ରଚାର କର, ତେବେ ଆମ୍ଭେମାନେ ତୁମ୍ଭର ଅନୁଗତ ହେବୁ । ତାହାର ଉତ୍ତରରେ ପରମେଶ୍ୱର ଆଦେଶ କରୁଅଛନ୍ତି, "ହେ ମୋହମ୍ମଦ ! ତୁମ୍ଭ ଅବିଶ୍ୱାସକାରୀମାନଙ୍କୁ କହି ଦିଅ ଯେ ନିଜ ପକ୍ଷରୁ କୋରାନ ଗ୍ରନ୍ଥକୁ ବଦଳାଇବା ତୁମ୍ଭ ପକ୍ଷରେ ଅସମ୍ଭବ । ତୁମ୍ଭପ୍ରତି ଯାହା ଆଦେଶ ହେଉଅଛି ତୁମ୍ଭେ ତାହା ପାଳନ କରୁଅଛ । ତାହାର ବିରୁଦ୍ଧାଚରଣ କରିବା ତୁମ୍ଭ ପକ୍ଷରେ ଅସମ୍ଭବ ।" ମହା ଦିବସ—ଶେଷ ବିଚାର ଦିନ ।

୧୬ । ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ଆଦେଶ କରୁଅଛନ୍ତି ଯେ ତୁମ୍ଭ ସେମାନଙ୍କୁ କହିଦିଅ ଯେ ତୁମ୍ଭେ ସେମାନଙ୍କ ମଧ୍ୟରେ ବର୍ଷାର୍ଦ୍ଧରୁ ଊର୍ଦ୍ଧ୍ୱ ସାରା ଜୀବନ କଟାଇ ଅଛ, ତୁମ୍ଭର ସତ୍ୟବାଦିତା ଓ ସାଧୁତା ସମ୍ବନ୍ଧରେ ସେମାନେ ଭଲରୂପେ ଜାଣନ୍ତି । ଯଦି ପରମେଶ୍ୱରଙ୍କ ଆଦେଶ ହୋଇ ନଥାନ୍ତା ତେବେ ତୁମ୍ଭେ ନିଜ ପକ୍ଷରୁ କାହିଁକି ସେମାନଙ୍କୁ ଏହି ଆଦେଶ ଶୁଣାଇ ଥାଅନ୍ତ ?

ଅତଏବ ଯେ ପରମେଶ୍ୱରଙ୍କ ପ୍ରତି ଅସତ୍ୟ କଳ୍ପନା କରେ କିମ୍ବା ତାଙ୍କର ନିଦର୍ଶନମାନଙ୍କ ପ୍ରତି ମିଥ୍ୟାରୋପ କରେ, ତାହା ଅପେକ୍ଷା ଅଧିକତର ଅତ୍ୟାଚାରୀ କିଏ ? ନିଶ୍ଚୟ ଅପରାଧୀମାନେ ସୁଫଳ ପାଇବେ ନାହିଁ ।୧୭।

ଏବଂ ସେମାନେ ପରମେଶ୍ୱରଙ୍କ ପରିବର୍ତ୍ତିରେ ଯାହାକୁ ଉପାସନା କରନ୍ତି, ସେ ସେମାନଙ୍କର ଅନିଷ୍ଟ ଅଥବା ସେମାନଙ୍କର ଉପକାର କରି ପାରେନା ଏବଂ ସେମାନେ କହନ୍ତି, "ଏମାନେ ପରମେଶ୍ୱରଙ୍କ ନିକଟରେ ଆମ୍ଭମାନଙ୍କର ସୁପାରିସ କରିବେ", ତୁମ୍ଭେ କୁହ, "ତେବେ କଅଣ ତୁମ୍ଭେମାନେ ପରମେଶ୍ୱରଙ୍କୁ ସେହି ବିଷୟ ଜଣାଉଅଛ ଯାହା ସେ ଆକାଶମଣ୍ଡଳ ମଧ୍ୟରେ ଏବଂ ଭୂମଣ୍ଡଳ ମଧ୍ୟରେ ଜାଣନ୍ତି ନାହିଁ ?" ଏବଂ ସେମାନେ ଯେଉଁ ଅଂଶୀଦାର ସ୍ଥିର କରୁଅଛନ୍ତି ସେ ତାହାଠାରୁ ଅଧିକ ପବିତ୍ର ଏବଂ ଅତୀତ ।୧୮।

ଏବଂ ମାନବମାନେ ଏକ ସମ୍ପ୍ରଦାୟଭୁକ୍ତ ଥିଲେ; ପରେ ସେମାନଙ୍କ ମଧ୍ୟରେ ମତଭେଦ ଘଟିଅଛି, ଏବଂ ଯଦି ତୁମ୍ଭର ପାଳନକର୍ତ୍ତାଙ୍କଠାରୁ ବାକ୍ୟ ପୂର୍ବେ ସମ୍ପନ୍ନ ହୋଇନଥାନ୍ତା, ତେବେ ସେମାନଙ୍କ ମଧ୍ୟରେ ଯେଉଁ ବିଷୟର ମତଭେଦ ଘଟୁଅଛି ନିଶ୍ଚୟ ତାହାର ସୁମୀମାଂସା ହୋଇଯାଇଥାଆନ୍ତା ।୧୯।

ଏବଂ ସେମାନେ କହନ୍ତି, "ତାଙ୍କର ପାଳନକର୍ତ୍ତାଙ୍କ ନିକଟରୁ ତାଙ୍କ ପ୍ରତି କାହିଁକି ଗୋଟିଏ ନିଦର୍ଶନ ଅବତୀର୍ଣ୍ଣ ହେଉନାହିଁ" ? ତୁମ୍ଭେ କୁହ, "ଅଦୃଷ୍ଟ ବିଷୟ ଏକମାତ୍ର ପରମେଶ୍ୱରଙ୍କୁ ଜଣା, ସୁତରାଂ ତୁମ୍ଭେମାନେ ଅପେକ୍ଷା କର, ନିଶ୍ଚୟ ଆମ୍ଭେ ମଧ୍ୟ ତୁମ୍ଭମାନଙ୍କ ସହିତ ଅପେକ୍ଷା କରୁଅଛୁଁ" ।୨୦।

## ୩ୟ ବିଭାଗ

ଏବଂ ଆମ୍ଭେ ଯେତେବେଳେ ଲୋକମାନଙ୍କୁ ସେମାନଙ୍କର ଦୁଃଖ ସ୍ପର୍ଶ ପରେ ସେମାନଙ୍କ ପ୍ରତି ଅନୁଗ୍ରହ କରୁଁ ସେତେବେଳେ ସେମାନେ ଆମ୍ଭର ନିଦର୍ଶନମାନଙ୍କ ସମ୍ବନ୍ଧରେ ଚକ୍ରାନ୍ତ କରିଥାନ୍ତି, ତୁମ୍ଭେ

---

୧୭ । ଉପରୋକ୍ତ ଦୁଇ ଶ୍ଳୋକରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ପବିତ୍ର କୋରାନ ଗ୍ରନ୍ଥ ମହାପୁରୁଷ ମୋହମ୍ମଦଙ୍କ-ଦ୍ୱାରା ରଚିତ ନୁହେ । ଏହା ପରମେଶ୍ୱରଙ୍କ ପ୍ରତ୍ୟାଦେଶ ବାଣୀ ଛଡ଼ା ଆଉ କିଛି ନୁହେ ।

୧୮ । ଅଂଶୀବାଦିତା ସପକ୍ଷରେ କୌଣସି ପ୍ରମାଣ ନାହିଁ । ପରମେଶ୍ୱର ସର୍ବଜ୍ଞ । ତାଙ୍କର କେହି ଅଂଶୀଦାର ଥିଲେ ସେ ଅବଶ୍ୟ ଜାଣିଥାନ୍ତେ ମାତ୍ର ସେ ବରାବର କହୁଛନ୍ତି ଯେ ତାଙ୍କର କେହି ଅଂଶୀଦାର ନାହିଁ ।

୧୯ । ସମସ୍ତ ମାନବ ଜାତି ଏକ ସମ୍ପ୍ରଦାୟଭୁକ୍ତ ଥିଲେ ଏବଂ ସେମାନଙ୍କ ଧର୍ମବିଶ୍ୱାସ ମଧ୍ୟ ଏକ ଥିଲା, ଅର୍ଥାତ୍ ସମସ୍ତେ ଏକ ପରମେଶ୍ୱରଙ୍କ ଉପରେ ବିଶ୍ୱାସ କରୁଥିଲେ । ମାତ୍ର ପରବର୍ତ୍ତୀ କାଳରେ ସେମାନଙ୍କ ମଧ୍ୟରେ ମତଭେଦ ଘଟିବାରୁ ବିଭିନ୍ନ ସମ୍ପ୍ରଦାୟ ଓ ବିଭିନ୍ନ ଧର୍ମରେ ବିଭକ୍ତ ହୋଇ ଅଛନ୍ତି । ସୁତରାଂ ଅଂଶୀବାଦିତା ଆଦିମ ଧର୍ମ ନୁହେ । ପରମେଶ୍ୱର ଅବିଶ୍ୱାସକାରୀ ଅଂଶୀବାଦୀମାନଙ୍କୁ ପୃଥିବୀରେ ଅବସର ଦେଇ ଅଛନ୍ତି ଏବଂ ସେମାନଙ୍କର ଅବିଶ୍ୱାସର ଶାସ୍ତି ପରଲୋକରେ ଭୋଗ କରିବେ ବୋଲି ଆଦେଶ କରିଅଛନ୍ତି । ସୁତରାଂ ବିଭିନ୍ନ ଧର୍ମାବଲମ୍ବୀ ସମ୍ପ୍ରଦାୟମାନଙ୍କର ମତଭେଦର ମୀମାଂସା ଏ ପାର୍ଥିବ ଜୀବନରେ ନ ହୋଇ ପର-ଲୋକରେ ହେବ ।

୨୦ । ଉପରୋକ୍ତ କାରଣରୁ ବିଧର୍ମୀମାନଙ୍କ ପ୍ରତି ପାର୍ଥିବ ଜୀବନରେ ଶାସ୍ତି ଉପସ୍ଥିତ ହେବା ପରମେଶ୍ୱରଙ୍କ ଇଚ୍ଛାଧୀନ ଅଟେ ।

କୁହ, "ପରମେଶ୍ୱର ଶୀଘ୍ର କୌଶଳକାରୀ", ନିଶ୍ଚୟ ତୁମ୍ଭେମାନେ ଯେ ଚକ୍ରାନ୍ତ କରୁଅଛ ଆମ୍ଭର ସ୍ୱର୍ଗଦୂତମାନେ ତାହା ଲେଖୁଅଛନ୍ତି ।୨୧।

ସେହି ତୁମ୍ଭମାନଙ୍କୁ ଭୂ-ପୃଷ୍ଠରେ ଏବଂ ସମୁଦ୍ରରେ ଭ୍ରମଣ କରାଉଅଛନ୍ତି, ଏପରକି ଯେତେବେଳେ ତୁମ୍ଭେମାନେ ନୌକାମାନଙ୍କରେ ବସ ଏବଂ ନୌକାସବୁ ତୁମ୍ଭମାନଙ୍କୁ ନେଇ ଅନୁକୂଳ ପବନରେ ଗ୍ଭଳିତ ହୁଅନ୍ତି ଏବଂ ସେଥିପାଇଁ ତୁମ୍ଭେମାନେ ଆନନ୍ଦ ଅନୁଭବ କର, ତାପରେ ଯେତେବେଳେ ପ୍ରତିକୂଳ ପବନ ଆସେ ଏବଂ ଗ୍ଭରିଆଡ଼ୁ ଲହରୀ ମାରୁଥାଏ ଏବଂ ସେମାନେ ଅନୁଭବ କରନ୍ତି ଯେ ଏହା ସେମାନଙ୍କୁ ଘେରିପକାଇବ, ସେତେବେଳେ ସେମାନେ ଅନ୍ତରର ସହିତ ପରମେଶ୍ୱରଙ୍କୁ ଡାକି ତାଙ୍କ ନିକଟ ପ୍ରାର୍ଥନା କରନ୍ତି, "ଯଦି ତୁମ୍ଭେ ଆମ୍ଭମାନଙ୍କୁ ଏଥିରୁ ଉଦ୍ଧାରକର, ତେବେ ନିଶ୍ଚୟ ଆମ୍ଭେମାନେ ତୁମ୍ଭ ପ୍ରତି କୃତଜ୍ଞ ହେବୁ"।୨୨।

ତାପରେ ଯେତେବେଳେ ସେ ସେମାନଙ୍କୁ ଉଦ୍ଧାର କରନ୍ତି, ସେତେବେଳେ ସେମାନେ ଅନ୍ୟାୟ ଭାବରେ ପୃଥିବୀରେ ବିଦ୍ରୋହାଚରଣ କରିଥାନ୍ତି; ହେ ଲୋକମାନେ, ତୁମ୍ଭମାନଙ୍କର ବିଦ୍ରୋହାଚରଣ କେବଳ ତୁମ୍ଭମାନଙ୍କର ନିଜ ବିରୁଦ୍ଧରେ, ଏହା ପାର୍ଥିବ ଜୀବନର ସମ୍ବଳମାତ୍ର; ଅବଶେଷରେ ତୁମ୍ଭେମାନେ ଆମ୍ଭର ନିକଟ ଫେରିଯିବ, ତାପରେ ତୁମ୍ଭେମାନେ ଯାହା କରୁଥିଲ ତାହା ତୁମ୍ଭମାନଙ୍କୁ ଜଣାଇ ଦେବୁ ।୨୩।

ପାର୍ଥିବ ଜୀବନର ଉପମା କେବଳ ଜଳ ପରି ଅଟେ, ଯାହାକୁ ଆମ୍ଭେ ଆକାଶରୁ ବର୍ଷଣ କରୁ, ତାପରେ ଏହାର ମିଶ୍ରଣରେ ପୃଥିବୀରୁ ତରୁଲତା ଉତ୍ପନ୍ନ ହୁଏ, ଯାହା ମନୁଷ୍ୟ ଏବଂ ପଶୁମାନଙ୍କର ଖାଦ୍ୟ ଅଟେ; ଏହି ଅବସ୍ଥାରେ ଯେତେବେଳେ ପୃଥିବୀ ସୁବର୍ଣ୍ଣରୂପ ଧାରଣକରେ ଓ ସୁଶୋଭିତ ହୁଏ ଏବଂ ଏହାର ଅଧିବାସୀମାନେ ମନେକରନ୍ତି ଯେ ବର୍ତ୍ତମାନ ସେମାନେ ଏହାର ଅଧିକାରୀ, ସେତେବେଳେ ରାତ୍ରି ଅଥବା ଦିନରେ ଆମ୍ଭର ଆଦେଶ ଉପସ୍ଥିତ ହୁଏ, ତାପରେ ଆମ୍ଭେ ଏସବୁକୁ ଏପରିଧ୍ୱଂସ କରିଦେଉଁ ଯେପରିକି କାଲି ଏହା ଏଠାରେ ନ ଥିଲା; ଏହିପରି ଆମ୍ଭେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ନିଦର୍ଶନ ମାନ ବର୍ଣ୍ଣନା କରିଥାଉଁ ।୨୪।

ଏବଂ ପରମେଶ୍ୱର ତୁମ୍ଭମାନଙ୍କୁ ଶାନ୍ତିନିକେତନ ଆଡ଼କୁ ଡାକୁଅଛନ୍ତି ଏବଂ ଯାହାକୁ ଇଚ୍ଛା ସୁଦୃଢ଼ ସରଳ ପଥରେ ଚଳାଇଥାନ୍ତି ।୨୫।

---

୨୧ । ଲୋକମାନେ ଦୁଃଖ ଭୋଗ କରୁଥିବା ଅବସ୍ଥାରେ ପରମେଶ୍ୱରଙ୍କୁ ସ୍ମରଣ କରନ୍ତି । ମାତ୍ର ତାଙ୍କ ଅନୁଗ୍ରହକୁ ତାପରେ ଯେତେବେଳେ ସୁଖ ଭୋଗ କରନ୍ତି ସେତେବେଳେ ପରମେଶ୍ୱରଙ୍କୁ ଭୁଲିଯାଇ ତାଙ୍କର ନିଦର୍ଶନମାନଙ୍କୁ ମିଥ୍ୟା ମନେ କରନ୍ତି । ମାତ୍ର ଏଥିପାଇଁ ସେମାନେ ଶାସ୍ତିରୁ ଅବ୍ୟାହତି ପାଇ ପାରିବେ ନାହିଁ, କାରଣ ସେମାନଙ୍କ କାର୍ଯ୍ୟସବୁ ଲେଖା ହୋଇ ରହିଅଛି ।

୨୨ । ୨୩ । ଏହି ଦୁଇ ଶ୍ଳୋକରେ ଉପରଲିଖିତ ବିଷୟର ଉଦାହରଣ ଦିଆଯାଇ ଅଛି । ୬୩ ଅଧ୍ୟାୟର ୬୩ ଓ ୬୪ ଶ୍ଳୋକମାନଙ୍କ ସଙ୍ଗେ ତୁଳନା କରି ଦେଖ ।
ସେମାନେ—ନୌକାରେ ବସିଥିବା ଲୋକମାନେ ।
ସମ୍ବଳ—ବାଟଖର୍ଚ୍ଚ ।

୨୪ । ଏହି ଶ୍ଳୋକରେ ମାନବର ପାର୍ଥିବ ଜୀବନର ଅନିଶ୍ଚିତତା ଓ ଅସାରତା ଗୋଟିଏ ଉପମାଦ୍ୱାରା ବୁଝାଇ ଦିଆଯାଇଅଛି । ଚିନ୍ତାଶୀଳ ଲୋକମାନେ ଏଥିରୁ ଶିକ୍ଷା ଲାଭ କରିମାରନ୍ତି ।

୨୫ । ଶାନ୍ତି ନିକେତନ—ସ୍ୱର୍ଗ ।

ଯେଉଁମାନେ ସତ୍‌କାର୍ଯ୍ୟ କରନ୍ତି ସେମାନଙ୍କ ପାଇଁ କଲ୍ୟାଣ ଏବଂ ଅଧିକତର ( ପୁରସ୍କାର ) ରହିଅଛି ଏବଂ କଳଙ୍କ ଓ ଲାଞ୍ଛନା ସେମାନଙ୍କର ମୁଖମାନଙ୍କୁ ଅଚ୍ଛନ୍ନ କରିବ ନାହିଁ; ସେହିମାନେହିଁ ସ୍ୱର୍ଗୋଦ୍ୟାନର ଅଧିବାସୀ, ସେମାନେ ସେଥିରେ ସର୍ବଦା ବାସ କରିବେ ।୨୬।

ଏବଂ ଯେଉଁମାନେ ମନ୍ଦକାର୍ଯ୍ୟ କରିଅଛନ୍ତି, ସେମାନେ ତାହା ବଦଳରେ ତାହାର ଅନୁରୂପ ମନ୍ଦ ପାଇବେ ଏବଂ ସେମାନଙ୍କୁ ଲାଞ୍ଛନା ଆକ୍ରମଣ କରିବ, ସେମାନଙ୍କ ପାଇଁ ପରମେଶ୍ୱରଙ୍କ (କୋପରୁ) କେହି ରକ୍ଷା କରିପାରିବେ ନାହିଁ, ସେମାନଙ୍କ ମୁଖମାନ ଯେପରିକି ରଜନୀକାଳୀନ ଅନ୍ଧକାରର ଏକାଂଶଦ୍ୱାରା ଆବୃତ ହେବ ସେହିମାନେହିଁ ନରକାଗ୍ନିର ଅଧିବାସୀ, ସେମାନେ ସେଥିରେ ସର୍ବଦା ବାସ କରିବେ ।୨୭।

ଏବଂ ସେହିଦିନ ଆମ୍ଭେ ସେମାନଙ୍କର ସମସ୍ତଙ୍କୁ ଏକତ୍ରିତ କରିବୁ, ତାପରେ ଅଂଶୀସ୍ଥାପନକାରୀମାନଙ୍କୁ କହିବୁ, "ତୁମ୍ଭେମାନେ ଏବଂ ତୁମ୍ଭମାନଙ୍କର ଅଂଶୀ ଉପାସ୍ୟମାନେ ଯଥା ସ୍ଥାନରେ ରୁହ" ତାପରେ ଆମ୍ଭେ ସେମାନଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରିବୁ ଏବଂ ସେମାନଙ୍କର ଅଂଶୀ ଉପାସ୍ୟମାନେ କହିବେ, "ତୁମ୍ଭେମାନେ ଆମ୍ଭମାନଙ୍କୁ ଉପାସନା କରିନାହଁ ।୨୮।

"ଅତଏବ ଆମ୍ଭମାନଙ୍କର ଓ ତୁମ୍ଭମାନଙ୍କର ମଧ୍ୟରେ ପରମେଶ୍ୱରଙ୍କ ସାକ୍ଷ୍ୟହିଁ ଯଥେଷ୍ଟ ଯେ ଆମ୍ଭେମାନେ ତୁମ୍ଭମାନଙ୍କର ଉପାସନା ସମ୍ବନ୍ଧରେ ଆଦୌ ଜାଣି ନଥିଲୁ" ।୨୯।

ପ୍ରତ୍ୟେକ ବ୍ୟକ୍ତି ପୂର୍ବରୁ ଯାହା ପଠାଇଅଛି, ସେଠାରେ ତାହା ପାଇବ ଏବଂ ସେମାନେ ସେମାନଙ୍କର ପ୍ରକୃତ ପ୍ରଭୁ ପରମେଶ୍ୱରଙ୍କ ନିକଟକୁ ଫେରିଯିବେ ଏବଂ ସେମାନେ ଯାହା ମିଥ୍ୟା କଳ୍ପନା କରିଥିଲେ ତାହା ସେମାନଙ୍କଠାରୁ ଦୂର ହୋଇଯିବ ।୩୦।

## ୪ର୍ଥ ବିଭାଗ

ତୁମ୍ଭେ କୁହ, "ଆକାଶ ଓ ପୃଥିବୀରୁ କିଏ ତୁମ୍ଭମାନଙ୍କୁ ଜୀବିକା ଦାନ କରନ୍ତି ? କିଏ ବା ଶ୍ରବଣ ଓ ଦର୍ଶନ ଶକ୍ତିର ପରିଚାଳକ ? ଏବଂ କିଏ ମୃତରୁ ଜୀବିତକୁ ଏବଂ ଜୀବିତରୁ ମୃତକୁ ବାହାର

---

୨୬ । ୨୭ । ଏହି ଦୁଇ ଶ୍ଳୋକରେ ପୁଣ୍ୟବାନ ଲୋକମାନଙ୍କର ଏବଂ ପାପାଚାରୀମାନଙ୍କର ପରିଣାମ ତୁଳନା କରାଯାଇଅଛି ।

୨୮ । ୨୯ । ଶେଷ ବିଚାର ଦିନ ପରମେଶ୍ୱର ଅଂଶୀବାଦୀମାନଙ୍କୁ ଏବଂ ଅଂଶୀଉପାସ୍ୟମାନଙ୍କୁ ସମ୍ମୁଖୀନ କରି ସେମାନଙ୍କର କାର୍ଯ୍ୟ ସମ୍ବନ୍ଧରେ ପ୍ରଶ୍ନ କରିବେ । ଅଂଶୀବାଦୀମାନେ କହିବେ, ଆମ୍ଭେମାନେ ପାର୍ଥିବ ସୁଖ ଲାଭ ଆଶାରେ ଏମାନଙ୍କୁ ଉପାସନା କରୁଥିଲୁଁ । ମାତ୍ର ଅଂଶୀଉପାସ୍ୟମାନେ ପରମେଶ୍ୱରଙ୍କୁ ସାକ୍ଷ ଦେଇ କହିବେ, ଏମାନେ ଆମ୍ଭମାନଙ୍କୁ ଉପାସନା କରିବାର ଆମ୍ଭମାନଙ୍କୁ ଆଦୌ ଜଣା ନାହିଁ ।

୩୦ । ସୁତରାଂ ଅଂଶୀବାଦୀମାନେ ପାର୍ଥିବ ଜୀବନରେ ଯେଉଁ ଭ୍ରମ ଧାରଣାରେ ପଡ଼ିଅଛନ୍ତି ପରଲୋକରେ ତାହା ସେମାନଙ୍କଠାରୁ ଦୂର ହୋଇଯିବ ଏବଂ ସେମାନେ ନିଜର ଅନ୍ୟାୟ କାର୍ଯ୍ୟ ସକାଶେ ନରକ ଯନ୍ତ୍ରଣା ଭୋଗ କରିବେ ।

୩୧ । ମୃତରୁ ଜୀବିତ ଏବଂ ଜୀବିତରୁ ମୃତ ସମ୍ବନ୍ଧରେ—୩ୟ ଅଧ୍ୟାୟର ୨୭ ଶ୍ଳୋକ; ୬ ଅଧ୍ୟାୟର ୯୫ ଶ୍ଳୋକ ଓ ୩୦ ଅଧ୍ୟାୟର ୧୯ ଶ୍ଳୋକ ଦେଖ ।

କରନ୍ତି ? ଏବଂ କିଏ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି” ? ବାସ୍ତବରେ ସେମାନେ କହିବେ, “ପରମେଶ୍ୱର । ସୁତରାଂ ତୁମ୍ଭେ କୁହ, “ତୁମ୍ଭେମାନେ ତେବେ କାହିଁକି ସଂଯତ ହେବ ନାହିଁ ?” ।୩୧।

ବାସ୍ତବରେ ପରମେଶ୍ୱରହିଁ ତୁମ୍ଭମାନଙ୍କର ପ୍ରକୃତ ପାଳନକର୍ତ୍ତା; ଅତଏବ ସତ୍ୟପରେ ଭ୍ରାନ୍ତି ଛଡ଼ା ଆଉ କଅଣ ଅଛି ? ତାପରେ ତୁମ୍ଭେମାନେ କିପରି ଫେରିଯାଉଅଛ ? ।୩୨।

ଏହିପରି ତୁମ୍ଭର ପାଳନକର୍ତ୍ତାଙ୍କର ବାକ୍ୟ ଦୁଷ୍କର୍ମକାରୀମାନଙ୍କ ପ୍ରତି ସତ୍ୟ ପ୍ରମାଣିତ ହେବ ଯେ ସେମାନେ ବିଶ୍ୱାସ ସ୍ଥାପନ କରିବେ ନାହିଁ ।୩୩।

ତୁମ୍ଭେ କୁହ, “ତୁମ୍ଭମାନଙ୍କର ଅଂଶୀ ଉପାସ୍ୟମାନଙ୍କ ମଧ୍ୟରେ ଏପରି କେହି ଅଛି ଯେ ପ୍ରଥମେ ସୃଷ୍ଟିର ଉଦ୍‌ଭାବନ କରି ତାହାର ପୁନରାବୃତ୍ତି କରିଥାନ୍ତି; ତାହାହେଲେ ତୁମ୍ଭେମାନେ କିପରି (ସତ୍ୟରୁ) ଫେରି ଯାଉଅଛ” ? ।୩୪।

ତୁମ୍ଭେ କୁହ, “ତୁମ୍ଭମାନଙ୍କର ଅଂଶୀ ଉପାସ୍ୟମାନଙ୍କ ମଧ୍ୟରେ ଏପରି କେହି ଅଛି ଯେକି ସତ୍ୟ ଆଡ଼କୁ ପଥ ଦେଖାଇପାରେ ?” ତୁମ୍ଭେ କହିଦିଅ, “ପରମେଶ୍ୱରହିଁ ସତ୍ୟପଥ ଦେଖାଇ ଥାଆନ୍ତି; ଅତଏବ ଯେ ସତ୍ୟ ପଥ ଦେଖାନ୍ତି ତାଙ୍କର ଅନୁସରଣ କରିବା ଅଧିକ ଉପଯୁକ୍ତ, ନା ଯେ ତାଙ୍କଦ୍ୱାରା ପଥ ଦେଖାଇବା ବ୍ୟତୀତ ପଥ ପାଏ ନାହିଁ ତାହାର ଅନୁସରଣ କରିବା ଅଧିକ ଉପଯୁକ୍ତ ? ବାସ୍ତବରେ ତୁମ୍ଭମାନଙ୍କର କଅଣ ହୋଇଅଛି ? ତୁମ୍ଭେମାନେ କିପରି ବିଚାର କରୁଅଛ ?” ।୩୫।

ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ କଳ୍ପନାର ଅନୁସରଣ ଛଡ଼ା ଆଉ କିଛି କରୁନାହାନ୍ତି; ନିଶ୍ଚୟ ସତ୍ୟ ବିରୁଦ୍ଧରେ କଳ୍ପନା କିଛିମାତ୍ର ଫଳପ୍ରଦ ନୁହେଁ, ନିଶ୍ଚୟ ସେମାନେ ଯାହା କରୁଅଛନ୍ତି ପରମେଶ୍ୱର ସେ ବିଷୟରେ ଅଭିଜ୍ଞ ।୩୬।

---

୩୧ । ୩୨ । ମାନବ ଜାତିର ପ୍ରକୃତ ପାଳନକର୍ତ୍ତା ପରମେଶ୍ୱର, ଏକଥା ସମସ୍ତେ ସ୍ୱୀକାର କରନ୍ତି । ସୁତରାଂ ମାନବ ସମାଜର ଉପକାର ପାଇଁ ପରମେଶ୍ୱରଙ୍କ ଦ୍ୱାରା ପ୍ରବର୍ତ୍ତିତ ସତ୍ୟ ସନାତନ ଇସଲାମ ଧର୍ମ ଛଡ଼ା ଅନ୍ୟ ଧର୍ମମାନ ଭ୍ରାନ୍ତିମୂଳକ ଅଟେ । ଏ କଥା ହୃଦୟଙ୍ଗମ କଲାପରେ ସତ୍ୟ ପଥ ପରିତ୍ୟାଗ କରି ଭ୍ରାନ୍ତ ପଥ ଅନୁସରଣ କରିବା ନିତାନ୍ତ ଅନ୍ୟାୟ ।

୩୩ । ଉପରୋକ୍ତ ସତ୍ୟ ହୃଦୟଙ୍ଗମ କଲାପରେ ମଧ୍ୟ ଯେଉଁମାନେ ଅବିଶ୍ୱାସ ଓ ଅସତ୍ କର୍ମରେ ଦୃଢ଼ ରହିଅଛନ୍ତି, କାଳକ୍ରମେ ଅବିଶ୍ୱାସ ସେମାନଙ୍କର ପ୍ରକୃତିଗତ ହୋଇଯିବ ଏବଂ ସେହି ଅବିଶ୍ୱାସୀ ଅବସ୍ଥାରେ ସେମାନେ ମରିବେ ।

୩୪ । ୩୫ । ପରମେଶ୍ୱରହିଁ ବିନା ଉପାଦାନରେ ବିଶ୍ୱସଂସାରକୁ ସର୍ବ ପ୍ରଥମେ ସୃଷ୍ଟି କରିଅଛନ୍ତି ଏବଂ ସୃଷ୍ଟି ଚଳାଉଅଛନ୍ତି, ମାତ୍ର ଅଂଶୀ ଉପାସ୍ୟମାନଙ୍କର ଏପରି ଶକ୍ତି ନାହିଁ । ପରମେଶ୍ୱରହିଁ ସତ୍ୟପଥ ଦେଖାଇ ପାରନ୍ତି ଏବଂ ତାଙ୍କ ଛଡ଼ା ଆଉ କେହି ସତ୍ୟ ପଥ ଦେଖାଇବାର ଅଧିକାରୀ ନାହିଁ । ସୁତରାଂ ପରମେଶ୍ୱରଙ୍କୁ ଛାଡ଼ି ଅଂଶୀ-ଉପାସ୍ୟମାନଙ୍କ ଉପାସନା କରିବା ନିତାନ୍ତ ଅନ୍ୟାୟ ।

କେତେକ ଟୀକାକାରମାନଙ୍କ ମତରେ ‘ସୃଷ୍ଟିର ପୁନରାବୃତ୍ତି, ଅର୍ଥ ଏ ବିଶ୍ୱଜଗତର ମହାପ୍ରଳୟ ପରେ ଶେଷ ବିଚାର ଦିନ ପାଇଁ ଏକ ନୂତନ ସୃଷ୍ଟି ।

୩୬ । ଅଂଶୀ ଉପାସ୍ୟ ସ୍ଥିର କରିବା ପାଇଁ କୌଣସି ଧର୍ମ ଗ୍ରନ୍ଥରେ ଆଦେଶ କରାଯାଇ ନାହିଁ । ଅଂଶୀବାଦୀମାନେ କେବଳ କଳ୍ପନାର ଅନୁସରଣ କରୁଅଛନ୍ତି, ସୁତରାଂ ସତ୍ୟ ଧର୍ମ ପରି ଏହା ଫଳପ୍ରଦ ହୋଇନପାରେ ।

ଏବଂ ଏହି କୋରାନ ଏପରି ନୁହେ ଯେ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ଏହାକୁ ରଚନା କରିପାରେ, କିନ୍ତୁ ଏହା ଏହାର ପୂର୍ବବର୍ତ୍ତୀ ଅବତୀର୍ଣ୍ଣ ଗ୍ରନ୍ଥମାନଙ୍କର ସତ୍ୟତା ପ୍ରମାଣକାରୀ ଏବଂ ଏଥିରେ କୌଣସି ସନ୍ଦେହ ନାହିଁ ଯେ ଏହା ସମସ୍ତ ଜଗତର ପାଳନକର୍ତ୍ତାଙ୍କ ନିକଟରୁ ଗ୍ରନ୍ଥର ବ୍ୟାଖ୍ୟାକାରୀ ।୩୭।

ଅଥବା ସେମାନେ କଅଣ କହନ୍ତି, ଏହା ତାଙ୍କର ସ୍ୱରଚିତ ? ତୁମ୍ଭେ କହିଦିଅ, "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ ତେବେ ତୁମ୍ଭେମାନେ ଏହାର ଅନୁରୂପ ଗୋଟିଏ ଅଧ୍ୟାୟ ନେଇ ଆସ ଏବଂ ପରମେଶ୍ୱରଙ୍କ ବ୍ୟତୀତ ଯାହାକୁ ଇଚ୍ଛା (ତୁମ୍ଭମାନଙ୍କ ସାହାଯ୍ୟ ପାଇଁ) ଆହ୍ୱାନ କର" ।୩୮।

ବରଂ ଯେଉଁ ବିଷୟରେ ସେମାନଙ୍କର ସମ୍ପୂର୍ଣ୍ଣଜ୍ଞାନ ନାହିଁ, ସେମାନେ ସେଥି ପ୍ରତି ମିଥ୍ୟାରୋପ କରୁଅଛନ୍ତି ଏବଂ ସେମାନଙ୍କ ନିକଟ ଏହାର ବ୍ୟାଖ୍ୟା ଉପସ୍ଥିତ ହୋଇ ନାହିଁ, ଏହିପରି ସେମାନଙ୍କର ପୂର୍ବବର୍ତ୍ତୀମାନେ ମଧ୍ୟ ସେମାନଙ୍କ ପ୍ରେରିତ ପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ, ଅତଏବ ଲକ୍ଷ୍ୟକର ଯେ ଅତ୍ୟାଚାରୀମାନଙ୍କ ପରିଣାମ କିପରି ହୋଇ ଥିଲା ।୩୯।

ଏବଂ ସେମାନଙ୍କ ମଧ୍ୟରୁ କେହି କେହି ଏଥିରେ ବିଶ୍ୱାସ କରନ୍ତି ଏବଂ ସେମାନଙ୍କ ମଧ୍ୟରୁ କେହି କେହି ଏଥିରେ ବିଶ୍ୱାସ କରନ୍ତି ନାହିଁ; ଏବଂ ତୁମ୍ଭର ପାଳନକର୍ତ୍ତା ଦୁଷ୍କର୍ମକାରୀମାନଙ୍କୁ ଭଲ ରୂପେ ଜାଣନ୍ତି ।୪୦।

## ୫ମ ବିଭାଗ

ଏବଂ ଯଦି ସେମାନେ ତୁମ୍ଭ ପ୍ରତି ମିଥ୍ୟାରୋପ କରନ୍ତି, ତେବେ ତୁମ୍ଭେ କୁହ, "ଆମ୍ଭର କର୍ମ (ଫଳ) ଆମ୍ଭ ପାଇଁ ଏବଂ ତୁମ୍ଭମାନଙ୍କର କର୍ମ (ଫଳ) ତୁମ୍ଭମାନଙ୍କ ପାଇଁ; ଆମ୍ଭେ ଯାହା କରୁଅଛୁଁ ସେଥିରୁ ତୁମ୍ଭେମାନେ ବିମୁକ୍ତ ଏବଂ ତୁମ୍ଭେମାନେ ଯାହା କରୁଅଛ ସେଥିରୁ ଆମ୍ଭେ ବିମୁକ୍ତ" ।୪୧।

ଏବଂ ସେମାନଙ୍କ ମଧ୍ୟରୁ କେହି କେହି ତୁମ୍ଭ ପ୍ରତି କର୍ଣ୍ଣପାତ କରିବାର ଛଳନା କରନ୍ତି ଏବଂ ଯଦି ସେମାନେ ନବୁଝନ୍ତି ତେବେ କଅଣ ତୁମ୍ଭେ ବଧିରମାନଙ୍କୁ ଶୁଣାଇ ପାରିବ ? ।୪୨।

ଏବଂ ସେମାନଙ୍କ ମଧ୍ୟରୁ କେହି କେହି ତୁମ୍ଭପ୍ରତି ଦୃଷ୍ଟିପାତ କରନ୍ତି; ଏବଂ ଯଦି ସେମାନେ ଦେଖିନପାରନ୍ତି ତେବେ କଅଣ ତୁମ୍ଭେ ଅନ୍ଧମାନଙ୍କୁ ପଥ ଦେଖାଇ ପାରିବ ? ।୪୩।

---

୩୭ । ପବିତ୍ର କୋରାନ ଗ୍ରନ୍ଥ ପରମେଶ୍ୱରଙ୍କଦ୍ୱାରା ପ୍ରେରିତ; ଏହା କୌଣସି ମାନବର ରଚିତ ନୁହେ । ଗ୍ରନ୍ଥର ବ୍ୟାଖ୍ୟାକାରୀ—ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କରେ ପରମେଶ୍ୱରଙ୍କ ଯେଉଁ ବିଧିନିଷେଧମାନ ସଂକ୍ଷେପରେ ଏବଂ ଅସ୍ପଷ୍ଟ ଭାବରେ ଦିଆଯାଇଥିଲା କୋରାନ ଗ୍ରନ୍ଥରେ ତାହା ସ୍ପଷ୍ଟ ଭାବରେ ଓ ବିସ୍ତୃତ ଭାବରେ ଦିଆଯାଇ ଅଛି ।

୩୮ । ତାଙ୍କର—ମହାପୁରୁଷ ମୋହମ୍ମଦଙ୍କର । ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋ ୨୩, ୨୪ କ ।

୩୯ । ଅବିଶ୍ୱାସକାରୀମାନେ ପରମେଶ୍ୱରଙ୍କ ସୁସମ୍ବାଦ ପ୍ରତ୍ୟାଖ୍ୟାନ କରୁଅଛନ୍ତି; କାରଣ ସେମାନେ ଏହା ବୁଝିପାରୁନାହାନ୍ତି କିମ୍ବା ଏହାକୁ କୌଣସି ମତେ ବୁଝିବାର ଚେଷ୍ଟା କରୁନାହାନ୍ତି ।

୪୧ । ବିମୁକ୍ତ—ଦାୟିତ୍ୱ ଶୂନ୍ୟ ।

୪୨ । ୪୩ । ଯେଉଁମାନେ ଶୁଣି ନଶୁଣିଲାପରି ଏବଂ ଦେଖି ନଦେଖିଲା ପରି ହୋଇ ବୁଝିବାର ଚେଷ୍ଟା କରନ୍ତି ନାହିଁ ସେମାନଙ୍କୁ ହୃଦୟଙ୍ଗମ କରାଇବା ମନୁଷ୍ୟର ସାଧ୍ୟାତୀତ, କାରଣ ସେମାନେ ସତ୍ୟ ହୃଦୟଙ୍ଗମ କରିବାର ଶକ୍ତି ହରାଇ ଅଛନ୍ତି ।

ନିଶ୍ଚୟ ପରମେଶ୍ୱର ମାନବ ପ୍ରତି କୌଣସି ଅନ୍ୟାୟ କରନ୍ତି ନାହିଁ, କିନ୍ତୁ ମନୁଷ୍ୟ (ପାପକାର୍ଯ୍ୟ କରି) ନିଜ ପ୍ରତି ଅତ୍ୟାଚାର କରିଥାଏ । ୪୪ ।

ଏବଂ ଯେଉଁଦିନ ସେ ସେମାନଙ୍କୁ ଏକତ୍ରିତ କରିବେ, (ସେମାନେ ମନେ କରିବେ), ଯେପରିକି ସେମାନେ (ପୃଥିବୀରେ) ଏକଦିନର ଏକ ମୁହୂର୍ତ୍ତ ମାତ୍ର ରହିଥିଲେ; ସେଦିନ ସେମାନେ ପରସ୍ପରକୁ ଚିହ୍ନି ପାରିବେ; ଯେଉଁମାନେ ପରମେଶ୍ୱରଙ୍କ ସହିତ ସାକ୍ଷାତ ସମ୍ବନ୍ଧରେ ମିଥ୍ୟାରୋପ କରିଥିଲେ ଏବଂ ସୁପଥଗାମୀ ନ ଥିଲେ, ସେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବେ । ୪୫ ।

ଏବଂ ଆମ୍ଭେ ସେମାନଙ୍କୁ ଯେଉଁ ଶାସ୍ତିର ଅଙ୍ଗୀକାର କରିଅଛୁଁ, ଯଦି ତାହାର କିୟଦଂଶ ତୁମ୍ଭ ଜୀବଦ୍ଦଶାରେ ଦେଖାଇ ଦେଉଁ କିମ୍ବା ତୁମ୍ଭର ପରମାୟୁ ପୂର୍ଣ୍ଣ କରି ଦେଉଁ, ଅବଶ୍ୟ ସେମାନଙ୍କୁ ଆମ୍ଭର ନିକଟ ଫେରି ଯିବାକୁ ହେବ, ତାପରେ ସେମାନେ ଯାହା କରୁଅଛନ୍ତି ପରମେଶ୍ୱର ସେ ବିଷୟରେ ସାକ୍ଷୀ ।୪୬।

ଏବଂ ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ପ୍ରେରିତ ପୁରୁଷ ପଠାଯାଇ ଥିଲେ; ଅତଏବ ଯେତେବେଳେ ସେମାନଙ୍କ ପ୍ରେରିତ ପୁରୁଷ ଆସିଥିଲେ, ସେତେବେଳେ ସେମାନଙ୍କ ମଧ୍ୟରେ ନ୍ୟାୟ ସହିତ ମୀମାଂସା ହୋଇ ଯାଇଅଛି ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଇ ନାହିଁ ।୪୭।

ଏବଂ ସେମାନେ କହନ୍ତି "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ, ତେବେ କେତେବେଳେ ସେହି ଅଙ୍ଗୀକାର ଉପସ୍ଥିତ ହେବ ?"୪୮।

ତୁମ୍ଭେ କୁହ, "ପରମେଶ୍ୱର ଯାହା ଇଚ୍ଛା କରନ୍ତି ତାହା ବ୍ୟତୀତ ଆମ୍ଭେ ନିଜପାଇଁ ମଧ୍ୟ କୌଣସି କ୍ଷତି ବା କୌଣସି ଲାଭର ଅଧିକାରୀ ନୋହୁଁ; ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ନିର୍ଦ୍ଦିଷ୍ଟ ସମୟ ରହିଅଛି, ଯେତେବେଳେ ସେମାନଙ୍କର ସେହି ସମୟ ଉପସ୍ଥିତ ହେବ, ସେତେବେଳେ ସେମାନେ ତାହାର ଏକ ମୁହୂର୍ତ୍ତ ପଛକୁ କିମ୍ବା ଏକ ମୁହୂର୍ତ୍ତ ଆଗକୁ ରହି ପାରିବେ ନାହିଁ ।"୪୯।

---

୪୪ । ଅବିଶ୍ୱାସ ଓ ଅବାଧ୍ୟତାରେ ଦୃଢ଼ ରହିବା ହେତୁ, ସତ୍ୟ ଅନୁସନ୍ଧାନ କରିବାର ଶକ୍ତି ସେମାନଙ୍କର ଲୋପ ପାଇଯାଏ ।

୪୫ । ଶେଷ ବିଚାରଦିନ ଯେତେବେଳେ ସେମାନେ ପରମେଶ୍ୱରଙ୍କ ନିକଟରେ ଏକତ୍ରିତ ହେବେ, ସେ ଦିନର ଦୁଃଖ ଯନ୍ତ୍ରଣା ଏତେଦୂର ଅସହ୍ୟ ହେବ ଯେ, ତାହାର ତୁଳନାରେ ପାର୍ଥିବ ଜୀବନ ସେମାନଙ୍କୁ ଏକ ମୁହୂର୍ତ୍ତ ପରି ଜଣାଯିବ । ଏବଂ ପରଲୋକରେ ଅବିଶ୍ୱାସକାରୀ ଲୋକମାନେ ଅନୁତାପ କରିବାକୁ ଲାଗିବେ, ମାତ୍ର ସେ ସମୟର ଅନୁତାପ ଲେଶମାତ୍ର ଫଳପ୍ରଦ ହେବ ନାହିଁ ।

୪୬ । ମହାପୁରୁଷ ମୋହମ୍ମଦଙ୍କ ଜୀବଦ୍ଦଶାରେ ହେଉ ଅଥବା ତାଙ୍କ ମୃତ୍ୟୁପରେ ହେଉ ଅବିଶ୍ୱାସକାରୀମାନଙ୍କୁ ଅଙ୍ଗୀକୃତ ଶାସ୍ତିର କିୟଦଂଶହିଁ ପୃଥିବୀରେ ନିଶ୍ଚୟ ଭୋଗ କରିବାକୁ ହେବ । ଅବଶିଷ୍ଟ ଶାସ୍ତି ମୃତ୍ୟୁପରେ ପରଲୋକରେ ଭୋଗ କରିବାକୁ ହେବ ।

୪୭ । ନ୍ୟାୟ ସହିତ ମୀମାଂସା ହୋଇ ଯାଇଅଛି—ଯେଉଁମାନେ ପ୍ରେରିତ ପୁରୁଷଙ୍କ ପ୍ରତି ମିଥ୍ୟାରୋପ କରି ତାଙ୍କ ଶିକ୍ଷାକୁ ଅଗ୍ରାହ୍ୟ କରିଥିଲେ ସେମାନଙ୍କ ଉପରେ ଶାସ୍ତି ଓ ଲାଞ୍ଛନା ଅବତୀର୍ଣ୍ଣ ହୋଇଅଛି । ପକ୍ଷାନ୍ତରେ ଯେଉଁମାନେ ତାଙ୍କପ୍ରତି ବିଶ୍ୱାସ ସ୍ଥାପନ କରିଥିଲେ, ପରମେଶ୍ୱର ସେମାନଙ୍କ ପ୍ରତି କିଛି ଅନ୍ୟାୟ କରିନାହାନ୍ତି ।

୪୮ । ସେହି ଅଙ୍ଗୀକାର—ଅବାଧ୍ୟ ଓ ଅତ୍ୟାଚାରୀ ସମ୍ପ୍ରଦାୟ ପ୍ରତି ପରମେଶ୍ୱରଙ୍କ ଶାସ୍ତି । ସେମାନେ କହନ୍ତି—ମହାପୁରୁଷ ମୋହମ୍ମଦଙ୍କ ସମୟର ଅବିଶ୍ୱାସକାରୀମାନେ କହନ୍ତି ।

୪୯ । ନିର୍ଦ୍ଦିଷ୍ଟ ସମୟ—ପରମେଶ୍ୱରଙ୍କ ଶାସ୍ତି ଉପସ୍ଥିତ ହେବାର ନିର୍ଦ୍ଦିଷ୍ଟ ସମୟ । ଏହି ନିର୍ଦ୍ଦିଷ୍ଟ ସମୟ ପରମେଶ୍ୱରଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ ।

ତୁମ୍ଭେ କୁହ, "ଯଦି ପ୍ରକୃତରେ ରାତରେ କିମ୍ବା ଦିନରେ ତାଙ୍କର ଶାସ୍ତି ତୁମ୍ଭମାନଙ୍କ ପ୍ରତି ଉପସ୍ଥିତ ହୁଏ, ତେବେ ଆମ୍ଭଙ୍କୁ ଜଣାଇ ଦିଅ ଯେ ଶାସ୍ତିର କେଉଁ ବିଷୟକୁ ଅପରାଧୀମାନେ ଶୀଘ୍ର ଘଟାଇବାକୁ ଇଚ୍ଛା କରନ୍ତି ? ୫୦।

"ତାପରେ ଯେତେବେଳେ ତାହା ଘଟିବ ତୁମ୍ଭେମାନେ କଅଣ ସେଥିରେ ବିଶ୍ୱାସ କରିବ ? (ସେତେବେଳେ ତୁମ୍ଭମାନଙ୍କୁ କୁହାଯିବ) "ତେବେ ବର୍ତ୍ତମାନ କଅଣ ହେବ ! ତୁମ୍ଭେମାନେ ତ ଏହାକୁହିଁ ଶୀଘ୍ର ଘଟାଇବା ପାଇଁ ଇଚ୍ଛା କରୁଥିଲ । ୫୧।

"ତାପରେ ଅତ୍ୟାଚାରକାରୀମାନଙ୍କୁ କୁହା ହେବ ଯେ ସବୁଦିନପାଇଁ ଏହି ଶାସ୍ତି ଭୋଗ କର; ତୁମ୍ଭେମାନେ ଯାହା ଅର୍ଜ୍ଜନ କରିଥିଲ ଏହା ତାହାର ପ୍ରତିଫଳ ଅଟେ ।" ୫୨।

ଏବଂ ସେମାନେ ତୁମ୍ଭଙ୍କୁ ପଚାରୁଛନ୍ତି, "ଏହା କି ସତ୍ୟ ?" ତୁମ୍ଭେ କୁହ, "ହଁ, ଆମ୍ଭର ପାଳନକର୍ତ୍ତାଙ୍କର ରାଣ ଏହା ନିଶ୍ଚୟ ସତ୍ୟ, ଏବଂ ତୁମ୍ଭେମାନେ ଏହାକୁ ପ୍ରତିରୋଧ କରି ପାରିବ ନାହିଁ" ।୫୩।

## ୬ଷ୍ଠ ବିଭାଗ

ପ୍ରତ୍ୟେକ ଅତ୍ୟାଚାରୀ ବ୍ୟକ୍ତି ଯଦି ପୃଥିବୀର ସମସ୍ତ ବିଷୟର ଅଧିକାରୀ ହୁଅନ୍ତା, ସେ ତାହାର ବିନିମୟରେ ଦେବାକୁ ଇଚ୍ଛା କରନ୍ତା, ଏବଂ ଯେତେବେଳେ ସେମାନେ ଶାସ୍ତି ଦେଖିବେ ସେତେବେଳେ ଅନୁତାପରେ ଅଭିଭୂତ ହୋଇ ପଡ଼ିବେ; ଏବଂ ସେମାନଙ୍କ ମଧ୍ୟରେ ନ୍ୟାୟ ସହିତ ମୀମାଂସା କରାହେବ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରାହେବ ନାହିଁ ।୫୪।

ସାବଧାନ । ଆକାଶ ମଣ୍ଡଳରେ ଓ ଭୂମଣ୍ଡଳରେ ଯାହାକିଛି ଅଛି ତାହା ପରମେଶ୍ୱରଙ୍କର ସାବଧାନ । ନିଶ୍ଚୟ ପରମେଶ୍ୱରଙ୍କ ଅଙ୍ଗୀକାର ସତ୍ୟ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଅବଗତ ନୁହନ୍ତି ।୫୫।

ସେହି ଜୀବିତ କରନ୍ତି ଓ ମୃତ୍ୟୁ ଘଟାନ୍ତି ଏବଂ ତାଙ୍କର ଆଡ଼କୁ ତୁମ୍ଭମାନଙ୍କୁ ଫେରିଯିବାକୁ ହେବ ।୫୬।

ହେ ଲୋକଗଣ । ନିଶ୍ଚୟ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କ ନିକଟରୁ ତୁମ୍ଭମାନଙ୍କ ପାଖକୁ ଉପଦେଶ ଆସିଅଛି ଏବଂ ତୁମ୍ଭମାନଙ୍କ ଅନ୍ତରରେ ଥିବା ରୋଗର ଉପଶମକାରୀ ଆସିଅଛି ଏବଂ ବିଶ୍ୱାସକାରୀମାନଙ୍କ ପାଇଁ ସୁପଥ ଓ କରୁଣା ଆସିଅଛି ।୫୭।

---

୫୦ । ଶାସ୍ତି କଷ୍ଟଦାୟକ ଅଟେ । ତେବେ ଅପରାଧୀମାନେ କାହିଁକି ଏହାକୁ ଶୀଘ୍ର ଚାହୁଁଛନ୍ତି ? ସେମାନେ ତେବେ ଏହାକୁ ମିଥ୍ୟା ମନେ କରୁଅଛନ୍ତି ।

୫୧ । ଶାସ୍ତି ଉପସ୍ଥିତ ହେବା ପରେ ଅନୁତାପ କିମ୍ବା କ୍ଷମା ପ୍ରାର୍ଥନା ଗ୍ରହଣୀୟ ହେବ ନାହିଁ ।

୫୨ । ୫୩ । ପରଲୋକରେ କର୍ମଫଳ ନିଶ୍ଚୟ ଭୋଗ କରିବାକୁ ହେବ । ସେଥିରେ ଲେଶମାତ୍ର ସନ୍ଦେହ ନାହିଁ । ଏହାକୁ ପ୍ରତିରୋଧ କରିପାରିବ ନାହିଁ—ଶାସ୍ତି ଏଡ଼ାଇ ପାରିବ ନାହିଁ ।

୫୪ । ପରଲୋକର ଶାସ୍ତି ଏତେହିଁ ଭୀଷଣ ଓ ଅସହ୍ୟ ଯେ ଲୋକମାନେ ପୃଥିବୀର ସର୍ବସ୍ୱ ଦେଇ ସେଥିରୁ ରକ୍ଷା ପାଇବାର ଇଚ୍ଛା କରିବେ ।

୫୭ । ଏହି ଶ୍ଳୋକରେ ପବିତ୍ର କୋରାନ ଗ୍ରନ୍ଥକୁ ଲକ୍ଷ୍ୟ କରାଯାଇ ଅଛି ।

ତୁମ୍ଭେ କୁହ, "ଏହା ପରମେଶ୍ୱରଙ୍କ ଅନୁଗ୍ରହ ଏବଂ ତାଙ୍କର କରୁଣା, ସୁତରାଂ ଏଥିରେହିଁ ସେମାନଙ୍କର ସନ୍ତୁଷ୍ଟ ହେବା ଉଚିତ; ସେମାନେ ଯାହା ଏକତ୍ରିତ କରୁଅଛନ୍ତି ତାହା ଅପେକ୍ଷା ଏହା ଉତ୍କୃଷ୍ଟତର ।" ୫୮।

ତୁମ୍ଭେ କୁହ, "ତୁମ୍ଭେମାନେ ଲକ୍ଷ୍ୟକର ଯେ ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ଯେଉଁ ଖାଦ୍ୟ ଦ୍ରବ୍ୟ ଅବତୀର୍ଣ୍ଣ କରିଅଛନ୍ତି, ସେଥିମଧ୍ୟରୁ ତୁମ୍ଭେମାନେ (କେତେକ) ଅବୈଧ ଓ (କେତେକ) ବୈଧ କରି ନେଇଅଛ", ତୁମ୍ଭେ କୁହ, "ପରମେଶ୍ୱର କଅଣ ତୁମ୍ଭମାନଙ୍କ ପାଇଁ ଏହା ଆଦେଶ କରି ଅଛନ୍ତି, ନା ତୁମ୍ଭେମାନେ ପରମେଶ୍ୱରଙ୍କ ପ୍ରତି ମିଥ୍ୟା କଳ୍ପନା କରିଅଛ ?" ୫୯।

ଏବଂ ଯେଉଁମାନେ ପରମେଶ୍ୱରଙ୍କ ସମ୍ବନ୍ଧରେ ମିଥ୍ୟା କଳ୍ପନା କରନ୍ତି ପୁନରୁତ୍‌ଥାନ ଦିବସ ସମ୍ବନ୍ଧରେ ସେମାନଙ୍କ ଧାରଣା କଅଣ ? ନିଶ୍ଚୟ ପରମେଶ୍ୱର ମାନବମାନଙ୍କ ପ୍ରତି ଅନୁଗ୍ରହଶୀଳ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ କୃତଜ୍ଞତା ସ୍ୱୀକାର କରନ୍ତି ନାହିଁ ।୬୦।

## ୭ମ ବିଭାଗ

ଏବଂ (ହେ ମୋହମ୍ମଦ) ତୁମ୍ଭେ ଯେ କୌଣସି ଅବସ୍ଥାରେ ଥାଅ ଏବଂ କୋରାନରୁ ଯାହା କିଛି ପାଠକର (ଲୋକମାନଙ୍କୁ ଶୁଣାଅ) ଏବଂ (ହେ ମାନବଗଣ) ତୁମ୍ଭେମାନେ ଯେ କୌଣସି କାର୍ଯ୍ୟ କର, ଆମ୍ଭେ ତୁମ୍ଭମାନଙ୍କ ଉପରେ ସାକ୍ଷୀ ରହିଥାଉଁ ଯେତେବେଳେ ତୁମ୍ଭେମାନେ ସେଥିରେ ଲିପ୍ତ ଥାଅ; ଭୂପୃଷ୍ଠରେ କିମ୍ବା ଆକାଶରେ ଅଣୁ ପରିମାଣ ମଧ୍ୟ ତୁମ୍ଭର ପାଳନକର୍ତ୍ତାଙ୍କଠାରୁ ଅପ୍ରକାଶିତ ରହେନା ଏବଂ ଅଣୁପରିମାଣରୁ କମ ଅଥବା ଅଣୁପରିମାଣରୁ ବେଶୀ କିଛି ନାହିଁ ଯାହାକି ପ୍ରକାଶ୍ୟ ଗ୍ରନ୍ଥର ଅନ୍ତର୍ଭୁକ୍ତ ହୋଇ ନ ରହେ ।୬୧ ।

ସାବଧାନ ! ଯେଉଁମାନେ ପରମେଶ୍ୱରଙ୍କ ବନ୍ଧୁ, ନିଶ୍ଚୟ ସେମାନଙ୍କ ପାଇଁ କୌଣସି ଆଶଙ୍କା ନାହିଁ ଏବଂ ସେମାନେ ଦୁଃଖିତ ହେବେନାହିଁ ।୬୨।

ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଏବଂ ସଂଯତ ହୋଇ ଅଛନ୍ତି ।୬୩।

ସେମାନଙ୍କ ପାଇଁ ପାର୍ଥିବ ଜୀବନରେ ଓ ପରଲୋକରେ ସୁସମ୍ବାଦ ରହିଅଛି; ପରମେଶ୍ୱରଙ୍କ ବାକ୍ୟର ପରିବର୍ତ୍ତନ ହୁଏନା, ଏହାହିଁ ମହାନ ସଫଳତା ।୬୪।

---

୫୮ । ସେମାନେ ଯାହା ଏକତ୍ରିତ କରୁଅଛନ୍ତି—ଅପର ବିଧର୍ମୀଗଣ ପରମେଶ୍ୱରଙ୍କ ଶାନ୍ତି କିମ୍ବା ପାର୍ଥିବ ଧନରତ୍ନ ସଞ୍ଚୟ କରି ରଖୁଅଛନ୍ତି ।

୬୧ । ପ୍ରକାଶ୍ୟ ଗ୍ରନ୍ଥ—ଏହା କାଗଜ କଲମରେ ଲେଖା ହୋଇଥିବା ପୁସ୍ତକ ନୁହେ, ବରଂ ପରମେଶ୍ୱରଙ୍କ ଜ୍ଞାନ ଭଣ୍ଡାରର ଗ୍ରନ୍ଥ ଅଟେ । ସମସ୍ତ ଜଗତରେ ଯେଉଁଠି ଯାହା ଘଟୁଅଛି, ତାହା ପରମେଶ୍ୱରଙ୍କ ଜ୍ଞାତସାରରେ ଘଟୁଅଛି । ତାହାର ଅଣୁମାତ୍ର ତାଙ୍କ ଅଜ୍ଞାତରେ ରହୁନାହିଁ । ଏହା ପୁସ୍ତକରେ ଲେଖା ହେଲା ପରି ସର୍ବଜ୍ଞ ଅନ୍ତର୍ଯ୍ୟାମୀ ପରମେଶ୍ୱରଙ୍କ ଜ୍ଞାନ ଭଣ୍ଡାରରେ ସଞ୍ଚିତ ହୋଇ ରହୁଅଛି । ସୁତରାଂ ମାନବ ଯାହା କିଛି କର୍ମ କରେ ତାହାର ଅବିକଳ ଅନୁରୂପ ପ୍ରତିଫଳ ପ୍ରାପ୍ତ ହେବ, ସେଥିରେ ଅଣୁମାତ୍ର କମ ବେଶୀ ହେବ ନାହିଁ । ଦେଖ ୧୯ ଅଧ୍ୟାୟ ଶ୍ଳୋକ ।୮କ ।

୬୨ । ୬୩ । ୬୪ । ଏହି ଶ୍ଳୋକମାନଙ୍କରେ ଯେଉଁମାନେ ପରମେଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ ଏବଂ ସଂଯମ ଅବଲମ୍ବନ ଦ୍ୱାରା ନିଜର ଆଧ୍ୟାତ୍ମିକ ଉନ୍ନତି ବଳରେ ପରମେଶ୍ୱରଙ୍କ ନିକଟତା ଲାଭ କରିଅଛନ୍ତି ସେହି 'ଅଓଲିଆ ଅଲ୍ଲାହ' ବା ପରମେଶ୍ୱରଙ୍କ ବନ୍ଧୁମାନଙ୍କର ଇହଲୋକ ଓ ପରଲୋକର ନିରାପଦତା ଓ ସୁଖ ସ୍ୱାଚ୍ଛନ୍ଦ୍ୟ ସମ୍ବନ୍ଧରେ ସୁସମ୍ବାଦ ଦିଆଯାଇ ଅଛି ।

ତୁମ୍ଭେ ସେମାନଙ୍କ କଥାରେ ଦୁଃଖିତ ହୁଅନା; ନିଶ୍ଚୟ ସମସ୍ତ ସମ୍ମାନ ପରମେଶ୍ୱରଙ୍କ ପାଇଁ; ସେହି ଶ୍ରବଣକାରୀ ମହାଜ୍ଞାନୀ ।୬୫।

ସାବଧାନ । ନିଶ୍ଚୟ ଆକାଶ ମଣ୍ଡଳରେ ଯାହାକିଛି ଅଛି ଓ ଭୂମଣ୍ଡଳରେ ଯାହା କିଛି ଅଛି ତାହା ପରମେଶ୍ୱରଙ୍କର; ଏବଂ ଯେଉଁମାନେ ପରମେଶ୍ୱରଙ୍କୁ ଛାଡ଼ି ଅଂଶୀଉପାସ୍ୟମାନଙ୍କୁ ଡାକି ଅନୁସରଣ କରନ୍ତି, ସେମାନେ କଳ୍ପନାଛଡ଼ା ଆଉ କିଛି ଅନୁସରଣ କରନ୍ତି ନାହିଁ ଏବଂ ସେମାନେ ଅନୁମାନ ଛଡ଼ା ଆଉ କିଛି କରନ୍ତି ନାହିଁ ।୬୬।

ସେହି ତୁମ୍ଭମାନଙ୍କ ପାଇଁ ରାତ୍ରି ସୃଷ୍ଟି କରିଅଛନ୍ତି ଯହିଁରେ ତୁମ୍ଭେମାନେ ବିଶ୍ରାମ କର ଏବଂ ଦିନକୁ ଆଲୋକ ପ୍ରଦାନକାରୀ (କରିଅଛନ୍ତି) ; ଯେଉଁମାନେ ଶ୍ରବଣ କରନ୍ତି ସେହି ସମ୍ପ୍ରଦାୟ ପାଇଁ ନିଶ୍ଚୟ ଏଥିରେ ନିଦର୍ଶନମାନ ରହିଅଛି ।୬୭।

ସେମାନେ କହନ୍ତି ଯେ ପରମେଶ୍ୱର ସନ୍ତାନ ଗ୍ରହଣ କରି ଅଛନ୍ତି । ସେ ପରମ ପବିତ୍ର । ସେ ଅଭାବ ଶୂନ୍ୟ; ଆକାଶ ମଣ୍ଡଳରେ ଯାହା କିଛି ଅଛି ଓ ଭୂମଣ୍ଡଳରେ ଯାହା କିଛି ଅଛି ସବୁ ତାଙ୍କର; ଏ ବିଷୟରେ ତୁମ୍ଭମାନଙ୍କ ନିକଟ କୌଣସି ପ୍ରମାଣ ନାହିଁ, ତୁମ୍ଭେମାନେ ଯାହା ଜାଣନା ସେହି ବିଷୟ କାଅଣ ତୁମ୍ଭେମାନେ ପରମେଶ୍ୱରଙ୍କ ପ୍ରତି ଆରୋପ କରୁଅଛ ? ୬୮

ତୁମ୍ଭେ କୁହ, "ଯେଉଁମାନେ ପରମେଶ୍ୱରଙ୍କ ପ୍ରତି ମିଥ୍ୟା କଳ୍ପନା କରନ୍ତି, ନିଶ୍ଚୟ ସେମାନେ ସୁଫଳ ପ୍ରାପ୍ତ ହେବେନାହିଁ"।୬୯।

ଏହା କେବଳ ପାର୍ଥିବ ସମ୍ପଦ ଅଟେ ତାପରେ ଆମ୍ଭର ନିକଟ ସେମାନେ ଫେରିଯିବେ, ତାପରେ ଆମ୍ଭେ ସେମାନଙ୍କୁ କଠୋର ଶାସ୍ତି ଦେବୁଁ, କାରଣ ସେମାନେ ଅବିଶ୍ୱାସ କରିଥିଲେ ।୭୦।

## ୮ମ ବିଭାଗ

ତୁମ୍ଭେ ସେମାନଙ୍କ ନିକଟରେ ନୂହ୍‌ଙ୍କ ବିବରଣ ବର୍ଣ୍ଣନାକର; ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ । ଯଦି (ତୁମ୍ଭମାନଙ୍କ ମଧ୍ୟରେ) ଆମ୍ଭର ଅବସ୍ଥାନ ଏବଂ ପରମେଶ୍ୱରଙ୍କ ନିଦର୍ଶନମାନଙ୍କ ସହିତ ଆମ୍ଭର ଉପଦେଶ ତୁମ୍ଭମାନଙ୍କ ପକ୍ଷରେ ଅସହ୍ୟ ହୁଏ, ତେବେ ଆମ୍ଭେ ପରମେଶ୍ୱରଙ୍କ ଉପରେହିଁ ନିର୍ଭର କରୁଅଛୁଁ; ଅତଏବ ତୁମ୍ଭମାନଙ୍କର କାର୍ଯ୍ୟ ଓ ତୁମ୍ଭମାନଙ୍କର ଅଂଶୀଉପାସ୍ୟମାନଙ୍କୁ ଏକତ୍ରିତ

---

୬୫ । ସେମାନଙ୍କ କଥାରେ—ଅବିଶ୍ୱାସକାରୀ ବିଧର୍ମୀମାନଙ୍କ କଥାରେ ।

୬୭ । ଯେଉଁମାନେ ଶ୍ରବଣ କରନ୍ତି—ଯେଉଁମାନେ ପରମେଶ୍ୱରଙ୍କ ଉପଦେଶ ଶୁଣି ସେଥିରେ ବିଶ୍ୱାସ କରନ୍ତି ।

୬୮ । ଖ୍ରୀଷ୍ଟାନ ଓ କେତେକ ଇହୁଦୀ ସମ୍ପ୍ରଦାୟ ବିଶ୍ୱାସ କରନ୍ତି ଯେ ପରମେଶ୍ୱରଙ୍କ ପୁତ୍ର ଅଛନ୍ତି ଏବଂ ଅଂଶୀବାଦୀମାନେ ବିଶ୍ୱାସ କରନ୍ତି ପରମେଶ୍ୱରଙ୍କ କନ୍ୟାମାନେ ଅଛନ୍ତି । ଏହାର ସପକ୍ଷରେ କୌଣସି ପ୍ରମାଣ ନାହିଁ । ଏହା ନିତାନ୍ତ ଭ୍ରମାତ୍ମକ ।

କର, ତାପରେ ତୁମ୍ଭମାନଙ୍କର କାର୍ଯ୍ୟ ତୁମ୍ଭମାନଙ୍କ ନିକଟରେ ଗୁପ୍ତ ରଖ ନାହିଁ, ତାପରେ ଆମ୍ଭ ପ୍ରତି ତାହା ସମ୍ପନ୍ନ କର ଏବଂ ଆମ୍ଭଙ୍କୁ ଅବସର ଦିଅ ନା ।୭୧।

"କିନ୍ତୁ ଯଦି ତୁମ୍ଭେମାନେ ସତ୍ୟରୁ ଫେରିଯାଅ, ତେବେ ଆମ୍ଭେ ତ ତୁମ୍ଭମାନଙ୍କ ନିକଟରୁ କୌଣସି ପୁରସ୍କାର ଭିକ୍ଷା କରି ନ ଥିଲୁଁ; ଆମ୍ଭର ପୁରସ୍କାର ପରମେଶ୍ୱରଙ୍କ ଛଡ଼ା ଆଉ କାହାରିଠାରୁ ନୁହେ ଏବଂ ଆମ୍ଭଙ୍କୁ ଆଦେଶ କରାଯାଇ ଅଛି ଯେ ଆମ୍ଭେ ଆତ୍ମସମର୍ପଣକାରୀମାନଙ୍କ ଅନ୍ତର୍ଭୁକ୍ତ ହେବୁଁ" ।୭୨।

ତାପରେ ସେମାନେ ତାଙ୍କ ପ୍ରତି ମିଥ୍ୟାରୋପ କରିଥିଲେ, ସୁତରାଂ ଆମ୍ଭେ ତାଙ୍କୁ ଏବଂ ନୌକାରେ ଥିବା ତାଙ୍କର ସଙ୍ଗୀମାନଙ୍କୁ ଉଦ୍ଧାର କରିଥିଲୁଁ ଏବଂ ସେମାନଙ୍କୁ ପ୍ରତିନିଧି କରିଥିଲୁଁ ଏବଂ ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ସେମାନଙ୍କୁ ଜଳମଗ୍ନ କରିଥିଲୁଁ; ସୁତରାଂ ଭୟ ପ୍ରଦର୍ଶିତମାନଙ୍କର ପରିଣାମ କିପରି ହୋଇଅଛି ତାହା ଲକ୍ଷ୍ୟ କର ! ୭୩ ।

ତାଙ୍କପରେ ଆମ୍ଭେ ସେମାନଙ୍କ ସମ୍ପ୍ରଦାୟ ପ୍ରତି (ଅନେକ) ପ୍ରେରିତ ପୁରୁଷମାନଙ୍କୁ ପଠାଇଥିଲୁଁ, ସୁତରାଂ ସେମାନେ ଉଜ୍ଜ୍ୱଳ ନିଦର୍ଶନମାନଙ୍କ ସହିତ ସେମାନଙ୍କ ନିକଟ ଆସିଥିଲେ, କିନ୍ତୁ ସେମାନେ ପୂର୍ବେ ଯେଉଁ ବିଷୟରେ ମିଥ୍ୟାରୋପ କରିଥିଲେ, ସେଥିରେ ସେମାନେ ବିଶ୍ୱାସ ସ୍ଥାପନ କଲେ ନାହିଁ; ଏହିପରି ଆମ୍ଭେ ସୀମା ଅତିକ୍ରମକାରୀମାନଙ୍କର ହୃଦୟମାନଙ୍କରେ ମୋହର ମାରିଦେଉଁ ।୭୪।

ତାପରେ ଆମ୍ଭେ ସେମାନଙ୍କପରେ ଫେରଅଉନ୍ ଓ ତାଙ୍କର ପ୍ରଧାନ ବ୍ୟକ୍ତିମାନଙ୍କ ପ୍ରତି ମୂସା ଏବଂ ହାରୁନଙ୍କୁ ଆମ୍ଭର ନିଦର୍ଶନମାନଙ୍କ ସହିତ ପଠାଇଥିଲୁଁ, କିନ୍ତୁ ସେମାନେ ଅହଙ୍କାର କରିଥିଲେ ଏବଂ ସେମାନେ ଅପରାଧୀ ସମ୍ପ୍ରଦାୟ ଥିଲେ ।୭୫।

ତାପରେ ଯେତେବେଳେ ଆମ୍ଭ ନିକଟରୁ ସେମାନଙ୍କ ପ୍ରତି ସତ୍ୟ ଉପସ୍ଥିତ ହୋଇ ଥିଲା ସେତେବେଳେ ସେମାନେ କହିଥିଲେ, "ନିଶ୍ଚୟ ଏହା ପ୍ରକାଶ୍ୟ ଯାଦୁ" ।୭୬।

---

୭୧ । ୭୨ । ଗୁପ୍ତ ରଖ ନାହିଁ—ତୁମ୍ଭେମାନେ ଆମ୍ଭଙ୍କୁ ବିନାଶ କରିବାର ଇଚ୍ଛା କରିଅଛ, ଏକଥା ଲୁଚାଇବା ଦରକାର ନାହିଁ; ସେଥିପାଇଁ ପ୍ରକାଶ୍ୟରେ ଅଗ୍ରସର ହୁଅ ।

ମହାପୁରୁଷ ନୂହ ତାଙ୍କର ବିପକ୍ଷ ଲୋକମାନଙ୍କୁ କହୁଅଛନ୍ତି, "ତୁମ୍ଭେମାନେ ଏବଂ ତୁମ୍ଭମାନଙ୍କର ଉପାସ୍ୟମାନେ ସମସ୍ତେ ଏକତ୍ରିତ ହୋଇ ଆମ୍ଭ ବିରୁଦ୍ଧରେ ଯାହା କରିବାର ତାହା ପ୍ରକାଶ୍ୟ ଭାବରେ, ଆମ୍ଭଙ୍କୁ ଅବସର ନଦେଇ ସମ୍ପନ୍ନ କର । ସେଥିପାଇଁ ଆମ୍ଭେ ଭୟ କରୁନାହୁଁ ।" ପରମେଶ୍ୱରଙ୍କ ଶାସ୍ତିର ଉଦାହରଣ ସ୍ୱରୂପ ମହାପୁରୁଷ ନୂହ ଏବଂ ତାଙ୍କ ସମ୍ପ୍ରଦାୟର ବିବରଣ ବର୍ଣ୍ଣିତ ହୋଇଅଛି ।

୭୩ । ପ୍ରତିନିଧି କରିଥିଲୁ —ଯେଉଁମାନେ ନୌକାରେ ନଥିଲେ ସେମାନେ ଜଳମଗ୍ନ ହୋଇଯାଇଥିଲେ । ନୌକାରେ ଥିବା ଲୋକମାନେ ସେମାନଙ୍କ ଉତ୍ତରାଧିକାରୀ ହୋଇଥିଲେ ।

ତାଙ୍କପରେ—ନୂହଙ୍କ ପରେ ।

୭୪ । ପ୍ରେରିତ ପୁରୁଷମାନଙ୍କୁ ପ୍ରେରଣ କରିଥିଲୁ—ମହାପୁରୁଷ ହୁଦ; ସ୍ୱାଲେହ, ଇବ୍ରାହିମ, ଲୁତ ଏବଂ ଶୋଏବ ଯଥାକ୍ରମେ ଆଦ, ସମୁଦ, ବାବେଲ, ସଦମ ଏବଂ ମଦାୟେନ ସମ୍ପ୍ରଦାୟ ପ୍ରତି ପ୍ରେରିତ ହୋଇଥିଲେ ।

୭୫ । ସେମାନଙ୍କ ପରେ—ଉପରୋକ୍ତ ପ୍ରେରିତ ପୁରୁଷମାନଙ୍କ ପରେ ।

ପରମେଶ୍ୱରଙ୍କ ଶାସ୍ତିର ଉଦାହରଣ ସ୍ୱରୂପ ଏହି ଶ୍ଳୋକ ଓ ପରବର୍ତ୍ତୀ ଶ୍ଳୋକମାନଙ୍କରେ ମହାପୁରୁଷ ମୂସା ଏବଂ ହାରୁନଙ୍କର ବିବରଣ ବର୍ଣ୍ଣିତ ହୋଇଅଛି ।

୭୬ । ସତ୍ୟ ଉପସ୍ଥିତ ହୋଇଥିଲା—ପ୍ରମାଣ ଉପସ୍ଥିତ ହୋଇଥିଲା ।

ମୂସା କହିଥିଲେ, "ତୁମ୍ଭେମାନେ ସେହି ସତ୍ୟ ସମ୍ବନ୍ଧରେ କିଅଣ କହୁଅଛ, ଯେତେବେଳେ ଏହା ତୁମ୍ଭମାନଙ୍କ ନିକଟରେ ଉପସ୍ଥିତ ହୋଇଅଛି, ଏହା କଅଣ ଯାଦୁ ? ଏବଂ ଯାଦୁକରମାନେ ସୁଫଳ ପ୍ରାପ୍ତ ହୁଅନ୍ତି ନାହିଁ" ।୭୭।

ସେମାନେ କହିଥିଲେ, "ଅମ୍ଭେମାନେ ଅମ୍ଭମାନଙ୍କର ପୂର୍ବପୁରୁଷମାନଙ୍କୁ ଯେଉଁ ପଥ ଅନୁସରଣକାରୀ ପାଇଅଛୁଁ ତୁମ୍ଭେ କଅଣ ସେଥିରୁ ଅମ୍ଭମାନଙ୍କୁ ଫେରାଇ ଦେବାପାଇଁ ଆସିଅଛ ଏବଂ ଯେପରି ତୁମ୍ଭ ଦୁହିଙ୍କର ଶ୍ରେଷ୍ଠତ୍ୱ ପୃଥିବୀରେ ସ୍ଥାପିତ ହେବ ? ଏବଂ ଅମ୍ଭେମାନେ ତୁମ୍ଭମାନଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରିବୁଁ ନାହିଁ । ୭୮ ।

ଏବଂ ଫେରଅଉନ୍ କହିଥିଲା, "ତୁମ୍ଭେମାନେ ଅମ୍ଭ ନିକଟ ସମସ୍ତ ଅଭିଜ୍ଞ ଯାଦୁକରମାନଙ୍କୁ ଅଣ" ।୭୯।

ତାପରେ ଯେତେବେଳେ ଯାଦୁକରମାନେ ଉପସ୍ଥିତ ହୋଇଥିଲେ, ସେତେବେଳେ ମୂସା ସେମାନଙ୍କୁ କହିଥିଲେ, "ତୁମ୍ଭମାନଙ୍କର ଯାହା ନିକ୍ଷେପ କରିବାର ଅଛି ତାହା ନିକ୍ଷେପକର" ।୮୦।

ତାପରେ ଯେତେବେଳେ ସେମାନେ ନିକ୍ଷେପ କରିଥିଲେ, ସେତେବେଳେ ମୂସା କହିଥିଲେ, "ତୁମ୍ଭେମାନେ ଏତଦ୍ୱାରା ଯାହା ଅଣିଅଛ, ତାହା ଯାଦୁ ବିଦ୍ୟା ମାତ୍ର; ନିଶ୍ଚୟ ପରମେଶ୍ୱର ଶୀଘ୍ର ଏହାକୁ ନଷ୍ଟ କରିଦେବେ; ନିଶ୍ଚୟ ପରମେଶ୍ୱର ଦୁଷ୍କର୍ମକାରୀମାନଙ୍କର କାର୍ଯ୍ୟ ସଂଶୋଧନ କରିବେ ନାହିଁ । ୮୧ ।

"ଏବଂ ପରମେଶ୍ୱର ନିଜ ବାକ୍ୟ ଦ୍ୱାରା ସତ୍ୟର ସତ୍ୟତା ସାବ୍ୟସ୍ତ କରିବେ, ଯଦିଚ ଏହା ଅପରାଧୀମାନଙ୍କ ପକ୍ଷରେ ଅପ୍ରୀତିକର ହୁଏ" ।୮୨।

## ୯ମ ବିଭାଗ

କିନ୍ତୁ ଫେରଅଉନ ଓ ତାହାର ପ୍ରଧାନ ବ୍ୟକ୍ତିମାନଙ୍କ ଭୟରେ ମୂସାଙ୍କୁ ତାଙ୍କ ସମ୍ପ୍ରଦାୟର ଲୋକମାନଙ୍କ ବ୍ୟତୀତ ଆଉ କେହି ବିଶ୍ୱାସ କରି ନ ଥିଲେ, କାଳେ ସେମାନେ ଅତ୍ୟାଗୃହୀତ ହେବେ; ଏବଂ ନିଶ୍ଚୟ ଫେରଅଉନ୍ ପୃଥିବୀରେ ଅତି ଉଦ୍ଧତ ଥିଲା ଏବଂ ନିଶ୍ଚୟ ସେ ସୀମାଲଙ୍ଘନକାରୀମାନଙ୍କର ଅନ୍ତର୍ଗତ ଥିଲା । ୮୩ ।

ଏବଂ ମୂସା କହିଥିଲେ, "ହେ ଅମ୍ଭର ସମ୍ପ୍ରଦାୟ, ଯଦି ତୁମ୍ଭେମାନେ ପରମେଶ୍ୱରଙ୍କ ଉପରେ ବିଶ୍ୱାସକର, ତେବେ ତୁମ୍ଭେମାନେ ତାଙ୍କର ଉପରେ ନିର୍ଭରକର, ଯଦି ତୁମ୍ଭେମାନେ ଆତ୍ମସମର୍ପଣକାରୀ ହୁଅ" । ୮୪।

ତାପରେ ସେମାନେ କହିଥିଲେ, "ଅମ୍ଭେମାନେ ପରମେଶ୍ୱରଙ୍କ ଉପରେହିଁ ନିର୍ଭର କରୁଅଛୁଁ; ହେ ଅମ୍ଭମାନଙ୍କର ପାଳନକର୍ତ୍ତା, ଅମ୍ଭମାନଙ୍କୁ ଅତ୍ୟାଗୃହୀ ସମ୍ପ୍ରଦାୟଦ୍ୱାରା ଅତ୍ୟାଗୃହୀତ କରନା" ।୮୫।

"ଏବଂ ତୁମ୍ଭେ ନିଜ ଅନୁଗ୍ରହ ଦ୍ୱାରା ଅମ୍ଭମାନଙ୍କୁ ଅବିଶ୍ୱାସୀ ସମ୍ପ୍ରଦାୟଠାରୁ ମୁକ୍ତ କରିଦିଅ" ।୮୬।

---

୮୩ । ତାଙ୍କ ସମ୍ପ୍ରଦାୟର ଲୋକମାନଙ୍କ ବ୍ୟତୀତ—ମୂସାଙ୍କ ସମ୍ପର୍କୀୟ ଅର୍ଥାତ୍ ଇସରାଇଲ ବଂଶଧରମାନଙ୍କ ଛଡ଼ା ଆଉ କେହି ତାଙ୍କ ଉପରେ ବିଶ୍ୱାସ କରିନଥିଲେ ।

ଏବଂ ଆମ୍ଭେ ମୂସା ଓ ତାଙ୍କର ଭାଇ (ହାରୁନ) ପ୍ରତି ଆଦେଶ କରିଥିଲୁଁ କି ତୁମ୍ଭ ଦୁହିଁଙ୍କର ସମ୍ପ୍ରଦାୟ ପାଇଁ ମିଶର ଦେଶରେ ବାସସ୍ଥାନ ନିର୍ଦ୍ଦିଷ୍ଟ କର ଏବଂ ତୁମ୍ଭମାନଙ୍କର ବାସସ୍ଥାନକୁ ଉପାସନା କେନ୍ଦ୍ର କରିଦିଅ ଏବଂ ଆରାଧନା ପ୍ରତିଷ୍ଠିତ କର; ଏବଂ ବିଶ୍ୱାସକାରୀମାନଙ୍କୁ ସୁସମ୍ବାଦ ଦିଅ ।୮୭।

ଏବଂ ମୂସା କହିଥିଲେ "ହେ ଆମ୍ଭମାନଙ୍କର ପାଳନକର୍ତ୍ତା, ନିଶ୍ଚୟ ତୁମ୍ଭେ ଫେରଅଉନ ଓ ତାହାର ପ୍ରଧାନ ବ୍ୟକ୍ତିମାନଙ୍କୁ ପାର୍ଥିବ ଜୀବନରେ ସୌନ୍ଦର୍ଯ୍ୟ ଏବଂ ଧନ ସମ୍ପଦ ଦାନ କରିଅଛ; ହେ ଆମ୍ଭମାନଙ୍କର ପାଳନକର୍ତ୍ତା, ଯଦ୍ଦ୍ୱାରା ସେମାନେ ତୁମ୍ଭର ପଥରୁ (ଲୋକମାନଙ୍କୁ) ବିଭ୍ରାନ୍ତ କରୁଅଛନ୍ତି; ହେ ଆମ୍ଭମାନଙ୍କର ପାଳନକର୍ତ୍ତା, ସେମାନଙ୍କର ଧନ ସମ୍ପଦ ନଷ୍ଟ କରିଦିଅ ଏବଂ ସେମାନଙ୍କର ହୃଦୟମାନଙ୍କୁ କଠିନ କରିଦିଅ, ଯେପରିକି ସେମାନେ କଠୋର ଶାସ୍ତି ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିବେ ନାହିଁ" ।୮୮।

ପରମେଶ୍ୱର କହିଥିଲେ, "ନିଶ୍ଚୟ ତୁମ୍ଭ ଦୁହିଙ୍କର ପ୍ରାର୍ଥନା ଗୃହୀତ ହୋଇଅଛି, ଅତଏବ ତୁମ୍ଭେମାନେ ଅବିଚଳିତ ରୁହ ଏବଂ ଅନଭିଜ୍ଞ ଲୋକମାନଙ୍କର ପଥ ଅନୁସରଣ କର ନା" ।୮୯।

ଏବଂ ଆମ୍ଭେ ଇସରାଇଲ୍ ବଂଶଧରମାନଙ୍କୁ ସମୁଦ୍ର ପାରିକରି ଦେଇଥିଲୁଁ, ଅଥଚ ଫେରଅଉନ ଓ ତାହାର ସୈନ୍ୟଦଳ ହିଂସା ଓ ଶତ୍ରୁତାହେତୁ ସେମାନଙ୍କର ପଛରେ ଗୋଡ଼ାଇଥିଲେ; ଏପର୍ଯ୍ୟନ୍ତ କି ଯେତେବେଳେ ସେ ଜଳମଗ୍ନ ହେବାକୁ ଯାଉଥିଲା, ସେତେବେଳେ ସେ କହିଥିଲା, "ଆମ୍ଭେ ବିଶ୍ୱାସ କରୁଅଛୁଁ, ନିଶ୍ଚୟ ଇସରାଇଲ୍ ବଂଶଧରମାନେ ଯାହାଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଅଛନ୍ତି ତାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ କେହି ନାହିଁ ଏବଂ ଆମ୍ଭେ ଆତ୍ମସମର୍ପଣକାରୀମାନଙ୍କର ଅନ୍ତର୍ଗତ" ।୯୦।

(ତାଙ୍କୁ କୁହାଗଲା) ବର୍ତ୍ତମାନ କିପରି ! ଏଥିପୂର୍ବେ ତୁମ୍ଭେ ତ ଅବାଧ୍ୟ ଏବଂ ଦୁଷ୍କର୍ମକାରୀମାନଙ୍କର ଅନ୍ତର୍ଗତ ଥିଲ ।୯୧।

"କିନ୍ତୁ ଆଜି ଆମ୍ଭେ ତୁମ୍ଭର ଦେହ ଉଦ୍ଧାର କରିବୁଁ ଯେପରି ତାହା ତୁମ୍ଭର ପରବର୍ତ୍ତୀ ଲୋକମାନଙ୍କ ପାଇଁ ନିଦର୍ଶନ ହୋଇ ରହିବ; ଏବଂ ନିଶ୍ଚୟ ମନୁଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଆମ୍ଭର ନିଦର୍ଶନମାନଙ୍କ ସମ୍ବନ୍ଧରେ ଅମନଯୋଗୀ ରହିଅଛନ୍ତି" ।୯୨।

## ୧୦ମ ବିଭାଗ

ନିଶ୍ଚୟ ଆମ୍ଭେ ଇସରାଇଲଙ୍କ ବଂଶଧରମାନଙ୍କୁ ଉତ୍ତମ ବାସସ୍ଥାନରେ ଆଶ୍ରୟ ଦେଇଥିଲୁଁ ଏବଂ ବିଶୁଦ୍ଧ ବସ୍ତୁମାନଙ୍କରୁ ସେମାନଙ୍କୁ ଜୀବିକା ଦେଇଥିଲୁଁ, କିନ୍ତୁ ସେମାନଙ୍କ ନିକଟ ଜ୍ଞାନ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ

୮୭ । ଯେଉଁମାନେ ମୂସାଙ୍କ ଉପରେ ବିଶ୍ୱାସ କରିଥିଲେ ସେମାନଙ୍କୁ ଅସ୍ଥାୟୀ ଭାବରେ ମିଶର ଦେଶରେ ରହିବା ପାଇଁ ଆଦେଶ କରାଯାଇ ଥିଲା । ଫେରଅଉନଙ୍କ ଭୟରେ ସେମାନେ ସର୍ବସାଧାରଣରେ ସଙ୍ଘବଦ୍ଧ ଭାବରେ ପରମେଶ୍ୱରଙ୍କୁ ଆରାଧନା କରିବାକୁ ଅକ୍ଷମ ହେବାରୁ, ନିଜ ନିଜ ଘରେ ସ୍ୱତନ୍ତ୍ର ଭାବରେ ଆରାଧନା କରିବା ପାଇଁ ସେମାନଙ୍କୁ ଆଦେଶ କରାଯାଇଥିଲା ।

୯୧ । ବର୍ତ୍ତମାନ କିପରି—ଶାସ୍ତି ଅବତୀର୍ଣ୍ଣ ହେଲାପରେ ଫେରଅଉନ୍‌ର ଅନୁତାପ ଓ କ୍ଷମା ପ୍ରାର୍ଥନା ଗ୍ରହଣ କରାଯାଇ ନଥିଲା ।

୯୨ । ଫେରଅଉନର ଜଳମଗ୍ନ ମୃତ ଦେହ ଉଦ୍ଧାର କରାଯାଇ ମିଶର ଦେଶରେ ସୁରକ୍ଷିତ ହୋଇଅଛି । ମିଶର ଦେଶରେ ୨ୟ ରାମେସିସ୍‌ର 'ମମ୍ମୀ' ବା ସୁରକ୍ଷିତ ଶବ ଅବିଷ୍କୃତ ହେବାପରେ ଏହା ମହାପୁରୁଷ ମୂସାଙ୍କ ସମସାମୟିକ ଫେରଅଉନର ମୃତ ଦେହ ବୋଲି ପ୍ରମାଣିତ ହୋଇଅଛି । (ଦେଖ, ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା; ମମ୍ମୀ ବିଷୟରେ) ।

ସେମାନେ ବିରୋଧ କରି ନଥିଲେ; ସେମାନେ ଯେଉଁ ବିଷୟରେ ବିରୋଧ କରୁଅଛନ୍ତି ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ପୁନରୁତ୍ଥାନ ଦିବସରେ ସେମାନଙ୍କ ମଧ୍ୟରେ ତାହାର ସୁମୀମାଂସା କରିଦେବେ ।୯୩।

ତାପରେ ଆମ୍ଭେ ତୁମ୍ଭପ୍ରତି ଯାହା ଅବତୀର୍ଣ୍ଣ କରିଅଛୁଁ ଯଦି ତୁମ୍ଭେ ସେଥିରେ ସନ୍ଦେହ କର, ତେବେ ତୁମ୍ଭର ପୂର୍ବେ ଯେଉଁମାନେ ଗ୍ରନ୍ଥପାଠ କରିଅଛନ୍ତି ସେମାନଙ୍କୁ ପଚାର, ନିଶ୍ଚୟ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ତୁମ୍ଭପ୍ରତି ସତ୍ୟ ଉପସ୍ଥିତ ହୋଇଅଛି, ଅତଏବ ତୁମ୍ଭେ ସନ୍ଦେହକାରୀମାନଙ୍କର ଅନ୍ତର୍ଗତ ହୁଅନା ।୯୪।

ଏବଂ ତୁମ୍ଭେ ସେମାନଙ୍କର ଅନ୍ତର୍ଗତ ହୁଅନା ଯେଉଁମାନେ ପରମେଶ୍ୱରଙ୍କ ନିଦର୍ଶନମାନଙ୍କ ପ୍ରତି ମିଥ୍ୟାରୋପ କରିଅଛନ୍ତି, ନଚେତ୍ ତୁମ୍ଭେ ମଧ୍ୟ କ୍ଷତିଗ୍ରସ୍ତମାନଙ୍କର ଅନ୍ତର୍ଭୁକ୍ତ ହେବ ।୯୫।

ନିଶ୍ଚୟ ଯେଉଁମାନଙ୍କ ପ୍ରତି ତୁମ୍ଭର ପାଳନକର୍ତ୍ତାଙ୍କର ବାକ୍ୟ ସତ୍ୟ ପ୍ରମାଣିତ ହୋଇଅଛି, ସେମାନେ ମଧ୍ୟ ବିଶ୍ୱାସ କରିବେ ନାହିଁ ।୯ ।

ଏବଂ ଯଦିଚ ସେମାନଙ୍କ ନିକଟ ସମସ୍ତ ନିଦର୍ଶନ ଉପସ୍ଥିତ ହୁଏ, (ସେମାନେ ବିଶ୍ୱାସ କରିବେ ନାହିଁ) ଯେ ପର୍ଯ୍ୟନ୍ତ ସେମାନେ କଠୋର ଶାସ୍ତି ନ ଦେଖିବେ ।୯୭।

କିନ୍ତୁ ୟୁନୁସ ସମ୍ପ୍ରଦାୟ (ଙ୍କ ନଗର) ବ୍ୟତୀତ ଅନ୍ୟ କୌଣସି ନଗର ନ ଥିଲା ଯାହାର ଲୋକମାନେ ବିଶ୍ୱାସ ସ୍ଥାପନ କରି ଉକ୍ତ ବିଶ୍ୱାସ ଦ୍ୱାରା ଫଳ ଲାଭ କରିଥିଲେ; ଯେତେବେଳେ ସେମାନେ ବିଶ୍ୱାସ ସ୍ଥାପନ କରିଥିଲେ ସେତେବେଳେ ଆମ୍ଭେ ସେମାନଙ୍କଠାରୁ ପାର୍ଥିବ ଜୀବନର ଶାସ୍ତି ଦୂରୀଭୂତ କରିଥିଲୁଁ ଏବଂ ସେମାନଙ୍କୁ ଏକ ଯୁଗ ପର୍ଯ୍ୟନ୍ତ ସମ୍ପଦଶାଳୀ କରି ଦେଇଥିଲୁଁ ।୯୮।

---

୯୩ । କିନ୍ତୁ ସେମାନଙ୍କ ନିକଟ ଜ୍ଞାନ ଉପସ୍ଥିତ ନହେବା ପର୍ଯ୍ୟନ୍ତ ସେମାନେ ବିରୋଧ କରି ନ ଥିଲେ—ଅର୍ଥାତ୍ ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ସମ୍ବନ୍ଧରେ ଜ୍ଞାନ ଲାଭ କଲାପରେ ଇସରାଇଲ ବଂଶଧର ଇହୁଦୀମାନେ ତାଙ୍କର ବିରୁଦ୍ଧାଚରଣ କରିବାକୁ ଲାଗିଲେ । ସେମାନଙ୍କ ଧର୍ମଗ୍ରନ୍ଥ ତଓରାତରେ ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ସମ୍ବନ୍ଧରେ ଭବିଷ୍ୟତ ବାଣୀ ଥିଲେ ମଧ୍ୟ ତାହା ଜାଣିଶୁଣି ତାଙ୍କ ବିରୁଦ୍ଧାଚରଣ କରିବା ବଡ଼ ପରିତାପର ବିଷୟ ଅଟେ । ସେଥିପାଇଁ ପରମେଶ୍ୱର କହୁଅଛନ୍ତି ପୁନରୁତ୍ଥାନ ଦିବସରେ ନିଶ୍ଚୟ ଏହାର ବିଚାର ହେବ ।

୯୪ । ୯୫ । ତୁମ୍ଭେ ସେଥିରେ ସନ୍ଦେହ କର – ଏଠାରେ ଏକବଚନ ବ୍ୟବହୃତ ହୋଇଥିବାରୁ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ଲକ୍ଷ୍ୟ କରାଯାଇଥିବାର ଅନୁମିତ ହେଲେହେଁ ପ୍ରକୃତରେ ଏହି ଦୁଇ ଶ୍ଳୋକ କୋରାନର ଶ୍ରୋତା ଓ ପାଠକ ସମସ୍ତଙ୍କ ପ୍ରତି ଲକ୍ଷ୍ୟ କରାଯାଇ ଅଛି । କୋରାନ ଗ୍ରନ୍ଥର ସତ୍ୟତା ସମ୍ବନ୍ଧରେ ଯାହାର ମନରେ ସନ୍ଦେହ ଜାତ ହେବ, ସେ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥ ତଓରାତ୍ ଓ ଇଞ୍ଜିଲ ପାଠ କରିଥିବା ଲୋକମାନଙ୍କୁ ପଚାରିଲେ ଜାଣିପାରିବ ଯେ ସେହି ଗ୍ରନ୍ଥମାନଙ୍କରେ ଏ ସମ୍ବନ୍ଧରେ ଭବିଷ୍ୟତ ବାଣୀ ଉଲ୍ଲେଖ କରାଯାଇଅଛି । ସୁତରାଂ ଏ ସମ୍ବନ୍ଧରେ ସନ୍ଦେହ କରିବା କିମ୍ବା ମିଥ୍ୟା ମନେ କରିବା ନିତାନ୍ତ ଅନ୍ୟାୟ ।

୯୬ । ୯୭ । ଯେଉଁମାନେ ଅବିଶ୍ୱାସରେ ଦୃଢ଼ ରହି ଅଛନ୍ତି, ସେମାନଙ୍କ ନିକଟ ସମସ୍ତ ନିଦର୍ଶନ ଉପସ୍ଥିତ ହେଲେ ମଧ୍ୟ, ସେମାନେ ଶାସ୍ତି ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିବେ ନାହିଁ, ଯେପରି ଫେରଅଉନ କରିଥିଲା । ଦେଖ ଏହି ଅଧ୍ୟାୟ ଶ୍ଳୋ ୯୦କ ।

୯୮ । ମହାପୁରୁଷ ୟୁନୁସଙ୍କ ସମ୍ପ୍ରଦାୟ ପରମେଶ୍ୱରଙ୍କ ପ୍ରାଥମିକ ଶାସ୍ତି ଉପସ୍ଥିତ ହେବାର ଦେଖି ସେମାନେ ଅନୁତପ୍ତ ହୋଇ ବିଶ୍ୱାସ ସ୍ଥାପନ କରିଥିଲେ ସୁତରାଂ ପରମେଶ୍ୱର ସେମାନଙ୍କ ପ୍ରତି ଅନୁଗ୍ରହ କରିଥିଲେ । ଦେଖ ୩୭ ଅଧ୍ୟାୟ ଶ୍ଳୋ୧୩୯ରୁ ୧୪୮କ ।

ଏବଂ ଯଦ ତୁମ୍ଭର ପାଳନକର୍ତ୍ତା ଇଚ୍ଛା କରଥାଅନ୍ତେ ତେବେ ନିଶ୍ଚୟ ପୃଥିବୀରେ ଯେଉଁମାନେ ଅଛନ୍ତି ସେମାନେ ସମସ୍ତେ ଏକ ସଙ୍ଗେ ବିଶ୍ୱାସ କରଥାଅନ୍ତେ; ତେବେ କଅଣ ସମସ୍ତେ ବିଶ୍ୱାସକାରୀ ନ ହେବା ପର୍ଯ୍ୟନ୍ତ ତୁମ୍ଭେ ଲୋକମାନଙ୍କ ପ୍ରତି ବଳ ପ୍ରୟୋଗ କରବ ? ।୯୯।

ଏବଂ ପରମେଶ୍ୱରଙ୍କ ଇଚ୍ଛା ବ୍ୟତୀତ କୌଣସି ବ୍ୟକ୍ତି ବିଶ୍ୱାସ କରିବ ନାହିଁ, ଏବଂ ସେ ନିର୍ବୋଧ ଲୋକମାନଙ୍କୁ ସନ୍ଦେହରେ ପକାଇ ଥାଅନ୍ତି ।୧୦୦।

ତୁମ୍ଭେ କୁହ, "ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହା ଅଛି ତାହା ଲକ୍ଷ୍ୟ କର"; ଏବଂ ଅବିଶ୍ୱାସକାରୀ ସମ୍ପ୍ରଦାୟ ପ୍ରତି ନିଦର୍ଶନମାନ ଓ ଭୟପ୍ରଦର୍ଶନ କୌଣସିମତେ ଫଳପ୍ରଦ ହେବ ନାହିଁ ।୧୦୧।

ତେବେ ସେମାନେ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନଙ୍କ ପ୍ରତି ଘଟିଥିବା ଦୁର୍ଦ୍ଦିନ ଛଡ଼ା ଅଉ କଅଣ ଅପେକ୍ଷା କରୁଅଛନ୍ତି ? ତୁମ୍ଭେ କୁହ, "ତେବେ ତୁମ୍ଭେମାନେ ଅପେକ୍ଷା କର, ନିଶ୍ଚୟ ଅମ୍ଭେ ମଧ୍ୟ ତୁମ୍ଭମାନଙ୍କ ସହିତ ଅପେକ୍ଷା କରୁଁ" ।୧୦୨।

ତାପରେ ଅମ୍ଭେ ଏହିପରି ଅମ୍ଭର ପ୍ରେରିତ ପୁରୁଷମାନଙ୍କୁ ଏବଂ ବିଶ୍ୱାସକାରୀମାନଙ୍କୁ ଉଦ୍ଧାର କରି ଥାଉଁ; ବିଶ୍ୱାସକାରୀମାନଙ୍କୁ ଉଦ୍ଧାର କରିବାହିଁ ଅମ୍ଭର କର୍ତ୍ତବ୍ୟ କର୍ମ ଅଟେ ।୧୦୩।

## ୧୧ଶ ବିଭାଗ

ତୁମ୍ଭେ କୁହ, "ହେ ଲୋକଗଣ ! ଯଦି ଅମ୍ଭର ଧର୍ମରେ ତୁମ୍ଭମାନଙ୍କର ସନ୍ଦେହ ହୁଏ ତେବେ (ଜାଣି ରଖ) ପରମେଶ୍ୱରଙ୍କ ପରିବର୍ତ୍ତିରେ ତୁମ୍ଭେମାନେ ଯେଉଁମାନଙ୍କୁ ଉପାସନା କର ଅମ୍ଭେ ସେମାନଙ୍କୁ ଉପାସନା

---

୯୯ । ୧୦୦ । ପରମେଶ୍ୱର ଯଦି ଇଚ୍ଛା କରଥାନ୍ତେ ମାନବ ସମାଜରେ ଅବିଶ୍ୱାସ ଓ ଅଧର୍ମ ନଥାଇ ସମସ୍ତେ ବିଶ୍ୱାସୀ ଓ ଧାର୍ମିକ ହୋଇଥାନ୍ତେ, କାରଣ ପରମେଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାର୍ଯ୍ୟ ହୋଇ ନପାରେ । ମାତ୍ର ତଦ୍ଦ୍ୱାରା ମାନବ ଜାତି ସୃଷ୍ଟିର ଉଦ୍ଦେଶ୍ୟ ସାଧିତ ହୋଇ ପାରନଥାନ୍ତା । ପରମେଶ୍ୱର ମନୁଷ୍ୟକୁ ଭଲ ମନ୍ଦ ବୁଝି ପାରିବାର ପ୍ରବୃତ୍ତି ଦେଇ ସୃଷ୍ଟି କରିଅଛନ୍ତି ଏବଂ ଭଲ ମନ୍ଦକୁ ପୃଥକରୂପେ ଚିହ୍ନିବା ପାଇଁ ବିବେକ ଦେଇ ଅଛନ୍ତି ଏବଂ ଏ ଦୁଇଟି ପଥରୁ ଗୋଟିଏ ପଥ ଅନୁସରଣ କରିବାର ସ୍ୱାଧୀନତା ଦେଇଅଛନ୍ତି । ଧର୍ମ ଉପଦେଷ୍ଟାମାନଙ୍କୁ ପଠାଇ ସେମାନଙ୍କୁ ଏ ବିଷୟରେ ସାବଧାନ କରିଅଛନ୍ତି । ଯେଉଁମାନେ ଭଲ ପଥ ଅନୁସରଣ କରିବେ ସେମାନେ ପୁରସ୍କାର ପାଇବେ ଏବଂ ଯେଉଁମାନେ ମନ୍ଦ ପଥ ଅନୁସରଣ କରିବେ ସେମାନେ ଶାସ୍ତି ଭୋଗ କରିବେ । ଯେଉଁମାନେ ବିଶ୍ୱାସ ସ୍ଥାପନ କରି ସତ୍ ପଥ ଅନୁସରଣ କରନ୍ତି ସେମାନେ କ୍ରମଶଃ ସତ୍‌ପଥରେ ଉନ୍ନତି ଲାଭ କରନ୍ତି ଏବଂ ଯେଉଁମାନେ ଅବିଶ୍ୱାସ ଓ ଅସତ୍ କର୍ମରେ ଦୃଢ଼ ରହନ୍ତି ସେମାନେ ସନ୍ଦେହରେ ପଡ଼ି ସତ୍‌ପଥ ଅନୁସରଣ କରିବାର ଶକ୍ତି ହରାଇଥାନ୍ତି । ଏହା ପରମେଶ୍ୱରଙ୍କ ପ୍ରାକୃତିକ ନିୟମଦ୍ୱାରା ଗୃହୀତ ହୋଇଅଛି । ଏହାଦ୍ୱାରା ପ୍ରକୃତ ଧାର୍ମିକ ଲୋକମାନଙ୍କର ପରୀକ୍ଷା ହୋଇଅଛି । ସୁତରାଂ ଧର୍ମ ବିଷୟରେ ବଳ ପ୍ରୟୋଗ କରିବାର ଆବଶ୍ୟକତା ନାହିଁ ।

୧୦୩ । ବିଶ୍ୱାସୀ ଓ ଧାର୍ମିକ ଲୋକମାନଙ୍କୁ ଅବିଶ୍ୱାସୀ ଅତ୍ୟାଚାରୀ ଲୋକମାନଙ୍କଠାରୁ ରକ୍ଷା କରିବା ପରମେଶ୍ୱରଙ୍କ କର୍ତ୍ତବ୍ୟ ଅଟେ । ସୁତରାଂ ଧର୍ମପରାୟଣ ଲୋକମାନଙ୍କର କୌଣସି ପ୍ରକାର ଭୟ ନକରି ପରମେଶ୍ୱରଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବା ଆବଶ୍ୟକ ।

କରୁନା, କିନ୍ତୁ ଆମ୍ଭେ ସେହି ପରମେଶ୍ୱରଙ୍କ ଉପାସନା କରୁଁ ଯେ ତୁମ୍ଭମାନଙ୍କର ପ୍ରାଣ ହରଣ କରନ୍ତି, ଏବଂ ଆମ୍ଭଙ୍କୁ ଆଦେଶ କରାଯାଇଅଛି ଯେ ଆମ୍ଭେ ବିଶ୍ୱାସକାରୀମାନଙ୍କର ଅନ୍ତର୍ଭୁକ୍ତ ହେବୁଁ ।୧୦୪।

"ଏବଂ ଏହା ମଧ୍ୟ ଆଦେଶ କରାଯାଇ ଅଛି ଯେ, ତୁମ୍ଭେ ସତ୍ୟଧର୍ମ ପ୍ରତି ଖାଣ୍ଟି ଭାବରେ ନିଜର ହୃଦୟ ଲଗାଅ ଏବଂ ଅଂଶୀବାଦୀମାନଙ୍କର ଅନ୍ତର୍ଭୁକ୍ତ ହୁଅନା ।୧୦୫।

"ଏବଂ ତୁମ୍ଭେ ପରମେଶ୍ୱରଙ୍କ ପରିବର୍ତ୍ତିରେ ତାହାକୁ ଆହ୍ୱାନ କରନା ଯେ ତୁମ୍ଭର ଲାଭ ଅଥବା ତୁମ୍ଭର କ୍ଷତି କରି ପାରେ ନା, କିନ୍ତୁ ଯଦି ତୁମ୍ଭେ ଏପରି କର ତେବେ ନିଶ୍ଚୟ ତୁମ୍ଭେ ସେପରି ଅବସ୍ଥାରେ ଅତ୍ୟାଚାରୀମାନଙ୍କର ଅନ୍ତର୍ଭୁକ୍ତ ହେବ" ।୧୦୬।

ଏବଂ ଯଦି ପରମେଶ୍ୱର ତୁମ୍ଭଙ୍କୁ ଅନିଷ୍ଟ ଦ୍ୱାରା ଆକ୍ରାନ୍ତ କରନ୍ତି ତେବେ ତାଙ୍କ ବ୍ୟତୀତ କେହି ସେଥିରୁ ତୁମ୍ଭଙ୍କୁ ମୁକ୍ତ କରି ପାରିବେ ନାହିଁ, ଏବଂ ଯଦି ସେ ତୁମ୍ଭର ମଙ୍ଗଳକାମନା କରନ୍ତି ତେବେ କେହି ତାଙ୍କର ଅନୁଗ୍ରହ ପ୍ରତିରୋଧ କରି ପାରିବ ନାହିଁ; ସେ ତାଙ୍କର ସେବକମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାହା ଦାନ କରିଥାନ୍ତି, ଏବଂ ସେ କ୍ଷମାଶୀଳ କରୁଣାମୟ ।୧୦୭।

ତୁମ୍ଭେ କୁହ, "ହେ ଲୋକଗଣ ! ନିଶ୍ଚୟ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କ ନିକଟରୁ ତୁମ୍ଭମାନଙ୍କ ପାଖରେ ସତ୍ୟ ଉପସ୍ଥିତ ହୋଇଅଛି, ଅତଏବ ଯେ ସୁପଥଗାମୀ ହୁଏ, ସେ କେବଳ ନିଜପାଇଁ ସୁପଥଗାମୀ ହୋଇଥାଏ ଏବଂ ଯେ କୁପଥରେ ଗମନକରେ ସେ କେବଳ ନିଜ ପାଇଁ କୁପଥରେ ଗମନ କରିଥାଏ, ଏବଂ ଆମ୍ଭେ ତୁମ୍ଭମାନଙ୍କ ଉପରେ ତତ୍ତ୍ୱାବଧାରକ ନୋହୁଁ" ।୧୦୮।

ଏବଂ ତୁମ୍ଭ ପ୍ରତି ଯାହା ପ୍ରତ୍ୟାଦେଶ ହୋଇଅଛି, ତୁମ୍ଭେ ତାହାର ଅନୁସରଣ କର ଏବଂ ପରମେଶ୍ୱରଙ୍କ ବିଚାର ପର୍ଯ୍ୟନ୍ତ ଧୈର୍ଯ୍ୟଧାରଣ କର, ଏବଂ ସେହି ଶ୍ରେଷ୍ଠତମ ବିଚାରପତି ।୧୦୯।

—*—

୧୦୪-୧୦୭ । ମନୁଷ୍ୟମାନଙ୍କୁ ପାର୍ଥିବ ସୁଖ ଦୁଃଖ ପ୍ରଦାନ କରିବାର ଅଧିକାର ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାର ନାହିଁ, ଏବଂ ସେ ଯାହାକୁ ସୁଖ ଦିଅନ୍ତି ତାକୁ ଅପହରଣ କରିବା ଅଥବା ସେ ଯାହାକୁ ଦୁଃଖ ଦିଅନ୍ତି ତାକୁ ଦୂର କରିବା ମଧ୍ୟ କାହାର ଅଧିକାର ନାହିଁ । ସୁତରାଂ ପାର୍ଥିବ ସୁଖ ଲାଭ ଆଶାରେ ପରମେଶ୍ୱରଙ୍କୁ ପରିତ୍ୟାଗ କରି ଅଂଶୀ ଉପାସ୍ୟ ସ୍ଥିର କରିବା ନିତାନ୍ତ ଅନ୍ୟାୟ ।

୧୦୮ । ଲୋକମାନଙ୍କୁ କେବଳ ସଦୁପଦେଶ ଦେବା ଅର୍ଥାତ୍ ସତ୍ କାର୍ଯ୍ୟ କଲେ ପୁରସ୍କାର ମିଳିବ ଏବଂ ଅସତ୍ କାର୍ଯ୍ୟ କଲେ ଦଣ୍ଡ ଭୋଗ କରିବାକୁ ହେବ ଏହା ସେମାନଙ୍କୁ ବୁଝାଇବା ପ୍ରେରିତ ପୁରୁଷଙ୍କର କର୍ତ୍ତବ୍ୟ ଅଟେ । ଲୋକମାନେ ତାଙ୍କର ଉପଦେଶ ମାନି ଯଦି ସତ୍‌ପଥରେ ଚାଲନ୍ତି, ତେବେ ତଦ୍ୱାରା ସେମାନଙ୍କର ନିଜର ଉପକାର ହେବ ଏବଂ ଯଦି ସେମାନେ ତାଙ୍କର ଉପଦେଶ ନମାନି ଅସତ୍ ପଥରେ ଚାଲନ୍ତି, ତେବେ ତଦ୍ୱାରା ସେମାନଙ୍କର ନିଜର କ୍ଷତି ହେବ ଏବଂ ପ୍ରେରିତପୁରୁଷ ସେଥିପାଇଁ ଦାୟୀ ହେବେ ନାହିଁ ।

୧୦୯ । ଲୋକମାନଙ୍କର ଭଲ ମନ୍ଦ କାର୍ଯ୍ୟର ବିଚାର କରିବା ଏବଂ ପୁରସ୍କାର ଓ ଶାସ୍ତି ଦେବାର ଅଧିକାର କେବଳ ପରମେଶ୍ୱରଙ୍କ ହାତରେ ଅଛି ।

—o—

# ୧୧ଶ ଅଧ୍ୟାୟ

ନାମ—ହୁଦ୍ । ମକ୍କାରେ ଅବତୀର୍ଣ୍ଣ ।
ଏଥିରେ ମୋଟ ୧୦ଟି ବିଭାଗ ଏବଂ ମୋଟ ୧୨୩ଟି ଶ୍ଲୋକ ଅଛି ।
ଦୟାମୟ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

## ୧ମ ବିଭାଗ

ଅଲିଫ୍, ଲାମ୍, ରା; ଏହି ଗ୍ରନ୍ଥର ଶ୍ଲୋକମାନ ସୁସ୍ପଷ୍ଟ କରାଯାଇଅଛି, ତାପରେ ସର୍ବଜ୍ଞ ମହାଜ୍ଞାନ ପରମେଶ୍ୱରଙ୍କ ନିକଟରୁ ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଅଛି ।୧।

ଯେ ତୁମ୍ଭେମାନେ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରନା; (ତୁମ୍ଭେ କୁହ) "ନିଶ୍ଚୟ ଆମ୍ଭେ ତାଙ୍କ ନିକଟରୁ (ଅବିଶ୍ୱାସକାରୀମାନଙ୍କ ପାଇଁ) ଭୟ ପ୍ରଦର୍ଶକ ଓ (ବିଶ୍ୱାସକାରୀମାନଙ୍କ ପାଇଁ) ସୁସମ୍ବାଦଦାତା ।୨।

"ଏବଂ ଏହା ମଧ୍ୟ ଆମ୍ଭେ ଉପଦେଶ ଦେଉଅଛୁଁ ଯେ ତୁମ୍ଭେମାନେ ନିଜ ପାଳନକର୍ତ୍ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କର, ତାପରେ ତାଙ୍କର ଆଡ଼କୁ ମନଯୋଗ ଦିଅ, ସେ ତୁମ୍ଭମାନଙ୍କୁ ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଉତ୍ତମ ସମ୍ପଦ ଦାନ କରିବେ ଏବଂ ପ୍ରତ୍ୟେକ ଉପଯୁକ୍ତ ବ୍ୟକ୍ତିକୁ ନିଜର ଅନୁଗ୍ରହ ଦାନ କରିବେ, କିନ୍ତୁ ଯଦି ତୁମ୍ଭେମାନେ (ଆଦେଶ ପାଳନରୁ) ଫେରିଯାଅ, ତେବେ ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କ ପାଇଁ ସେହି ମହାନ ଦିବସର ଶାସ୍ତିର ଆଶଙ୍କା କରୁଁ ।୩।

"ପରମେଶ୍ୱରଙ୍କ ଆଡ଼କୁହିଁ ତୁମ୍ଭମାନଙ୍କୁ ଫେରିଯିବାକୁ ହେବ ଏବଂ ସେ ସବୁ ବିଷୟ ଉପରେ ଶକ୍ତିଶାଳୀ" ।୪।

ସାବଧାନ ! ନିଶ୍ଚୟ ସେମାନେ ନିଜ ବକ୍ଷ ସଙ୍କୁଚିତ କରିଅଛନ୍ତି, ଯେପରି (ସେମାନଙ୍କର ଶତ୍ରୁତା) ତାଙ୍କଠାରୁ ଲୁଚି ରହିପାରେ; ସାବଧାନ ! ଯେତେବେଳେ ସେମାନେ ନିଜକୁ ବସ୍ତ୍ରରେ ଆବୃତ କରନ୍ତି

---

ନାମକରଣ —ଏହି ଅଧ୍ୟାୟର ଶ୍ଲୋ ୫୦ କରୁ ଶ୍ଲୋ ୬୦ କ ମଧ୍ୟରେ ମହାପୁରୁଷ ହୁଦଙ୍କ ବିଷୟ ବର୍ଣ୍ଣିତ ହୋଇ ଥିବାରୁ ଏ ଅଧ୍ୟାୟର ଏପରି ନାମ କରଣ ହୋଇଅଛି ।

୧ । ଏହି ଶ୍ଲୋକର ପ୍ରଥମ ଅଂଶ ପାଇଁ ଦେଖ ଟୀକା ୧୦ମ ଅଧ୍ୟାୟ ୧ମ ଶ୍ଲୋକ । ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ୨ୟ ଅଧ୍ୟାୟ ୧ମ ଶ୍ଲୋକ ଏବଂ ତହିଁର ଟୀକା ଦେଖ ।

୨ । ଆମ୍ଭେ—ମହାପୁରୁଷ ମୋହମ୍ମଦ ।

୩ । ଆମ୍ଭେ—ମହାପୁରୁଷ ମୋହମ୍ମଦ ।
ମହାନ ଦିବସ—ଶେଷ ବିଚାର ଦିନ ।

ସେତେବେଳେ ସେମାନେ ଯାହା ଗୋପନ କରନ୍ତି ଏବଂ ଯାହା ପ୍ରକାଶ କରନ୍ତି ସେ ତାହା ଜାଣନ୍ତି; ନିଶ୍ଚୟ ସେ ସେମାନଙ୍କର ଅନ୍ତରର ବିଷୟ ଜାଣନ୍ତି ।୫।

## ଦ୍ୱାଦଶ ଭାଗ

ଏବଂ ପୃଥିବୀରେ ଏପରି ବିଚରଣଶୀଳ କୌଣସି ଜୀବ ନାହିଁ ଯାହାର ଜୀବିକାର ଭାର ପରମେଶ୍ୱରଙ୍କ ଉପରେ ନାହିଁ ଏବଂ ସେ ସେମାନଙ୍କର ବିଶ୍ରାମର ସ୍ଥାନ ଓ ବାସସ୍ଥାନ ଅବଗତ ଅଛନ୍ତି; ଏ ସମସ୍ତ ବିଷୟ ପ୍ରକାଶ୍ୟ ଗ୍ରନ୍ଥରେ ରହିଅଛି ।୬।

ଏବଂ ସେହି ଛଅଦିନରେ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ସୃଷ୍ଟି କରିଅଛନ୍ତି ଏବଂ ତାଙ୍କର ସିଂହାସନ ଜଳ ଉପରେ ଥିଲା; ଏହାଦ୍ୱାରା ତୁମ୍ଭମାନଙ୍କୁ ପରୀକ୍ଷା କରିବେ ଯେ ତୁମ୍ଭମାନଙ୍କ ମଧ୍ୟରୁ କାହାର କର୍ମ ଉତ୍କୃଷ୍ଟତର; ଏବଂ ଯଦି ତୁମ୍ଭେ ସେମାନଙ୍କୁ କୁହ ଯେ ମୃତ୍ୟୁ ପରେ ନିଶ୍ଚୟ ତୁମ୍ଭେମାନେ ପୁଣି ଜୀବିତ ହେବ, ସେଥିରେ ଅବିଶ୍ୱାସକାରୀମାନେ କହିବେ ଯେ ଏହା ପ୍ରକାଶ୍ୟ ଯାଦୁ ବ୍ୟତୀତ ଅନ୍ୟ କିଛି ନୁହେ ।୭।

ଏବଂ ଯଦି ଆମ୍ଭେ ସେମାନଙ୍କ ପ୍ରତି ଶାସ୍ତି ପଠାଇବାରେ ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବିଳମ୍ବ କରୁ ତେବେ ନିଶ୍ଚୟ ସେମାନେ କହିବେ, "କାହିଁକି ଏହା ବନ୍ଦ ଅଛି ?" ସାବଧାନ ! ଯେଉଁଦିନ ଏହି (ଶାସ୍ତି) ସେମାନଙ୍କ ନିକଟ ଉପସ୍ଥିତ ହେବ ସେତେବେଳେ କେହି ଏହାକୁ ସେମାନଙ୍କ ଠାରୁ ଦୂର କରି ପାରିବେ ନାହିଁ ଏବଂ ସେମାନେ ଯେଉଁ (ଶାସ୍ତି) ବିଷୟରେ ଉପହାସ କରୁଅଛନ୍ତି ତାହା ସେମାନଙ୍କୁ ଘେରିନେବ ।୮।

## ୨ୟ ବିଭାଗ

ଏବଂ ଯଦି ଆମ୍ଭେ ମନୁଷ୍ୟକୁ ଆମ୍ଭର ଅନୁଗ୍ରହ ଦାନ କରି ତାପରେ ତାହାଠାରୁ ତାହା କାଢ଼ିନେଉଁ, ତେବେ ନିଶ୍ଚୟ ସେ ନିରାଶ ଓ ଅକୃତଜ୍ଞ ହୋଇଥାଏ ।୯।

---

୫ । ବିଧର୍ମୀ ଲୋକମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ବିଦ୍ୱେଷ ଭାବ ପୋଷଣ କରି ସତ୍ୟ ଧର୍ମକୁ ହୃଦୟରୁ ସଙ୍କୁଚିତ କରିଅଛନ୍ତି । ଅର୍ଥାତ୍ ସତ୍ୟ ଧର୍ମ ଗ୍ରହଣରୁ ବିମୁଖ ହୁଅନ୍ତି ଏବଂ ସେମାନେ ଭାବନ୍ତି ପରମେଶ୍ୱର ସେମାନଙ୍କ ହୃଦୟର କଥା ଜାଣିପାରନ୍ତି ନାହିଁ । ଏହା ସେମାନଙ୍କ ଭ୍ରମ ଅଟେ । କାରଣ ପରମେଶ୍ୱର ଗୁପ୍ତ ଓ ପ୍ରକାଶିତ ସବୁ ବିଷୟ ଜାଣି ପାରନ୍ତି, ଏପରିକି ସେମାନଙ୍କ ଅନ୍ତରର ଭାବନା ସବୁ ମଧ୍ୟ ଜାଣିପାରନ୍ତି । କାରଣ ସେ ଅନ୍ତର୍ଯ୍ୟାମୀ ।

୬ । ପରମେଶ୍ୱର ସମସ୍ତ ଜଗତର ପାଳନକର୍ତ୍ତା ଏବଂ ପୃଥିବୀ ପୃଷ୍ଠରେ ଯେତେ ଜୀବଜନ୍ତୁ ଅଛନ୍ତି, ସମସ୍ତଙ୍କୁ ଜୀବିକା ବିତରଣ କରିବାର ଭାର ତାଙ୍କରି ଉପରେ ଏବଂ ସେମାନଙ୍କର ବିଶ୍ରାମର ସ୍ଥାନ ଓ ବାସସ୍ଥାନ ତାଙ୍କୁ ଜଣାଅଛି । ଏସବୁ ବିଷୟ ପୁସ୍ତକରେ ଲେଖା ହୋଇ ପରି ପରମେଶ୍ୱରଙ୍କ ଜ୍ଞାନଭଣ୍ଡାରର ଅନ୍ତର୍ଗତ । ସୁତରାଂ ଏଥିରେ ବ୍ୟତିକ୍ରମ ଘଟିବାର ସମ୍ଭବ ନୁହେ ।

୭ । ଆକାଶ ଓ ପୃଥିବୀର ସୃଷ୍ଟି ଏବଂ ସିଂହାସନ ବିଷୟରେ ଦେଖ ଟୀକା ୭ମ ଅଧ୍ୟାୟ ଶ୍ଳୋକ୫୪ । ତାଙ୍କର ସିଂହାସନ ଜଳ ଉପରେ ଥିଲା, ଏହାର ଭାବାର୍ଥ ଏହି ଯେ ପରମେଶ୍ୱର ତାଙ୍କର ଶକ୍ତି ପରିଚାଳନ କରି ପ୍ରଥମେ ଜଳକୁ ସୃଷ୍ଟି କରିଥିଲେ ଏବଂ ଜଳ ସାହାଯ୍ୟରେ ସମସ୍ତ ଜୀବଜନ୍ତୁ ସୃଷ୍ଟି କରିଥିଲେ । ଜଳ ବିନା କୌଣସି ଜୀବଜନ୍ତୁ ଜୀବନ ଧାରଣ କରିବା ଅସମ୍ଭବ ।

ମୃତ୍ୟୁ ପରେ ପୁଣି ଜୀବିତ ହେବା ପ୍ରସଙ୍ଗକୁ ଅବିଶ୍ୱାସକାରୀମାନେ 'ଯାଦୁ' ଅର୍ଥାତ୍ ମିଥ୍ୟା ପ୍ରବଞ୍ଚନା ବୋଲି ପ୍ରକାଶ କରୁଥିଲେ ।

୯।୧୦।୧୧—ବିପଦ ସମୟରେ ଧୈର୍ଯ୍ୟ ଧାରଣ କରି ଏବଂ ସମ୍ପଦ ସମୟରେ ନମ୍ରତା ଅବଲମ୍ବନ କରି ସୁଖ ଦୁଃଖ ସବୁ ଅବସ୍ଥାରେ ପରମେଶ୍ୱରଙ୍କ ଠାରେ କୃତଜ୍ଞତା ପ୍ରକାଶ କରିବା ପ୍ରକୃତ ଧାର୍ମିକ ଲୋକର ଲକ୍ଷଣ ଅଟେ ଏବଂ ସେହିମାନେ ପୁରସ୍କାର ପାଇବାର ଉପଯୁକ୍ତ ।

ଏବଂ ଯଦି ଅମ୍ଭେ ତାହାର ଦୁଃଖ ଭୋଗପରେ ତାହାକୁ ସୁଖ ଦାନ କରୁଁ ତେବେ ସେ ନିଶ୍ଚୟ କହିବ ଯେ ଅମଠାରୁ ଅମଙ୍ଗଳ ଚୁଲିଯାଇଅଛି, ସେତେବେଳେ ନିଶ୍ଚୟ ସେ ଆନନ୍ଦରେ ଅହଙ୍କାରୀ ହେବ ।୧୦।

କିନ୍ତୁ ଯେଉଁମାନେ ଧୈର୍ଯ୍ୟ ଧାରଣ କରି ଅଛନ୍ତି ଏବଂ ସତ୍‌କାର୍ଯ୍ୟ କରୁ ଅଛନ୍ତି ସେମାନଙ୍କ ଛଡ଼ା; ସେହିମାନଙ୍କ ପାଇଁ କ୍ଷମା ଏବଂ ମହାନ ପୁରସ୍କାର ରହିଅଛି ।୧୧।

ତାପରେ ତେବେ କଅଣ ତୁମ୍ଭେ ତୁମ୍ଭପ୍ରତି ପ୍ରତ୍ୟାଦିଷ୍ଟ ବିଷୟର କିୟଦଂଶ ବର୍ଜ୍ଜନ କରିବ ଏବଂ ତାହା ସହିତ ତୁମ୍ଭର ବକ୍ଷ ସଙ୍କୁଚିତ ହେବ, ଯେହେତୁ ସେମାନେ କହନ୍ତି "କାହିଁକି ତାଙ୍କ ପ୍ରତି ଧନ ଭଣ୍ଡାର ଅବତୀର୍ଣ୍ଣ ହୋଇ ନାହିଁ, ଅଥବା ତାଙ୍କ ସହିତ ସ୍ୱର୍ଗଦୂତ ଆସି ନାହାନ୍ତି" ? ତୁମ୍ଭେ ଭୟ ପ୍ରଦର୍ଶନକାରୀ ବ୍ୟତୀତ ଅନ୍ୟ କିଛି ନୁହ; ଏବଂ ପରମେଶ୍ୱରହିଁ ସମସ୍ତ ବିଷୟ ଉପରେ ତତ୍ତ୍ୱାବଧାରକ ।୧୨।

ଅଥବା ସେମାନେ କଅଣ କହନ୍ତି, ଯେ ସେ ଏହାକୁ ରଚନା କରି ଅଛନ୍ତି ? ତୁମ୍ଭେ କୁହ, "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ, ତେବେ ତୁମ୍ଭେମାନେ ଏହାର ସଦୃଶ ଦଶଗୋଟି ଅଧ୍ୟାୟ ରଚନା କରିଅଣ ଏବଂ ସାହାଯ୍ୟପାଇଁ ପରମେଶ୍ୱରଙ୍କ ଛଡ଼ା ଯାହାକୁ ଇଚ୍ଛା ଡାକ" ।୧୩।

କିନ୍ତୁ ଯଦି ସେମାନେ ତୁମ୍ଭକୁ କୌଣସି ଉତ୍ତର ନ ଦିଅନ୍ତି, ତେବେ ଜାଣ ଯେ ଏହା ଏକମାତ୍ର ପରମେଶ୍ୱରଙ୍କ ଜ୍ଞାନ ସହିତ ଅବତୀର୍ଣ୍ଣ ହୋଇଅଛି ଏବଂ ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ତେବେ କଅଣ ତୁମ୍ଭେମାନେ ଆତ୍ମସମର୍ପଣକାରୀ ହେବ ? ।୧୪।

ଯେଉଁମାନେ ପାର୍ଥିବ ଜୀବନ ଏବଂ ଏହାର ସୌନ୍ଦର୍ଯ୍ୟ ସମ୍ବନ୍ଧି କାମନା କରନ୍ତି, ଅମ୍ଭେ ସେଥିରେହିଁ ସେମାନଙ୍କୁ ସେମାନଙ୍କର କୃତକର୍ମର ପୂର୍ଣ୍ଣ ପ୍ରତିଦାନ ପ୍ରଦାନ କରିବୁଁ ଏବଂ ଏଥିରେ ସେମାନେ କିଛିମାତ୍ର କମ୍ ପାଇବେ ନାହିଁ ।୧୫।

ଏହିମାନଙ୍କପାଇଁ ପରଲୋକରେ ନରକାନଳ ଛଡ଼ା ଅନ୍ୟ କିଛି ନାହିଁ, ଏବଂ ଏଠାରେ ସେମାନେ ଯାହା ଗଠନ କରି ଅଛନ୍ତି ତାହା ବିନଷ୍ଟ ହୋଇଯିବ ଏବଂ ସେମାନେ ଯେଉଁ କାର୍ଯ୍ୟ କରି ଅଛନ୍ତି ତାହା ବୃଥା ହେବ ।୧୬।

---

୧୨ । ଅବଶ୍ୱାସକାରୀ ଵିଧର୍ମୀ ଲୋକମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ଲକ୍ଷ୍ୟ କରି କହୁଥିଲେ, ଏ ଯଦି ପ୍ରେରିତ ପୁରୁଷ ଅଟନ୍ତି ତେବେ କାହିଁକି ଆକାଶରୁ ତାଙ୍କ ପାଇଁ ଧନ ଭଣ୍ଡାର ଅବତୀର୍ଣ୍ଣ ହେଉନାହିଁ ଏବଂ ସ୍ୱର୍ଗଦୂତମାନେ କାହିଁକି ତାଙ୍କ ସଙ୍ଗରେ ଆସି ନାହାନ୍ତି ? ଏହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, "ହେ ମୋହମ୍ମଦ ! ତୁମ୍ଭେ ବିପକ୍ଷ ଲୋକମାନଙ୍କୁ କହିଦିଅ ଯେ ତୁମ୍ଭେ ଭୟ ପ୍ରଦର୍ଶନକାରୀ ଛଡ଼ା ଅନ୍ୟ କିଛି ନୁହ । ଆକାଶରୁ ଧନଭଣ୍ଡାର ଅବତୀର୍ଣ୍ଣ କରିବା କିମ୍ବା ସ୍ୱର୍ଗଦୂତ ପ୍ରେରଣ କରିବା ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାର ଅଧିକାରରେ ନାହିଁ । ସୁତରାଂ ପରମେଶ୍ୱରଙ୍କଠାରୁ ଯେଉଁ ଆଦେଶ ବାଣୀ ଅବତୀର୍ଣ୍ଣ ହେଉଅଛି ତୁମ୍ଭେ ତାହାର ବିରୁଦ୍ଧାଚରଣ କରି ପାରିବନାହିଁ ।"

୧୩।୧୪—ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋ୨୩।୨୪କ ।

୧୫।୧୬ । ଯେଉଁମାନେ ପାର୍ଥିବ ଧନ ସମ୍ପଦ କାମନା କରି ତାହାର ଉନ୍ନତି ପାଇଁ ପରିଶ୍ରମ କରନ୍ତି, ପରମେଶ୍ୱର ସେମାନଙ୍କୁ ପୂର୍ଣ୍ଣମାତ୍ରାରେ ତାହା ପ୍ରଦାନ କରନ୍ତି । କିନ୍ତୁ ସେମାନେ ପରଲୋକରେ ନରକ ଯନ୍ତ୍ରଣା ଭୋଗ କରିବେ, କାରଣ ସେମାନେ ପରମେଶ୍ୱରଙ୍କୁ ଭୁଲିଯାଇ ସାଂସାରିକ ବିଷୟ ବାସନାରେ ଆସକ୍ତ ହୋଇ ଏଥିରେ ସବୁବେଳେ ଲିପ୍ତ ରହିବା ଏବଂ ନିଜର ଆଧ୍ୟାତ୍ମିକ ଉନ୍ନତି ପାଇଁ କିଛି କରନ୍ତି ନାହିଁ ।

ତେବେ କଅଣ ଅବିଶ୍ୱାସକାରୀମାନେ ତାଙ୍କ ସଙ୍ଗେ ସମାନ ହୋଇ ପାରିବେ ଯେଉଁ ନିଜ ପାଳନ-କର୍ତ୍ତା (ପରମେଶ୍ୱରଙ୍କ) ଠାରୁ ଆସିଥିବା ସ୍ପଷ୍ଟ ପ୍ରମାଣ (କୋରାନ) ଉପରେ ଅଟଳ ରହି ଅଛନ୍ତି ଏବଂ ତାଙ୍କ (ପ୍ରେରିତ)ଜଣେ ସାକ୍ଷୀ ତାଙ୍କ ନିକଟରେ ଏହାକୁ ଆବୃତ୍ତି କରୁ ଅଛନ୍ତି ? ଏବଂ ଏହା ପୂର୍ବେ ପଥ ପ୍ରଦର୍ଶକ ଓ ଅନୁଗ୍ରହ ରୂପେ ମୂସାଙ୍କ ଗ୍ରନ୍ଥ (ତଓରାତ) ରହିଅଛି; ସେମାନେ ସେଥିରେ ବିଶ୍ୱାସ ସ୍ଥାପନ କରନ୍ତି; କିନ୍ତୁ ଅନ୍ୟ ଦଳରୁ ଯେ ଏଥିରେ ଅବିଶ୍ୱାସ କରିବେ ତେବେ ନରକାଗ୍ନିହିଁ ସେମାନଙ୍କ ପାଇଁ ପ୍ରତିଶ୍ରୁତ ସ୍ଥାନ; ଅତଏବ ଏଥିରେ ସନ୍ଦେହ କରନା; ନିଶ୍ଚୟ ଏହା ତୁମ୍ଭର ପାଳନକର୍ତ୍ତାଙ୍କ ଠାରୁ (ଆସିଥିବା) ସତ୍ୟ, କିନ୍ତୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତି ନାହିଁ ।୧୭।

ଏବଂ ଯେ ପରମେଶ୍ୱରଙ୍କ ପ୍ରତି ମିଥ୍ୟା କଳ୍ପନା କରେ ତାହା ଅପେକ୍ଷା ଅଧିକତର ଅତ୍ୟାଚାରୀ କିଏ ? ସେମାନେ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖକୁ ଆନୀତ ହେବେ ଏବଂ ସାକ୍ଷୀମାନେ କହିବେ, " ଏହିମାନେହିଁ ନିଜ ପାଳନକର୍ତ୍ତାଙ୍କ ପ୍ରତି ମିଥ୍ୟାରୋପ କରିଥିଲେ", ସାବଧାନ । ଅତ୍ୟାଚାରୀମାନଙ୍କ ଉପରେ ପରମେଶ୍ୱରଙ୍କ ଅଭିଶାପ ।୧୮।

ଯେଉଁମାନେ ପରମେଶ୍ୱରଙ୍କ ପଥରୁ (ଲୋକମାନଙ୍କୁ) ପ୍ରତିରୋଧ କରନ୍ତି ଏବଂ ସେଥିରେ ବକ୍ରତା ଅନୁସନ୍ଧାନ କରନ୍ତି, ଏବଂ ସେମାନେ ପରକାଳ ସମ୍ବନ୍ଧରେ ମଧ୍ୟ ଅବିଶ୍ୱାସ କରନ୍ତି ।୧୯।

ସେମାନେ ପୃଥିବୀରେ (ପରମେଶ୍ୱରଙ୍କ) ଆୟତ୍ତର ବାହାରେ ନଥିଲେ ଏବଂ ପରମେଶ୍ୱରଙ୍କ ବ୍ୟତୀତ ସେମାନଙ୍କର କେହି ଅଭିଭାବକ ମଧ୍ୟ ନାହିଁ ସେମାନଙ୍କର ଶାସ୍ତି ଦୁଇଗୁଣ କରାହେବ, (କାରଣ ) ଏମାନେ ଶୁଣି ପାରୁ ନଥିଲେ ଏବଂ ଦେଖିପାରୁ ନଥିଲେ ।୨୦।

ସେହିମାନେହିଁ ନିଜ ଆତ୍ମାର କ୍ଷତି କରି ଅଛନ୍ତି ଏବଂ ସେମାନେ ଯାହା କଳ୍ପନା କରିଥିଲେ ତାହା ସେମାନଙ୍କ ଠାରୁ ଦୂର ହୋଇଅଛି ।୨୧।

ଏଥିରେ କୌଣସି ସନ୍ଦେହ ନାହିଁ ଯେ ପରକାଳରେ ସେମାନେ ସର୍ବାପେକ୍ଷା ଅଧିକ କ୍ଷତିଗ୍ରସ୍ତ ହେବେ ।୨୨।

ନିଶ୍ଚୟ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଓ ସତ୍କର୍ମ କରୁ ଅଛନ୍ତି ଏବଂ ନିଜ ପାଳନ-କର୍ତ୍ତାଙ୍କ ପ୍ରତି ବିନୀତ ହୋଇ ଅଛନ୍ତି, ସେହିମାନେହିଁ ସ୍ୱର୍ଗୋଦ୍ୟାନର ଅଧିବାସୀ, ସେଥିରେ ସେମାନେ ସର୍ବଦା ବାସ କରିବେ ।୨୩।

---

୧୭ । ତାଙ୍କ ସଙ୍ଗେ—ବିଶ୍ୱାସକାରୀସଙ୍ଗେ; ତାଙ୍କ (ପ୍ରେରିତ) ଜଣେ ସାକ୍ଷୀ—ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ମହାପୁରୁଷ ମୋହମ୍ମଦ; ପଥପ୍ରଦର୍ଶକ ଓ ଅନୁଗ୍ରହରୂପେ—କୋରାନ ପୂର୍ବେ ଅବତୀର୍ଣ୍ଣ ତଓରାତ ଗ୍ରନ୍ଥରେ ମହାପୁରୁଷ ମୋହମ୍ମଦଙ୍କ ବିଷୟରେ ଭବିଷ୍ୟତବାଣୀ ଥିବାରୁ ଏହା ଲୋକମାନଙ୍କୁ କୋରାନ ଉପରେ ବିଶ୍ୱାସ କରିବାକୁ ସାହାଯ୍ୟ କରୁ ଅଛି । ଅନ୍ୟଦଳରୁ—ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ ।

୧୮ରୁ ୨୨ । ଏହି ଶ୍ଳୋକମାନଙ୍କରେ ଅବିଶ୍ୱାସକାରୀମାନଙ୍କର ପ୍ରକୃତି ଏବଂ ପରଲୋକର ଶାସ୍ତି ବର୍ଣ୍ଣିତ ହୋଇଅଛି । ସେମାନେ ଦୁଇଗୁଣ ଶାସ୍ତି ପାଇବେ, କାରଣ ପରମେଶ୍ୱର ସେମାନଙ୍କୁ ଯେଉଁ ଶକ୍ତି ଦେଇଥିଲେ, ପୃଥିବୀରେ ସେମାନେ ତାହାର ସଦ୍‌ବ୍ୟବହାର କଲେ ନାହିଁ ।

୧୯ । ଦେଖ ଟୀକା ୭ମ ଅଧ୍ୟାୟ ୪୨ ଶ୍ଳୋକ ।

୨୩ । ଏହି ଶ୍ଳୋକରେ ବିଶ୍ୱାସକାରୀମାନଙ୍କ ପୁରସ୍କାରର ବିଷୟ ବର୍ଣ୍ଣିତ ହୋଇଅଛି

ଏ ଦୁଇ ଦଳର ଦୃଷ୍ଟାନ୍ତ ଯେପରି ଏକ ଅନ୍ଧ ଓ ବଧିର ଏବଂ ଅନ୍ୟ ଦୃଷ୍ଟି ସମ୍ପନ୍ନ ଓ ଶ୍ରବଣ କ୍ଷମ; ଏମାନେ ଉଭୟେ କଅଣ ସମାନ ? ତେବେ ସୁଦ୍ଧା କଅଣ ସେମାନେ ବୁଝିବେ ନାହିଁ ? ।୨୫।

## ୩ୟ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ନୂହଙ୍କୁ ତାଙ୍କ ସମ୍ପ୍ରଦାୟ ପ୍ରତି ପଠାଇଥିଲୁଁ, (ସେ କହିଥିଲେ) "ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପାଇଁ ପ୍ରକାଶ୍ୟ ଭୟ ପ୍ରଦର୍ଶକ; ।୨୬।

"ଅତଏବ ତୁମ୍ଭେମାନେ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାର ଉପାସନା କରନା, ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପାଇଁ ସେହି କଠୋର ଦିନର ଶାସ୍ତିର ଆଶଙ୍କା କରୁଁ" ।୨୭।

କିନ୍ତୁ ତାଙ୍କ ସମ୍ପ୍ରଦାୟର ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ ମୁଖିଆ ବ୍ୟକ୍ତିମାନେ କହିଥିଲେ, "ଅମ୍ଭେମାନେ ତୁମ୍ଭଙ୍କୁ ଅମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଅନ୍ୟ କିଛି ଦେଖୁନାହୁଁ ଏବଂ ଅମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ନୀଚତମ ବୋଲି ବିଖ୍ୟାତ ସେମାନଙ୍କ ଛଡ଼ା ଅନ୍ୟ କାହାକୁ ତୁମ୍ଭର ଅନୁସରଣ କରିବାର ଦେଖୁନାହୁଁ, ଏବଂ ଅମ୍ଭମାନଙ୍କ ଉପରେ ତୁମ୍ଭର କୌଣସି ଶ୍ରେଷ୍ଠତ୍ୱ ଦେଖୁନାହୁଁ, ବରଂ ଅମ୍ଭେମାନେ ତୁମ୍ଭମାନଙ୍କୁ ମିଥ୍ୟାବାଦୀ ମନେକରୁଁ" ।୨୭।

ନୂହ କହିଥିଲେ, "ହେ ଅମ୍ଭର ସମ୍ପ୍ରଦାୟ, ତୁମ୍ଭେମାନେ ଲକ୍ଷ୍ୟକର ଯେ ଯଦି ଅମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ସ୍ପଷ୍ଟ ନିଦର୍ଶନ ଅମ୍ଭ ନିକଟରେ ଥାଏ ଏବଂ ସେ ନିଜ ପାଖରୁ ଅମ୍ଭଙ୍କୁ ଅନୁଗ୍ରହ ଦାନ କରିଥାନ୍ତି;ତାପରେ ତାହା ତୁମ୍ଭମାନଙ୍କ ପ୍ରତି ଅପ୍ରକାଶିତ ହୋଇଥାଏ, ତେବେ ଅମ୍ଭେ କିପରି ତୁମ୍ଭମାନଙ୍କୁ ଏଥିରେ ବାଧ୍ୟ କରିବୁଁ ଯେତେବେଳେ ତୁମ୍ଭେମାନେ ଏହା ପ୍ରତି ବିମୁଖ ଅଛ ? ୨୮ ।

"ଏବଂ ହେ ଅମ୍ଭର ସମ୍ପ୍ରଦାୟ, ଅମ୍ଭେ ଏହା ପାଇଁ ତୁମ୍ଭମାନଙ୍କ ନିକଟରୁ ଧନ ସମ୍ପଦ ଗ୍ରହଣ ନାହୁଁ; କାରଣ ଅମ୍ଭର ପ୍ରତିଦାନ ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାର ଉପରେ ନାହିଁ ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି (ସେମାନେ ନୀଚ ହେଲେ ମଧ୍ୟ) ଅମ୍ଭେ ସେମାନଙ୍କୁ ତଡ଼ିଦେବାକୁ ଗ୍ରହୁଁ ନାହୁଁ, ନିଶ୍ଚୟ ସେମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ କରିବେ, ବରଂ ଅମ୍ଭେ ତୁମ୍ଭମାନଙ୍କୁ ନିର୍ବୋଧ ସମ୍ପ୍ରଦାୟ ଲକ୍ଷ୍ୟ କରୁ ଅଛୁଁ ।୨୯।

"ଏବଂ ହେ ଅମ୍ଭର ସମ୍ପ୍ରଦାୟ ! ଯଦି ଅମ୍ଭେ ସେମାନଙ୍କୁ ତଡ଼ିଦେଉଁ ତେବେ ପରମେଶ୍ୱରଙ୍କ ଶାସ୍ତିରୁ କିଏ ଅମ୍ଭଙ୍କୁ ରକ୍ଷା କରିବ ? ତେବେ କଅଣ ତୁମ୍ଭେମାନେ ମନଯୋଗୀ ହେବ ନାହିଁ ?୩୦ ।

"ଏବଂ ଅମ୍ଭେ ତୁମ୍ଭମାନଙ୍କୁ କହୁନାହୁଁ ଯେ ପରମେଶ୍ୱରଙ୍କ ଧନଭଣ୍ଡାର ଅମ୍ଭର ନିକଟ ରହିଅଛି; ଏବଂ ଅମ୍ଭେ ଅଦୃଶ୍ୟ ବିଷୟ ଅବଗତ ନୋହୁଁ; ଏବଂ ଅମ୍ଭେ କହୁନାହୁଁ ଯେ ନିଶ୍ଚୟ ଅମ୍ଭେ ସ୍ୱର୍ଗଦୂତ, ଏବଂ

---

୨୪ । ଏହି ଶ୍ଳୋକରେ ଅବିଶ୍ୱାସକାରୀମାନଙ୍କୁ ଅନ୍ଧ ଓ କାଲ ସଙ୍ଗେ ଏବଂ ବିଶ୍ୱାସକାରୀମାନଙ୍କୁ ଦେଖିଲାବାଲା ଏବଂ ଶୁଣିଲାବାଲା ସଙ୍ଗେ ତୁଳନା କରାଯାଇଅଛି । କାରଣ ଅବିଶ୍ୱାସକାରୀମାନେ ଦେଖି ନ ଦେଖିଲା ପରି ଏବଂ ଶୁଣି ନ ଶୁଣିଲା ପରି ଏବଂ ବୁଝି ନ ବୁଝିଲା ପରି, ପରମେଶ୍ୱର ସେମାନଙ୍କୁ ଦେଇଥିବା ଶକ୍ତିମାନଙ୍କର ସଦ୍‌ବ୍ୟବହାର କଲେ ନାହିଁ ଏବଂ ବିଶ୍ୱାସକାରୀମାନେ ପରମେଶ୍ୱର ସେମାନଙ୍କୁ ଦେଇ ଥିବା ଶକ୍ତି ଅର୍ଥାତ୍ ଜ୍ଞାନ ଓ ବିବେକର ସଦ୍‌ବ୍ୟବହାର କରି ସତ୍‌ପଥରେ ଚାଳିତ ହୋଇଥିଲେ ।

୨୫।୨୯ । ମହାପୁରୁଷ ନୂହଙ୍କ ବିବରଣ ବର୍ଣ୍ଣିତ ହୋଇଅଛି ।

ଅମ୍ଭେ କହୁନାହୁଁ ଯେ ତୁମ୍ଭମାନଙ୍କର ଚକ୍ଷୁ ଯେଉଁମାନଙ୍କୁ ନୀଚ ମନେକରେ ପରମେଶ୍ୱର ସେମାନଙ୍କୁ କଦାପି କଲ୍ୟାଣ ଦାନ କରିବେ ନାହିଁ, ପରମେଶ୍ୱର ସେମାନଙ୍କର ଅନ୍ତରର ବିଷୟ ଭଲରୂପେ ଜାଣନ୍ତି (ଯଦି ଅମ୍ଭେ ଏହା କହୁ ତେବେ) ଅମ୍ଭେ ଅତ୍ୟାଚାରୀମାନଙ୍କର ଅନ୍ତର୍ଭୁକ୍ତ ହୋଇଯିବୁ” ।୩୧।

ସେମାନେ କହିଥିଲେ,“ହେ ନୂହ; ନିଶ୍ଚୟ ତୁମ୍ଭେ ଅମ୍ଭମାନଙ୍କ ସହିତ ବିରୋଧ କରିଅଛ,ବାସ୍ତବରେ ତୁମ୍ଭେ ଅମ୍ଭମାନଙ୍କ ସହିତ ଅତିରିକ୍ତ କଳହ କରିଅଛ; ଅତଏବ ତୁମ୍ଭେ ଅମ୍ଭମାନଙ୍କୁ ଯେଉଁ ଶାସ୍ତିର ଭୟ ଦେଖାଉଅଛ ତାହା ଆଣ ଯଦି ତୁମ୍ଭେ ସତ୍ୟବାଦୀ ଥାଅ” ।୩୨।

ନୂହ କହିଥିଲେ,“କେବଳ ପରମେଶ୍ୱରହିଁ ତୁମ୍ଭମାନଙ୍କ ପ୍ରତି ତାହା ଆଣିବେ ଯଦି ସେ ଇଚ୍ଛା କରନ୍ତି, ଏବଂ ତୁମ୍ଭେମାନେ ସେଥିରେ ବାଧା ଦେଇ ପାରିବ ନାହିଁ ।୩୩।

“ଏବଂ ଯଦିଚ ଅମ୍ଭେ ତୁମ୍ଭମାନଙ୍କୁ ଉପଦେଶ ଦେବାକୁ ଇଚ୍ଛାକରୁଁ ଅମ୍ଭର ସେ ଉପଦେଶ ତୁମ୍ଭମାନଙ୍କ ପ୍ରତି ଫଳପ୍ରଦ ହେବ ନାହିଁ, ଯଦି ପରମେଶ୍ୱର ତୁମ୍ଭମାନଙ୍କୁ ବିଭ୍ରାନ୍ତ କରିବାକୁ ଇଚ୍ଛା କରନ୍ତି, ସେହି ତୁମ୍ଭମାନଙ୍କର ପାଳନକର୍ତ୍ତା ଏବଂ ତାଙ୍କର ଆଡ଼କୁ ତୁମ୍ଭମାନଙ୍କୁ ଫେରି ଯିବାକୁ ହେବ ।” ୩୪।

ତେବେ କଅଣ ସେମାନେ କହନ୍ତି ଯେ ସେ ଏହାକୁ ରଚନା କରି ଅଛନ୍ତି ? ତୁମ୍ଭେ କହିଦିଅ,“ଯଦି ଅମ୍ଭେ ଏହାକୁ ରଚନା କରିଥିବୁଁ ତେବେ ଅମ୍ଭ ଉପରେହିଁ ତାହାର ପ୍ରତିଫଳ ଏବଂ ତୁମ୍ଭେମାନେ ଯେଉଁ ଅପରାଧ କରୁଅଛ ଅମ୍ଭେ ସେଥିରୁ ବିମୁକ୍ତ ।” ୩୫ ।

## ୪ର୍ଥ ବିଭାଗ

ଏବଂ ନୂହଙ୍କ ପ୍ରତି ପ୍ରତ୍ୟାଦେଶ ହୋଇଥିଲା “ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ସେମାନଙ୍କ ଛଡ଼ା ତୁମ୍ଭ ସମ୍ପ୍ରଦାୟର ଅନ୍ୟ କେହି ବିଶ୍ୱାସ କରିବେ ନାହିଁ, ଅତଏବ ସେମାନେ ଯାହା କରୁ ଅଛନ୍ତି ସେଥିପାଇଁ ତୁମ୍ଭେ ଦୁଃଖିତ ହୁଅନା ।୩୬।

“ଏବଂ ଅମ୍ଭର ଚକ୍ଷୁ ଆଗରେ ଓ ଅମ୍ଭର ଆଦେଶ ଅନୁଯାୟୀ ତୁମ୍ଭେ ଗୋଟାଏ ନୌକା ନିର୍ମାଣକର ଏବଂ ଅତ୍ୟାଚାରୀମାନଙ୍କ ସମ୍ବନ୍ଧରେ ଅମ୍ଭକୁ କିଛି କୁହନା; ନିଶ୍ଚୟ ସେମାନେ ଜଳମଗ୍ନ ହେବେ” ।୩୭।

ଏବଂ ସେ ନୌକା ନିର୍ମାଣ କରିବାକୁ ଲାଗିଲେ, ଯେତେବେଳେ ତାଙ୍କ ସମ୍ପ୍ରଦାୟର ପ୍ରଧାନ ବ୍ୟକ୍ତିମାନେ ତାଙ୍କ ପାଖ ଦେଇ ଯାଉଥିଲେ ସେତେବେଳେ ସେମାନେ ତାଙ୍କୁ ଉପହାସ କରୁଥିଲେ, ସେ କହିଥିଲେ, “ଯଦି ତୁମ୍ଭେମାନେ ଅମ୍ଭମାନଙ୍କୁ ଉପହାସ କର; ତେବେ ନିଶ୍ଚୟ ଅମ୍ଭେମାନେ ମଧ୍ୟ ତୁମ୍ଭମାନଙ୍କୁ ଉପହାସ କରିବୁଁ, ଯେପରି ତୁମ୍ଭେମାନେ ଉପହାସ କରୁଅଛ ।୩୮।

---

୩୧ । ତୁମ୍ଭମାନଙ୍କର ଚକ୍ଷୁ ଯେଉଁମାନଙ୍କୁ ନୀଚ ମନେ କରେ—ଯେଉଁ ବିଶ୍ୱାସକାରୀମାନଙ୍କୁ ତୁମ୍ଭେମାନେ ଘୃଣାଚକ୍ଷୁରେ ଦେଖୁଅଛ ।

୩୫ । ସେମାନେ—ମହାପୁରୁଷ ମୋହାମ୍ମଦଙ୍କ ବିପକ୍ଷ ଲୋକମାନେ । ମହାପୁରୁଷ ନୂହଙ୍କ ବିବରଣ ମଧ୍ୟରେ ଏହି ଶ୍ଳୋକରେ ମହାପୁରୁଷମୋହାମ୍ମଦଙ୍କ ବିପକ୍ଷ ଲୋକମାନଙ୍କ ମିଥ୍ୟା ଉକ୍ତି ଏବଂ ତାହାର ଉତ୍ତର ଦିଆଯାଇଅଛି । ସେମାନେ ବାରମ୍ବାର କହୁଥିଲେ ଯେ କୋରାନକୁ ମୋହାମ୍ମଦ ନିଜେ ରଚନାକରି ପରମେଶ୍ୱରଙ୍କଠାରୁ ଅବତୀର୍ଣ୍ଣ ବୋଲି କହୁଅଛନ୍ତି । ଏହାର ଉତ୍ତର ଏହି ଅଧ୍ୟାୟର ଶ୍ଳୋ୧୩।୧୪ରେ ଦିଆ ଯାଇଅଛି । ଏହି ଶ୍ଳୋକରେ ଏହାର ଚରମ ଉତ୍ତର ଦିଆଯାଇଅଛି ।

"ତୁମ୍ଭେମାନେ ନିଶ୍ଚୟ ଜାଣି ପାରିବ ଯେ କାହାପ୍ରତି ଶାସ୍ତି ଉପସ୍ଥିତ ହେବ ଯଦ୍ଦ୍ୱାରା ସେ ଲାଞ୍ଛିତ ହେବ ଏବଂ କାହାପ୍ରତି ସ୍ଥାୟୀ ଶାସ୍ତି ଉପସ୍ଥିତ ହେବ" ।୩୯।

ଅବଶେଷରେ ଯେତେବେଳେ ଆମ୍ଭର ଆଦେଶ ଉପସ୍ଥିତ ହୋଇ ଥିଲା ଏବଂ ଝରଣାର ଜଳସ୍ରୋତ ଉଚ୍ଛୁଳି ଉଠିଥିଲା, ଆମ୍ଭେ କହିଥିଲୁ, "ପ୍ରତ୍ୟେକ ପ୍ରାଣିର ଏକ ଏକ ଯୋଡ଼ା ଏବଂ ଯେଉଁମାନଙ୍କ ସମ୍ବନ୍ଧରେ ପୂର୍ବେ କଥିତ ହୋଇଛି ସେମାନଙ୍କ ଛଡ଼ା ତୁମ୍ଭର ପରିବାରବର୍ଗ ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ସେମାନଙ୍କୁ ଏଥିରେ ଆରୋହଣ କରାଅ;" ଏବଂ ଅଳ୍ପ ସଂଖ୍ୟକ ବ୍ୟତୀତ ତାଙ୍କ ସହିତ ବିଶ୍ୱାସ ସ୍ଥାପନ କରି ନଥିଲେ । ୪୦ ।

ଏବଂ ନୂହ କହିଥିଲେ ପରମେଶ୍ୱରଙ୍କ ନାମ ନେଇ ଏଥିରେ ଆରୋହଣକର । ଏହା ଗତି କରୁ ଅଥବା ଏହା ସ୍ଥିର ରହୁ; ନିଶ୍ଚୟ ଆମ୍ଭର ପାଳନକର୍ତ୍ତା କ୍ଷମାଶୀଳ କରୁଣାମୟ ।୪୧।

ଏବଂ ନୌକା ସେମାନଙ୍କୁ ନେଇ ପର୍ବତପରି ତରଙ୍ଗମାଳା ମଧ୍ୟରେ ଗତି କରିବାକୁ ଲାଗିଲା; ଏବଂ ନୂହ ତାଙ୍କ ପୁତ୍ରକୁ ଡାକିଥିଲେ ଏବଂ ସେ କିଛି ଦୂରରେ ଥିଲା "ହେ ଆମ୍ଭର ପୁତ୍ର, ତୁମ୍ଭେ ଆମ୍ଭମାନଙ୍କ ସଙ୍ଗରେ ଆରୋହଣ କର ଏବଂ ଅବିଶ୍ୱାସକାରୀ ମାନଙ୍କ ସଙ୍ଗରେ ରହନା" ।୪୨।

ସେ କହିଥିଲା, "ଆମ୍ଭେ ପର୍ବତରେ ଆଶ୍ରୟ ଗ୍ରହଣ କରିବୁଁ ଯାହା ଆମ୍ଭକୁ ଜଳରୁ ରକ୍ଷା କରିବ," ସେ କହିଥିଲେ, "ଆଜି ପରମେଶ୍ୱରଙ୍କ ଆଦେଶ ଶାସ୍ତିରୁ କେହି ରକ୍ଷାକାରୀ ନାହିଁ, କିନ୍ତୁ ଯାହାକୁ ସେ ଅନୁଗ୍ରହ କରି ଅଛନ୍ତି (ସେ ରକ୍ଷା ପାଇବ)"; ଏବଂ ତରଙ୍ଗ ଉଭୟଙ୍କ ମଧ୍ୟରେ ଅନ୍ତରାୟ ହୋଇଥିଲା ଏବଂ ସେ ଜଳମଗ୍ନ ହୋଇଥିଲା ।୪୩।

ଏହାପରେ କୁହାଯାଇଥିଲା, "ହେ ପୃଥିବୀ ! ତୁମ୍ଭେ ନିଜର ଜଳରାଶି ଶୋଷଣକର ଏବଂ ହେ ଆକାଶ, ତୁମ୍ଭେ (ଜଳବର୍ଷଣରୁ) ନିବୃତ୍ତ ହୁଅ"; ଏବଂ ଜଳ ହ୍ରାସ ହୋଇଥିଲା ଓ କାର୍ଯ୍ୟ ସମାପ୍ତ ହୋଇଥିଲା ଏବଂ ଜୁଦି ପର୍ବତ ଉପରେ ଏହା ଯାଇ ଲାଗି ଥିଲା ଏବଂ କୁହାଯାଇଥିଲା ଯେ ଅତ୍ୟାଚାରୀ ସମ୍ପ୍ରଦାୟ ଦୂରୀଭୂତ ହେଉ ! ୪।

ତାପରେ ନୂହ ନିଜ ପାଳନକର୍ତ୍ତାଙ୍କୁ ଆହ୍ୱାନ କରି କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଆମ୍ଭର ପୁତ୍ର ଆମ୍ଭ ପରିବାରର ଅନ୍ତର୍ଭୁକ୍ତ; ଏବଂ ନିଶ୍ଚୟ ତୁମ୍ଭର ଅଙ୍ଗୀକାର ସତ୍ୟ ଏବଂ ତୁମ୍ଭେ ବିଚାରପତିମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ବିଚାରପତି ।"୪୫।

ପରମେଶ୍ୱର କହିଥିଲେ, "ହେ ନୂହ ! ନିଶ୍ଚୟ ସେ ତୁମ୍ଭର ପରିବାରର ଅନ୍ତର୍ଭୁକ୍ତ ନୁହେଁ; ନିଶ୍ଚୟ ତାହାର ଆଚରଣ ମନ୍ଦ ଅଟେ; ଅତଏବ ଯେଉଁ ବିଷୟରେ ତୁମ୍ଭର ଜ୍ଞାନ ନାହିଁ ସେ ବିଷୟରେ ଆମ୍ଭକୁ

---

୪୦ । ଯେଉଁମାନଙ୍କ ସମ୍ବନ୍ଧରେ ପୂର୍ବେ କଥିତ ହୋଇଅଛି—ଅର୍ଥାତ ନୂହଙ୍କ ପରିବାର ମଧ୍ୟରୁ ଯେଉଁମାନେ ଜଳମଗ୍ନ ହେବେ ବୋଲି ପୂର୍ବରୁ ସ୍ଥିର ହୋଇଥିଲା ଯଥା ତାଙ୍କର ଅବିଶ୍ୱାସକାରୀ ପୁତ୍ର ଓ ଅବିଶ୍ୱାସକାରିଣୀ ସ୍ତ୍ରୀ ।

୪୪ । ଜୁଦିପର୍ବତ—ଆର୍ମେନିଆ ଦେଶରେ ଥିବା ଏକ ପର୍ବତର ନାମ ।

୪୫।୪୬ । ପରମେଶ୍ୱରଙ୍କ ଖାଣ୍ଟି ଭକ୍ତମାନଙ୍କ ପରି ମହାପୁରୁଷ ନୂହ ଦୟାଶୀଳ ଥିଲେ । ଏଥିପାଇଁ ସେ ତାଙ୍କ ପୁତ୍ର ବିୟୋଗହେତୁ ଦୁଃଖ ପ୍ରକାଶ କରିଥିଲେ । ମାତ୍ର ଏଠାରେ ତାଙ୍କୁ ଉପଦେଶ ଦିଆଯାଇଅଛି ଯେ ଧର୍ମ ସହିତ ପାପର ମିଳାମିଶା ହୋଇ ନ ପାରେ । ଆଧ୍ୟାତ୍ମିକ ନ୍ୟାୟ ବିଧାନ ବଦଳି ନ ପାରେ । ଅବିଶ୍ୱାସ ହେତୁ ନୂହଙ୍କ ପୁତ୍ର ତାଙ୍କର ପାରିବାରିକ ସମ୍ପର୍କରୁ ବଞ୍ଚିତ ହୋଇଥିଲେ ।

ଅନୁରୋଧ କରନା; ନିଶ୍ଚୟ ଅମ୍ଭେ ତୁମ୍ଭଙ୍କୁ ଉପଦେଶ ପ୍ରଦାନ କରୁଅଛୁଁ ଯେ ଏହାଦ୍ୱାରା ତୁମ୍ଭେ ମୂର୍ଖମାନଙ୍କ ଅନ୍ତର୍ଗତ ହୋଇଯିବ" ।୪୬।

ନୂହ୍ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଅମ୍ଭେ ତୁମ୍ଭର ଆଶ୍ରୟ ପ୍ରାର୍ଥନା କରୁଅଛୁଁ ଯେ ଯେଉଁ ବିଷୟରେ ଅମ୍ଭର ଜ୍ଞାନ ନାହିଁ ଅମ୍ଭେ ସେ ବିଷୟରେ ତୁମ୍ଭଙ୍କୁ ଅନୁରୋଧ କରିଅଛୁଁ; ଏବଂ ଯଦି ତୁମ୍ଭେ ଅମ୍ଭଙ୍କୁ କ୍ଷମା ନ କର ଏବଂ ଅମ୍ଭପ୍ରତି ଅନୁଗ୍ରହ ନ କର ତେବେ ଅମ୍ଭେ କ୍ଷତିଗ୍ରସ୍ତ ମାନଙ୍କର ଅନ୍ତର୍ଭୁକ୍ତ ହେବୁଁ ।"୪୭।

କୁହାଯାଇଥିଲା, "ହେ ନୂହ ! ଅମ୍ଭଠାରୁ ଶାନ୍ତି ଏବଂ ତୁମ୍ଭପ୍ରତି ଓ ତୁମ୍ଭର ସଙ୍ଗୀମାନଙ୍କ ମଧ୍ୟରେ ଥିବା ସମ୍ପ୍ରଦାୟମାନଙ୍କ ପ୍ରତି କଲ୍ୟାଣ ସହିତ (ନୌକାରୁ) ଅବତରଣ କର; ଏବଂ (ତୁମ୍ଭବଂଶରୁ) ବାହିଲ ସମ୍ପ୍ରଦାୟ ଉତ୍ପନ୍ନ ହେବେ ଯେଉଁମାନଙ୍କୁ ଅମ୍ଭେ ଶୀଘ୍ର ସୁଫଳ ପ୍ରଦାନ କରିବୁଁ, ତାପରେ (ପରକାଳରେ) ଅମ୍ଭର ଯନ୍ତ୍ରଣାପ୍ରଦ ଶାସ୍ତି ସେମାନଙ୍କୁ ସ୍ପର୍ଶ କରିବ ।"୪୮।

(ହେ ମୋହମ୍ମଦ) ଏହା ସେହି ସବୁ ଅଦୃଶ୍ୟ ବିଷୟର ସମ୍ବାଦ ଯାହା ଅମ୍ଭେ ତୁମ୍ଭପ୍ରତି ପ୍ରତ୍ୟାଦେଶ କରିଅଛୁଁ; ଏହା ତୁମ୍ଭେ କିମ୍ବା ତୁମ୍ଭର ସମ୍ପ୍ରଦାୟ ଏଥିପୂର୍ବେ ଜାଣି ନଥିଲେ; ଅତଏବ ଧୈର୍ଯ୍ୟ ଧାରଣ କର; ନିଶ୍ଚୟ ଧର୍ମଭୀରୁମାନଙ୍କ ପାଇଁ ଶୁଭ ପରିଣାମ ।୪୯।

### ୫ମ ବିଭାଗ

ଏବଂ ଆଦ୍ ସମ୍ପ୍ରଦାୟଙ୍କ ପ୍ରତି ସେମାନଙ୍କର ଭାଇ ହୁଦ୍ (ପ୍ରେରିତ ହୋଇଥିଲେ); ସେ କହିଥିଲେ, "ହେ ଅମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ ପରମେଶ୍ୱରଙ୍କୁ ଉପାସନା କର, ତାଙ୍କ ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ ଉପାସ୍ୟ ନାହିଁ; ତୁମ୍ଭେମାନେ ଏ ବିଷୟରେ କେବଳ ମିଥ୍ୟା କଳ୍ପନା କରୁଅଛ ।୫୦

"ହେ ଅମ୍ଭର ସମ୍ପ୍ରଦାୟ ! ଅମ୍ଭେ ଏହାପାଇଁ ତୁମ୍ଭମାନଙ୍କଠାରୁ କୌଣସି ପାରିଶ୍ରମିକ ମାଗୁନାହୁଁ; ଯେ ଅମ୍ଭଙ୍କୁ ସୃଷ୍ଟି କରି ଅଛନ୍ତି କେବଳ ତାଙ୍କର ନିକଟରେ ଅମ୍ଭର ପ୍ରତିଦାନ; ତେବେ କଅଣ ତୁମ୍ଭେମାନେ ବୁଝିପାରୁ ନାହଁ ?୫୧।

"ଏବଂ ହେ ଅମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ ନିଜ ପାଳନ କର୍ତ୍ତାଙ୍କର କ୍ଷମାପ୍ରାର୍ଥନା କର ତାଙ୍କର ଅତିକୁ ମନଯୋଗ ଦିଅ, ସେ ତୁମ୍ଭମାନଙ୍କ ଉପରେ ଆକାଶରୁ ପ୍ରଚୁର ପରିମାଣରେ ଜଳବର୍ଷଣ କରାଇବେ, ଏବଂ ସେ ଅଧିକ ଶକ୍ତି ଦେଇ ତୁମ୍ଭମାନଙ୍କର ଶକ୍ତି ବଢ଼ାଇବେ, ଏବଂ ତୁମ୍ଭେମାନେ ଅପରାଧୀ ହୋଇ ଫେରି ଯାଅନା ।"୫୨।

ସେମାନେ କହିଥିଲେ, "ହେ ହୁଦ୍ ! ତୁମ୍ଭେ ଅମ୍ଭମାନଙ୍କ ନିକଟକୁ କୌଣସି ପ୍ରକାଶ୍ୟ ନିଦର୍ଶନ ଆଣିନାହଁ ଏବଂ ଅମ୍ଭେମାନେ ତୁମ୍ଭ କଥାରେ ଅମ୍ଭମାନଙ୍କର ଉପାସ୍ୟମାନଙ୍କୁ ଛାଡ଼ିବୁଁ ନାହିଁ ଏବଂ ଅମ୍ଭେମାନେ ତୁମ୍ଭପ୍ରତି ବିଶ୍ୱାସକାରୀ ନୋହୁଁ ।୫୩।

---

୪୮ । ସେମାନଙ୍କୁ ସ୍ପର୍ଶ କରିବ=ଜାତିର ସମ୍ପ୍ରଦାୟ ମଧ୍ୟରୁ ଯେଉଁମାନେ ଅବାଧ୍ୟ ଓ ଅବିଶ୍ୱାସୀ ହେବେ କେବଳ ସେହିମାନେହିଁ ଶାସ୍ତି ପାଇବେ ।

୪୯ । ମହାପୁରୁଷନୂହ୍ଙ୍କ ବିବରଣ ଶେଷପରେ ଏହି ଶ୍ଳୋକରେ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ଦେଇ କହୁଅଛନ୍ତି, "ତୁମ୍ଭେ ଧୈର୍ଯ୍ୟଧର, ନୂହଙ୍କ ବିପକ୍ଷ ଲୋକମାନଙ୍କର ଯେଉଁ ଦଶା ଘଟିଥିଲା ତୁମ୍ଭର ବିପକ୍ଷ ଲୋକମାନଙ୍କର ମଧ୍ୟ ସେହି ଦଶା ହେବ ଏବଂ ତୁମ୍ଭର ସଙ୍ଗୀମାନଙ୍କର ପରିଣାମ ଭଲ ହେବ ।"

୫୦-୬୦ । ମହାପୁରୁଷ ହୁଦ୍ ଏବଂ ତାଙ୍କର ସମ୍ପ୍ରଦାୟ ଆଦ୍ଙ୍କ ବିବରଣ ବର୍ଣ୍ଣିତ ହୋଇଅଛି ।

"ଆମ୍ଭେମାନେ ଏହାଛଡ଼ା କିଛି କହୁନାହୁଁ ଯେ ଆମ୍ଭମାନଙ୍କର ଉପାସ୍ୟ ମଧ୍ୟରୁ କେହି କେହି କୁଦୃଷ୍ଟି ଦ୍ୱାରା ତୁମ୍ଭର ମତିଭ୍ରମ କରି ଅଛନ୍ତି ।" ସେ କହିଥିଲେ, "ଆମ୍ଭେ ପରମେଶ୍ୱରଙ୍କୁ ସାକ୍ଷୀ କରୁଅଛୁଁ ଏବଂ ତୁମ୍ଭେମାନେ ମଧ୍ୟ ସାକ୍ଷୀରହି ଯେ ତୁମ୍ଭେମାନେ (ପରମେଶ୍ୱରଙ୍କ ସହିତ) ଯେ ଅଂଶୀ ସ୍ଥାପନ କରୁଅଛ, ନିଶ୍ଚୟ ଆମ୍ଭେ ସେଥିରୁ ବିମୁକ୍ତ ୫୪।

"ତାଙ୍କ ବ୍ୟତୀତ (ଅନ୍ୟ ଉପାସ୍ୟ କେହିନାହିଁ) ଅତଏବ ତୁମ୍ଭେମାନେ ସମସ୍ତେ ଆମ୍ଭ ବିରୁଦ୍ଧରେ ମନ୍ତ୍ରଣା କର, ତାପରେ ଆମ୍ଭକୁ ଅବସର ଦିଅନା ।୫୫।

"ନିଶ୍ଚୟ ଆମ୍ଭେ ଆମ୍ଭର ପାଳନକର୍ତ୍ତା ଓ ତୁମ୍ଭମାନଙ୍କର ପାଳନକର୍ତ୍ତା ପରମେଶ୍ୱରଙ୍କ ଉପରେ ନିର୍ଭର କରୁଁ; ଏପରି କୌଣସି ବିଚରଣଶୀଳ ପ୍ରାଣୀ ନାହିଁ ଯେକି ତାଙ୍କ କବଳରେ ନାହିଁ; ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ସରଳ ପଥରେ ଅଛନ୍ତି ।୫୬।

"କିନ୍ତୁ ଯଦି ତୁମ୍ଭେମାନେ ସତ୍ପଥରୁ ଫେରିଯାଅ, ତେବେ ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କ ନିକଟରେ ତାହା ପ୍ରଚାର କରିଦେଇ ଅଛୁଁ ଯାହା ସହିତ ଆମ୍ଭକୁ ତୁମ୍ଭମାନଙ୍କ ପ୍ରତି ପ୍ରେରଣ କରା ହୋଇଅଛି, ଏବଂ ଆମ୍ଭର ପାଳନକର୍ତ୍ତା ତୁମ୍ଭମାନଙ୍କ ପରିବର୍ତ୍ତରେ ଅନ୍ୟ ସମ୍ପ୍ରଦାୟକୁ ସ୍ଥଳାଭିଷିକ୍ତ କରିବେ, ଏବଂ ତୁମ୍ଭେମାନେ ତାଙ୍କର କିଛିମାତ୍ର ଅନିଷ୍ଟ କରି ପାରିବ ନାହିଁ; ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ସବୁ ବିଷୟ ଉପରେ ରକ୍ଷକ ।"୫୭।

ଏବଂ ଯେତେବେଳେ ଆମ୍ଭର ଆଦେଶ ଉପସ୍ଥିତ ହୋଇଥିଲା, ଆମ୍ଭେ ନିଜ ଅନୁଗ୍ରହରୁ ହୁଦ୍ ଏବଂ ଯେ ସବୁ ବିଶ୍ୱାସସ୍ଥାପନକାରୀ ତାଙ୍କ ସଙ୍ଗରେ ଥିଲେ ସେମାନଙ୍କୁ ଉଦ୍ଧାର କରିଥିଲୁଁ ଏବଂ କଠୋର ଶାସ୍ତିରୁ ସେମାନଙ୍କୁ ମୁକ୍ତିଦାନ କରିଥିଲୁଁ ।୫୮।

ଏବଂ ଏହି ଆଦ୍, (ସମ୍ପ୍ରଦାୟ ଥିଲେ), ସେମାନେ ସେମାନଙ୍କର ପାଳନକର୍ତ୍ତାଙ୍କର ନିଦର୍ଶନ ଅସ୍ୱୀକାର କରିଥିଲେ ଏବଂ ସେମାନଙ୍କ ପ୍ରେରିତପୁରୁଷମାନଙ୍କୁ ଅଗ୍ରାହ୍ୟ କରିଥିଲେ ଏବଂ ସେମାନେ ପ୍ରତ୍ୟେକ ବିରୁଦ୍ଧାଚାରୀର ଆଦେଶର ଅନୁସରଣ କରିଥିଲେ ।୫୯।

ପୃଥିବୀରେ ଏବଂ ପୁନରୁତ୍ଥାନ ଦିବସରେ ସେମାନଙ୍କ ଉପରେ ଅଭିଶାପ ପ୍ରେରିତ ହୋଇଅଛି, ସାବଧାନ ! ଆଦ୍ ସମ୍ପ୍ରଦାୟ ନିଶ୍ଚୟ ସେମାନଙ୍କ ପାଳନକର୍ତ୍ତାଙ୍କୁ ଅବିଶ୍ୱାସ କରିଥିଲେ; ସାବଧାନ ! ହୁଦ୍‌ଙ୍କ ସମ୍ପ୍ରଦାୟ ଆଦି ଜାତିର ସର୍ବନାଶ ।୬୦।

## ଷଷ୍ଠ ବିଭାଗ

ଏବଂ ସମୁଦ୍ ସମ୍ପ୍ରଦାୟଙ୍କ ପ୍ରତି ସେମାନଙ୍କର ଭାଇ ସ୍ୱାଲେହ୍ (ପ୍ରେରିତ ହୋଇଥିଲେ); ସେ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର, ତାଙ୍କ ବ୍ୟତୀତ ତୁମ୍ଭ

---

୫୪ । ମହାପୁରୁଷ ହୁଦ୍‌ଙ୍କ ବିପକ୍ଷ ଲୋକମାନେ ତାଙ୍କୁ କହିଥିଲେ, "ଆମ୍ଭମାନଙ୍କ ଉପାସ୍ୟ ମଧ୍ୟରୁ କେହି ତୁମ୍ଭର ମସ୍ତିଷ୍କ ବିକୃତ କରିଦେଇଅଛନ୍ତି; ସେଥିପାଇଁ ତୁମ୍ଭେ ଏପରି କହୁଅଛ ।" ହୁଦ୍ ଉତ୍ତରଦେଇଥିଲେ, "ଆମ୍ଭେ ପରମେଶ୍ୱର ଏବଂ ତୁମ୍ଭମାନଙ୍କୁ ସାକ୍ଷ୍ୟ ରଖି କହୁଅଛୁଁ କି ତୁମ୍ଭେମାନେ ଯାହା କହୁଅଛ ଆମ୍ଭେ ସେଥିରେ ବିଶ୍ୱାସ କରୁନାହୁଁ ।"

୫୭ । ଆମ୍ଭେ ଅର୍ଥାତ୍ ହୁଦ୍ । ତୁମ୍ଭମାନଙ୍କ ପରିବର୍ତ୍ତରେ=ତୁମ୍ଭମାନଙ୍କୁ ବିନାଶ କରି ତୁମ୍ଭସ୍ଥାନରେ । ସ୍ଥଳାଭିଷିକ୍ତ କରିବେ—ଉତ୍ତରାଧିକାରୀ ସ୍ୱରୂପ ବସାଇବେ ।

୫୮ । ଆମ୍ଭେ—ପରମେଶ୍ୱର । ଆଦେଶ=ଦଣ୍ଡାଦେଶ ।

ମାନଙ୍କର ଅନ୍ୟ କେହି ଉପାସ୍ୟନାହିଁ, ସେହି ତୁମ୍ଭମାନଙ୍କୁ ମୃତ୍ତିକାରୁ ସୃଷ୍ଟି କରି ଅଛନ୍ତି ଏବଂ ସେଥିରେ ତୁମ୍ଭମାନଙ୍କର ବାସସ୍ଥାନ କରି ଦେଇ ଅଛନ୍ତି, ଅତଏବ ତାଙ୍କଠାରେ କ୍ଷମା ପ୍ରାର୍ଥନାକର, ତାପରେ ତାଙ୍କର ଆଡ଼କୁ ମନଯୋଗ ଦିଅ ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ସବୁ ବେଳେ ତୁମ୍ଭମାନଙ୍କ ନିକଟରେ ଅଛନ୍ତି ଓ(ପ୍ରାର୍ଥନା) ଗ୍ରହଣ କରନ୍ତି ।"୬୧।

ସେମାନେ କହିଥିଲେ, "ହେ ସ୍ୱାଲେହ ! ନିଶ୍ଚୟ ଏଥିପୂର୍ବେ ତୁମ୍ଭ ଉପରେ ଆମ୍ଭମାନଙ୍କ ଅନେକ ଆଶାଥିଲା; ବର୍ତ୍ତମାନ କଅଣ ତୁମ୍ଭେ ଆମ୍ଭମାନଙ୍କୁ ଆମ୍ଭର ପୂର୍ବପୁରୁଷମାନେ ଯାହାର ଉପାସନା କରୁଥିଲେ ତାହାର ଉପାସନା କରିବାକୁ ନିଷେଧ କରୁଅଛ ନିଶ୍ଚୟ ତୁମ୍ଭେ ଆମ୍ଭମାନଙ୍କୁ ଯାହାଙ୍କ ଆଡ଼କୁ ଆହ୍ୱାନ କରୁଅଛ ସେ ବିଷୟରେ ଅମ୍ଭେମାନେ ସୁନିଶ୍ଚିତ ଅଶାନ୍ତିପୂର୍ଣ୍ଣ ସନ୍ଦେହରେ ରହିଅଛୁଁ ।"୬୨।

ସ୍ୱାଲେହ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ କଅଣ ଲକ୍ଷ୍ୟ କରୁନାହିଁ ଯେ ଯଦି ଅମ୍ଭେ ନିଜ ପାଳନକର୍ତ୍ତାଙ୍କର ପ୍ରକାଶ୍ୟ ନିଦର୍ଶନ ପାଇଥାଉଁ ଏବଂ ସେ ଆମ୍ଭକୁ ତାଙ୍କ ନିକଟରୁ, ଅନୁଗ୍ରହ ଦାନ କରିଥାନ୍ତି, ତାପରେ ଯଦି ଅମ୍ଭେ ତାଙ୍କର ଅବାଧ୍ୟ ହେଉଁ ତେବେ ପରମେଶ୍ୱରଙ୍କ ବିରୁଦ୍ଧରେ କିଏ ଆମ୍ଭକୁ ସାହାଯ୍ୟ କରିବ ? ସେତେବେଳେ (ଆମ୍ଭର) କ୍ଷତି ଛଡ଼ା ତୁମ୍ଭେମାନେ ଆଉ କିଛି କରି ପାରିବ ନାହିଁ" ।୬୩।

"ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ଏହି ପରମେଶ୍ୱରଙ୍କ ଉଷ୍ଟ୍ରୀ ତୁମ୍ଭମାନଙ୍କପାଇଁ ନିଦର୍ଶନ; ଅତଏବ ତାହାକୁ ପରମେଶ୍ୱରଙ୍କ ଭୂମିରେ ଚରିବା ପାଇଁ ଛାଡ଼ିଦିଅ ଏବଂ ତାହାକୁ ଅନିଷ୍ଟ ସହିତ ସ୍ପର୍ଶ କରନା, ନଚେତ ଶୀଘ୍ର ଏକ ଶାସ୍ତି ତୁମ୍ଭମାନଙ୍କୁ ଆକ୍ରମଣ କରିବ" ।୬୪।

କିନ୍ତୁ ସେମାନେ ତାକୁ ହତ୍ୟା କରିଥିଲେ, ସୁତରାଂ ସ୍ୱାଲେହ କହିଥିଲେ, "ତୁମ୍ଭେମାନେ ତିନିଦିନ ପର୍ଯ୍ୟନ୍ତ ନିଜ ନିଜ ଘରେ ଆମୋଦ ଉପଭୋଗ କର; ଏହି ଅଙ୍ଗୀକାର ଅସତ୍ୟ ହେବ ନାହିଁ" ।୬୫।

ତାପରେ ଯେତେବେଳେ ଆମ୍ଭର ଆଦେଶ ଉପସ୍ଥିତ ହୋଇଥିଲା, ଅମ୍ଭେ ସେହି ଦିନର ଲଜ୍ଜାରୁ ନିଜର ଅନୁଗ୍ରହ ଦ୍ୱାରା ସ୍ୱାଲେହ ଏବଂ ତାଙ୍କ ସହିତ ବିଶ୍ୱାସକାରୀମାନଙ୍କୁ ରକ୍ଷା କରିଥିଲୁଁ; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ଶକ୍ତିଶାଳୀ ମହା ପରାକ୍ରାନ୍ତ ।୬୬।

ଏବଂ ଅତ୍ୟାଚାରୀମାନଙ୍କୁ ଏକ ଭୀଷଣ ଧ୍ୱନି ଆକ୍ରମଣ କରିଥିଲା, ତାପରେ ସକାଳ ବେଳକୁ ସେମାନେ ନିଜ ନିଜ ଗୃହରେ ମୃତହୋଇ ମୁହଁମାଡ଼ି ପଡ଼ି ରହିଥିଲେ, ।୬୭।

ଯେପରିକି ସେଥିମଧ୍ୟରେ କଦାପି ସେମାନଙ୍କର ବାସସ୍ଥାନ ନଥିଲା; ସାବଧାନ ! ନିଶ୍ଚୟ ସମୁଦ୍ ଜାତି ସେମାନଙ୍କର ପାଳନକର୍ତ୍ତାଙ୍କ ପ୍ରତି ଅବିଶ୍ୱାସ କରିଥିଲେ; ସାବଧାନ ! ସମୁଦ୍ ଜାତିର ସର୍ବନାଶ ।୬୮।

---

୬୧।୬୮ । ମହାପୁରୁଷ ସ୍ୱାଲେହ ଏବଂ ତାଙ୍କର ସମ୍ପ୍ରଦାୟ ସମୁଦ୍‌ଙ୍କ ବିବରଣ ବର୍ଣ୍ଣିତ ହୋଇଅଛି ।

୬୫ । ଉଷ୍ଟ୍ରୀର ହତ୍ୟାସମ୍ବନ୍ଧରେ ୨ମ ଅଧ୍ୟାୟର ୭୨-୭୮ ଶ୍ଳୋକ ଦେଖ ।

## ୭ମ ବିଭାଗ

ଏବଂ ନିଶ୍ଚୟ ଆମ୍ଭର ଦୂତମାନେ ସୁସମ୍ବାଦ ସହିତ ଇବ୍ରାହିମଙ୍କ ନିକଟକୁ ଆସି କହିଥିଲେ, "ଶାନ୍ତି" । ସେ ମଧ୍ୟ କହିଥିଲେ, "ଶାନ୍ତି !" ତାପରେ ସେ ଗୋବତ୍ସର ଭଜା ମାଂସ ଆଣିବାରେ ବିଳମ୍ବ କରି ନଥିଲେ ।୬୯।

କିନ୍ତୁ ଯେତେବେଳେ ସେ ଦେଖିଲେ ଯେ ସେମାନଙ୍କ ହାତସବୁ ସେଥିପ୍ରତି ପ୍ରସାରିତ ହେଉନାହିଁ ସେତେବେଳେ ସେ ସେମାନଙ୍କୁ ଅପରିଚିତ ବୋଲି ମନେ କରିଥିଲେ ଏବଂ ସେମାନଙ୍କଠାରୁ ଅନ୍ତରରେ ଭୀତ ହୋଇଥିଲେ; ସେମାନେ କହିଥିଲେ, "ଭୀତ ହୁଅନା, ନିଶ୍ଚୟ ଆମ୍ଭେମାନେ ଲୁତ୍‌ଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରିତ ହୋଇ ଅଛୁଁ" ।୭୦।

ଏବଂ ତାଙ୍କର ସ୍ତ୍ରୀ ଠିଆ ହୋଇଥିଲେ, ପରେ ସେ ହସିଥିଲେ, ତାପରେ ଆମ୍ଭେ ତାହାଙ୍କୁ ଇସ୍‌ହାକ୍ ସମ୍ବନ୍ଧରେ ଏବଂ ଇସ୍‌ହାକ୍‌ଙ୍କ ପରେ ତାଙ୍କ ପୁତ୍ର ୟାକୁବଙ୍କ ସମ୍ବନ୍ଧରେ ସୁସମ୍ବାଦ ଦେଇଥିଲୁଁ ।୭୧।

ଇବ୍ରାହିମଙ୍କ ସ୍ତ୍ରୀ କହିଥିଲେ, "ଆମ୍ଭର ପୋଡ଼ା କପାଳ ! ଆମ୍ଭର ସନ୍ତାନ ହେବ; ଯେତେବେଳେ ଆମ୍ଭେ ଅତି ବୃଦ୍ଧା ଏବଂ ଆମ୍ଭର ଏହି ସ୍ୱାମୀ ଅତି ବୃଦ୍ଧ ? ନିଶ୍ଚୟ ଏହା ଏକ ଆଶ୍ଚର୍ଯ୍ୟ ବ୍ୟାପାର" ।।୭୨।

ସେମାନେ କହିଥିଲେ, "ତୁମ୍ଭେ କଅଣ ପରମେଶ୍ୱରଙ୍କ ଆଦେଶକୁ ଅଦ୍ଭୁତ ମନେ କରୁଅଛ ? ହେ ଗୃହବାସୀମାନେ ! ତୁମ୍ଭମାନଙ୍କ ପ୍ରତି ପରମେଶ୍ୱରଙ୍କ ଅନୁଗ୍ରହ ଏବଂ ତାଙ୍କର କଲ୍ୟାଣ ରହିଅଛି; ନିଶ୍ଚୟ ସେ ମହାପ୍ରଶଂସିତ ମହା ଗୌରବାନ୍ୱିତ" ।୭୩।

ତାପରେ ଯେତେବେଳେ ଇବ୍ରାହିମଙ୍କଠାରୁ ଭୟ ଦୂର ହୋଇଥିଲା ଏବଂ ତାଙ୍କ ନିକଟରେ ସୁସମ୍ବାଦ ଉପସ୍ଥିତ ହୋଇଥିଲା, ସେତେବେଳେ ସେ ଲୁତ୍‌ଙ୍କ ସମ୍ପ୍ରଦାୟ ସମ୍ବନ୍ଧରେ ଆମ୍ଭ ସହିତ ତର୍କ କରିଥିଲେ ।୭୪।

ନିଶ୍ଚୟ ଇବ୍ରାହିମ ସହିଷ୍ଣୁ, କୋମଳ ହୃଦୟ (ପରମେଶ୍ୱରଙ୍କ ପ୍ରତି) ମନଯୋଗୀ ଥିଲେ ।୭୫।

ସ୍ୱର୍ଗଦୂତମାନେ (ତାଙ୍କୁ କହିଥିଲେ) "ହେ ଇବ୍ରାହିମ ! ଏଥିରୁ ନିବୃତ୍ତ ହୁଅ; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତାଙ୍କର ଆଦେଶ ଉପସ୍ଥିତ ହୋଇଅଛି ଏବଂ ନିଶ୍ଚୟ ସେମାନଙ୍କ ପ୍ରତି ଅନିବାର୍ଯ୍ୟ ଶାସ୍ତି ଉପସ୍ଥିତ ହେବ" ।୭୬।

---

୬୯ । ଇବ୍ରାହିମ ସ୍ୱର୍ଗଦୂତମାନଙ୍କୁ ଚିହ୍ନି ପାରି ନ ଥିଲେ ଏବଂ ସେମାନଙ୍କୁ ଅତିଥି ମନେ କରି ସେମାନଙ୍କ ଖାଇବାପାଇଁ ଭଜା ମାଂସ ଆଣି ଦେଇଥିଲେ ।

୭୦ । ଲୁତଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରିତ ହୋଇଅଛୁ=ଏହି ସ୍ୱର୍ଗଦୂତମାନେ ଦୁଷ୍କର୍ମଶୀଳ ପାପୀ ସଦମ ବାସୀ ଲୁତଙ୍କ ସମ୍ପ୍ରଦାୟକୁ ବିନାଶ କରିବା ପାଇଁ ଆସିଥିଲେ ।

୭୧ । ତାଙ୍କର ସ୍ତ୍ରୀ=ଇବ୍ରାହିମଙ୍କ ସ୍ତ୍ରୀ ସାରା । ହସିଥିଲେ—ବୃଦ୍ଧ ବୟସରେ ତାଙ୍କର ପୁତ୍ର ଜନ୍ମ ହେବାର ସମ୍ବାଦ ଶୁଣି ଇବ୍ରାହିମଙ୍କ ସ୍ତ୍ରୀ ଆନନ୍ଦ ଓ ବିସ୍ମୟରେ ହସିଥିଲେ ।

୭୪ । ଆମ୍ଭ ସହିତ ତର୍କ କରିଥିଲେ—ପରମେଶ୍ୱରଙ୍କ ସ୍ୱର୍ଗଦୂତମାନଙ୍କ ସହିତ ତର୍କ କରିଥିଲେ ଅର୍ଥାତ୍ ଲୁତ ସମ୍ପ୍ରଦାୟକୁ ରକ୍ଷା କରିବା ପାଇଁ ଅନୁରୋଧ କରିଥିଲେ ।

ଏବଂ ଯେତେବେଳେ ଆମ୍ଭର ଦୂତମାନେ ଲୁତ୍‌ଙ୍କ ନିକଟରେ ଉପସ୍ଥିତ ହୋଇଥିଲେ, ସେ ସେମାନଙ୍କ ପାଇଁ ଦୁଃଖିତ ହୋଇଥିଲେ ଏବଂ ସେମାନଙ୍କ ସମ୍ବନ୍ଧରେ ଅନ୍ତରରେ ସଙ୍କୁଚିତ ହୋଇଥିଲେ ଏବଂ ସେ କହିଥିଲେ, "ଏହା କଠିନ ଦିନ" । ୭୭।

ଏବଂ ତାଙ୍କର ସମ୍ପ୍ରଦାୟ ତାଙ୍କ ଆଡ଼କୁ ଦଉଡ଼ି ଆସି ତାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ, ଏବଂ ସେମାନେ ଏଥି ପୂର୍ବରୁ ମନ୍ଦକାର୍ଯ୍ୟରେ ଲିପ୍ତ ଥିଲେ; ଲୁତ୍ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଏଠାରେ ଆମ୍ଭର କନ୍ୟାମାନେ ଅଛନ୍ତି, ଏମାନେ ତୁମ୍ଭମାନଙ୍କ ପାଇଁ (ପୁରୁଷ ଅପେକ୍ଷା) ଅଧିକ ପବିତ୍ର, ଅତଏବ ପରମେଶ୍ୱରଙ୍କୁ ଭୟ କର ଏବଂ ଅମ୍ଭର ଅତିଥିମାନଙ୍କ ମଧ୍ୟରେ ଆମ୍ଭକୁ ଅପ୍ରସ୍ତୁତ କରନା; ତୁମ୍ଭମାନଙ୍କ ମଧ୍ୟରେ କଅଣ କେହି ସୁସଭ୍ୟ ଲୋକ ନାହିଁ ?" ।୭୮।

ସେମାନେ କହିଥିଲେ, "ତୁମ୍ଭେ ନିଶ୍ଚୟ ଜାଣ ଯେ ତୁମ୍ଭର କନ୍ୟାମାନଙ୍କୁ ଆମ୍ଭେମାନେ ଦରକାର କରୁ ନାହୁଁ ଏବଂ ତୁମ୍ଭେ ନିଶ୍ଚୟ ଜାଣ ଯାହା ଆମ୍ଭେମାନେ କାମନା କରୁ ଅଛୁ" ।୭୯।

ଲୁତ କହିଥିଲେ, "ହାୟ ! ଯଦି ତୁମ୍ଭମାନଙ୍କ ଉପରେ ଆମ୍ଭର ଶକ୍ତି ଥାଆନ୍ତା ଅଥବା ଆମ୍ଭେ କୌଣସି ସୁଦୃଢ଼ ସ୍ତମ୍ଭର ଆଶ୍ରୟ ଗ୍ରହଣ କରି ପାରନ୍ତୁ" ।୮୦।

ଦୂତମାନେ କହିଥିଲେ, "ହେ ଲୁତ୍ ! ନିଶ୍ଚୟ ଆମ୍ଭେମାନେ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ପ୍ରେରିତ ସେମାନେ କୌଣସିମତେ ତୁମ୍ଭଙ୍କୁ ସ୍ପର୍ଶ କରି ପାରିବେ ନାହିଁ, ଅତଏବ ତୁମ୍ଭେ ରାତ୍ରିର ଏକ ଅଂଶରେ ତୁମ୍ଭର ପରିବାର ସହିତ ସ୍ଥାନାନ୍ତରିତ ହୁଅ ଏବଂ ତୁମ୍ଭର ସ୍ତ୍ରୀ ବ୍ୟତୀତ ତୁମ୍ଭମାନଙ୍କ ମଧ୍ୟରୁ ଅନ୍ୟ କେହି ଯେପରି ପଛଆଡ଼କୁ ନ ଅନାନ୍ତି, କାରଣ ସେମାନଙ୍କ ପ୍ରତି ଯାହା ଘଟିବ ତାହା ପ୍ରତି ମଧ୍ୟ ସେଇଆ ଘଟିବା ସୁନିଶ୍ଚିତ; ନିଶ୍ଚୟ ପ୍ରଭାତ ସେମାନଙ୍କର ନିର୍ଦ୍ଦିଷ୍ଟ ସମୟ, ପ୍ରଭାତ ନିକଟବର୍ତ୍ତୀ ନୁହେ କି ?" ।୮୧।

ତାପରେ ଯେତେବେଳେ ଆମ୍ଭର ଆଦେଶ ଉପସ୍ଥିତ ହୋଇଥିଲା, ସେତେବେଳେ ଆମ୍ଭେ ସେମାନଙ୍କର ଉର୍ଦ୍ଧ୍ୱଭାଗ ସେମାନଙ୍କର ନିମ୍ନବର୍ତ୍ତୀ କରି ଦେଇଥିଲୁଁ ଏବଂ ଆମ୍ଭେ ସେମାନଙ୍କ ଉପରେ ଅବିଶ୍ରାନ୍ତ ଧାରରେ କଙ୍କର ଜାତୀୟ ପ୍ରସ୍ତର ବର୍ଷଣ କରିଥିଲୁଁ ।୮୨।

---

୭୭।୮୨ । ମହାପୁରୁଷ ଲୁତ୍ ଏବଂ ତାଙ୍କର ଅବାଧ୍ୟ ସମ୍ପ୍ରଦାୟର ବିଷୟ ବର୍ଣ୍ଣିତ ହୋଇଅଛି ।

୭୭ ଦୁଃଖିତ ହୋଇଥିଲେ=କାରଣ ଏହି ସ୍ୱର୍ଗଦୂତମାନେ ଅତି ସୁନ୍ଦର ବାଳକ ବେଶ ଦେଖା ଯାଉଥିଲେ ଏବଂ ଲୁତ ମନେ କରିଥିଲେ ଯାଲେ ସଦମ ନଗର ବାସୀମାନେ ଏମାନଙ୍କ ପ୍ରତି ପ୍ରଲୁବ୍ଧ ହୋଇ ପଡ଼ିବେ କିମ୍ବା ସେମାନଙ୍କୁ ବିଦେଶୀ ମନେ କରି ଆକ୍ରମଣ କରିବେ । ତାଙ୍କର ଏହି ଅଶଙ୍କା ଜାତ ହୋଇଥିଲା ।

ସଙ୍କୁଚିତ ହୋଇଥିଲେ=ସ୍ୱର୍ଗଦୂତମାନେ ଯଦି ନଗରବାସୀମାନଙ୍କ ଦ୍ୱାରା ଅପମାନିତ ହୁଅନ୍ତି, ତେବେ ଲୁତ ସେମାନଙ୍କ ସମ୍ମାନ ରକ୍ଷା ପାଇଁ ନିଜକୁ ଅସମର୍ଥ ମନେ କରିଥିଲେ ।

୭୮ । ଏଠାରେ ଆମ୍ଭର କନ୍ୟାମାନେ—ଆମ୍ଭର କନ୍ୟା ସ୍ୱରୂପ ଏହି ସଦମ ନଗରର ଅବିବାହିତା ଯୁବତୀମାନେ ।

ଏମାନେ ତୁମ୍ଭମାନଙ୍କ ପାଇଁ ପବିତ୍ରତର—ଏମାନଙ୍କୁ ବିବାହ କରି ଭାର୍ଯ୍ୟାରୂପେ ଗ୍ରହଣ କର ଏବଂ ପୁରୁଷମାନଙ୍କ ସଙ୍ଗେ ଅପବିତ୍ର ପାପ କାର୍ଯ୍ୟ କରନା ।

୮୦ । ତୁମ୍ଭମାନଙ୍କ ଉପରେ—ସଦମବାସୀ ଅତ୍ୟାଚାରୀମାନଙ୍କ ଉପରେ ।

୮୧ । ଦେଖ ଟୀକା ୭ମ ଅଧ୍ୟାୟ ଶ୍ଳୋ୮୦ରୁ ୮୪କ ।

୮୨ । ଅମ୍ଭର ଆଦେଶ—ପରମେଶ୍ୱରଙ୍କଠାରୁ ଶାସ୍ତିର ଆଦେଶ ।

ଉର୍ଦ୍ଧ୍ୱଭାଗ ନିମ୍ନବର୍ତ୍ତୀ କରି ଦେଇଥିଲୁଁ—ସମସ୍ତ ନଗରକୁ ଓଲଟ ପାଲଟ କରିଦେଇଥିଲୁଁ ।

ଏହା ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ଚହ୍ନିତ, ଏବଂ ଅତ୍ୟାଗୃସ୍ତମାନଙ୍କଠାରୁ ଏହା ଦୂରବର୍ତ୍ତୀ ନୁହେ ।୮୩।

## ୮ମ ବିଭାଗ

ଏବଂ ମଦାୟେନ ପ୍ରତି ସେମାନଙ୍କ ଭ୍ରାତା ଶୋୟେବ୍ (ପ୍ରେରିତ ହୋଇଥିଲେ) ସେ କହିଥିଲେ, "ହେ ଅମ୍ଭର ସମ୍ପ୍ରଦାୟ । ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର, ତାଙ୍କ ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ, ତୁମ୍ଭେମାନେ ମ ପିବାରେ ଏବଂ ଓଜନ କରିବାରେ କମ କରନା, ଅବଶ୍ୟ ଆମ୍ଭେ ତୁମ୍ଭମାନଙ୍କୁ ଧନ ବାନ ଦେଖୁଅଛୁଁ ଏବଂ ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କ ପାଇଁ ପରିବେଷ୍ଟନକାରୀ ଦିବସର ଶାସ୍ତିର ଆଶଙ୍କା କରୁଅଛୁଁ ।୮୪।

"ଏବଂ ହେ ଅମ୍ଭର ସମ୍ପ୍ରଦାୟ । ତୁମ୍ଭେମାନେ ପୂର୍ଣ୍ଣ ପୂର୍ଣ୍ଣ ମାପକର ଓ ଠିକ ଓଜନ କର ଏବଂ ଲୋକମାନଙ୍କୁ ସେମାନଙ୍କ ପ୍ରାପ୍ୟ ଜିନିଷମାନ କମ୍ କରି ଦିଅନା ଏବଂ ଅତ୍ୟାଗୃସ୍ତରୂପେ ପୃଥିବୀରେ ଅଶାନ୍ତି ସୃଷ୍ଟି କରି ବୁଲନା । ୮୫ ।

"ଯଦି ତୁମ୍ଭେମାନେ ବିଶ୍ୱାସକାରୀ ହୁଅ, ତେବେ ପରମେଶ୍ୱରଙ୍କ ପ୍ରଦତ୍ତ ଲବ୍ଧ ଅଂଶହିଁ ତୁମ୍ଭମାନଙ୍କ ପାଇଁ କଲ୍ୟାଣକର; ଏବଂ ଅମ୍ଭେ ତୁମ୍ଭମାନଙ୍କର ରକ୍ଷକ ନୋହୁଁ ।" ।୮୬।

ସେମାନେ କହିଥିଲେ, "ହେ ଶୋୟେବ ! ତୁମ୍ଭର ଉପାସନା କଅଣ ତୁମ୍ଭଙ୍କୁ ଅଦେଶ କରୁଅଛି ଯେ ଅମ୍ଭମାନଙ୍କର ପୂର୍ବପୁରୁଷମାନେ ଯାହାର ଉପାସନା କରୁଥିଲେ ତାହା ଅମ୍ଭେମାନେ ଛାଡ଼ି ଦେବୁଁ ଅଥବା ଆମ୍ଭମାନଙ୍କର ଧନ ସମ୍ପତ୍ତି ସମ୍ବନ୍ଧରେ ଆମ୍ଭମାନଙ୍କର ଇଚ୍ଛା ଅନୁଯାୟୀ କାର୍ଯ୍ୟକରି ପାରିବୁଁ ନାହିଁ ? ତୁମ୍ଭେ ତ ସ୍ଥିର ଜଣେ ସହିଷ୍ଣୁ ବୁଦ୍ଧିମାନ ଲୋକ ।" ।୮୭।

ଶୋୟେବ କହିଥିଲେ, "ହେ ଅମ୍ଭର ସମ୍ପ୍ରଦାୟ । ତୁମ୍ଭେମାନେ ତ ଦେଖୁଅଛ ଯେ ଆମ୍ଭେ ଆମ୍ଭର ପାଳନକର୍ତ୍ତାଙ୍କର ପ୍ରକାଶ୍ୟ ନିଦର୍ଶନ ଉପରେ ଅଛୁ ଏବଂ ସେ ଅମ୍ଭଙ୍କୁ ନିଜଠାରୁ ଉତ୍ତମ ଜୀବିକା ଦେଇ ଅଛନ୍ତି ? ଏବଂ ଅମ୍ଭେ ଇଚ୍ଛା କରୁନା ଯେ ଅମ୍ଭେ ତୁମ୍ଭମାନଙ୍କୁ ଯେଉଁ ବିଷୟରେ ନିଷେଧ କରୁଅଛୁଁ ସେ ବିଷୟରେ ଆମ୍ଭେ ତୁମ୍ଭମାନଙ୍କର କ୍ଷତ କରିବୁଁ; ଯେତେଦୂର ପାରୁଁ ତୁମ୍ଭମାନଙ୍କ ସଂଶୋଧନ କରିବା ଛଡ଼ା ଆମ୍ଭେ ଆଉ କିଛି ଇଚ୍ଛା କରୁନା; ଏବଂ ପରମେଶ୍ୱରଙ୍କ ସହଯୋଗ ଛଡ଼ା ଆମ୍ଭେ ଏଥିରେ କୃତକାର୍ଯ୍ୟ ହୋଇ ପାରିବୁଁ ନାହିଁ । ଆମ୍ଭେ ତାଙ୍କର ଉପରେ ନିର୍ଭର କରୁଁ ଏବଂ ତାଙ୍କର ଆଡ଼କୁ ମନଯୋଗ ଦେଉଁ ।୮୮।

---

୮୩ । ଏହା ଦୂରବର୍ତ୍ତୀ ନୁହେ—ମକ୍କାବାସୀ ବିଧର୍ମୀମାନଙ୍କୁ କୁହା ଯାଉ ଅଛି କି ଯଦି ସେମାନେ ଅନ୍ୟାୟ ଓ ବିଶୃଙ୍ଖଳ ସ୍ଥାପନ ନକରନ୍ତି ତେବେ ସେମାନଙ୍କ ପ୍ରତି ମଧ୍ୟ ଶୀଘ୍ର ଏହିପରି ଶାସ୍ତି ଉପସ୍ଥିତ ହୋଇପାରେ ।

୮୪ । ପରିବେଷ୍ଟନକାରୀ ଦିବସ—ଶେଷ ବିଗୃର ଦିନ ।

୮୪-୯୫ । ମହାପୁରୁଷ ଶୋୟେବ ଏବଂ ତାଙ୍କର ସମ୍ପ୍ରଦାୟ ମଦାୟେନଙ୍କ ବିଷୟ ବର୍ଣ୍ଣିତ ହୋଇଅଛି ।

୮୬ । ପରମେଶ୍ୱରଙ୍କ ପ୍ରଦତ୍ତ ଲବ୍ଧ ଅଂଶ—ପୂର୍ଣ୍ଣପୂର୍ଣ୍ଣ ମାପ ଓ ଠିକ ଓଜନ କରି ଲୋକମାନଙ୍କୁ ଜିନିସ ବିକ୍ରୟ କରିବା ଓ ସେମାନଙ୍କଠାରୁ ଜିନିସ କ୍ରୟ କରିବା ଦ୍ୱାରା ଯାହା ଲାଭ ହେବ ।

"ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ଆମ୍ଭପ୍ରତି ବିରୁଦ୍ଧାଚରଣ ଯେପରି ତୁମ୍ଭମାନଙ୍କୁ ଅପରାଧୀ ନକରେ; କାଳେ ନୂହଙ୍କ ସମ୍ପ୍ରଦାୟ କିମ୍ବା ହୁଦଙ୍କ ସମ୍ପ୍ରଦାୟ କିମ୍ବା ସ୍ୱାଲେହଙ୍କ ସମ୍ପ୍ରଦାୟ ଉପରେ ଯେପରି ଶାସ୍ତି ପଡ଼ିଥିଲା ତୁମ୍ଭମାନଙ୍କ ଉପରେ ସେହିପରି ପଡ଼ିପାରେ; ଏବଂ ଲୁତଙ୍କ ସମ୍ପ୍ରଦାୟ ତୁମ୍ଭମାନଙ୍କର ଦୂରବର୍ତ୍ତୀ ନୁହନ୍ତି । ୮୯ ।

"ଏବଂ ତୁମ୍ଭେମାନେ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କର, ତା ପରେ ତାଙ୍କ ଆଡ଼କୁ/ଠାରେ ଅନୁତାପ କର, ନିଶ୍ଚୟ ଆମ୍ଭର ପାଳନକର୍ତ୍ତା କରୁଣାମୟ ଓ ପ୍ରେମମୟ ।" । ୯୦ ।

ସେମାନେ କହିଥିଲେ; "ହେ ଶୋୟେବ ! ତୁମ୍ଭେ ଯାହା କହୁଅଛ ତାହାର ଅଧିକାଂଶ ଅମ୍ଭେମାନେ ବୁଝି ପାରୁ ନାହୁଁ; ନିଶ୍ଚୟ ଆମ୍ଭେମାନେ ତୁମ୍ଭଙ୍କୁ ଆମ୍ଭମାନଙ୍କ ମଧ୍ୟରେ ଦୁର୍ବଳ ମନେ କରୁଅଛୁଁ; ଏବଂ ଯଦି ତୁମ୍ଭର ପରିବାରବର୍ଗ ନ ଥାନ୍ତେ ତେବେ ନିଶ୍ଚୟ ଆମ୍ଭେମାନେ ତୁମ୍ଭଙ୍କୁ ପ୍ରସ୍ତରାଘାତରେ ଚୂର୍ଣ୍ଣ କରି ଦିଅନ୍ତୁ; ଏବଂ ତୁମ୍ଭେ ଆମ୍ଭମାନଙ୍କ ବିରୁଦ୍ଧରେ ଶକ୍ତିଶାଳୀ ନୁହ" ।୯୧।

ଶୋୟେବ କହିଥିଲେ" ହେ ଆମ୍ଭର ସମ୍ପ୍ରଦାୟ । ତେବେ ଆମ୍ଭର ପରିବାର ବର୍ଗ କଅଣ ତୁମ୍ଭମାନଙ୍କ ନିକଟରେ ପରମେଶ୍ୱରଙ୍କଠାରୁ ଅଧିକ ସମ୍ମାନର ଯୋଗ୍ୟ ? କାରଣ ତୁମ୍ଭେମାନେ ତାହାଙ୍କୁ ତୁମ୍ଭମାନଙ୍କର ପଛ ଆଡ଼େ ପକାଇ ଦେଉଅଛ । ଏବଂ ତୁମ୍ଭେମାନେ ଯାହା କରୁଅଛ ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ତାହାକୁ ଘେରି ଅଛନ୍ତି । ୯୨ ।

"ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ ଯାହା ପାର କର, ନିଶ୍ଚୟ ଆମ୍ଭେ ମଧ୍ୟ କାର୍ଯ୍ୟ କରୁଅଛୁଁ; ଶୀଘ୍ର ତୁମ୍ଭେମାନେ ଜାଣି ପାରିବ କାହା ଉପରେ ଲାଞ୍ଛନା ଜନକ ଶାସ୍ତି ଉପସ୍ଥିତ ହେବ ଏବଂ କିଏ ମିଥ୍ୟାବାଦୀ ଅଟେ; ଏବଂ ତୁମ୍ଭେମାନେ ଅପେକ୍ଷା କର; ନିଶ୍ଚୟ ଆମ୍ଭେ ମଧ୍ୟ ତୁମ୍ଭମାନଙ୍କ ସହିତ ଅପେକ୍ଷାକାରୀ" ।୯୩।

ଏବଂ ଯେତେବେଳେ ଅମ୍ଭର ଆଦେଶ ଉପସ୍ଥିତ ହୋଇଥିଲା ସେତେବେଳେ ଅମ୍ଭେ ନିଜ ଅନୁଗ୍ରହରୁ ଶୋୟେବ ଏବଂ ତାଙ୍କର ସଙ୍ଗୀ ବିଶ୍ୱାସକାରୀମାନଙ୍କୁ ରକ୍ଷା କରିଥିଲୁଁ; ଏବଂ ଅତ୍ୟାଚାରୀମାନଙ୍କୁ ଏକ ଭୀଷଣ ଧ୍ୱନି ଆକ୍ରମଣ କରିଥିଲା, ତା ପରେ ସକାଳ ବେଳକୁ ସେମାନେ ନିଜ ନିଜ ଘରେ ମୁହଁମାଡ଼ି ପଡ଼ି ରହିଥିଲେ ।୯୪।

ଯେପରିକି ଏହା ମଧ୍ୟରେ କଦାପି ସେମାନଙ୍କର ବାସସ୍ଥାନ ନଥିଲା, ସାବଧାନ ! ମଦାୟେନମାନଙ୍କ ସର୍ବନାଶ ହେଲା, ଯେପରି ସମୁଦର ସର୍ବନାଶ ଘଟିଥିଲା ।୯୫।

## ୯ମ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ମୂସାଙ୍କୁ ନିଜର ନିଦର୍ଶନ ଓ ପ୍ରକାଶ୍ୟ ପ୍ରମାଣ ସହିତ ପଠାଇଥିଲୁଁ ।୯୬।

---

୮୯ । ଲୁତଙ୍କ ସମ୍ପ୍ରଦାୟ...ନୁହନ୍ତି—ନିକଟରେ ଲୁତ ସମ୍ପ୍ରଦାୟ ଉପରେ ଶାସ୍ତି ଉପସ୍ଥିତ ହୋଇଯାଇ ଅଛି ।

୯୧ । ପରିବାରବର୍ଗ ନ ଥାନ୍ତେ=ତୁମ୍ଭର ଜ୍ଞାତି କୁଟୁମ୍ବମାନଙ୍କ ମଧ୍ୟରେ ଅଧିକାଂଶ ଅମ୍ଭମାନଙ୍କ ସଙ୍ଗେ ଅମ୍ଭମାନଙ୍କ ଧର୍ମରେ ଅଛନ୍ତି; ଅମ୍ଭେମାନେ ସେମାନଙ୍କୁ ଭଲ ପାଉଁ ।

୯୨ । ତାହାଙ୍କୁ—ପରମେଶ୍ୱରଙ୍କୁ ।

୯୬।୧୧ । ମହାପୁରୁଷ ମୂସା ଏବଂ ଫେରଅଉନ୍ ସମ୍ପ୍ରଦାୟର ଉଲ୍ଲେଖ କରାଯାଇ ଅଛି ।

ଫେରଅଉନ ଓ ତାହାର ପ୍ରଧାନ ବ୍ୟକ୍ତିମାନଙ୍କ ପ୍ରତି; କିନ୍ତୁ ସେମାନେ ଫେରଅଉନର ଆଦେଶର ଅନୁସରଣ କରିଥିଲେ; ଏବଂ ଫେରଅଉନର ଆଦେଶ ସତ୍‌ପଥରେ ଚଳିବାପାଇଁ ନ ଥିଲା ।୯୭।

ସେ ପୁନରୁତ୍ଥାନ ଦିବସରେ ନିଜ ଦଳର ଅଗ୍ରଣୀ ହେବ ଏବଂ ସେମାନଙ୍କୁ ନରକାନଳରେ ଉପସ୍ଥିତ କରାଇବ ଏବଂ ସେମାନଙ୍କର ସେହି ଉପସ୍ଥିତ ସ୍ଥାନ ଅତି ମନ୍ଦ ଅଟେ ।୯୮।

ଏବଂ ଇହଲୋକରେ ସେମାନଙ୍କୁ ଅଭିଶାପ ଆକ୍ରାନ୍ତ କରିଅଛି ଏବଂ ପୁନରୁତ୍ଥାନ ଦିବସରେ ମଧ୍ୟ (ଆକ୍ରାନ୍ତ କରିବ); ନିକୃଷ୍ଟ ସେହି ଦାନ ଯାହା ସେମାନଙ୍କୁ ଦିଆଯିବ ।୯୯।

ଆମ୍ଭେ ଯେଉଁ ନଗରମାନଙ୍କର ଏହି ସମ୍ବାଦମାନ ତୁମ୍ଭ ନିକଟରେ ବର୍ଣ୍ଣନା କରୁଅଛୁଁ ସେମାନଙ୍କ ମଧ୍ୟରୁ କେତେଗୁଡ଼ିଏ ବିଦ୍ୟମାନ ଅଛି ଏବଂ ଅବଶିଷ୍ଟ ବିନଷ୍ଟ ହୋଇ ଯାଇଅଛି ।୧୦୦।

ଏବଂ ଆମ୍ଭେ ସେମାନଙ୍କ ପ୍ରତି ଅନ୍ୟାୟ କରି ନ ଥିଲୁଁ, କିନ୍ତୁ ସେମାନେହିଁ ନିଜପ୍ରତି ଅତ୍ୟାଚାର କରିଥିଲେ; ସୁତରାଂ ଯେତେବେଳେ ତୁମ୍ଭର ପାଳନ କର୍ତ୍ତାଙ୍କର ଆଦେଶ ଉପସ୍ଥିତ ହୋଇଥିଲା ସେତେବେଳେ ସେମାନେ ପରମେଶ୍ୱରଙ୍କ ପରିବର୍ତ୍ତରେ ଯେଉଁମାନଙ୍କୁ ଆହ୍ୱାନ କରୁଥିଲେ ସେମାନେ ସେମାନଙ୍କର ସେହି ଉପାସ୍ୟମାନଙ୍କଠାରୁ କିଛି ମାତ୍ର ଉପକାର ପାଇ ନ ଥିଲେ; ଏବଂ ସେମାନେ ସେମାନଙ୍କର ସର୍ବନାଶ ଛଡ଼ା କିଛି ମାତ୍ର କରି ନ ଥିଲେ ।୧୦୧।

ଏବଂ ଏହିପରି ତୁମ୍ଭର ପାଳନକର୍ତ୍ତାଙ୍କର ଆକ୍ରମଣ, ଯେତେବେଳେ ସେ ନଗରମାନଙ୍କୁ ଆକ୍ରମଣ କରନ୍ତି, ଯେତେବେଳେ ନଗରବାସୀମାନେ ଅତ୍ୟାଚାରୀ ହୁଅନ୍ତି; ନିଶ୍ଚୟ ତାଙ୍କର ଆକ୍ରମଣ କଠୋର ଯନ୍ତ୍ରଣାଦାୟକ ।୧୦୨।

ଯେ ପରଲୋକର ଶାସ୍ତିର ଆଶଙ୍କା କରେ ଅବଶ୍ୟ ତାହାପାଇଁ ଏଥିରେ ନିଦର୍ଶନ ଅଛି, ଏହି ଦିନ ତାଙ୍କ ନିକଟ ଲୋକମାନେ ଏକତ୍ରିତ କରା ହେବେ ଏବଂ ଏହି ଦିନକୁ ସମସ୍ତେ ଦେଖିବେ ।୧୦୩।

ଏବଂ ଏକ ନିର୍ଦ୍ଦିଷ୍ଟକାଳ ବ୍ୟତୀତ ଆମ୍ଭେ ଏହାକୁ ବିଳମ୍ବ କରିବୁଁ ନାହିଁ ।୧୦୪।

ଏହିଦିନ ଉପସ୍ଥିତ ହେଲେ ତାଙ୍କର ଅନୁମତି ବ୍ୟତୀତ କୌଣସି ବ୍ୟକ୍ତି କଥା କହି ପାରିବେ ନାହିଁ; ତା ପରେ ସେମାନଙ୍କ ମଧ୍ୟରେ କେହି କେହି ହତଭାଗା ଓ କେହି କେହି ଭାଗ୍ୟବାନ ହେବେ ।୧୦୫।

ଅତଏବ ଯେଉଁମାନେ ହତଭାଗା ହେବେ, ପରେ ସେମାନେ ନରକାନଳର ଅନ୍ତର୍ଭୁକ୍ତ ହେବେ, ତନ୍ମଧ୍ୟରେ ସେମାନଙ୍କ ପାଇଁ ଚିତ୍କାର ଓ ଆର୍ତ୍ତନାଦ ରହିଅଛି ।୧୦୬।

---

୧୦୦ । ବିଦ୍ୟମାନଅଛି—ଲୋକଶୂନ୍ୟ ଏବଂ ଧ୍ୱଂସ ଅବସ୍ଥାରେ ଅଛି ।
ବିନଷ୍ଟ ହୋଇଯାଇଅଛି—ସମ୍ପୂର୍ଣ୍ଣରୂପେ ନିର୍ମୂଳ ଓ ନିଶ୍ଚିହ୍ନ ହୋଇ ଯାଇଅଛି ।

୧୦୦।୧୦୨ । ଏହି ଶ୍ଳୋକମାନଙ୍କରେ ଅବାଧ୍ୟ ନଗରମାନଙ୍କର ଧ୍ୱଂସ ହେବା ବିଷୟ ସାଧାରଣ ଭାବରେ ବର୍ଣ୍ଣିତ ହୋଇଅଛି ।

୧୦୩।୧୦୪ । ଏହିଦିନ—ଶେଷ ବିଚାରଦିନ । ଏହା'ର ନିର୍ଦ୍ଦିଷ୍ଟକାଳ ପରମେଶ୍ୱରଙ୍କ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଏହା ସେହି ନିର୍ଦ୍ଦିଷ୍ଟ କାଳରୁ କ୍ଷଣମାତ୍ର ବିଳମ୍ବ ହେବ ନାହିଁ ।

୧୦୫ । ହତଭାଗା—ପାପାତ୍ମା; ଭାଗ୍ୟବାନ—ପୁଣ୍ୟବାନ । ତାଙ୍କର—ପରମେଶ୍ୱରଙ୍କ; କଥା କହି ପାରିବେ ନାହିଁ—ନିଜ ସପକ୍ଷରେ, କିମ୍ବା ଅନ୍ୟ କାହାର ସପକ୍ଷରେ କିମ୍ବା ବିପକ୍ଷରେ କିମ୍ବା ପରସ୍ପର ମଧ୍ୟରେ;

ସେମାନେ ସେଥି ମଧ୍ୟରେ ସର୍ବଦା ବାସ କରିବେ ଯେତେ ଦିନ ପର୍ଯ୍ୟନ୍ତ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ରହିଥିବ, ତେବେ ତୁମ୍ଭର ପାଳନକର୍ତ୍ତା ଯାହା ଇଚ୍ଛା କରିବେ ତାହା ବ୍ୟତୀତ; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ଯାହା ଇଚ୍ଛା କରନ୍ତି ତାହା କରିଥାନ୍ତି ।୧୦୭।

ଏବଂ ଯେଉଁମାନେ ଭାଗ୍ୟବାନ ହେବେ ପରେ ସେମାନେ ସ୍ୱର୍ଗୋଦ୍ୟାନର ଅନ୍ତର୍ଗତ ହେବେ, ସେମାନେ ସେଥିରେ ସର୍ବଦା ବାସ କରିବେ ଯେତେ ଦିନ ପର୍ଯ୍ୟନ୍ତ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ରହିଥିବ ତେବେ ତୁମ୍ଭର ପାଳନକର୍ତ୍ତା ଯାହା ଇଚ୍ଛା କରିବେ ତାହା ବ୍ୟତୀତ; ଏହି ଦାନ କଦାପି କର୍ତ୍ତିତ ହେବ ନାହିଁ ।୧୦୮।

ଅତଏବ ସେମାନେ ଯାହାଙ୍କୁ ଉପାସନା କରୁଅଛନ୍ତି ସେ ବିଷୟରେ ତୁମ୍ଭେ ସନ୍ଦେହରେ ରୁହନା; ଏହା ପୂର୍ବେ ଏମାନଙ୍କର ପୂର୍ବପୁରୁଷମାନେ ଯାହା ଉପାସନା କରୁଥିଲେ ତାହା ବ୍ୟତୀତ ଏମାନେ ଅନ୍ୟ କିଛି ଉପାସନା କରନ୍ତି ନାହିଁ; ଏବଂ ନିଶ୍ଚୟ ଆମ୍ଭେ ସେମାନଙ୍କୁ ସେମାନଙ୍କର ପ୍ରାପ୍ୟ ଅଂଶ ପୂର୍ଣ୍ଣରୂପେ ପ୍ରଦାନ କରିବୁ ।୧୦୯।

## ୧୦ମ ବିଭାଗ

ଏବଂ ଅବଶ୍ୟ ଆମ୍ଭେ ମୂସାଙ୍କୁ ଗ୍ରନ୍ଥ ପ୍ରଦାନ କରିଥିଲୁଁ, ପରେ ସେଥିରେ ମତାନ୍ତର ଜାତ ହୋଇଅଛି; ଏବଂ ଯଦି ତୁମ୍ଭର ପାଳନକର୍ତ୍ତାଙ୍କର ବାକ୍ୟ ପୂର୍ବରୁ ନିର୍ଦ୍ଧାରିତ ହୋଇ ନ ଥାନ୍ତା, ତେବେ ନିଶ୍ଚୟ ସେମାନଙ୍କ ମଧ୍ୟରେ ମୀମାଂସା ହୋଇ ଯାଇଥାନ୍ତା; ଏବଂ ନିଶ୍ଚୟ ସେମାନେ ଏଥିରେ ଅଶାନ୍ତିଜନକ ସନ୍ଦେହରେ ରହି ଅଛନ୍ତି ।୧୧୦।

---

୧୦୭ । ତୁମ୍ଭର ପାଳନକର୍ତ୍ତା ଯାହା ଇଚ୍ଛା କରିବେ ତାହାବ୍ୟତୀତ—ଏହି ଶ୍ଳୋକରେ ହତଭାଗା ଅପରାଧୀମାନେ ନରକରେ ଚିରଦିନ ବାସ କରିବେ ବୋଲି ଉଲ୍ଲେଖ ଥିଲେ ମଧ୍ୟ, ପରମେଶ୍ୱର ନିଜ ଅନୁଗ୍ରହରୁ ଯାହାକୁ ସେଥିରୁ ମୁକ୍ତ ଦେବା ପାଇଁ ଇଚ୍ଛା କରିବେ ସେଥିରେ ବାଧା ଦେବାର କାହାରି ଅଧିକାର ନାହିଁ । 'ଯେତେଦିନ ପର୍ଯ୍ୟନ୍ତ ଆକାଶମଣ୍ଡଳ ଓ ଭୂମଣ୍ଡଳ ରହିଥିବ,—ଏହି ବାକ୍ୟାଂଶ ଆରବୀଭାଷାରେ 'ଚିରକାଳ'ର ଭାବ ପ୍ରକାଶ ପାଇଁ ବ୍ୟବହୃତ ହୋଇଥାଏ ।

୧୦୮ । ଏହି ଶ୍ଳୋକରେ ଭାଗ୍ୟବାନ ପୁଣ୍ୟବାନ ଲୋକମାନେ ଚିରଦିନ ସ୍ୱର୍ଗୋଦ୍ୟାନରେ ବାସ କରିବେ ବୋଲି ଉଲ୍ଲେଖ କରାଯାଇଅଛି । କୌଣସି ଲୋକକୁ ବଞ୍ଚିତ କରିବାର ଅଧିକାର ପରମେଶ୍ୱରଙ୍କ ଥିଲେ ମଧ୍ୟ ଏହି ଶ୍ଳୋକର ଶେଷ ଭାଗରେ ପରମେଶ୍ୱର ଘୋଷଣା କରିଅଛନ୍ତି କି ସ୍ୱର୍ଗବାସୀମାନଙ୍କ ସ୍ୱର୍ଗସୁଖ କଦାପି କର୍ତ୍ତିତ ହେବ ନାହିଁ । ସୁତରାଂ ସ୍ୱର୍ଗ ସୁଖ ଚିରସ୍ଥାୟୀ ଅଟେ ।

୧୦୯ । ସେମାନଙ୍କର ପ୍ରାପ୍ୟ ଅଂଶ ପୂର୍ଣ୍ଣରୂପେ ପ୍ରଦାନ କରିବୁ—ସେମାନେ ଦାନ ଧ୍ୟାନ ଆଦି ଯେଉଁସବୁ ପୁଣ୍ୟକାର୍ଯ୍ୟ କରୁଅଛନ୍ତି ତାହାର ପୁରସ୍କାର ଇହଲୋକରେ ପୂର୍ଣ୍ଣମାତ୍ରାରେ ପ୍ରାପ୍ତ ହେବେ । ସୁତରାଂ ସେମାନଙ୍କର ପାର୍ଥିବ ସୁଖ ସମ୍ପଦ ଦେଖି ସନ୍ଦେହ କରିବାର ବା ବିସ୍ମିତ ହେବାର କୌଣସି କାରଣ ନାହିଁ । ମାତ୍ର ସେମାନଙ୍କର ଅବିଶ୍ୱାସ ଓ ଅଂଶୀବାଦିତା ହେତୁ ପରଲୋକରେ ସେମାନେ ପୂର୍ଣ୍ଣମାତ୍ରାରେ ନରକ ଯନ୍ତ୍ରଣା ଭୋଗକରିବେ । ସନ୍ଦେହରେ ରହନା—ଏହାର ଅନ୍ୟ ଅର୍ଥ, ସେମାନେ ଯାହାଉପାସନା କରୁଅଛନ୍ତି, ତାହା ଯେ ମନ୍ଦ ଓ ମିଥ୍ୟା ଏବଂ ସେଥିପାଇଁ ଶାସ୍ତି ଭୋଗିବାକୁ ହେବ ଏଥିରେ ସନ୍ଦେହ କରନା ।

୧୧୦ । ପରମେଶ୍ୱରଙ୍କ ଠାରୁ ଅବତୀର୍ଣ୍ଣ ନବୀନ କୋରାନ ଗ୍ରନ୍ଥକୁ ଲୋକମାନେ ପ୍ରତ୍ୟାଖ୍ୟାନ କରୁଥିବାରୁ ମହାପୁରୁଷ ମୋହମ୍ମଦ ବିସ୍ମିତ ହେବାରୁ ପରମେଶ୍ୱର ତାଙ୍କୁ କହୁଅଛନ୍ତି, ଏଥିରେ ବିସ୍ମିତ ହେବାର କୌଣସି କାରଣ ନାହିଁ । ଏଥିପୂର୍ବେ ମଧ୍ୟ ମୂସାଙ୍କ ପ୍ରସିଦ୍ଧ ଧର୍ମଗ୍ରନ୍ଥ ତଉରାତକୁ ଲୋକମାନେ ପ୍ରତ୍ୟାଖ୍ୟାନ କରିଥିଲେ । ପରମେଶ୍ୱରଙ୍କ

ଏବଂ ନିଶ୍ଚୟ ଈଶ୍ୱର ପାଳନକର୍ତ୍ତା ସମସ୍ତଙ୍କୁ ସେମାନଙ୍କର କାର୍ଯ୍ୟମାନ ପୂର୍ଣ୍ଣରୂପେ ଫେରାଇ ଦେବେ; ଏବଂ ନିଶ୍ଚୟ ସେ ସେମାନଙ୍କର କୃତକାର୍ଯ୍ୟ ସମ୍ବନ୍ଧରେ ଅଭିଜ୍ଞ ।୧୧୧।

ଅତଏବ ତୁମ୍ଭେ ଓ ତୁମ୍ଭ ସହିତ ଯେଉଁମାନେ ପରମେଶ୍ୱରଙ୍କ ପ୍ରତି ମନଯୋଗୀ ସେମାନେ ଆଦେଶ ପାଇଥିବା ଅନୁଯାୟୀ ସେଥିରେ ସ୍ଥିର ରହନ୍ତୁ ଏବଂ ତୁମ୍ଭେମାନେ ଅତିରିକ୍ତ କରନା; ଏବଂ ନିଶ୍ଚୟ ତୁମ୍ଭେ- ଯାହା କରୁଅଛ ସେ ଦେଖୁଅଛନ୍ତି ।୧୧୨।

ଏବଂ ତୁମ୍ଭେମାନେ ଅତ୍ୟାଚାରକାରୀମାନଙ୍କ ପ୍ରତି ଅନୁରକ୍ତ ହୁଅନା, ନଚେତ ନରକାଗ୍ନି ତୁମ୍ଭ- ମାନଙ୍କୁ ସ୍ପର୍ଶ କରିବ, ଏବଂ ପରମେଶ୍ୱରଙ୍କ ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ କେହି ଅଭିଭାବକ ନାହିଁ, ତାପରେ ତୁମ୍ଭେମାନେ ସାହାଯ୍ୟ ପ୍ରାପ୍ତ ହେବ ନାହିଁ ।୧୧୩।

ଏବଂ ତୁମ୍ଭେମାନେ ଦିନର ଦୁଇ – ଅଂଶରେ ଏବଂ ରାତ୍ରିର ପ୍ରଥମ ଅଂଶରେ ଆରାଧନା ପ୍ରତିଷ୍ଠିତ କର, ନିଶ୍ଚୟ ଉତ୍ତମ କାର୍ଯ୍ୟ ସମୂହ ଦୁଷ୍କାର୍ଯ୍ୟ ସମୂହକୁ ଦୂରୀଭୂତ କରେ, ସ୍ମରଣକାରୀମାନଙ୍କ ପାଇଁ ଏହା ସ୍ମାରକ ଉପଦେଶ ।୧୧୪।

ଏବଂ ତୁମ୍ଭେମାନେ ଧୈର୍ଯ୍ୟ ଧର, କାରଣ ନିଶ୍ଚୟ ପରମେଶ୍ୱର ପୁଣ୍ୟବାନ ଲୋକମାନଙ୍କର ପୁରସ୍କାର ନଷ୍ଟ କରନ୍ତି ନାହିଁ ।୧୧୫।

ତା ପରେ ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ଯୁଗମାନଙ୍କରେ ସେମାନଙ୍କ ମଧ୍ୟରୁ ଆମ୍ଭେ ଯେଉଁମାନଙ୍କୁ ରକ୍ଷା କରିଥିଲୁଁ ସେଥି ମଧ୍ୟରୁ ଜ୍ଞାନବାନ ଲୋକମାନଙ୍କର ଅଳ୍ପ ସଂଖ୍ୟକ ବ୍ୟତୀତ (ଅନ୍ୟମାନେ) ପୃଥିବୀର ଉପଦ୍ରବ

---

ଆଦେଶବାଣୀକୁ ପ୍ରତ୍ୟାଖ୍ୟାନ କରିବାକୁ ନିଷ୍ଠି ସବୁ ଯୁଗରେ ଏହିପରି ଏକଦଳ ଲୋକ ରହିଅଛନ୍ତି । ଏହାଦ୍ୱାରା ପ୍ରକୃତ ଧାର୍ମିକ ଲୋକମାନଙ୍କର ପରୀକ୍ଷା ହେଉଅଛି । ନଚେତ ଯଦି ପରମେଶ୍ୱର ଇଚ୍ଛା କରନ୍ତେ ତେବେ ଏକ ମୁହୂର୍ତ୍ତରେ ଅବିଶ୍ୱାସ ଓ ଅଧର୍ମ ପୃଥିବୀରୁ ଲୋପ ପାଇ ଯାଆନ୍ତା । ମାତ୍ର ତଦ୍ଦ୍ୱାରା ମାନବ ଜାତି ସୃଷ୍ଟି କରିବାର ଉଦ୍ଦେଶ୍ୟ ସାଧିତ ହୁଅନ୍ତା ନାହିଁ । ୧୦ମ ଅଧ୍ୟାୟର ୧୯ ଶ୍ଳୋକ ଦେଖ ।

୧୧୧ । ମନୁଷ୍ୟମାନଙ୍କର ପାର୍ଥିବ ଜୀବନର କର୍ମଫଳ ସେମାନଙ୍କୁ ପରଲୋକରେ ପ୍ରଦାନ କରିବା ପରମେଶ୍ୱରଙ୍କ ଉଦ୍ଦେଶ୍ୟ ଅଟେ ଏବଂ ଇହଲୋକରେ ସେମାନେ ଯେପରି କର୍ମ କରିଥିବେ ପରଲୋକରେ ତାହାର ଅନୁରୂପ କର୍ମଫଳ ଭୋଗ କରିବେ ।

୧୧୨ । ଅତିରିକ୍ତ କରନା—ପରମେଶ୍ୱରଙ୍କ ଆଦେଶ ଯେପରି ଭାବରେ ଅବତୀର୍ଣ୍ଣ ହୋଇଅଛି ସେହିପରି ଭାବରେ ପାଳନ କରିବା ଆବଶ୍ୟକ । ଏଥିରେ ହ୍ରାସ ବୃଦ୍ଧି, ପରିବର୍ତ୍ତନ ବା ବ୍ୟତିକ୍ରମ କରିବା ଅନ୍ୟାୟ ।

୧୧୩ । ଏହି ଶ୍ଳୋକରେ ଅବିଶ୍ୱାସୀ ବିଧର୍ମୀମାନଙ୍କର ଧର୍ମକର୍ମ ପ୍ରତି ଅନୁରାଗ ଦେଖାଇବା ଏବଂ କୌଣସିମତେ ସାହାଯ୍ୟ କରିବା ନିଷେଧ କରାଯାଇଅଛି ।

୧୧୪ । ଏହି ଶ୍ଳୋକରେ ଦିନ ମଧ୍ୟରେ ପାଞ୍ଚଥର ଆରାଧନା କରିବାର ଆଦେଶ କରାଯାଇ ଅଛି । ଦିନର ପ୍ରଥମଅଂଶ ଅର୍ଥାତ୍ ପ୍ରାତଃକାଳରେ 'ଫଜର୍' ଦିନର ୨ୟ ଅଂଶ ଅର୍ଥାତ୍ ଅପରାହ୍ନରେ ଦୁଇଥର 'ଜୋହୋର୍' ଓ 'ଅସର୍' ଏବଂ ରାତ୍ରିର ପ୍ରଥମ ଅଂଶରେ ଦୁଇଥର ଅର୍ଥାତ୍ ସନ୍ଧ୍ୟା ସମୟରେ 'ମଗରିବ' ଏବଂ ଶୟନ ପୂର୍ବରୁ 'ଏଶା' ଏପରି ପାଞ୍ଚଥର ଆରାଧନା କରିବାର ଆଦେଶ କରାଯାଇ ଅଛି । ଉତ୍ତମ କାର୍ଯ୍ୟ ଅର୍ଥାତ୍ ଦୈନିକ ପାଞ୍ଚଥର ଆରାଧନା ଲୋକମାନଙ୍କୁ ମନ୍ଦକାର୍ଯ୍ୟରୁ ରକ୍ଷା କରେ । ଦେଖ ୨୯ ଅଧ୍ୟାୟ ଶ୍ଳୋ ୪୫କ । ଏଥିପାଇଁ ଏହାକୁ ସ୍ମାରକ ଉପଦେଶ ଅର୍ଥାତ୍ ସବୁବେଳେ ମନେରଖିବା ଉପଯୁକ୍ତ ଉପଦେଶ କୁହାଯାଇଅଛି ।

ନିବାରଣ ଦିଗରେ କାହିଁକି ନିଷେଧକାରୀ ହୋଇ ନାହାନ୍ତି ? ଏବଂ ଅତ୍ୟାଚାରୀମାନଙ୍କୁ ଯେଉଁ ସୁଖସମ୍ପଦ ଦିଆଯାଇ ଥିଲା, ସେମାନେ ତାହାର ଅନୁସରଣ କରିଥିଲେ ଏବଂ ସେମାନେ ଅପରାଧୀ ହୋଇଥିଲେ ।୧୧୬।

ଏବଂ ତୁମ୍ଭର ପାଳନକର୍ତ୍ତା ଏପରି ନାହାନ୍ତି ଯେ ନଗରମାନଙ୍କୁ ଅନ୍ୟାୟ ଭାବରେ ଧ୍ୱଂସ କରିବେ ଅଥଚ ଏହାର ଅଧିବାସୀମାନେ ନିଜକୁ ସଂଶୋଧନ ପାଇଁ ଚେଷ୍ଟା କରୁଥିବେ ।୧୧୭।

ଏବଂ ଯଦି ତୁମ୍ଭର ପାଳନକର୍ତ୍ତା ଇଚ୍ଛା କରିଥାନ୍ତେ ତେବେ ସେ ଲୋକମାନଙ୍କୁ ଗୋଟିଏ ସମ୍ପ୍ରଦାୟ କରିଦେଇ ଥାନ୍ତେ, କିନ୍ତୁ ସେମାନେ ବରାବର ଭିନ୍ନମତ ପୋଷଣ କରୁଥିବେ ।୧୧୮।

ସେହିମାନଙ୍କ ବ୍ୟତୀତ ଯେଉଁମାନଙ୍କ ଉପରେ ତୁମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହ ରହିଅଛି; ଏବଂ ଏଥିପାଇଁ ସେ ସେମାନଙ୍କୁ ସୃଷ୍ଟି କରିଅଛନ୍ତି; ଏବଂ ତୁମ୍ଭର ପାଳନକର୍ତ୍ତାଙ୍କର ବାକ୍ୟ ପୂର୍ଣ୍ଣ ହେବ ଯେ, 'ନିଶ୍ଚୟ ଅମ୍ଭେ ଦାନବ ଓ ମାନବମାନଙ୍କ ମଧ୍ୟରୁ ଏକତ୍ର କରି ନରକ ପୂର୍ଣ୍ଣକରିବୁ' ।୧୧୯।

ଏବଂ ଅମ୍ଭେ ପ୍ରେରିତ ପୁରୁଷମାନଙ୍କର ବିବରଣ ମଧ୍ୟରୁ ସେହି ସମସ୍ତ ବିଷୟ ତୁମ୍ଭ ନିକଟ ବର୍ଣ୍ଣନା କରୁଅଛୁଁ ଯାହା ତୁମ୍ଭର ଅନ୍ତରକୁ ସୁସ୍ଥିର ରଖିବ; ଏବଂ ଏହା ମଧ୍ୟରେ ତୁମ୍ଭ ପାଇଁ ସତ୍ୟ ଓ ସଦୁପଦେଶ ଏବଂ ବିଶ୍ୱାସକାରୀମାନଙ୍କ ପାଇଁ ସ୍ମରଣୀୟ ବିଷୟ ଉପସ୍ଥିତ ହୋଇଅଛି ।୧୨୦।

ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କୁ କୁହ, "ତୁମ୍ଭେମାନେ ତୁମ୍ଭମାନଙ୍କ ବାସ-ସ୍ଥାନରେ କାର୍ଯ୍ୟ କର, ନିଶ୍ଚୟ ଅମ୍ଭେମାନେ ମଧ୍ୟ କାର୍ଯ୍ୟ କରୁଅଛୁ ।୧୨୧।

"ଏବଂ ତୁମ୍ଭେମାନେ ଅପେକ୍ଷାକର, ନିଶ୍ଚୟ ଅମ୍ଭେମାନେ ମଧ୍ୟ ଅପେକ୍ଷାକାରୀ" ।୧୨୨।

ଏବଂ ଆକାଶମଣ୍ଡଳ ଓ ଭୂମଣ୍ଡଳର ଅଦୃଶ୍ୟ ବିଷୟ କେବଳ ପରମେଶ୍ୱରଙ୍କ ପାଇଁ ଏବଂ ତାଙ୍କର ଆଡ଼କୁ ସମସ୍ତ ବିଷୟ ଫେରିଯାଏ; ଯୁତରାଂ ତାଙ୍କର ଆରାଧନାକର ଏବଂ ତାଙ୍କର ଉପରେ ନିର୍ଭରକର; ଏବଂ ତୁମ୍ଭେମାନେ ଯାହା କରୁଅଛ ସେ ବିଷୟରେ ତୁମ୍ଭର ପାଳନକର୍ତ୍ତା ଅମନଯୋଗୀ ନୁହନ୍ତି ।୧୨୩।

—*—

---

୧୧୬ । ପାପାଚାର ହେତୁ ପରମେଶ୍ୱରଙ୍କ ଆଦେଶରେ ଯେଉଁ ସମ୍ପ୍ରଦାୟମାନେ ଧ୍ୱଂସ ହୋଇ ସେମାନଙ୍କ ମଧ୍ୟରୁ ଯେଉଁମାନେ ବଞ୍ଚିଯାଇ ଥିଲେ ସେମାନଙ୍କ ମଧ୍ୟରୁ ଜ୍ଞାନବାନ ଲୋକମାନଙ୍କ ଉଚିତ ଥିଲା ଯେ, ସେମାନେ ନିଜେ ପୁଣ୍ୟକାର୍ଯ୍ୟ କରି ଅନ୍ୟ ଲୋକମାନଙ୍କୁ ଅନ୍ୟାୟ କାର୍ଯ୍ୟରୁ ବିରତ ହେବାପାଇଁ ଉପଦେଶ ଦେଇଥାନ୍ତେ । ମାତ୍ର ସେମାନଙ୍କ ମଧ୍ୟରୁ ଅତି ଅଳ୍ପଲୋକ ଏପରି କରିଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସାଂସାରିକ ବିଷୟରେ ଆସକ୍ତ ହୋଇ ଅପରାଧୀ ହୋଇଥିଲେ ।

୧୧୭ । ଯେଉଁ ନଗରର ଅଧିବାସୀମାନେ ନିଜକୁ ସଂଶୋଧନ କରି ପୁଣ୍ୟବାନ ହେବାକୁ ଚେଷ୍ଟା କରନ୍ତି ସେ ନଗରକୁ ପରମେଶ୍ୱର ଅନ୍ୟାୟ ଭାବରେ ଧ୍ୱଂସ କରନ୍ତି ନାହିଁ ।

୧୧୮।୧୧୯ । ଦେଖ ଟୀକା ୧୦ମ ଅଧ୍ୟାୟ ଶ୍ଳୋ୧୦।୧୦୦ ।

୧୨୧ । ବାସସ୍ଥାନରେ କାର୍ଯ୍ୟକର—ଘରେ ରହି ନିଜ ଇଚ୍ଛା ଅନୁଯାୟୀ କାର୍ଯ୍ୟ କରୁଥାଅ ।

———

# ୧୨ଶ ଅଧ୍ୟାୟ

ନାମ — ୟୁସୁଫ

ମକ୍କାରେ ଅବତୀର୍ଣ୍ଣ । ଏଥିରେ ଗୋ୧୨ଟି ବିଭାଗ ଏବଂ ଗୋ୧୧୧ଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

ଅଲିଫ୍—ଲାମ୍—ରା; ଏସବୁ ପ୍ରକାଶ୍ୟଗ୍ରନ୍ଥର ଶ୍ଳୋକମାନ ଅଟେ ।୧।

ନିଶ୍ଚୟ ଆମ୍ଭେ ଏହାକୁ ଆରବୀ କୋରାନ୍ ରୂପେ ଅବତୀର୍ଣ୍ଣ କରିଅଛୁଁ ଯେପରି ତୁମ୍ଭେମାନେ ବୁଝିପାରିବ ।୨।

ଆମ୍ଭେ ଏହି କୋରାନ ତୁମ୍ଭ ପ୍ରତି ପ୍ରତ୍ୟାଦେଶ କରିବାଦ୍ୱାରା ଏକ ସର୍ବୋତ୍କୃଷ୍ଟ ବିବରଣ ବର୍ଣ୍ଣନା କରୁଅଛୁଁ; ଏବଂ ସୁନିଶ୍ଚିତ ତୁମ୍ଭେ ଏଥି ପୂର୍ବେ (ଏସମ୍ବନ୍ଧରେ) ଅନଭିଜ୍ଞ ଥିଲ ।୩।

ଯେତେବେଳେ ୟୁସୁଫ ତାଙ୍କର ପିତାଙ୍କୁ କହିଥିଲେ, "ହେ ଆମ୍ଭର ପିତା ! ନିଶ୍ଚୟ ଆମ୍ଭେ ଏକାଦଶ ନକ୍ଷତ୍ର ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ସ୍ୱପ୍ନରେ ଦେଖି ଅଛୁଁ । ଆମ୍ଭେ ସେମାନଙ୍କୁ ଆମ୍ଭ ପ୍ରତି ସାଷ୍ଟାଙ୍ଗ ପ୍ରଣିପାତ କରିବାର ଦେଖିଅଛୁଁ"। ତାଙ୍କ ପିତ ୟାକୁବ୍ କହିଥିଲେ, "ହେ ଆମ୍ଭର ଶ୍ରେଷ୍ଠ ପୁତ୍ର ! ତୁମ୍ଭର ଏହି ସ୍ୱପ୍ନ କଥା ତୁମ୍ଭର ଭାଇମାନଙ୍କ ଆଗରେ ବର୍ଣ୍ଣନା କରିବ ନାହିଁ, ନଚେତ୍ ସେମାନେ ତୁମ୍ଭ ବିରୁଦ୍ଧରେ ଦୁରଭିସନ୍ଧିମୂଳକ ଷଡ଼ଯନ୍ତ୍ର କରିବେ; ନିଶ୍ଚୟ ସଇତାନ ମନୁଷ୍ୟର ପ୍ରକାଶ୍ୟ ଶତ୍ରୁ ।୪।

---

ନାମକରଣ—ଏହି ଅଧ୍ୟାୟରେ ମହାପୁରୁଷ ୟୁସୁଫଙ୍କ ବିବରଣ ବର୍ଣ୍ଣିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଅଛି । ଇହୁଦୀମାନେ ଓ ମହାପୁରୁଷ ମୋହମ୍ମଦଙ୍କ ବିପକ୍ଷ ଲୋକମାନେ ପରୀକ୍ଷା ସ୍ୱରୂପ ତାଙ୍କୁ ପ୍ରଶ୍ନ କରିଥିଲେ, "ଆପଣ ଆମ୍ଭମାନଙ୍କ ଆଗରେ ମହାପୁରୁଷ ୟୁସୁଫଙ୍କ ବିବରଣ ବର୍ଣ୍ଣନା କରନ୍ତୁ ।" ସେଥିପାଇଁ ଏହି ଅଧ୍ୟାୟ ଅବତୀର୍ଣ୍ଣ ହୋଇଥିଲା । ଏହି ଅଧ୍ୟାୟରେ ମହାପୁରୁଷ ୟୁସୁଫଙ୍କ ସମ୍ପୂର୍ଣ୍ଣ ବିବରଣ ଏକତ୍ର ବର୍ଣ୍ଣିତ ହୋଇଅଛି ।

୧ । ଏହି ଶ୍ଳୋକର ୧ମ ଅଂଶ ପାଇଁ ଦେଖ ଟୀକା ୧'ମ ଅଧ୍ୟାୟ ୧ମ ଶ୍ଳୋକ । ସାଙ୍କେତିକ ବର୍ଣ୍ଣମାଳା ପାଇଁ ୨ୟ ଅଧ୍ୟାୟର ୧ମ ଶ୍ଳୋକ ଓ ତହିଁର ଟୀକା ଦେଖ ।

୨ । ମହାପୁରୁଷ ମୋହମ୍ମଦ ଏବଂ ତାଙ୍କର ଅନୁଚରମାନଙ୍କର ମାତୃଭାଷା ଆରବୀ ଥିବାରୁ ଏହି କୋରାନ ଗ୍ରନ୍ଥ ଆରବୀ ଭାଷାରେ ଅବତୀର୍ଣ୍ଣ ହୋଇଅଛି ଯେପରିକି ସେମାନେ ନିଜେ ବୁଝି ପାରିବେ ଏବଂ ଅନ୍ୟମାନଙ୍କୁ ବୁଝାଇ ପାରିବେ ।

୩ । ସର୍ବୋତ୍କୃଷ୍ଟ ବିବରଣ—ମହାପୁରୁଷ ୟୁସୁଫଙ୍କ ବିବରଣ । ଏହି ବିବରଣ ନାନା ସଦୁପଦେଶ ଓ ସୁଶିକ୍ଷା ସମ୍ବଳିତ ଥିବାରୁ ସର୍ବୋତ୍କୃଷ୍ଟ ବିବରଣ କୁହାଯାଇ ଅଛି । କୋରାନର ଏହି ଅଧ୍ୟାୟ ଅବତୀର୍ଣ୍ଣ ହେବାର ଉଦ୍ଦେଶ୍ୟ ଏହି ସର୍ବୋତ୍କୃଷ୍ଟ ବିବରଣ ବର୍ଣ୍ଣନା କରିବା, ଯେପରିକି ଉପରେ ଉଲ୍ଲେଖ କରାଗଲା । ମହାପୁରୁଷ ମୋହମ୍ମଦ ଏଥି ପୂର୍ବେ ଏ ବିବରଣ ଜାଣି ନଥିଲେ ।

୪ । ଏକାଦଶ ନକ୍ଷତ୍ରଦ୍ୱାରା ତାଙ୍କର ଏକାଦଶ ଭାଇ, ସୂର୍ଯ୍ୟଦ୍ୱାରା ତାଙ୍କର ପିତା, ଚନ୍ଦ୍ରଦ୍ୱାରା ତାଙ୍କର ମାତାପ୍ରତି ଲକ୍ଷ୍ୟ କରାଯାଇଅଛି । ଏ ସ୍ୱପ୍ନର ମର୍ମ ଏହି ଯେ, ଏମାନେ ଭବିଷ୍ୟତରେ ତାଙ୍କର ବଶ୍ୟତା ସ୍ୱୀକାର କରିବେ ।

"ଏବଂ ଏହିପରି ତୁମ୍ଭର ପାଳନକର୍ତ୍ତା ତୁମ୍ଭକୁ ମନୋନୀତ କରିବେ ଏବଂ ତୁମ୍ଭକୁ ପ୍ରବଚନ ସବୁର ଗୂଢ଼ ଅର୍ଥ ଶିକ୍ଷା ଦେବେ ଏବଂ ତୁମ୍ଭପ୍ରତି ଓ ୟାକୁବ୍ ସନ୍ତାନମାନଙ୍କ ପ୍ରତି ନିଜର ଅନୁଗ୍ରହ ପୂର୍ଣ୍ଣ କରିବେ, ଯେପରି ସେ ଏଥିପୂର୍ବେ ତୁମ୍ଭର ପୂର୍ବପୁରୁଷ ଇବ୍ରାହିମ ଓ ଇସହାକଙ୍କ ପ୍ରତି ତାହା ପୂର୍ଣ୍ଣ କରିଥିଲେ; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାଜ୍ଞାନୀ ବିଜ୍ଞାନୀ" ।୬।

## ୨ୟ ବିଭାଗ

ନିଶ୍ଚୟ ୟୁସୁଫ ଓ ତାଙ୍କର ଭ୍ରାତାମାନଙ୍କ ବିବରଣୀରେ (ସତ୍ୟ) ଅନୁସନ୍ଧାନକାରୀମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୭।

ଯେତେବେଳେ ସେମାନେ (ପରସ୍ପର) କହିଥିଲେ 'ନିଶ୍ଚୟ ଅମ୍ଭମାନଙ୍କ ଅପେକ୍ଷା ୟୁସୁଫ ଓ ତାଙ୍କର ଭାଇ ଅମ୍ଭମାନଙ୍କ ପିତାଙ୍କ ନିକଟରେ ପ୍ରିୟତର, ଯଦ୍ୟପି ଅମ୍ଭେମାନେ ଏକ ସଂଖ୍ୟାଧିକ ଦଳ; ନିଶ୍ଚୟ ଅମ୍ଭମାନଙ୍କର ପିତା ସ୍ପଷ୍ଟ ଭ୍ରାନ୍ତି ମଧ୍ୟରେ ରହିଅଛନ୍ତି ।୮।

"ୟୁସୁଫଙ୍କୁ ହତ୍ୟାକର ଅଥବା ତାଙ୍କୁ କୌଣସି ସ୍ଥାନରେ ନିକ୍ଷେପ କରିଆସ ତାହାହେଲେ ତୁମ୍ଭ-ମାନଙ୍କ ପିତାଙ୍କର ସ୍ନେହ କେବଳ ତୁମ୍ଭମାନଙ୍କ ଉପରେହିଁ ରହିବ ଏବଂ ତୁମ୍ଭେମାନେ ଏହାପରେ ଏକ ପୁଣ୍ୟବାନ ସମ୍ପ୍ରଦାୟ ହୋଇପାରିବ ।୯।

ସେମାନଙ୍କ ମଧ୍ୟରୁ ଜଣେ ବକ୍ତା କହିଥିଲେ, "ୟୁସୁଫଙ୍କୁ ହତ୍ୟା କରନା ଏବଂ ଯଦି ତୁମ୍ଭମାନଙ୍କୁ କିଛି କରିବାକୁ ହୁଏ ତେବେ ତାଙ୍କୁ ଗଭୀର କୂପମଧ୍ୟରେ ପକାଇଦିଅ, କୌଣସି ବାଟୋଇ ତାଙ୍କୁ ଉଠାଇ ନେବେ" ।୧୦।

ସେମାନେ କହିଥିଲେ, "ହେ ଅମ୍ଭମାନଙ୍କର ପିତା ! ତୁମ୍ଭେ କିପାଇଁ ଅମ୍ଭମାନଙ୍କୁ ୟୁସୁଫଙ୍କ ସମ୍ବନ୍ଧରେ ବିଶ୍ୱସ୍ତ ମନେ କରୁ ନାହିଁ ? ଏବଂ ଅବଶ୍ୟ ଅମ୍ଭେମାନେ ତାଙ୍କପାଇଁ ବାସ୍ତବିକ ଶୁଭାକାଂକ୍ଷୀ ।୧୧।

---

୬ । ପ୍ରବଚନ ସବୁର ଗୂଢ଼ ଅର୍ଥ—ସ୍ୱପ୍ନ ଓ ଅନ୍ୟ ଜଟିଳ ପ୍ରଶ୍ନମାନଙ୍କର ବ୍ୟାଖ୍ୟା ।

୭ । ମହାପୁରୁଷ ୟୁସୁଫ ଓ ତାଙ୍କର ଭ୍ରାତାମାନଙ୍କ ବିବରଣୀ ମଧ୍ୟରେ ମହାପୁରୁଷ ମୋହମ୍ମଦଙ୍କ ବିପକ୍ଷ ଲୋକମାନଙ୍କ ପାଇଁ ଯଥେଷ୍ଟ ଶିକ୍ଷା ରହିଅଛି ।

୮ । ସେମାନେ—ୟୁସୁଫଙ୍କ ବିମାତା ଗର୍ଭଜାତ ଭାଇମାନେ; ସେମାନେ ଦଶ ଭାଇ ଥିଲେ । ତାଙ୍କର ଭାଇ—ୟୁସୁଫଙ୍କ ନିଜ ମାତାଙ୍କ ଗର୍ଭଜାତ ଭାଇ । ତାଙ୍କର ନାମ ବେନଯାମିନ । ୟୁସୁଫଙ୍କ ପିତା ୟାକୁବଙ୍କ ଦୁଇ ପତ୍ନୀ ଥିଲେ । ପ୍ରଥମ ପତ୍ନୀଙ୍କ ଗର୍ଭରୁ ଦଶଗୋଟି ପୁତ୍ର ଏବଂ ଦ୍ୱିତୀୟ ପତ୍ନୀଙ୍କ ଗର୍ଭରୁ ଦୁଇ-ଗୋଟି ପୁତ୍ର ଜନ୍ମ ହୋଇଥିଲେ । ଏହିପରି ଭାବରେ ୟାକୁବଙ୍କ ସର୍ବମୋଟ ବାର ପୁତ୍ର ଥିଲେ । ୟାକୁବ ତାଙ୍କର ୧ମ ପତ୍ନୀଙ୍କ ପୁତ୍ରମାନଙ୍କ ଅପେକ୍ଷା ୨ୟ ପତ୍ନୀଙ୍କ ପୁତ୍ରମାନଙ୍କୁ ଅଧିକ ଭଲ ପାଉଥିବାରୁ ୧ମ ପତ୍ନୀଙ୍କ ପୁତ୍ରମାନେ ସେମାନଙ୍କ ସାବତ୍ ଭାଇମାନଙ୍କୁ ଈର୍ଷା କରୁଥିଲେ ଏବଂ ଏଥିପାଇଁ ସେମାନଙ୍କ ପିତାଙ୍କ ପ୍ରତି ମଧ୍ୟ ବିରକ୍ତ ହେଉଥିଲେ । କାରଣ ସେମାନଙ୍କ ସଂଖ୍ୟା ବେଶି ଥିବାରୁ ସେମାନେ ଗର୍ବ କରୁଥିଲେ ।

୯ । ତୁମ୍ଭେମାନେ ଏହାପରେ ଏକ ପୁଣ୍ୟବାନ ସମ୍ପ୍ରଦାୟ ହୋଇପାରିବ—ୟୁସୁଫ ଜୀବିତ ଥିବାରୁ ତାଙ୍କ ସଙ୍ଗେ ତୁଳନା କରି ତାଙ୍କର ପିତା ତାଙ୍କର ସାବତ ଭାଇମାନଙ୍କୁ ମନ୍ଦ ପ୍ରକୃତିର ବୋଲି କହୁଥିଲେ; ମାତ୍ର ୟୁସୁଫ ଚାଲିଗଲେ ତାଙ୍କର ପିତା ସେମାନଙ୍କୁ ମଧ୍ୟ ଭଲ ଲୋକ ବୋଲି କହିବେ ।

"ଆସନ୍ତା କାଲି ତାଙ୍କୁ ଆମ୍ଭମାନଙ୍କ ସଙ୍ଗରେ ପଠାଅ, ସେ ଭ୍ରମଣ କରିବେ ଓ କ୍ରୀଡ଼ା କରିବେ, ଏବଂ ନିଶ୍ଚୟ ଆମ୍ଭେମାନେ ତାଙ୍କ ପାଇଁ ରକ୍ଷକ ସ୍ୱରୂପ ରହିବୁଁ" ।୧୨।

ୟାକୁବ କହିଥିଲେ "ନିଶ୍ଚୟ ଏହା ଆମ୍ଭକୁ ଦୁଃଖିତ କରୁଅଛି ଯେ, ତୁମ୍ଭେମାନେ ତାଙ୍କୁ ନେଇଯିବ; ଏବଂ ଆମ୍ଭେ ଆଶଙ୍କା କରୁଅଛୁଁ ଯେ କାଳେ ହେଣ୍ଟା ବାଘ ତାଙ୍କୁ ଖାଇଯିବ, ଯେତେବେଳେ ତୁମ୍ଭେମାନେ ତାଙ୍କ ପ୍ରତି ଅମନଯୋଗୀ ଥିବ ।୧୩।

ସେମାନେ କହିଥିଲେ, "ଆମ୍ଭେମାନେ ଦଳବଦ୍ଧ ରହିବା ସତ୍ତ୍ୱେ ଯଦି ନିଶ୍ଚୟ ହେଣ୍ଟାବାଘ ତାଙ୍କୁ ଖାଇଯାଏ, ତେବେ ସେତେବେଳେ ଆମ୍ଭେମାନେ ନିଶ୍ଚୟ କ୍ଷତଗ୍ରସ୍ତ ହୋଇଯିବୁଁ" ।୧୪।

ତାପରେ ଯେତେବେଳେ ସେମାନେ ତାଙ୍କୁ ସଙ୍ଗେ ନେଇ ଯାଇଥିଲେ ଏବଂ ସର୍ବସମ୍ମତକ୍ରମେ ସ୍ଥିର କରିଥିଲେ ଯେ, ତାଙ୍କୁ ସୁଗଭୀର କୂପ ମଧ୍ୟରେ ପକାଇ ଦିଆଯିବ; ଏବଂ ଆମ୍ଭେ ତାଙ୍କ ପ୍ରତି ପ୍ରତ୍ୟାଦେଶ କରିଥିଲୁଁ, "ନିଶ୍ଚୟ (ଦିନେ) ତୁମ୍ଭେ ସେମାନଙ୍କ ଏହି କାର୍ଯ୍ୟ ସମ୍ବନ୍ଧରେ ସେମାନଙ୍କୁ ସମ୍ବାଦ ଦେବ, ଅଥଚ ସେମାନେ ଏହା ବୁଝି ପାରିବେ ନାହିଁ" ।୧୫।

ଏବଂ ସେମାନେ ରାତିରେ କାନ୍ଦି କାନ୍ଦି ସେମାନଙ୍କ ପିତାଙ୍କ ନିକଟ ଆସିଥିଲେ ।୧୬।

ସେମାନେ କହିଥିଲେ, "ହେ ଆମ୍ଭମାନଙ୍କ ପିତା ! ନିଶ୍ଚୟ ଆମ୍ଭେମାନେ (ପରସ୍ପର) ଦଉଡ଼ି ଆଗକୁ ଚାଲିଯାଇଥିଲୁଁ ଏବଂ ୟୁସୁଫଙ୍କୁ ଆମ୍ଭମାନଙ୍କ ଜିନିସପତ୍ର ନିକଟରେ ଛାଡ଼ିଯାଇଥିଲୁଁ, ସୁତରାଂ ଏକ ହେଣ୍ଟା ବାଘ ତାଙ୍କୁ ଖାଇଗଲା ଏବଂ ତୁମ୍ଭେ ଆମ୍ଭମାନଙ୍କୁ ବିଶ୍ୱାସ କରିବ ନାହିଁ, ଯଦିଚ ଆମ୍ଭେମାନେ ସତ୍ୟକଥା କହୁଅଛୁଁ" ।୧୭।

ଏବଂ ସେମାନେ ତାଙ୍କ ଜାମା ଉପରେ କୃତ୍ରିମ ରକ୍ତ ଲଗାଇ ଦେଇ ଆଣିଥିଲେ । ୟାକୁବ କହିଥିଲେ, "ନା, ତୁମ୍ଭମାନଙ୍କର ପ୍ରବୃତ୍ତି ସବୁ ତୁମ୍ଭମାନଙ୍କ ପାଇଁ ଏ କଳ୍ପନା କରିଅଛି; ସୁତରାଂ ଧୈର୍ଯ୍ୟ ଧାରଣହିଁ ଉତ୍ତମ; ଏବଂ ତୁମ୍ଭେମାନେ ଯାହା ବର୍ଣ୍ଣନା କରୁଅଛ, ସେ ସମ୍ବନ୍ଧରେ ପରମେଶ୍ୱରଙ୍କ ସାହାଯ୍ୟ ପ୍ରାର୍ଥନା କରାହୋଇଅଛି ।" ।୧୮।

ଏବଂ ସେଠାରେ ବାଟୋଇମାନେ ଉପସ୍ଥିତ ହୋଇଥିଲେ, ତାପରେ ସେମାନେ ସେମାନଙ୍କର ଜଳସଂଗ୍ରହକାରୀକୁ କୂପ ପାଖକୁ ପଠାଇଥିଲେ, ପରେ ସେ ତାହାର ବାଲ୍‌ଟି ପକାଇଥିଲା; ସେ କହିଉଠିଲା,

---

୧୪ । କ୍ଷତଗ୍ରସ୍ତ ହୋଇଯିବୁଁ—ଆମ୍ଭେମାନେ ଏତେ ଲୋକ ଥାଉଁ ଥାଉଁ ଯଦି ତାଙ୍କୁ ବାଘ ଖାଇ ପକାଏ, ତେବେ ଆମ୍ଭେମାନେ ନିଶ୍ଚୟ ନିତାନ୍ତ ଅଯୋଗ୍ୟ ଓ ଅକ୍ଷମ ପ୍ରମାଣିତ ହେବୁଁ ।

୧୫ । ଯେତେବେଳେ ମହାପୁରୁଷ ୟୁସୁଫଙ୍କ ଭାଇମାନେ ତାଙ୍କୁ ଗଭୀର କୂପରେ ନିକ୍ଷେପ କରିଥିଲେ ପରମେଶ୍ୱର ତାଙ୍କ ନିକଟ ପ୍ରତ୍ୟାଦେଶ ପଠାଇ ତାଙ୍କର ଭବିଷ୍ୟତ ଉନ୍ନତି ସମ୍ବନ୍ଧରେ ତାଙ୍କୁ ସୁସମ୍ବାଦ ଦେଇ ସାନ୍ତ୍ୱନା ଦେଇଥିଲେ । ଏବଂ ୟୁସୁଫ ଉଚ୍ଚ ପଦ ଲାଭ ପରେ ତାଙ୍କର ଭାଇମାନଙ୍କୁ ଏ ବିଷୟ ଜଣାଇବେ ଓ ସେମାନେ ତାଙ୍କୁ ଚିହ୍ନିପାରିବେ ନାହିଁ ବୋଲି ପରମେଶ୍ୱର ତାଙ୍କୁ ସୁସମ୍ବାଦ ଦେଇଥିଲେ । ଦେଖ ଏହି ଅଧ୍ୟାୟ ଶ୍ଳୋକ ୮୯କୁ ।

କୃତ୍ରିମ ରକ୍ତ—ୟୁସୁଫଙ୍କ ଭାଇମାନେ ଫେରିଲାବେଳେ ରାସ୍ତାରେ ଗୋଟାଏ ବନ୍ୟ ଜନ୍ତୁ ମାରି ତାହାର ରକ୍ତ ୟୁସୁଫଙ୍କ ଜାମାରେ ଲଗାଇ ଦେଇଥିଲେ ଏବଂ ପିତାଙ୍କୁ ତାହା ଦେଖାଇଥିଲେ ।

୧୮ । ୟାକୁବ ପୁତ୍ରମାନଙ୍କ କଥାରେ ବିଶ୍ୱାସ କରି ନଥିଲେ; କାରଣ ଜାମାରେ ରକ୍ତ ଲାଗିଥିଲା ସତ୍ୟ ମାତ୍ର ଜାମା ଚିରିଯାଇ ନଥିଲା । ସେ ପୁତ୍ରମାନଙ୍କ ଷଡ଼ଯନ୍ତ୍ର ବୁଝିପାରି କହିଥିଲେ ଯେ, ବର୍ତ୍ତମାନ ଧୈର୍ଯ୍ୟ ଧାରଣ ଛଡ଼ା ଅନ୍ୟ କିଛି ଉପାୟ ନାହିଁ ।

"ଅହୋ ସୁସମ୍ବାଦ ! ଏ ଯେ ଗୋଟିଏ ବାଳକ !" ଏବଂ ସେମାନେ ତାହାଙ୍କୁ ବାଣିଜ୍ୟର ମୂଳଧନ ସ୍ୱରୂପ ଗୋପନରେ ରଖିଦେଲେ; ଏବଂ ସେମାନେ ଯାହା କରୁଥିଲେ ପରମେଶ୍ୱର ତାହା ଜାଣୁଥିଲେ ।୧୯।

ଏବଂ ସେମାନେ ତାଙ୍କୁ ସାମାନ୍ୟ ମୂଲ୍ୟ ଅର୍ଥାତ୍ କେତେକ ଗଣିତ ରୌପ୍ୟ ମୁଦ୍ରାରେ ବିକ୍ରୟ କରିଥିଲେ ଏବଂ ସେମାନେ ତାଙ୍କ ପ୍ରତି ଅନାଦର ପ୍ରକାଶ କରିଥିଲେ ।୨୦।

## ୩ୟ ବିଭାଗ

ଏବଂ ମିଶରଦେଶର ଯେଉଁ ବ୍ୟକ୍ତି ତାଙ୍କୁ କ୍ରୟ କରିଥିଲେ ସେ ତାଙ୍କ ସ୍ତ୍ରୀଙ୍କୁ କହିଥିଲେ, "ଏହାଙ୍କୁ ସମ୍ମାନ ସହିତ ରହିବାକୁ ଦିଅ, ସମ୍ଭବତଃ ସେ ଆମ୍ଭମାନଙ୍କର ଉପକାରରେ ଆସିବେ ଅଥବା ଆମ୍ଭେମାନେ ତାଙ୍କୁ ପୁତ୍ରରୂପେ ଗ୍ରହଣ କରିବୁଁ" ଏବଂ ଏହିପରି ଆମ୍ଭେ ୟୁସୁଫଙ୍କ ପାଇଁ ପୃଥିବୀରେ (ମିଶର ଦେଶରେ) ସ୍ଥାନ ଦେଇଥିଲୁଁ ଏବଂ ଯେପରିକି ଆମ୍ଭେ ତାଙ୍କୁ ପ୍ରବଚନ ସବୁର ଗୂଢ଼ ଅର୍ଥ ଶିକ୍ଷା ଦେବୁଁ; ଏବଂ ପରମେଶ୍ୱର ନିଜ କାର୍ଯ୍ୟ ଉପରେ ପରାକାନ୍ତ କିନ୍ତୁ ଅଧିକାଂଶ ଲୋକେ ଏହା ଜାଣନ୍ତି ନାହିଁ ।୨୧।

ଏବଂ ଯେତେବେଳେ ସେ ତାଙ୍କର ଯୌବନ ପ୍ରାପ୍ତ ହୋଇଥିଲେ, ଆମ୍ଭେ ତାଙ୍କୁ ବିଜ୍ଞାନ ଓ ବିଦ୍ୟା ଶିଖାଇ ଥିଲୁଁ; ଏହିପରି ଆମ୍ଭେ ପୁଣ୍ୟବାନ ଲୋକମାନଙ୍କୁ ପୁରସ୍କାର ପ୍ରଦାନ କରି ଥାଉଁ ।୨୨।

ଏବଂ ସେ ଯେଉଁ ସ୍ତ୍ରୀଲୋକର ଗୃହରେ ରହୁଥିଲେ, ସେ ସ୍ତ୍ରୀ ତାଙ୍କୁ ତାଙ୍କ ଅନ୍ତରରୁ (ନିଜ ପ୍ରତି) କାମନା କରିଥିଲେ ଏବଂ ଦ୍ୱାରସବୁ ବନ୍ଦକରି ଦେଇଥିଲେ ଏବଂ କହିଥିଲେ, "ଆସ ପ୍ରତି ଆସ" । ୟୁସୁଫ କହିଥିଲେ, "ଆମ୍ଭେ ପରମେଶ୍ୱରଙ୍କ ଆଶ୍ରୟ ଗ୍ରହଣ କରୁଅଛୁଁ, ନିଶ୍ଚୟ ସେ ଆମ୍ଭର ପାଳନକର୍ତ୍ତା, ଆମ୍ଭକୁ ଭଲ ଭାବରେ ରଖି ଅଛନ୍ତି, ନିଶ୍ଚୟ ଅତ୍ୟାଚାରୀମାନେ ସୁଫଳ ପ୍ରାପ୍ତ ହେବେ ନାହିଁ"।୨୩।

ଏବଂ ନିଶ୍ଚୟ ସେହି ସ୍ତ୍ରୀ ଲୋକ ତାଙ୍କୁ (କାମ ଦୃଷ୍ଟିରେ) ଆକାଂକ୍ଷା କରିଥିଲେ ଏବଂ ସେ ମଧ୍ୟ ସେହି ସ୍ତ୍ରୀ ଲୋକର ଆକାଂକ୍ଷୀ ହୋଇଥାନ୍ତେ, ଯଦି ସେ ତାଙ୍କର ପାଳନକର୍ତ୍ତାଙ୍କର ପ୍ରତ୍ୟକ୍ଷ ପ୍ରମାଣ ଦେଖି ନ ଥାନ୍ତେ; ଏହି ରୂପେ ଆମ୍ଭେ ତାଙ୍କଠାରୁ ଅକଲ୍ୟାଣ ଓ ଅଶ୍ଳୀଳତା ଦୂର କରିଥିଲୁଁ, ନିଶ୍ଚୟ ସେ ଆମ୍ଭର ମନୋନୀତ ସେବକମାନଙ୍କର ଅନ୍ତର୍ଗତ ଥିଲେ ।୨୪।

---

୨୦ ଅନାଦର ପ୍ରକାଶ କରିଥିଲେ—ଅର୍ଥାତ୍ ସେଥିପାଇଁ ଯାହା କିଛି ମିଳିଲା ସାମାନ୍ୟ ମୂଲ୍ୟ ନେଇ ତାଙ୍କୁ ବିକ୍ରୟ କରି ଦେଇଥିଲେ ।

୨୧ । ମିଶର ଦେଶର ଯେଉଁ ବ୍ୟକ୍ତି—ମିଶର ଦେଶର ପ୍ରଧାନ ମନ୍ତ୍ରୀ । ପରବର୍ତ୍ତୀ ୩୦ ଶ୍ଳୋକରେ ଏହାଙ୍କୁ 'ଅଜୀଜ' ବୋଲି ଉଲ୍ଲେଖ କରାଯାଇଅଛି । ଏହା ତାଙ୍କର ନାମ ନୁହେଁ; ଏହା ତାଙ୍କର ଉପାଧି । ମିଶର ଦେଶର ରାଜ-ଦରବାରର ସର୍ବ ପ୍ରଧାନ ରାଜକର୍ମଚାରୀଙ୍କ ଉପାଧି 'ଅଜୀଜେ ମିଶର' ଥିଲା । ବୋଧହୁଏ ସେ ମିଶର ଦେଶର ପ୍ରଧାନ ମନ୍ତ୍ରୀ ଥିଲେ ।

ତାଙ୍କ ସ୍ତ୍ରୀ—ଜୋଲେଖା । ପ୍ରଧାନ ମନ୍ତ୍ରୀ ଅପୁତ୍ରିକ ଥିଲେ; ସୁତରାଂ ୟୁସୁଫଙ୍କୁ ପୁତ୍ରପରି ପାଳିବା ପାଇଁ ସେ ତାଙ୍କ ସ୍ତ୍ରୀଙ୍କୁ ଆଦେଶ କରିଥିଲେ ।

୨୩ । ଯେଉଁ ସ୍ତ୍ରୀଲୋକର ଗୃହରେ ରହୁଥିଲେ—ପ୍ରଧାନ ମନ୍ତ୍ରୀଙ୍କ ସ୍ତ୍ରୀ; ଦେଖ ଟୀକା ଏହି ଅଧ୍ୟାୟ ୨୧ ଶ୍ଳୋକ ।

ଅତ୍ୟାଚାରୀମାନେ—ବ୍ୟଭିଚାରୀମାନେ ।

ସୁଫଳ ପ୍ରାପ୍ତ ହେବେ ନାହିଁ—ସେମାନଙ୍କ ପରିଣାମ ଭଲ ହେବ ନାହିଁ ।

୨୪ । ନବଯୌବନା ପରମା ସୁନ୍ଦରୀ ଜୋଲେଖାଙ୍କୁ ନିର୍ଜ୍ଜନ ଗୃହ ମଧ୍ୟରେ ଏକାକିନୀ ପ୍ରାପ୍ତ ହୋଇ ତାଙ୍କ ପ୍ରତି ଅନୁରକ୍ତ ହେବା ନବଯୌବନ ୟୁସୁଫଙ୍କ ପକ୍ଷରେ ନିତାନ୍ତ ସ୍ୱାଭାବିକ ଥିଲା । ମାତ୍ର ପରମେଶ୍ୱର ତାଙ୍କୁ ସଂଯମ

ଏବଂ ଉଭୟେ ଦ୍ୱାର ଅଡ଼କୁ ଦୌଡ଼ି ଯାଇଥିଲେ ଏବଂ ସେହି ସ୍ତ୍ରୀ ଲୋକ ପଶ୍ଚାତ୍ ଦଗରୁ ତାଙ୍କର ଜାମା ଛିନ୍ନ କରିଥିଲେ ଏବଂ ସେ ଦୁହେଁ ତାଙ୍କର ସ୍ୱାମୀଙ୍କୁ ଦ୍ୱାର ଅଗରେ ପାଇଥିଲେ; ସେ ସ୍ତ୍ରୀ ଲୋକ କହିଥିଲେ "ଯେ ତୁମ୍ଭର ପତ୍ନୀ ସହିତ ଅସତ୍ କାମନା କରେ ତାଙ୍କୁ କାରାବାସ ଅଥବା ଯନ୍ତ୍ରଣାପ୍ରଦ ଶାସ୍ତି ଛଡ଼ା ଅଉ କ ପ୍ରତଫଳ ଅଛି ?" ୨୫।

ୟୁସୁଫ କହିଥିଲେ, "ଏହି ସ୍ତ୍ରୀ ଲୋକ ତାଙ୍କ ପ୍ରବୃତ୍ତିରୁ ଅମ୍ଭଙ୍କୁ ଅକାଂକ୍ଷା କରିଥିଲେ"; ଏବଂ ତାଙ୍କର ପରିବାର ମଧ୍ୟରୁ ଜଣେ ଲୋକ (ଏହିପରି) ସାକ୍ଷ୍ୟ ଦେଇ ଥିଲେ, "ଯଦି ତାଙ୍କର ଜାମା ସମ୍ମୁଖ ଦଗରୁ ଛିନ୍ନ ହୋଇଥାଏ ତେବେ ଏହି ସ୍ତ୍ରୀ ସତ୍ୟ କହୁଅଛନ୍ତି ଏବଂ ସେ ମିଥ୍ୟାବାଦୀମାନଙ୍କର ଅନ୍ତର୍ଗତ ।୨୬।

"ଏବଂ ଯଦି ତାଙ୍କର ଜାମା ପଶ୍ଚାତ୍ ଦଗରୁ ଛିନ୍ନ ହୋଇଥାଏ, ତେବେ ଏହି ସ୍ତ୍ରୀଲୋକ ମିଥ୍ୟା କହୁଅଛନ୍ତି ଏବଂ ସେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ ।"୨୭।

ତାପରେ ଯେତେବେଳେ ସେ ତାଙ୍କର ଜାମା ପଶ୍ଚାତ୍ ଦଗରୁ ଛିନ୍ନ ହୋଇ ଥିବାର ଦେଖିଲେ ସେତେବେଳେ ସେ କହିଲେ "ନିଶ୍ଚୟ ଏହା ତୁମ୍ଭ ସ୍ତ୍ରୀ ଜାତିର ଏକ ଫାନ୍ଦ; ନିଶ୍ଚୟ ତୁମ୍ଭମାନଙ୍କର ଫାନ୍ଦ ଗୁରୁତର ।୨୮।

"ହେ ୟୁସୁଫ, ତୁମ୍ଭେ ଏଥିରୁ ବିମୁଖ ହୁଅ, ଏବଂ (ହେ ନାରୀ !) ତୁମ୍ଭେ ତୁମ୍ଭର ଅପରାଧପାଇଁ କ୍ଷମା ପ୍ରାର୍ଥନାକର, ନିଶ୍ଚୟ ତୁମ୍ଭେ ଅପରାଧୀମାନଙ୍କର ଅନ୍ତର୍ଗତ "।୨୯।

## ୪ର୍ଥ ବିଭାଗ

ଏବଂ ନଗରର ମହିଳାମାନେ ( ପରସ୍ପର ) କହିଥିଲେ, "ଅଜୀଜଙ୍କ ସ୍ତ୍ରୀ ତାଙ୍କର ଦାସକୁ ଅନ୍ତରରୁ ଅକାଂକ୍ଷା କରୁଅଛନ୍ତି । ଅବଶ୍ୟ ସେ ଗଭୀର ପ୍ରେମରେ ଆକୃଷ୍ଟ ହୋଇଅଛନ୍ତି; ନିଶ୍ଚୟ ଅମ୍ଭେମାନେ ତାହାଙ୍କୁ ପ୍ରକାଶ୍ୟ ବିପଥଗାମିନୀ ଦେଖୁଅଛୁଁ "।୩୦।

---

ଶକ୍ତି ଦେଇ ଏହି ପାପ କାର୍ଯ୍ୟରୁ ତାଙ୍କୁ ରକ୍ଷା କରିଥିଲେ । କାରଣ ଭବିଷ୍ୟତରେ ଜଣେ ଧର୍ମପ୍ରବର୍ତ୍ତକ କରିବା ପାଇଁ ପରମେଶ୍ୱର ତାଙ୍କୁ ମନୋନୀତ କରିଥିଲେ ।

୨୫ । ଉଭୟେ ଦ୍ୱାର ଅଡ଼କୁ ଦୌଡ଼ି ଯାଇଥିଲେ—ୟୁସୁଫ ଜୋଲେଖାଙ୍କଠାରୁ ପଳାଇବାକୁ ଲାଗିଲେ ଏବଂ ଜୋଲେଖା ତାଙ୍କୁ ଧରିବା ପାଇଁ ତାଙ୍କ ପଛରେ ଦୌଡ଼ିଲେ ।

ସେ ସ୍ତ୍ରୀଲୋକ—ଜୋଲେଖା ଚତୁରତା କରି ନିଜ ସ୍ୱାମୀକୁ କହିଥିଲେ ।

୨୮ । ସେ – ଜୋଲେଖାଙ୍କ ସ୍ୱାମୀ । ତାଙ୍କର ଜାମା—ୟୁସୁଫଙ୍କ ଜାମା ।

ସେ କହିଲେ—ଜୋଲେଖାଙ୍କ ସ୍ୱାମୀ କହିଲେ ।

୨୯ । ତୁମ୍ଭେ ଏଥିରୁ ବିମୁଖ ହୁଅ —ତୁମ୍ଭେ ଏ ବିଷୟ ଭୁଲିଯାଅ ଏବଂ କାହାରି ନିକଟରେ ପ୍ରକାଶ କରନାହିଁ ।

କ୍ଷମା ପ୍ରାର୍ଥନା କର—ବିଚାରରେ ଜୋଲେଖା ଦୋଷିଣୀ ଏବଂ ୟୁସୁଫ ନିର୍ଦ୍ଦୋଷ ପ୍ରମାଣିତ ହୋଇଥିଲେ । ସେଥିପାଇଁ ତାଙ୍କୁ କ୍ଷମା ପ୍ରାର୍ଥନା କରିବା ପାଇଁ ଆଦେଶ କରାଯାଇଥିଲା ।

୩୦ । ଦେଖ ଟୀକା ଏହି ଅଧ୍ୟାୟ ୨୧ ଶ୍ଳୋକ ।

ତାପରେ ଯେତେବେଳେ ଜୋଲେଖା ସେମାନଙ୍କର ଗୁପ୍ତ ଗଞ୍ଜନା ଶ୍ରବଣ କରିଥିଲେ, ସେତେବେଳେ ସେ ସେମାନଙ୍କୁ ଡକେଇ ପଠେଇ ଥିଲେ ଏବଂ ସେମାନଙ୍କ ପାଇଁ ଗୋଟିଏ ଭୋଜି ପ୍ରସ୍ତୁତ କରିଥିଲେ ଏବଂ ସେମାନଙ୍କର ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଛୁରି ଦେଇଥିଲେ ଏବଂ ଜୋଲେଖା (ୟୁସୁଫଙ୍କୁ) କହିଥିଲେ, "ତୁମ୍ଭେ ଏମାନଙ୍କ ଆଗକୁ ଆସ;" ତାପରେ ଯେତେବେଳେ ସେମାନେ ତାଙ୍କୁ ଦେଖି ଥିଲେ ସେତେବେଳେ ତାଙ୍କୁ ଅତି ମହାନ ମନେ କରିଥିଲେ ଏବଂ ସେମାନେ ନିଜ ନିଜ ହାତକୁ କାଟି ପକାଇଥିଲେ, ଏବଂ କହିଥିଲେ "ପରମେଶ୍ୱର ପରମ ପବିତ୍ର ଏତ ମନୁଷ୍ୟ ନୁହନ୍ତି । ଏ ଜଣେ ମହାନ ସ୍ୱର୍ଗଦୂତ ଛଡା ଅନ୍ୟ କିଛି ନୁହନ୍ତି" । ୩୧ ।

ଜୋଲେଖା କହିଥିଲେ, "ବାସ୍ତବରେ ଏ ସେହି ବ୍ୟକ୍ତି ଯାହାଙ୍କ ପାଇଁ ତୁମ୍ଭେମାନେ ମୋତେ ତିରସ୍କାର କରୁଥିଲ ଏବଂ ନିଶ୍ଚୟ ଆମ୍ଭେ ତାଙ୍କୁ ଅନ୍ତରରୁ ଆକାଙ୍‌କ୍ଷା କରିଥିଲୁଁ;କିନ୍ତୁ ସେ ନିଜକୁ ସଂଯତ କରିଥିଲେ ଏବଂ ଆମ୍ଭେ ତାହାଙ୍କୁ ଯାହା ଆଦେଶ କରିଅଛୁଁ ଯଦି ସେ ତାହା ନ କରନ୍ତି ତେବେ ନିଶ୍ଚୟ ସେ କାରାରୁଦ୍ଧ ହେବେ ଏବଂ ନିଶ୍ଚୟ ସେ ଲଜ୍ଜିତମାନଙ୍କର ଅନ୍ତର୍ଗତ ହେବେ" ।୩୨।

ୟୁସୁଫ କହିଥିଲେ; "ହେ ଆମ୍ଭର ପାଳନକର୍ତ୍ତା ! ସେମାନେ ଆମ୍ଭଙ୍କୁ ଯେଉଁ ବିଷୟ ପ୍ରତି ଡାକୁ ଅଛନ୍ତି ତାହା ଅପେକ୍ଷା କାରାଗାର ଆମ୍ଭ ପକ୍ଷରେ ପ୍ରିୟତର, ଏବଂ ଯଦି ତୁମ୍ଭେ ଆମ୍ଭ ଠାରୁ ସେମାନଙ୍କ ଫାନ୍ଦକୁ ଦୂରୀଭୂତ ନକର,ତେବେ ଆମ୍ଭେ ସେମାନଙ୍କ ପ୍ରତି ଅନୁରକ୍ତ ହୋଇଯିବୁଁ ଏବଂ ଆମ୍ଭେ ମୂର୍ଖମାନଙ୍କର ଅନ୍ତର୍ଗତ ହୋଇ ପଡ଼ିବୁଁ ।" ।୩୩।

ତାପରେ ତାଙ୍କର ପାଳନକର୍ତ୍ତା ତାଙ୍କର ପ୍ରାର୍ଥନା ଗ୍ରହଣ କରିଥିଲେ ଏବଂ ତାଙ୍କଠାରୁ ସେମାନଙ୍କର ଫାନ୍ଦ ଦୂର କରିଥିଲେ; ନିଶ୍ଚୟ ସେ ଶ୍ରବଣକାରୀ ମହାଜ୍ଞାନୀ ।୩୪।

ତାପରେ ନିଦର୍ଶନମାନ ଦେଖିବା ପରେ ସେମାନେ ସ୍ଥିରକରିଥିଲେ ଯେ, ତାଙ୍କୁ ଏକ ନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ଅବଶ୍ୟ କାରାରୁଦ୍ଧ କରାଯିବ ।୩୫।

## ୫ମ ବିଭାଗ

ଏବଂ ତାଙ୍କ ସହିତ ଦୁଇଗୋଟି ଯୁବକ କାରାଗାରକୁ (ବନ୍ଦୀରୂପେ) ଆସି ଥିଲେ, ସେ ଦୁହିଙ୍କ ମଧ୍ୟରୁ ଜଣେ କହିଥିଲ;"ନିଶ୍ଚୟ (ସ୍ୱପ୍ନରେ ଆମ୍ଭେ ନିଜକୁ ସୁରା ପ୍ରସ୍ତୁତ କରିବାର ଦେଖିଅଛୁଁ", ଏବଂ ଅନ୍ୟ ଜଣକ କହିଥିଲ, "ନିଶ୍ଚୟ ଆମ୍ଭେ (ସ୍ୱପ୍ନରେ) ନିଜ ମସ୍ତକ ଉପରେ ରୁଟି ବହନ କରିବାର ଦେଖିଅଛୁଁ ଯେଉଁଥିରୁ ପକ୍ଷୀମାନେ ଭକ୍ଷଣ କରୁ ଅଛନ୍ତି"; ସେ ଦୁହେଁ ୟୁସୁଫଙ୍କୁ କହିଥିଲେ "ତୁମ୍ଭେ ଆମ୍ଭମାନଙ୍କୁ ଏହାର ମର୍ମ ପ୍ରକାଶ କର; ନିଶ୍ଚୟ ଆମ୍ଭେମାନେ ତୁମ୍ଭଙ୍କୁ ପୁଣ୍ୟବାନ ଲୋକମାନଙ୍କର ଅନ୍ତର୍ଗତ ଦେଖୁଅଛୁଁ" ।୩୬।

---

୩୧ । ଛୁରି ଦେଇଥିଲେ—ଭୋଜିରେ ଫଳ କାଟି ଖାଇବା ପାଇଁ ସେମାନଙ୍କୁ ଛୁରି ଦିଆଯାଇଥିଲା ।

ମହାପୁରୁଷ ୟୁସୁଫ୍ ତାଙ୍କର ଅନୁପମ ସୌନ୍ଦର୍ଯ୍ୟ ସକାଶେ ଜଗତ୍ ବିଖ୍ୟାତ । ସ୍ତ୍ରୀଲୋକମାନେ ତାଙ୍କର ସୌନ୍ଦର୍ଯ୍ୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପରମେଶ୍ୱରଙ୍କୁ ପ୍ରଶଂସା କରିବାକୁ ଲାଗିଲେ ଯେ ସେ ଏପରି ଏକ ପରମ ସୁନ୍ଦର ପୁରୁଷଙ୍କୁ ସୃଷ୍ଟି କରିଅଛନ୍ତି । ଏବଂ ସେମାନେ ଆତ୍ମହରା ହୋଇ ଫଳ କାଟିବା ପରିବର୍ତ୍ତରେ ନିଜର ହାତକୁ କାଟି ପକାଇଲେ ।

୩୩ । ସେମାନେ, ସ୍ତ୍ରୀଲୋକମାନେ ।

୩୫ । ପ୍ରଧାନ ମନ୍ତ୍ରୀ ଅଜୀଜ ସମସ୍ତ ବିଷୟ ଅବଗତ ହୋଇ ମହାପୁରୁଷ ୟୁସୁଫଙ୍କ ନିଷ୍କଳଙ୍କ ଚରିତ୍ରର ପ୍ରମାଣ ପାଇ ମଧ୍ୟ ଲୋକ ନିନ୍ଦା ଅପବାଦରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ତାଙ୍କୁ କିଛି ଦିନ ପାଇଁ କାରାଗାରରେ ଅବଦ୍ଧ କରି ରଖିବାର ସ୍ଥିର କରିଥିଲେ ଏବଂ ଏହି ଉପାୟରେ ୟୁସୁଫ ନାରୀମାନଙ୍କ ଚକ୍ରାନ୍ତରୁ ରକ୍ଷା ପାଇଥିଲେ ।

ୟୁସୁଫ କହିଥିଲେ, "ତୁମ୍ଭମାନଙ୍କ ଖାଦ୍ୟ ସ୍ୱରୂପ ଯାହା ଦିଆ ହୁଏ ସେହି ଖାଦ୍ୟ ତୁମ୍ଭମାନଙ୍କ ନିକଟ ଉପସ୍ଥିତ ହୋଇନାହିଁ, କିନ୍ତୁ ତାହା ତୁମ୍ଭମାନଙ୍କ ନିକଟ ଉପସ୍ଥିତ ହେବା ପୂର୍ବରୁ ଆମ୍ଭେ ତୁମ୍ଭମାନଙ୍କୁ ଏହାର ମର୍ମ ପ୍ରକାଶ କରିବୁଁ ;ଆମ୍ଭର ପାଳନ କର୍ତ୍ତା ଆମ୍ଭଙ୍କୁ ଯାହା ଶିକ୍ଷା ଦେଇଅଛନ୍ତି ଏହା ତାହାର ଅନ୍ତର୍ଗତ, ଯେଉଁମାନେ ପରମେଶ୍ୱରଙ୍କ ଉପରେ ବିଶ୍ୱାସ କରନ୍ତି ନାହିଁ, ନିଶ୍ଚୟ ଆମ୍ଭେ ସେହି ସମ୍ପ୍ରଦାୟର ଧର୍ମ ଛାଡିଅଛୁଁ ; ଏବଂ ସେମାନଙ୍କର ପରକାଳ ସମ୍ବନ୍ଧରେ ମଧ୍ୟ ସେମାନେ ଅବିଶ୍ୱାସକାରୀ ।୩୭।

"ଏବଂ ଆମ୍ଭେ ଆମ୍ଭର ପୂର୍ବପୁରୁଷ ଇବ୍ରାହିମ ଓ ଇସହାକ ଓ ୟାକୁବଙ୍କର ଧର୍ମ ଅନୁସରଣ କରୁଅଛୁଁ, ପରମେଶ୍ୱରଙ୍କ ସହିତ କୌଣସି ଅଂଶୀ ସ୍ଥାପନ କରିବା ଆମ୍ଭମାନଙ୍କର ଉଚିତ ନୁହେଁ; ଏହା ଆମ୍ଭମାନଙ୍କ ପ୍ରତି ଓ ମାନବମଣ୍ଡଳୀ ପ୍ରତି ପରମେଶ୍ୱରଙ୍କର ଅନୁଗ୍ରହ, କିନ୍ତୁ ଅଧିକାଂଶ ଲୋକ କୃତଜ୍ଞତା ସ୍ୱୀକାର କରନ୍ତି ନାହିଁ ।୩୮।

"ହେ ଆମ୍ଭର କାରାଗାର ସଙ୍ଗୀଦ୍ୱୟ ! ଭିନ୍ନ ଭିନ୍ନ ପ୍ରଭୁମାନେ ଭଲ ନା ଏକମାତ୍ର ପରାକ୍ରାନ୍ତ ପରମେଶ୍ୱର ଭଲ ? ୩୯ ।

"ତୁମ୍ଭେମାନେ ତାଙ୍କୁ ଛାଡ଼ି କେତେ ଗୁଡ଼ିଏ ନାମଛଡ଼ା ଅଉକିଛି ଉପାସନା କରୁନାହଁ, ଯାହାର ନାମ କରଣ ତୁମ୍ଭେମାନେ ଓ ତୁମ୍ଭମାନଙ୍କର ପୂର୍ବପୁରୁଷମାନେ କରିଅଛ, ପରମେଶ୍ୱର ସେ ସମ୍ବନ୍ଧରେ କୌଣସି ପ୍ରମାଣ ଅବତୀର୍ଣ୍ଣ କରି ନାହାନ୍ତି; ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ଆଦେଶ ଦେବାର କ୍ଷମତା ନାହିଁ; ସେ ଆଦେଶ କରି ଅଛନ୍ତି ଯେ, ତାଙ୍କ ବ୍ୟତୀତ ଅନ୍ୟକାହାରି ଉପାସନା କରିବ ନାହିଁ, ଏହାହିଁ ଠିକ ଧର୍ମ କିନ୍ତୁ ଅଧିକାଂଶ ଲୋକେ ଜାଣନ୍ତି ନାହିଁ ।୪୦।

"ହେ ଆମ୍ଭର କାରାଗାର ସଙ୍ଗୀ ଦ୍ୱୟ ! ତୁମ୍ଭ ଦୁଇଜଣଙ୍କ ମଧ୍ୟରୁ ଜଣେ ପରେ ନିଜ ପ୍ରଭୁଙ୍କୁ ସୁରାପାନ କରାଇବ,ଏବଂ ଅନ୍ୟ ଜଣଙ୍କୁ ପରେ ଶୂଳି ଦିଆଯିବ, ତାପରେ ପକ୍ଷୀମାନେ ତାଙ୍କର ମସ୍ତକରୁ ଭକ୍ଷଣ କରିବେ; ତୁମ୍ଭେମାନେ ଯେଉଁ ବିଷୟ ପ୍ରଶ୍ନ କରିଥିଲ ତାହା ମୀମାଂସିତ ହୋଇଯାଇଅଛି ।"୪୧।

ଏବଂ ସେ ଦୁହିଁଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ମୁକ୍ତ ହେବେ ବୋଲି ୟୁସୁଫ ମନେକରିଥିଲେ, ତାଙ୍କୁ କହିଥିଲେ,"ତୁମ୍ଭେ ତୁମ୍ଭର ମୁନିବ ନିକଟରେ ଆମ୍ଭ କଥା ପ୍ରକାଶ କରିବ," କିନ୍ତୁ ସଏତାନ ତାଙ୍କର ମୁନିବ ନିକଟରେ ତାଙ୍କ କଥା ପ୍ରକାଶ କରିବାକୁ ଭୁଲାଇ ଦେଇଥିଲା; ସେଥିପାଇଁ ୟୁସୁଫ କେତେକ ବର୍ଷ କାରାଗାରରେ ରହିଥିଲେ । ୪୨ ।

## ଷଷ୍ଠ ବିଭାଗ

ଏବଂ (ମିଶର ଦେଶର) ରାଜା କହିଥିଲେ, "ନିଶ୍ଚୟ ଆମ୍ଭେ ସ୍ୱପ୍ନ ଦେଖିଅଛୁଁ ଯେ ସାତଗୋଟି ସ୍ଥୂଳକାୟ ଗାଈଙ୍କୁ କ୍ଷୀଣକାୟ ଗାଈ ଭକ୍ଷଣ କରୁ ଅଛନ୍ତି ଏବଂ ସାତଗୋଟି ସବୁଜ ଶସ୍ୟଗୁଚ୍ଛ ଓ ଅଉ ସାତଗୋଟି ଶୁଷ୍କ; ହେ ପ୍ରଧାନମାନେ ! ଆମ୍ଭର ସ୍ୱପ୍ନର ବ୍ୟାଖ୍ୟାକର ଯଦି ତୁମ୍ଭେମାନେ ସ୍ୱପ୍ନର ମର୍ମ କହିବାକୁ ସକ୍ଷମ ଥାଅ"। ୪୩ ।

---

୪୧ । ମୀମାଂସିତ ହୋଇଅଛି—ତାହା ନିଶ୍ଚୟ ଘଟିବ ବୋଲି ପରମେଶ୍ୱରଙ୍କ ଆଦେଶ ହୋଇଅଛି ।

୪୩ । ସାତଗୋଟି ଶସ୍ୟଗୁଚ୍ଛ—ସାତଗୋଟି ଶୁଷ୍କ ଶସ୍ୟ ଗୁଚ୍ଛ ଅନ୍ୟ ସାତୋଟି ସବୁଜ ଶସ୍ୟ ଗୁଚ୍ଛ ଉପରେ ମାଡ଼ିଯାଇ ସେ ସବୁକୁ ଶୁଷ୍କ କରି ପକାଉଅଛି ।

ସେମାନେ କହିଥିଲେ; "ଏହା ଜଟିଳ ସ୍ୱପ୍ନ; ଏବଂ ଆମ୍ଭେମାନେ ଜଟିଳ ସ୍ୱପ୍ନର ମର୍ମ ବ୍ୟାଖ୍ୟା କରିବା ଜାଣୁ ନାହୁଁ ।"୪୪ ।

ଏବଂ ସେହି ଦୁଇଜଣଙ୍କ ମଧ୍ୟରୁ ଯେ କାରାଗାରରୁ ମୁକ୍ତ ଲାଭ କରିଥିଲେ ଏବଂ ବହୁକାଳ ପରେ (ୟୁସୁଫଙ୍କ କଥା) ସ୍ମରଣ କରିଥିଲେ, ସେ କହିଥିଲେ, "ଅମ୍ଭେ ତୁମ୍ଭମାନଙ୍କୁ ଏହାର ମର୍ମ ପ୍ରକାଶ କରିବୁଁ ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ( ୟୁସୁଫଙ୍କ ନିକଟ ) ପ୍ରେରଣ କର" ( ସେ କାରାଗାରରେ ଯାଇ ୟୁସୁଫଙ୍କୁ କହିଲେ) ୪୫ ।

"ହେ ୟୁସୁଫ,ହେ ସତ୍ୟବାଦୀ ! ସାତଗୋଟି ସ୍ଥୂଳକାୟ ଗାଭୀଙ୍କୁ ସାତଗୋଟି କ୍ଷୀଣକାୟ ଗାଭୀ ଭକ୍ଷଣ କରୁ ଅଛନ୍ତି ଏବଂ ସାତ ଗୋଟି ସବୁଜ ସଶ୍ୟଗୁଚ୍ଛ ଓ ଅନ୍ୟ ସାତଗୋଟି ଶୁଷ୍କ, ତମ୍ଭେ ଆମ୍ଭଙ୍କ ଏହାର ବ୍ୟାଖ୍ୟା କହିଦିଅ ଯେପରି ଆମ୍ଭେ ଲୋକମାନଙ୍କ ନିକଟ ଫେରିଯିବୁଁ ଯଦ୍ଦ୍ୱାରା ସେମାନେ ଏହା ଅବଗତ ହୋଇ ପାରିବେ" ।୪୬।

ୟୁସୁଫ କହିଥିଲେ, "ତୁମ୍ଭେମାନେ ସାତବର୍ଷ କ୍ରମାନ୍ୱୟ ଶସ୍ୟ ବପନ କରିବ, ତାପରେ ଯାହା କର୍ତ୍ତନ କରିବ ତାହାର କିୟଦଂଶ ଭକ୍ଷଣ କରିବା ପରେ ଅବଶିଷ୍ଟ ତାହାର ଶସ୍ୟ ଗୁଚ୍ଛ ସହିତ ରଖି ଦେବ ।୪୭।

"ତାପରେ ଏହା ପରର କଠୋର ସାତବର୍ଷ ଆସିବ; ସେତେବେଳେ ତୁମ୍ଭେମାନେ ଏଥିପାଇଁ ପୂର୍ବରୁ ଯାହା ସଞ୍ଚୟ କରି ରଖିଥିବ ତାହା ଭକ୍ଷଣ କରିବ, ତୁମ୍ଭେମାନେ ଯାହା ସଞ୍ଚୟ କରିଥିବ ତାହାର ଅଳ୍ପ ଅଂଶ ବ୍ୟତୀତ ।୪୮।

"ପୁନଶ୍ଚ ଏହାପରେ ଏକବର୍ଷ ଆସିବ, ଯେଉଁଥିରେ ଲୋକମାନେ ଯଥେଷ୍ଟ ବର୍ଷାଜଳ ପାଇବେ ଏବଂ ଯେଉଁଥିରେ ସେମାନେ ପେଷଣ କରିବେ" ।୪୯।

## ୭ମ ବିଭାଗ

ଏବଂ ରାଜା କହିଥିଲେ, 'ତାହାଙ୍କୁ ଆମ୍ଭ ନିକଟ ନେଇ ଆସ;" ତାପରେ ଯେତେବେଳେ ଦୂତ ତାଙ୍କ ନିକଟ ଉପସ୍ଥିତ ହୋଇଥିଲା ସେ କହିଥିଲେ. ତୁମ୍ଭର ମୁନିବଙ୍କ ନିକଟ ଫେରିଯାଅ; ତାପରେ ତାଙ୍କୁ ପ୍ରଶ୍ନକର, "ଯେଉଁ ରମଣୀମାନେ ସେମାନଙ୍କର ହାତସବୁ କାଟିପକାଇ ଥିଲେ ସେମାନଙ୍କର ଅବସ୍ଥା କିପରି ହୋଇଅଛି ? ନିଶ୍ଚୟ ଅମ୍ଭର ପାଳନକର୍ତ୍ତା ସେମାନଙ୍କର ଚକ୍ରାନ୍ତ ଅବଗତ ଅଛନ୍ତି" ।୫୦।

୪୭ । ଶସ୍ୟ ଗୁଚ୍ଛ ସହିତ ରଖିଦେବ—ଯେପରି ପୋକ ନ ଲାଗନ୍ତୁ ।

୪୮ । କଠୋର ସାତବର୍ଷ—ଅନାବୃଷ୍ଟି ହେତୁ ଭୀଷଣ ଦୁର୍ଭିକ୍ଷ । ଅଳ୍ପ ଅଂଶ ବ୍ୟତୀତ—ଅର୍ଥାତ୍ ବପନ ପାଇଁ ଯତ୍ନ ପୂର୍ବକ ରଖି ଦେବ ।

୪୯ । ପେଷଣକରିବେ—ବର୍ଷା ହେଲେ ପ୍ରଚୁର ଶସ୍ୟ ଜାତ ହେବ ଏବଂ ଲୋକମାନେ ଶସ୍ୟ ପେଷି ସେଥିରୁ ତେଲ ଓ ରସ ବାହାର କରିବେ ।

ସେ କହିଥିଲେ, "ତୁମ୍ଭେମାନେ ଯେତେବେଳେ ୟୁସୁଫଙ୍କୁ ତାଙ୍କର ଅନ୍ତରରୁ କାମନା କରିଥିଲ; ସେତେବେଳେ ତୁମ୍ଭମାନଙ୍କର ଅବସ୍ଥା କପରି ହୋଇଥିଲା" ? ରମଣୀମାନେ କହିଥିଲେ, "ପରମେଶ୍ୱର ପରମ ପବିତ୍ର ! ଅମ୍ଭେମାନେ ତାଙ୍କ ବିରୁଦ୍ଧରେ କୌଣସି ଅସତ୍ ବିଷୟ ଅବଗତ ନୋହୁଁ ; ପ୍ରଧାନମନ୍ତ୍ରୀ ଅଜିଜଙ୍କ ସ୍ତ୍ରୀ କହିଥିଲେ, "ବର୍ତ୍ତମାନ ସତ୍ୟ ସୁପ୍ରକାଶିତ ହୋଇଅଛି, ଅମ୍ଭେ ତାଙ୍କୁ ତାଙ୍କ ଅନ୍ତରରୁ ଅକାଙ୍‌କ୍ଷା କରିଥିଲି ଏବଂ ନିଶ୍ଚୟ ସେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ" ।୫୧।

ୟୁସୁଫ କହିଥିଲେ, "ଏହା ଏହି ହେତୁ, ଯେପରି ସେ ଅବଗତ ହେବେ ଯେ ଅମ୍ଭେ ଗୋପନରେ ମଧ୍ୟ ତାଙ୍କ ପ୍ରତି ବିଶ୍ୱାସଘାତକତା କରିନାହୁଁ ଏବଂ ନିଶ୍ଚୟ ପରମେଶ୍ୱର ବିଶ୍ୱାସଘାତକମାନଙ୍କର ଚକ୍ରାନ୍ତକୁ ସଫଳ କରନ୍ତି ନାହିଁ; ।୫୨।

## ତ୍ରୟୋଦଶ ଭାଗ

"ଏବଂ ଅମ୍ଭେ ନିଜକୁ ଦୋଷଶୂନ୍ୟ କହୁ ନାହୁଁ; ନିଶ୍ଚୟ ଅମ୍ଭର ପାଳନକର୍ତ୍ତା ଯାହାକୁ ଅନୁଗ୍ରହ କରନ୍ତି, ତାଙ୍କ ବ୍ୟତୀତ (ଅନ୍ୟମାନଙ୍କୁ) କୁପ୍ରବୃତ୍ତି କୁକର୍ମ ଓ ପାପକାର୍ଯ୍ୟ କରିବାକୁ ଆଦେଶ କରେ; ନିଶ୍ଚୟ ଅମ୍ଭର ପାଳନକର୍ତ୍ତା କ୍ଷମାଶୀଳ କରୁଣାମୟ" ।୫୩।

ଏବଂ ରାଜା କହିଥିଲେ, "ତାହାଙ୍କୁ ଅମ୍ଭ ନିକଟ ନେଇଆସ ଅମ୍ଭେ ତାହାଙ୍କୁ ନିଜପାଇଁ ମନୋନୀତ କରିବୁଁ";ତ.ପରେ ଯେତେବେଳେ ରାଜା ତାଙ୍କ ସହିତ କଥା ବାର୍ତ୍ତା କରିଥିଲେ, ସେ କହିଥିଲେ, "(ହେ ୟୁସୁଫ, ନିଶ୍ଚୟ ତୁମ୍ଭେ ଆଜି ଅମ୍ଭ ନିକଟ ସମ୍ମାନିତ ଓ ବିଶ୍ୱାସ ଯୋଗ୍ୟ" ।୫୪।

ୟୁସୁଫ କହିଥିଲେ, "ତୁମ୍ଭେ ଅମ୍ଭଙ୍କୁ ଦେଶର ଧନ ଭଣ୍ଡାର ଉପରେ ନିଯୁକ୍ତ କର, ନିଶ୍ଚୟ ଅମ୍ଭେ ସୁରକ୍ଷକ; ଏ ବିଷୟରେ ଅଭିଜ୍ଞ ଅଟୁ" ।୫୫।

---

୫୧ । ସେ କହିଥିଲେ—ରାଜା ରମଣୀମାନଙ୍କୁ ଡକାଇ ପଚାରିଥିଲେ ।

୫୨ । ସେ—ପ୍ରଧାନ ମନ୍ତ୍ରୀ ଅଜିଜ । ପ୍ରଧାନମନ୍ତ୍ରୀଙ୍କ ହୃଦୟରୁ ସନ୍ଦେହ ମୋଚନ କରିବା ଉଦ୍ଦେଶ୍ୟରେ ୟୁସୁଫ ରମଣୀମାନଙ୍କ ଦ୍ୱାରା ତାଙ୍କର ନିର୍ଦ୍ଦୋଷତା ପ୍ରମାଣ କରାଇଥିଲେ ।

୫୩ । ଏହି ଶ୍ଳୋକରେ ୟୁସୁଫ କହୁଛନ୍ତି, "ଅମ୍ଭେ ଯେ ଏହି ପାପ କାର୍ଯ୍ୟରୁ ରକ୍ଷା ପାଇଅଛୁ ଏଥିରେ ଅମ୍ଭର କିଛି ବାହାଦୁରି ନାହିଁ । ମନୁଷ୍ୟର କୁପ୍ରବୃତ୍ତି ସାଧାରଣତଃ ତାକୁ ଅସତ୍ କାର୍ଯ୍ୟର ପ୍ରବର୍ତ୍ତନା ଦିଏ । କିନ୍ତୁ ପରମେଶ୍ୱର ଯାହାକୁ ନିଜ ଅନୁଗ୍ରହରୁ ଦୃଢ଼ ସଂଯମ ଶକ୍ତି ଦିଅନ୍ତି, ସେହି କେବଳ କୁପ୍ରବୃତ୍ତିର ଉତ୍ତେଜନାରୁ ରକ୍ଷା ପାଇପାରେ । ମାନବର ଆତ୍ମା (ନଫସ୍) ତିନିପ୍ରକାର ଅବସ୍ଥାରେ ଦେଖାଯାଏ । ୧ମ ନଫ୍‌ସେ ଅମ୍‌ମାରା ବା କୁପ୍ରବୃତ୍ତି ଦ୍ୱାରା ଚାଳିତ ଆତ୍ମା ( ୧୨ ଅଧ୍ୟାୟ ଶ୍ଳୋକ ୫୩ ) ଏହା ମାନବକୁ ମନ୍ଦକାର୍ଯ୍ୟ ପ୍ରତି ଆକର୍ଷଣ କରେ । ଏହା ମାନବ ଆତ୍ମାର ନିକୃଷ୍ଟ ଅବସ୍ଥା । ୨ୟ ନଫ୍‌ସେ ଲଓ୍ୱାମା ବା ତିରସ୍କାରକାରୀ ଆତ୍ମା (୭୫ ଅଧ୍ୟାୟ ୨ଶ୍ଳୋକ) ଏହା କୁପ୍ରବୃତ୍ତି ଦ୍ୱାରା ଚାଳିତ ହୁଏ ନାହିଁ; ଦୈବାତ୍ ମନ୍ଦକାର୍ଯ୍ୟ ପ୍ରତି ପଦସ୍ଖଳନ ଘଟିଲେ ଅନୁତପ୍ତ ହୋଇ ନିଜକୁ ତିରସ୍କାର କରେ । ଏହା ଆତ୍ମାର ମଧ୍ୟମ ଅବସ୍ଥା । ୩ୟ ନଫ୍‌ସେ ମୁତ୍‌ମଇନ୍ନା ବା ସନ୍ତୋଷ ପ୍ରାପ୍ତ ଆତ୍ମା (୮୯ ଅଧ୍ୟାୟ ୨୭ରୁ ୩୦ ଶ୍ଳୋକ ଓ ତାହାର ଟୀକା) ଏହା ସବୁ ପ୍ରକାର ମନ୍ଦକାର୍ଯ୍ୟରୁ ଦୂରରେ ରହି ସତ୍‌କାର୍ଯ୍ୟ କରିବାରେ ସନ୍ତୋଷ ଲାଭ କରେ । ଏହି ମାନବ ଜୀବନର ଚରମ ଲକ୍ଷ୍ୟ । ସତ୍‌କର୍ମର ଅଭ୍ୟାସ ଓ ସାଧନା ବଳରେ ମାନବ ଆତ୍ମା ଏକ ଅବସ୍ଥାରୁ ଅନ୍ୟ ଅବସ୍ଥାକୁ କ୍ରମଶଃ ଉନ୍ନତି ଲାଭ କରେ ।

ଏବ ଏହିପରି ଅମ୍ଭେ ୟୁସୁଫଙ୍କୁ ଭୂଭାଗରେ ସୁପ୍ରତିଷ୍ଠିତ କରିଥିଲୁଁ, ସେ ତନ୍ମଧ୍ୟରେ ଯଥା ଇଚ୍ଛା ଆଧିପତ୍ୟ କରିଥିଲେ; ଅମ୍ଭେ ଯାହାକୁ ଇଚ୍ଛା ତାହାପ୍ରତି ନିଜ ଅନୁଗ୍ରହ ଉପସ୍ଥିତ କରିଥାଉଁ ଏବ ଅମ୍ଭେ ପୁଣ୍ୟ-ବାନ ଲୋକମାନଙ୍କର ପୁରସ୍କାର ନଷ୍ଟ କରୁଁ ନା ।୫୬।

ଏବ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଏବ ସଂଯତ ହୋଇ ଅଛନ୍ତି, ନିଶ୍ଚୟ ସେମାନଙ୍କ ପାଇଁ ପରକାଳର ପୁରସ୍କାରହିଁ ଶ୍ରେଷ୍ଠତର ।୫୭।

## ୮ମ ବିଭାଗ

ଏବଂ ୟୁସୁଫଙ୍କ ଭ୍ରାତାମାନେ ଆସିଥିଲେ ଏବଂ ତାଙ୍କ ନିକଟ ଉପସ୍ଥିତ ହୋଇଥିଲେ; ତାପରେ ୟୁସୁଫ ସେମାନଙ୍କୁ ଚିହ୍ନି ପାରିଥିଲେ ଅଥଚ ସେମାନେ ତାଙ୍କୁ ଚିହ୍ନି ପାରି ନଥିଲେ ।୫୮।

ଏବଂ ଯେତେବେଳେ ସେ ସେମାନଙ୍କ ଜିନିସ ପତ୍ର ସେମାନଙ୍କୁ ଯୋଗାଇଥିଲେ, ସେତେବେଳେ ସେ କହିଥିଲେ, "ତୁମ୍ଭମାନଙ୍କର ପିତାଙ୍କ ତରଫରୁ ବିମାତାଙ୍କ ଗର୍ଭରେ ଜନ୍ମିଥିବା ଭାଇଙ୍କୁ ଅମ୍ଭ ନିକଟ ଆଣ, ତୁମ୍ଭେମାନେ କଅଣ ଦେଖୁନାହଁ ଯେ ଅମ୍ଭେ ପୂର୍ଣ୍ଣ ପରିମାଣରେ ଶସ୍ୟ ପ୍ରଦାନ କରିଥାଉଁ ଏବଂ ଅମ୍ଭେ ଶ୍ରେଷ୍ଠତମ ଅତିଥିପରାୟଣ ? ।୫୯।

"କିନ୍ତୁ ଯଦି ତୁମ୍ଭେମାନେ ତାଙ୍କୁ ଅମ୍ଭ ନିକଟ ନ ଆଣ,ତେବେ ତୁମ୍ଭେମାନେ ଅମ୍ଭଠାରୁ ପରିମାପରେ ଶସ୍ୟ ପାଇବ ନାହିଁ ଏବଂ ତୁମ୍ଭେମାନେ ଅମ୍ଭ ନିକଟକୁ ପୁଣି ଆସିବ ନାହିଁ" ।୬୦।

ସେମାନେ କହିଥିଲେ, "ଶୀଘ୍ର ଅମ୍ଭେମାନେ ତାଙ୍କ ପିତାଙ୍କ ନିକଟ ତାଙ୍କ ସମ୍ବନ୍ଧରେ ପ୍ରକାଶ କରିବୁଁ ଏବଂ ଅମ୍ଭେମାନେ ନିଶ୍ଚୟ ଏହା କରିବୁଁ" ।୬୧।

ଏବଂ ୟୁସୁଫ ଆପଣାର ଭୃତ୍ୟମାନଙ୍କୁ କହିଥିଲେ, "ତୁମ୍ଭେମାନେ ସେମାନଙ୍କର ଶସ୍ୟଥଳୀ ମଧ୍ୟରେ ସେମାନେ ଦେଇଥିବା ଶସ୍ୟର ମୂଲ୍ୟ ରଖିଦିଅ, ଯେତେବେଳେ ସେମାନେ ସେମାନଙ୍କ ପରିବାର ନିକଟକୁ ଫେରିଯିବେ, ସେମାନେ ସେତେବେଳେ ଯେପରି ଏହାକୁ ଜାଣିପାରିବେ, ତାହା ହେଲେ ସେମାନେ ପୁନର୍ବାର ଆସିବେ" ।୬୨।

ତା ପରେ ଯେତେବେଳେ ସେମାନେ ସେମାନଙ୍କର ପିତାଙ୍କ ନିକଟକୁ ଫେରି ଯାଇଥିଲେ, ସେତେବେଳେ ସେମାନେ କହିଥିଲେ, "ହେ ଅମ୍ଭମାନଙ୍କର ପିତା ! ଅମ୍ଭମାନଙ୍କ ପ୍ରତି ପରିମାପ ନିଷିଦ୍ଧ ହୋଇଅଛି । ଅତଏବ ଅମ୍ଭମାନଙ୍କ ସଙ୍ଗରେ ଅମ୍ଭମାନଙ୍କ ଭାଇକୁ ପରିମାପ ପାଇଁ ପଠାଅ ଏବ ନିଶ୍ଚୟ ଅମ୍ଭେମାନେ ତାହାକୁ ନିରାପଦରେ ରଖିବୁ ।୬୩।

---

୫୬।୫୭। ଏହି ଦୁଇ ଶ୍ଳୋକ ପରମେଶ୍ୱରଙ୍କ ଉକ୍ତି ଅଟେ ।

୫୮ । ଭ୍ରାତାମାନେ ଆସିଥିଲେ—ଦୁର୍ଭିକ୍ଷହେତୁ ଶସ୍ୟ କ୍ରୟ କରିବା ନିମନ୍ତେ କେନାନରୁ ମିଶରକୁ ଆସିଥିଲେ ।

୬୦ । ପରିମାପରେ ଶସ୍ୟ ପାଇବ ନାହିଁ—ତୁମ୍ଭମାନଙ୍କୁ ଶସ୍ୟ ଦିଆଯିବ ନାହିଁ ।

୬୩ । ଅମ୍ଭମାନଙ୍କର ଭାଇ ବେନଯାମିନ୍ ଅମ୍ଭମାନଙ୍କ ସଙ୍ଗେ ନ ଗଲେ ଅମ୍ଭମାନଙ୍କୁ ଆଉ ଶସ୍ୟ କିଣିବାକୁ ମିଳିବ ନାହିଁ ।

ସେମାନଙ୍କ ପିତା କହୁଥିଲେ, "କିନ୍ତୁ ଏଥିପୂର୍ବେ ତାର ଭ୍ରାତା (ୟୁସୁଫ) ସମ୍ବନ୍ଧରେ ଆମ୍ଭେ ତୁମ୍ଭମାନଙ୍କୁ ଯେପରି ବିଶ୍ୱାସ କରିଥିଲି, ତା ସମ୍ବନ୍ଧରେ ଆମ୍ଭେ ତୁମ୍ଭମାନଙ୍କୁ ସେପରି ବିଶ୍ୱାସ କରୁନାହୁଁ ; ବରଂ ପରମେଶ୍ୱରହିଁ ସର୍ବୋତ୍କୃଷ୍ଟ ରକ୍ଷାକାରୀ ଏବଂ ସେହି କରୁଣାମୟମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ କରୁଣାମୟ" ।୬୪।

ଏବଂ ଯେତେବେଳେ ସେମାନେ ସେମାନଙ୍କର ଜିନିଷପତ୍ର ଫିଟାଇଥିଲେ, ସେତେବେଳେ ସେମାନେ ସେମାନଙ୍କୁ ଫେରାଇ ଦିଆଯାଇ ଥିବା ନିଜ ନିଜ ମୂଲ୍ୟ ପାଇଥିଲେ; ସେମାନେ କହୁଥିଲେ, "ହେ ଆମ୍ଭ-ମାନଙ୍କର ପିତା । ଆମ୍ଭେମାନେ ଆଉ କଣ ଚାହୁଁ ? ଏହି ଯେ ଆମ୍ଭମାନଙ୍କର ଶସ୍ୟମୂଲ୍ୟ ଆମ୍ଭମାନଙ୍କୁ ଫେରାଇ ଦିଆଯାଇ ଅଛି; ଏବଂ ଆମ୍ଭେମାନେ ନିଜ ପରିବାର ପାଇଁ ଶସ୍ୟାଦି ଆଣିବୁ ଏବଂ ଆମ୍ଭମାନଙ୍କର ଭାଇକୁ ନିରାପଦ ରଖିବୁଁ ଏବଂ ଏକ ଓଟ ଶସ୍ୟ ଅଧିକ ଆଣିବୁଁ ; ଏହା ଅଳ୍ପ ପରିମାଣ ଅଟେ" ।୬୫।

ସେମାନଙ୍କ ପିତା କହୁଥିଲେ, "ଆମ୍ଭେ କଦାପି ତାକୁ ତୁମ୍ଭମାନଙ୍କ ସଙ୍ଗେ ପଠାଇବୁଁ ନାହିଁ, ଯେ ପର୍ଯ୍ୟନ୍ତ ତୁମ୍ଭେମାନେ ଆମ୍ଭ ନିକଟ ପରମେଶ୍ୱରଙ୍କ ନାମରେ ଶପଥ ନ କର ଯେ ତୁମ୍ଭେମାନେ ଦୈବଦୁର୍ଘଟଣା ଛଡ଼ା ତାକୁ ଆମ୍ଭ ନିକଟ ନିଶ୍ଚୟ ଫେରାଇ ଆଣିବ," ଯେତେବେଳେ ସେମାନେ ସମସ୍ତେ ତାଙ୍କ ନିକଟ ଶପଥ କରିଥିଲେ, ସେତେବେଳେ ସେ କହୁଥିଲେ "ପରମେଶ୍ୱରହିଁ ଆମ୍ଭମାନଙ୍କ ବାକ୍ୟର ସାକ୍ଷୀ ଏବଂ ତାହା ଉପରେ ଅଭିଭାବକ" ।୬୬।

ଏବଂ ସେ ପୁଣି କହୁଥିଲେ, "ହେ ଆମ୍ଭର ପୁତ୍ରଗଣ । ତୁମ୍ଭେମାନେ ସମସ୍ତେ ଗୋଟିଏ ଦ୍ୱାର ଦେଇ (ନଗରରେ) ପ୍ରବେଶ କରିବ ନାହିଁ, ବରଂ ତୁମ୍ଭେମାନେ ଭିନ୍ନ ଭିନ୍ନ ଦ୍ୱାର ଦେଇ ପ୍ରବେଶ କରିବ; ଆମ୍ଭର ଏହି ଉପଦେଶ ଦ୍ୱାରା ଆମ୍ଭେ ପରମେଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ତୁମ୍ଭମାନଙ୍କୁ କୌଣସି ବିଷୟରେ ଲାଭବାନ କରି ନ ପାରୁ ; ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାର ଆଦେଶ ଦେବାର କ୍ଷମତା ନାହିଁ; ଆମ୍ଭେ ତାଙ୍କର ଉପରେ ନିର୍ଭର କରୁଅଛୁଁ ଏବଂ ନିର୍ଭରଶୀଳମାନେ ତାଙ୍କର ଉପରେ ନିର୍ଭର କରିବା ଉଚିତ" ।୬୭।

ଏବଂ ସେମାନଙ୍କର ପିତା ଯେପରି ଭାବରେ ସେମାନଙ୍କୁ ଆଦେଶ କରିଥିଲେ,ସେମାନେ ସେହିପରି ଭାବରେ (ନଗରରେ) ପ୍ରବେଶ କରିଥିଲେ; ଏହା କେବଳ ମାତ୍ର ୟାକୁବଙ୍କ ଅନ୍ତରର ଇଚ୍ଛା ଯାହା ସେ ପୂର୍ଣ୍ଣ କରିଥିଲେ, ଏତଦ୍ ବ୍ୟତୀତ ଏହା ପରମେଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କ ପାଇଁ କୌଣସି ଉପକାରରେ ଆସି ନ

---

୬୫ । ଅଳ୍ପ ପରିମାଣ ଅଟେ—ମିଶର ଦେଶରେ ପ୍ରଚୁର ଶସ୍ୟ ଥିବାରୁ ଏକ ଓଟ୍ଟ ବୋଝ ପରିମାଣ ଶସ୍ୟ ଆମ୍ଭମାନଙ୍କୁ ଦେଇ ଦେବା ମିଶର ଦେଶର ମନ୍ତ୍ରୀ ପକ୍ଷରେ ଅତି ସହଜ ହେବ ।

ଏକ ଓଟ ଶସ୍ୟ—ଯେତେ ଶସ୍ୟ ଗୋଟିଏ ଓଟ ଉପରେ ବୋଝେଇ ହୋଇ ପାରିବ ସେହି ପରିମାଣ ଶସ୍ୟ—ଯଥା ଏକ ଗାଡ଼ି ଧାନ, ଏକ ବଳଦ ଗୃହଣ ଇତ୍ୟାଦି ।

୬୭ । ଏଗାର ଜଣ ବିଦେଶୀ ଲୋକ ଦଳବଦ୍ଧ ଭାବରେ ଗୋଟିଏ ଦ୍ୱାର ଦେଇ ମିଶର ଦେଶର ରାଜଧାନୀ ମଧ୍ୟରେ ପ୍ରବେଶ କଲେ ମିଶର ଦେଶବାସୀମାନଙ୍କ ମନରେ ସନ୍ଦେହ ଜାତ ହୋଇପାରେ; ସେଥିପାଇଁ କୌଣସି ବିପଦର ଆଶଙ୍କା ନିବାରଣ ପାଇଁ ୟାକୁବ ତାଙ୍କର ପୁତ୍ରମାନଙ୍କୁ ଏପରି ନ କରିବା ପାଇଁ ଉପଦେଶ ଦେଇଥିଲେ । ମାତ୍ର ଏହାଦ୍ୱାରା ପରମେଶ୍ୱରଙ୍କ ଇଚ୍ଛାକୁ ଏଡ଼ିଦେବାର ସମ୍ଭାବନା ନଥିଲା ।

ଥିଲା ଏବଂ ନିଶ୍ଚୟ ସେ ଜ୍ଞାନବାନ ଥିଲେ, କାରଣ ଅମ୍ଭେ ତାଙ୍କୁ ଜ୍ଞାନ ଦେଇଥିଲୁ, କିନ୍ତୁ ଅଧିକାଂଶ ଲୋକେ ତାହା ଜାଣନ୍ତି ନାହିଁ ।୬୮।

## ୯ମ ବିଭାଗ

ଏବଂ ଯେତେବେଳେ ସେମାନେ ୟୁସୁଫଙ୍କ ନିକଟରେ ଉପସ୍ଥିତ ହୋଇଥିଲେ, ସେତେବେଳେ ସେ ନିଜ ଭ୍ରାତା ବେନଯାମିନଙ୍କୁ ନିଜ ନିକଟରେ ସ୍ଥାନ ଦେଇ କହିଥିଲେ, "ନିଶ୍ଚୟ ଅମ୍ଭେ ତୁମ୍ଭର ଭ୍ରାତା, ଅତଏବ ସେମାନେ (ଅମ୍ଭମାନଙ୍କ ବିରୁଦ୍ଧରେ) ଯାହା କରି ଅଛନ୍ତି, ସେଥିପାଇଁ ଦୁଃଖିତ ହୁଅନା" ।୬୯।

ତା'ପରେ ଯେତେବେଳେ ୟୁସୁଫ ସେମାନଙ୍କ ପାଇଁ ଜିନିଷପତ୍ର ଯୋଗାଇଥିଲେ, ସେତେବେଳେ ତାଙ୍କର ସହୋଦର ଭାଇଙ୍କ ଶସ୍ୟ ଥଳୀରେ ଗୋଟିଏ ପାନପାତ୍ର ରଖି ଦେଇଥିଲେ, ତା ପରେ ଜଣେ ଘୋଷଣାକାରୀ ଚିତ୍କାର କରି କହିଥିଲା, "ହେ ବଣିକଦଳ ! ତୁମ୍ଭେମାନେ ନିଶ୍ଚୟ ଚୋର ।" ।୭୦।

ସେମାନେ ସେମାନଙ୍କର ସମ୍ମୁଖୀନ ହୋଇ କହିଥିଲେ, "ତୁମ୍ଭମାନଙ୍କର କଅଣ ଚୋରି ଯାଇଛି ?" ।୭୧।

ସେମାନେ କହିଥିଲେ, "ଅମ୍ଭେମାନେ ରାଜାଙ୍କର ପାନପାତ୍ର ହରାଇ ଅଛୁଁ ଏବଂ ଯେ ତାହା ଆଣି ଦେବ ସେ ଏକ ଓଟ ଶସ୍ୟ ପାଇବ, ଏବଂ ଅମ୍ଭେ ସେଥିପାଇଁ ଦାୟୀ" ।୭୨।

ୟୁସୁଫଙ୍କ ଭାଇମାନେ କହିଥିଲେ, "ପରମେଶ୍ୱରଙ୍କ ରାଣ ! ତୁମ୍ଭେମାନେ ନିଶ୍ଚୟ ଜାଣ ଯେ ଅମ୍ଭେମାନେ ଏ ଦେଶରେ ଅଶାନ୍ତି ଉତ୍ପାଦନ କରିବାକୁ ଆସିନାହୁଁ ଏବଂ ଅମ୍ଭେମାନେ ଚୋର ନୋହୁଁ" ।୭୩।

ମିଶର ଦେଶର ଲୋକମାନେ କହିଥିଲେ, "ଯଦି ତୁମ୍ଭେମାନେ ମିଥ୍ୟାବାଦୀ ହୁଅ, ତେବେ ଏହାର ପ୍ରତିଫଳ କଅଣ ହେବ ?" ।୭୪।

ୟୁସୁଫଙ୍କ ଭାଇମାନେ କହିଥିଲେ, "ତାହାର ପ୍ରତିଫଳ ଏହି ଯେ ଯାହାର ଶସ୍ୟ ଥଳୀରୁ ତାହା ମିଳିବ ସେହି ତାହାର ବିନିମୟ; ଏହିପରି ଅମ୍ଭେମାନେ ଅତ୍ୟାଚାରୀମାନଙ୍କୁ ଶାସ୍ତି ପ୍ରଦାନ କରିଥାଉଁ" ।୭୫।

ତା'ପରେ ସେ ତାଙ୍କ ସହୋଦର ଭ୍ରାତାର ଶସ୍ୟଥଳୀ (ତଲାସ କରିବା) ପୂର୍ବେ ସେମାନଙ୍କର ଶସ୍ୟ ଥଳୀ ଅନୁସନ୍ଧାନ ଆରମ୍ଭ କରିଥିଲେ; ପରେ ସେ ତାଙ୍କର ସହୋଦର ଭ୍ରାତାର ଶସ୍ୟଥଳୀରୁ ତାହାକୁ ବାହାର କରିଥିଲେ, ଅମ୍ଭେ ୟୁସୁଫଙ୍କ ପାଇଁ ଏହିପରି କୌଶଳ କରିଥିଲୁ; ପରମେଶ୍ୱରଙ୍କ ଇଚ୍ଛା ବ୍ୟତୀତ ରାଜାଙ୍କ ବିଧାନ

---

୬୮ । ଅନିଷ୍ଟରୁ ଅଣାକାରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ୟାକୁବ ତାଙ୍କର ପୁତ୍ରମାନଙ୍କୁ ଦଳବଦ୍ଧ ଭାବରେ ଗୋଟିଏ ଦ୍ୱାର ଦେଇ ମିଶର ଦେଶର ରାଜଧାନୀରେ ପ୍ରବେଶ ନକରି ଭିନ୍ନ ଭିନ୍ନ ଦ୍ୱାର ଦେଇ ପ୍ରବେଶ କରିବାକୁ ଆଦେଶ କରିଥିଲେ ଏବଂ ତାଙ୍କର ପୁତ୍ରମାନେ ସେହିପରି କରିଥିଲେ । କିନ୍ତୁ ଏପରି କରିବା ଦ୍ୱାରା ପରମେଶ୍ୱର ଯାହା କରିବା ପାଇଁ ଇଚ୍ଛା କରିଥିଲେ (ଅର୍ଥାତ୍ ତାଙ୍କର କନିଷ୍ଠ ପୁତ୍ରଙ୍କୁ ମିଶର ଦେଶରେ ଆବଦ୍ଧ କରି ରଖିବା) ସେଥିରୁ ରକ୍ଷା ପାଇବାର ଉପାୟ ନଥିଲା ।

୭୨ । ଏକ ଓଟ ଶସ୍ୟ—ଦେଖ ଟୀକା ଏହି ଅଧ୍ୟାୟ ୬୫ ଶ୍ଳୋକ ।

୭୫ । ସେହି ତାହାର ବିନିମୟ—ଯାହାର ଶସ୍ୟ ଥଳୀ ଭିତରୁ ଚୋରି ଯାଇଥିବା ପାନପାତ୍ର ମିଳିବ, ସେହି ଲୋକ ନିଜେ ବିନିମୟର ଦଣ୍ଡସ୍ୱରୂପ ପାନପାତ୍ରର ମାଲିକର କ୍ରୀତଦାସ ରୂପେ ପରିଗଣିତ ହେବ ।

ଅନୁଯାୟୀ ସେ ନିଜ ଭ୍ରାତାଙ୍କୁ ଗ୍ରହଣ କରିବାର ଅଧିକାରୀ ନ ଥିଲେ; ଅମ୍ଭେ ଯାହାକୁ ଇଚ୍ଛା ପଦ ମର୍ଯ୍ୟାଦାରେ ସମୁନ୍ନତ କରୁଁ; ଏବଂ ଅମ୍ଭେ ସମସ୍ତ ଜ୍ଞାନବାନମାନଙ୍କ ଉପରେ ଶ୍ରେଷ୍ଠତମ ମହାଜ୍ଞାନୀ ।୭୬।

ସେମାନେ କହିଥିଲେ, "ଯଦି ସେ ଚୋରି କରିଥାଏ, ତେବେ ନିଶ୍ଚୟ ଏଥିପୂର୍ବେ ତାର ଭାଇ ମଧ୍ୟ ଚୋରି କରିଥିଲା"; କିନ୍ତୁ ୟୁସୁଫ ତାହା ନିଜ ଅନ୍ତରରେ ଗୋପନ କରିଥିଲେ ଏବଂ ସେ ତାହା ସେମାନଙ୍କ ନିକଟ ପ୍ରକାଶ କରି ନ ଥିଲେ; ସେ କହିଥିଲେ, "ତୁମ୍ଭେମାନେ ନିକୃଷ୍ଟତର ଅବସ୍ଥାରେ ଅଛ ଏବଂ ତୁମ୍ଭେମାନେ ଯାହା ବର୍ଣ୍ଣନା କରୁଅଛ, ପରମେଶ୍ୱର ତାହା ଜାଣନ୍ତି" ।୭୭।

ସେମାନେ କହିଥିଲେ, "ହେ ଅଜିଜ ! ନିଶ୍ଚୟ ତାହାର ପିତା ଅତ୍ୟନ୍ତ ବୃଦ୍ଧ, ଅତଏବ ତାହାର ପରିବର୍ତ୍ତିରେ ଅମ୍ଭମାନଙ୍କ ମଧ୍ୟରୁ ଏକ ଜଣକୁ ବାନ୍ଧିରଖ; ନିଶ୍ଚୟ ଅମ୍ଭେମାନେ ତୁମ୍ଭକୁ ପୁଣ୍ୟବାନ ଲୋକମାନଙ୍କର ଅନ୍ତର୍ଗତ ଦେଖୁଅଛୁଁ" ।୭୮।

ୟୁସୁଫ କହିଥିଲେ, "ପରମେଶ୍ୱର ରକ୍ଷା କରନ୍ତୁ ! ଅମ୍ଭେମାନେ ଯାହା ନିକଟରୁ ଅମ୍ଭମାନଙ୍କର ଦ୍ରବ୍ୟ ପାଇଅଛୁଁ, ତାକୁ ଛାଡ଼ି ଅନ୍ୟକୁ ବନ୍ଦୀ ରଖିବୁଁ, ତାହାହେଲେ ନିଶ୍ଚୟ ଅମ୍ଭେମାନେ ଅତ୍ୟାଚାରୀ ହେବୁଁ" ।୭୯।

## ୧୦ଶ ବିଭାଗ

ତାପରେ ଯେତେବେଳେ ସେମାନେ ତାଙ୍କଠାରୁ ନିରାଶ ହୋଇଥିଲେ, ସେତେବେଳେ ସେମାନେ ସ୍ୱତନ୍ତ୍ର ଭାବରେ ଗୋପନରେ ପରାମର୍ଶ କରିବାକୁ ଲାଗିଲେ; ସେମାନଙ୍କର ମୁଖିଆ କହିଥିଲେ, "ତୁମ୍ଭେମାନେ କଅଣ ଜାଣନା ଯେ, ତୁମ୍ଭମାନଙ୍କର ପିତା ତୁମ୍ଭମାନଙ୍କଠାରୁ ପରମେଶ୍ୱରଙ୍କ ଶପଥ ଗ୍ରହଣ କରି ଅଛନ୍ତି ଏବଂ ଏହାପୂର୍ବେ ତୁମ୍ଭେମାନେ ୟୁସୁଫ ସମ୍ବନ୍ଧରେ କମ ତ୍ରୁଟି କରିନାହିଁ ? ଅତଏବ ଅମ୍ଭପାଇଁ ଅମ୍ଭ ପିତାଙ୍କର ଅନୁମତି ଅଥବା ଅମ୍ଭପାଇଁ ପରମେଶ୍ୱରଙ୍କ ଅଦେଶ ନ ହେବା ପର୍ଯ୍ୟନ୍ତ ଅମ୍ଭେ ଏହି ସ୍ଥାନରୁ କଦାପି ଅନ୍ତର ହେବୁନାହିଁ; ଏବଂ ସେହି ଶ୍ରେଷ୍ଠତମ ଆଦେଶଦାତା ।୮୦।

---

୭୬ । ୟୁସୁଫଙ୍କ କନିଷ୍ଠ ଭ୍ରାତା ବେନଯାମିନର ଶସ୍ୟ ଥଳୀରେ ପାନପାତ୍ର ଗୋପନରେ ରଖି ଦେଇ ତାଙ୍କୁ ମିଥ୍ୟାରେ ଦୋଷୀ ସାବ୍ୟସ୍ତ କରି ମିଶର ଦେଶରେ ତାଙ୍କୁ ଅବଦ୍ଧ କରି ରଖିବା ଅନ୍ୟାୟ ବୋଧ ହେଲେ ମଧ୍ୟ ୟୁସୁଫ ପରମେଶ୍ୱରଙ୍କ ଆଦେଶରେ ଏପରି କରିଥିଲେ । କାରଣ ଏହାଦ୍ୱାରା ତାଙ୍କ ପିତାମାତା ଓ ଭ୍ରାତାମାନଙ୍କ ସହିତ ପୁନର୍ମିଳନ ଏବଂ ୟୁସୁଫଙ୍କ ସ୍ୱପ୍ନର ସତ୍ୟତା ପ୍ରମାଣ ପରମେଶ୍ୱରଙ୍କ ଉଦ୍ଦେଶ୍ୟ ଥିଲା ।
ସେ—ୟୁସୁଫ । ଚୋରିର ଘୋଷଣା ହେବାରୁ ତାହାର ଅନୁସନ୍ଧାନ କରିବା ପାଇଁ ୟୁସୁଫ ନିଜେ ଉପସ୍ଥିତ ହୋଇଥିଲେ ।

୭୭ । ୟୁସୁଫଙ୍କ ସହୋଦର କନିଷ୍ଠ ଭାଇ ତଥାକଥିତ ଚୋରି ଅପରାଧରେ ଦୋଷୀ ସାବ୍ୟସ୍ତ ହେବାରୁ ତାଙ୍କର ବିମାତାଙ୍କ ଗର୍ଭଜାତ ଭ୍ରାତାମାନେ ନିଜକୁ ନିର୍ଦ୍ଦୋଷ ପ୍ରମାଣ କରିବା ପାଇଁ କହିଲେ, ସେ ଚୋରି କରିଥିବେ, କାରଣ ତାଙ୍କର ବଡ଼ ଭାଇ (ୟୁସୁଫ) ମଧ୍ୟ ଏଥିପୂର୍ବେ ଚୋରି କରିଥିଲେ । ୟୁସୁଫ ଆତ୍ମପରିଚୟ ଗୋପନ ରଖି ମନେ ମନେ କହିଲେ, "ତୁମ୍ଭେମାନେ ଆମ୍ଭ ଦୁହିଙ୍କ ଅପେକ୍ଷା ନିକୃଷ୍ଟତର ଅବସ୍ଥାରେ ଅଛ, ଏକଥା ପରମେଶ୍ୱର ଜାଣନ୍ତି ।" ସେମାନେ ବେନଯାମିନଙ୍କୁ ବିଷ ଚକ୍ଷୁରେ ଦେଖୁଥିଲେ । କାରଣ ସେମାନଙ୍କ ପିତା ତାଙ୍କୁ ମଧ୍ୟ ୟୁସୁଫଙ୍କ ପରି ଅଧିକ ଭଲ ପାଉଥିଲେ । ଏହି ଅଧ୍ୟାୟ ୮ମ ଶ୍ଲୋକ ଦେଖ ।

"ତୁମ୍ଭେମାନେ ତୁମ୍ଭମାନଙ୍କର ପିତାଙ୍କ ନିକଟ ଫେରିଯାଅ, ତା ପରେ କୁହ ଯେ, 'ହେ ଅମ୍ଭ-ମାନଙ୍କର ପିତା ! ତୁମ୍ଭର ପୁତ୍ର ଚୋରି କରିଅଛି; ଏବଂ ଅମ୍ଭେମାନେ ଯାହା ଜାଣୁ ତାହାଛଡ଼ା ସାକ୍ଷ୍ୟ ଦେଉନାହୁଁ ଏବଂ ଅମ୍ଭେମାନେ ଅଦୃଶ୍ୟ ବିଷୟର ରକ୍ଷକ ନୋହୁଁ ।୮୧।

"ଏବଂ ଅମ୍ଭେମାନେ ଯେଉଁଠାରେ ଥିଲୁଁ ସେହି ନଗରର ଲୋକମାନଙ୍କୁ ଅଥବା ଅମ୍ଭେମାନେ ଯେଉଁମାନଙ୍କ ମଧ୍ୟରେ ଥିଲୁଁ ସେହି ଦଳକୁ ପଚାରିଲେ ନିଶ୍ଚୟ ତୁମ୍ଭେ ଜାଣି ପାରିବ ଯେ, ଅମ୍ଭେମାନେ ସତ୍ୟ-କଥା କହୁଅଛୁଁ" ।୮୨।

ୟାକୁବ କହିଥିଲେ "ନା ତୁମ୍ଭମାନଙ୍କ ପ୍ରବୃତ୍ତି ସବୁ ତୁମ୍ଭମାନଙ୍କ ପାଇଁ ଏ କଳ୍ପିତ ଘଟଣା ରଚିଛି ଅଛି; ସୁତରାଂ ଧୈର୍ଯ୍ୟଧାରଣହିଁ ଶ୍ରେୟସ୍କର, ସମ୍ଭବତଃ ପରମେଶ୍ୱର ସେମାନଙ୍କୁ ଏକତ୍ର ଅମ୍ଭ ନିକଟ ଆଣିବେ, ନିଶ୍ଚୟ ସେ ମହାଜ୍ଞାନୀ ବିଜ୍ଞାନୀ' ।୮୩।

ଏବଂ ସେ ସେମାନଙ୍କଠାରୁ ବିମୁଖ ହୋଇଥିଲେ ଏବଂ କହିଥିଲେ, "ୟୁସୁଫଙ୍କପାଇଁ ଦୁଃଖ" ଏବଂ ଅନୁତାପରେ ତାଙ୍କର ଚକ୍ଷୁଦ୍ୱୟ ଶୁଭ୍ରହୋଇ ଯାଇଥିଲା, ତା ପରେ ସେ ଦୁଃଖଜର୍ଜ୍ଜରିତ ହୋଇଥିଲେ ।୮୪।

ସେମାନେ କହିଥିଲେ, "ପରମେଶ୍ୱରଙ୍କ ଶପଥ ! ତୁମ୍ଭେ ଶେଷ ରୋଗଗ୍ରସ୍ତ ଅଥବା ବିନଷ୍ଟ ନ ହେବା ପର୍ଯ୍ୟନ୍ତ ୟୁସୁଫଙ୍କୁ ଭୁଲି ପାରିବ ନାହିଁ" ।୮୫।

ୟାକୁବ କହିଥିଲେ, "ଅମ୍ଭେ କେବଳ ପରମେଶ୍ୱରଙ୍କ ନିକଟରେହିଁ ନିଜର ବ୍ୟାକୁଳତା ଓ ଦୁଃଖର ଅଭିଯୋଗ କରୁଅଛୁଁ ଏବଂ ପରମେଶ୍ୱରଙ୍କ ଠାରୁ ଅମ୍ଭେ (ପ୍ରତ୍ୟାଦେଶ ଦ୍ୱାରା) ଯାହା ଅବଗତ ଅଛୁଁ, ତୁମ୍ଭେ-ମାନେ ତାହା ଜାଣନା ।୮୬।

"ହେ ଅମ୍ଭର ପୁତ୍ରମାନେ ! ତୁମ୍ଭେମାନେ (ପୁଣି ମିଶର ଦେଶକୁ) ଯାଅ, ତାପରେ ୟୁସୁଫ ଓ ତାଙ୍କର ଭାଇ ସମ୍ବନ୍ଧରେ ଅନୁସନ୍ଧାନ କର ଏବଂ ପରମେଶ୍ୱରଙ୍କ ଅନୁଗ୍ରହରୁ ନିରାଶ ହୁଅନା; ନିଶ୍ଚୟ ଅବିଶ୍ୱାସକାରୀ ସମ୍ପ୍ରଦାୟ ବ୍ୟତୀତ ଆଉ କେହି ପରମେଶ୍ୱରଙ୍କ ଅନୁଗ୍ରହରୁ ନିରାଶ ହୁଏ ନାହିଁ" ।୮୭।

ତାପରେ ଯେତେବେଳେ ସେମାନେ ତାଙ୍କ ଅଗରେ ଉପସ୍ଥିତ ହୋଇଥିଲେ ସେତେବେଳେ ସେମାନେ କହିଥିଲେ,"ହେ ଅଜିଜ ! ଅମ୍ଭମାନଙ୍କ ଉପରେ ଓ ଅମ୍ଭମାନଙ୍କର ପରିବାରମାନଙ୍କ ଉପରେ ବିପଦ ଉପସ୍ଥିତ ହୋଇଅଛି ଏବଂ ଅମ୍ଭେମାନେ ସାମାନ୍ୟ ମୂଳଧନ ନେଇ ଆସିଅଛୁଁ, ଅତଏବ ଅମ୍ଭମାନଙ୍କୁ ପୂର୍ଣ୍ଣ ପରିମାଣରେ ଶସ୍ୟ ଦାନ କର ଏବଂ ଅମ୍ଭମାନଙ୍କ ପ୍ରତି ଦାନଶୀଳ ହୁଅ; ନିଶ୍ଚୟ ପରମେଶ୍ୱର ଦାନଶୀଳ ମାନଙ୍କୁ ପୁରସ୍କାର ଦେଇ ଥାଆନ୍ତି" ୮୮ ।

ୟୁସୁଫ କହିଥିଲେ "ତୁମ୍ଭେମାନେ ପରିଣାମ ନ ଭାବି ୟୁସୁଫ ଓ ତାଙ୍କ ଭ୍ରାତା ସହିତ କପଟ ବ୍ୟବହାର କରିଥିଲ ତାହା କଅଣ ତୁମ୍ଭେମାନେ ଜାଣ ?" ।୮୯ ।

---

୮୩ । ୟାକୁବଙ୍କ ପୁତ୍ରମାନେ ତାଙ୍କ ନିକଟ ଫେରିଯାଇ ତାଙ୍କୁ ଏ ସମସ୍ତ ବିଷୟ ଜଣାଇଲା ପରେ ୟାକୁବ କହିଥିଲେ । "ନା, ତୁମ୍ଭମାନଙ୍କ ପ୍ରବୃତ୍ତିସବୁ ତୁମ୍ଭମାନଙ୍କ ପାଇଁ କଳ୍ପିତ ଘଟଣା ରଚିଛି ଅଛି; ସୁତରାଂ ଧୈର୍ଯ୍ୟ ଧାରଣ ହିଁ ଶ୍ରେୟସ୍କର—ଯେତେବେଳେ ୟାକୁବ ୟୁସୁଫଙ୍କୁ ହେଟା ବାଘ ଖାଇଯିବାର କଥା ଶୁଣିଥିଲେ ସେତେବେଳେ ଅବିକଳ ଏହି ବାକ୍ୟ ଉଚ୍ଚାରଣ କରିଥିଲେ । ୧୮ଶ ଶ୍ଳୋକ ଦେଖ ।

୮୮ । ତାଙ୍କ ଅଗରେ—ୟୁସୁଫଙ୍କ ଅଗରେ ।

୮୯ । ୟୁସୁଫ ଓ ତାଙ୍କ ଭ୍ରାତା ବେନଯାମିନଙ୍କ ପ୍ରତି ବ୍ୟବହାର—ଏ ଦୁଇଭାଇଙ୍କୁ ସେମାନଙ୍କ ପିତା ସେମାନଙ୍କ ଅପେକ୍ଷା ଅଧିକ ଭଲ ପାଉଥିଲେ । ଦେଖ ୮ମ ଶ୍ଳୋକ । ସେଥିପାଇଁ ସେମାନେ ଏ ଦୁଇ ଭାଇଙ୍କୁ ବିପଦରେ

ସେମାନେ କହୁଥିଲେ,"ତୁମ୍ଭେ କଅଣ ସତେ ୟୁସୁଫ ?" ସେ କହୁଥିଲେ, "ଅମ୍ଭେହିଁ ୟୁସୁଫ ଏବଂ ଏ ଅମ୍ଭର ସହୋଦର ଭାଇ, ନିଶ୍ଚୟ ପରମେଶ୍ୱର ଅମ୍ଭମାନଙ୍କ ପ୍ରତି ଦୟାକର ଅଛନ୍ତି, ଯେ ଜଣେ ଭୟ ଓ ଧୈର୍ଯ୍ୟ ଧାରଣ କରେ ପରମେଶ୍ୱର ଏପରି ପୁଣ୍ୟବାନ ଲୋକମାନଙ୍କର ପୁରସ୍କାର କଦାପି ନଷ୍ଟ କରନ୍ତି ନାହିଁ" ।୯୦।

ସେମାନେ (ଅନୁତପ୍ତ ହୋଇ) କହୁଥିଲେ "ପରମେଶ୍ୱରଙ୍କ ରାଣ । ନିଶ୍ଚୟ ପରମେଶ୍ୱର ତୁମ୍ଭଙ୍କୁ ଅମ୍ଭମାନଙ୍କ ଉପରେ ମନୋନୀତ କରି ଅଛନ୍ତି ଏବଂ ନିଶ୍ଚୟ ଅମ୍ଭେମାନେ ଅପରାଧୀ ଥିଲୁଁ ।୯୧।

ୟୁସୁଫ କହୁଥିଲେ, "ଆଜି ତୁମ୍ଭମାନଙ୍କ ଉପରେ କୌଣସି ଅଭିଯୋଗ ନାହିଁ, ପରମେଶ୍ୱର ତୁମ୍ଭମାନଙ୍କୁ କ୍ଷମା କରନ୍ତୁ; ଏବଂ ସେହି ଦୟାଶୀଳମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ଦୟାଶୀଳ ।୯୨।

"ତୁମ୍ଭେମାନେ ଅମ୍ଭର ଏହି ଜାମା ନେଇଯାଅ ଏବଂ ଏହାକୁ ଅମ୍ଭର ପିତାଙ୍କ ମୁଖ ଉପରେ ରଖି ଦିଅ; ଏତଦ୍ଦ୍ୱାରା ସେ ଦୃଷ୍ଟି ଶକ୍ତି ପାଇ ଯିବେ, ଏବଂ ତୁମ୍ଭେମାନେ ନିଜ ପରିବାରମାନଙ୍କ ସହିତ ଏକାସଙ୍ଗରେ ଅମ୍ଭନିକଟ ଚାଲିଆସ" ।୯୩।

## ୧୧ଶ ବିଭାଗ

ଏବଂ ଯେତେବେଳେ ବଣିକଦଳ ଯାତ୍ରା କରିଥିଲେ,ସେମାନଙ୍କ ପିତା (ତାଙ୍କ ପାଖର ଲୋକମାନଙ୍କୁ) କହୁଥିଲେ;"ଯଦି ତୁମ୍ଭେମାନେ ଅମ୍ଭଙ୍କୁ ହତବୁଦ୍ଧି ମନେ ନ କର ତେବେ ନିଶ୍ଚୟ ଆମ୍ଭେ ୟୁସୁଫଙ୍କ ଗନ୍ଧ ପାଉଅଛୁଁ" ।୯୪।

ସେମାନେ କହୁଥିଲେ, "ପରମେଶ୍ୱରଙ୍କ ରାଣ । ନିଶ୍ଚୟ ତୁମ୍ଭେ ପୁରାତନ ଭ୍ରାନ୍ତିରେ ରହିଅଛ" ।୯୫।

---

ଦେଖୁଥିଲେ । ସେମାନେ ୟୁସୁଫଙ୍କୁ କୂଅରେ ପକାଇ ଦେଇଥିଲେ ଏବଂ ଏ ଦୁଇ ଭାଇଙ୍କୁ ଚୋର ବୋଲି କହୁଥିଲେ । ୭୭ ଶ୍ଳୋକ ଓ ତାହାର ଟୀକା ଦେଖ ।

୯୦ । ୟୁସୁଫଙ୍କ କରୁଣ ହୃଦୟ ବିଗଳିତ ହୋଇଥିଲା । ସେ ଆଉ ଆତ୍ମ ଗୋପନ କରି ନପାରି ଭାଇମାନଙ୍କୁ ନିଜର ପରିଚୟ ଦେଇଥିଲେ ।

୯୪ । ବଣିକ ଦଳ—ୟୁସୁଫଙ୍କ ଭାଇମାନେ ମିଶର ଛାଡ଼ି କେନାନ ଯାତ୍ରା କରିଥିଲେ । ଏମାନଙ୍କ ସଙ୍ଗେ କେତେକ ବଣିକ ମଧ୍ୟ ସହଯାତ୍ରୀ ଥିଲେ ।

ମହାପୁରୁଷ ୟୁସୁଫଙ୍କ ଭାଇମାନେ ତାଙ୍କଠାରୁ ବିଦାୟ ହୋଇ ତାଙ୍କର ଜାମା ନେଇ ମିଶର ଦେଶରୁ ସେମାନଙ୍କର ପିତା ୟାକୁବଙ୍କ ନିକଟ ଯାତ୍ରା କରିଥିଲେ, ୟାକୁବ ନିଜ ଦେଶ କେନାନରେ ରହି ତାଙ୍କର ନିକଟସ୍ଥ ଲୋକମାନଙ୍କୁ କହୁଥିଲେ, "ଆମ୍ଭେ ୟୁସୁଫଙ୍କ ଗନ୍ଧ ପାଉଅଛୁ," ଅର୍ଥାତ୍ ୟୁସୁଫଙ୍କ ଜୀବଦ୍ଦଶାରେ ସ୍ଥିତି ଓ ଉଚ୍ଚପଦ ପ୍ରାପ୍ତି ବିଷୟରେ ସୁସମ୍ବାଦ ପାଇଥିବାର ସେ ପ୍ରକାଶ କରିଥିଲେ ।

୯୫ । ତାଙ୍କ ପାଖର ଲୋକମାନେ କହୁଥିଲେ, "ଏହା ତୁମ୍ଭର ପୁରାତନ ମାନସିକ ବିକାର ଛଡ଼ା ଆଉ କିଛି ନୁହେଁ । ଏହା ସମ୍ପୂର୍ଣ୍ଣ ଅସମ୍ଭବ ।" ପରମେଶ୍ୱର ବାଣୀ ଶକ୍ତିଦ୍ୱାରା ୟାକୁବଙ୍କୁ ଏହି ସୁସମ୍ବାଦ ଜଣାଇଥିଲେ, ମାତ୍ର ଅନ୍ୟ-ଲୋକମାନେ ତାହା ବୁଝିପାରି ନଥିଲେ ।

ତାପରେ ଯେତେବେଳେ ସୁସମ୍ବାଦ ବହନକାରୀ ଉପସ୍ଥିତ ହୋଇ ତାଙ୍କ ମୁଖ ଉପରେ ଜାମା ରଖି ଦେଇଥିଲା, ସେତେବେଳେ ସେ ତାଙ୍କ ଦୃଷ୍ଟି ଶକ୍ତି ଫେରପାଇଥିଲେ: ସେ କହିଥିଲେ,"ଆମ୍ଭେ କଅଣ ତୁମ୍ଭ-ମାନଙ୍କୁ କହିନାହୁଁ ଯେ ତୁମ୍ଭେମାନେ ଯାହା ଅବଗତ ନୁହ, ନିଶ୍ଚୟ ଆମ୍ଭେ ପରମେଶ୍ୱରଙ୍କ ଠାରୁ ତାହା ଅବଗତ ଅଛୁଁ ?"।୯୬।

ସେମାନେ କହିଥିଲେ "ହେ ଆମ୍ଭମାନଙ୍କ ପିତା । ତୁମ୍ଭେ ଆମ୍ଭମାନଙ୍କର ଅପରାଧମାନଙ୍କ ପାଇଁ ଆମ୍ଭମାନଙ୍କ ସକାଶେ କ୍ଷମା ପ୍ରାର୍ଥନା କର, ନିଶ୍ଚୟ ଆମ୍ଭେମାନେ ଅପରାଧକାରୀ ଥିଲୁଁ" ।୯୭।

ୟାକୁବ କହିଥିଲେ, "ଆମ୍ଭେ ଶୀଘ୍ର ତୁମ୍ଭମାନଙ୍କ ପାଇଁ ନିଜ ପାଳନକର୍ତ୍ତାଙ୍କ ନିକଟ କ୍ଷମା ପ୍ରାର୍ଥନା କରିବୁ; ନିଶ୍ଚୟ ସେ କ୍ଷମାଶୀଳ କରୁଣାମୟ" ।୯୮।

ତାପରେ ଯେତେବେଳେ ସେମାନେ ୟୁସୁଫଙ୍କ ଅଗରେ ଉପସ୍ଥିତ ହୋଇଥିଲେ,ସେତେବେଳେ ସେ ନିଜ ପିତାମାତାଙ୍କୁ ଆପଣା ନିକଟରେ ସ୍ଥାନ ଦେଇଥିଲେ, ଏବଂ କହିଥିଲେ,"ଯଦି ପରମେଶ୍ୱର ଇଚ୍ଛା କରନ୍ତି, ତୁମ୍ଭେମାନେ ନିରାପଦରେ ମିଶରରେ ପ୍ରବେଶ କର" ।୯୯।

ଏବଂ ସେ ନିଜ ପିତାମାତାଙ୍କୁ ଉଚ୍ଚ ଆସନ ଉପରେ ବସାଇଥିଲେ ଏବଂ ସେମାନେ ତାଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ ଏବଂ ୟୁସୁଫ କହିଥିଲେ, "ହେ ଆମ୍ଭର ପିତା । ଏହାହିଁ ଆମ୍ଭର ପୂର୍ବ ସ୍ୱପ୍ନର ମର୍ମ୍ମ ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ତାହା ସତ୍ୟରେ ପରିଣତ କରିଅଛନ୍ତି, ଏବଂ ଯେତେବେଳେ ସେ ଆମ୍ଭଙ୍କୁ କାରାଗାରରୁ ବାହାର କରି ଅଛନ୍ତି ଏବଂ ଯେତେବେଳେ ସଇତାନ ଆମ୍ଭର ଓ ଆମ୍ଭର ଭାଇମାନଙ୍କ ମଧ୍ୟରେ ବିରୋଧ ଘଟାଇବାପରେ ତୁମ୍ଭମାନଙ୍କୁ ମରୁ ପ୍ରାନ୍ତରରୁ ଆଣି ଅଛନ୍ତି, ନିଶ୍ଚୟ ସେ ଆମ୍ଭ ପ୍ରତି ଅନୁଗ୍ରହ କରି ଅଛନ୍ତି; ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ଯାହା ପ୍ରତି ଇଚ୍ଛା ଦୟାଶୀଳ ହୁଅନ୍ତି, ନିଶ୍ଚୟ ସେ ମହାଜ୍ଞାନୀ ବିଜ୍ଞାନୀ" ।୧୦୦।

ୟୁସୁଫ ପ୍ରାର୍ଥନା କରି ଥିଲେ "ହେ ଆମ୍ଭର ପାଳନକର୍ତ୍ତା । ନିଶ୍ଚୟ ତୁମ୍ଭେ ଆମ୍ଭଙ୍କୁ କ୍ଷମତା ଦେଇଅଛ ଏବଂ ପ୍ରବଚନମାନଙ୍କର ମର୍ମ୍ମ ବ୍ୟାଖ୍ୟା ଶିକ୍ଷା ଦେଇ ଅଛ, ହେ ଆକାଶମଣ୍ଡଳ ଓ ଭୂମଣ୍ଡଳର ଆଦି ସ୍ରଷ୍ଟା । ତୁମ୍ଭେ ଇହକାଳ ଓ ପରକାଳରେ ଆମ୍ଭର ରକ୍ଷାକର୍ତ୍ତା, ତୁମ୍ଭେ ଆମ୍ଭଙ୍କୁ ଆତ୍ମସମର୍ପଣକାରୀ ରୂପେ ମୃତ୍ୟୁ ଦାନକର, ଏବଂ ପୁଣ୍ୟବାନ ଲୋକମାନଙ୍କ ସହିତ ସମ୍ମିଳିତ କର" । ୧୦୧ ।

(ହେ ମୋହମ୍ମଦ) ସେହି ଅଦୃଶ୍ୟ ସମ୍ବାଦ ସବୁରୁ ଆମ୍ଭେ ଏହା ତୁମ୍ଭ ପ୍ରତି ପ୍ରତ୍ୟାଦେଶ କରୁ ଅଛୁ, ଯେତେବେଳେ ସେମାନେ ସେମାନଙ୍କର କାର୍ଯ୍ୟର ସଂକଳ୍ପ କରିଥିଲେ ଏବଂ ସେମାନେ ଚକ୍ରାନ୍ତ କରିଥିଲେ, ତୁମ୍ଭେ ସେମାନଙ୍କ ନିକଟରେ ନଥିଲ ।୧୦୨।

---

୯୬ । ସୁସମ୍ବାଦ ବହନକାରୀ—ଯେଉଁଲୋକ ୟୁସୁଫଙ୍କ ଜାମା ନେଇ ଆସିଥିଲା । ଏ ଲୋକ ସେହି ଭାଇମାନଙ୍କ ମଧ୍ୟରୁ ଜଣେ ଥିଲା ।

୧୦୨ । ଶ୍ଳୋ୧୦୧ରେ ଠାରେ ମହାପୁରୁଷ ୟୁସୁଫଙ୍କ ଉପାଖ୍ୟାନ ଶେଷ ହେଲା । ପରବର୍ତ୍ତୀ ଶ୍ଳୋକମାନଙ୍କରେ ଏହି ଉପାଖ୍ୟାନରୁ ଯେଉଁ ମହାଶିକ୍ଷାମାନ ଲାଭ ହେଉଅଛି ,ପରମେଶ୍ୱର ସେଗୁଡ଼ିକ ସୁନ୍ଦରଭାବରେ ବର୍ଣ୍ଣନା କରିଅଛନ୍ତି । ସେମାନେ—ୟୁସୁଫଙ୍କ ସାବତ ଭାଇମାନେ ।

ସେମାନେ—ୟୁସୁଫଙ୍କ ସାବତ ଭାଇମାନେ ।

୧୦୨-୧୦୪ । ମହାପୁରୁଷ ମୋହମ୍ମଦ ପୂର୍ବରୁ ଏହି ଉପାଖ୍ୟାନ ଜାଣିବାର କୌଣସି ଉପାୟ ନଥିଲା । ସେ ପରମେଶ୍ୱରଙ୍କ ପ୍ରତ୍ୟାଦେଶରୁ ଏହା ଅବଗତ ହୋଇ ଲୋକମାନଙ୍କ ଅଗରେ ପ୍ରକାଶ କରିଥିଲେ । ଏହା ତାଙ୍କର ଶ୍ରେଷ୍ଠତ

ଏବ ଯଦ୍ୟପି ତୁମ୍ଭେ ଏକାନ୍ତ ଇଚ୍ଛା କରୁଅଛ, ତଥାପି ଅଧିକାଂଶ ଲୋକେ ବିଶ୍ୱାସ କରିବେ ନାହିଁ । ୧୦୩ ।

ଏବ ତୁମ୍ଭେ ଏହାପାଇଁ ସେମାନଙ୍କ ନିକଟରୁ କୌଣସି ପୁରସ୍କାର ପ୍ରାର୍ଥନା କରୁନାହଁ, ଏହା ସମସ୍ତ ଜଗତ ପାଇଁ ଉପଦେଶ ଛଡ଼ା ଆଉ କିଛି ନୁହେ ।୧୦୪।

## ୧୨ଶ ବିଭାଗ

ଏବ ଆକାଶ ମଣ୍ଡଳ ଓ ଭୂମଣ୍ଡଳରେ କେତେ ନିଦର୍ଶନ ରହିଅଛି ଯାହା ସେମାନଙ୍କ ଆଗରେ ପ୍ରକାଶ ପାଉଅଛି ଏବଂ ସେମାନେ ସେଥିରୁ ବିମୁଖ ହେଉ ଅଛନ୍ତି ।୧୦୫।

ଏବ ସେମାନଙ୍କ ମଧ୍ୟରୁ ଅଧିକାଂଶ ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରନ୍ତି ନାହିଁ, କିନ୍ତୁ ସେମାନେ ଅଂଶୀସ୍ଥାପନକାରୀ ।୧୦୬।

ତେବେ କଅଣ ସେମାନେ ସେମାନଙ୍କ ପ୍ରତି ପରମେଶ୍ୱରଙ୍କ ଠାରୁ ପରିବେଷ୍ଟନକାରୀ ଶାସ୍ତିର ଆଗମନ ବିଷୟରେ ଅଥବା ସେମାନଙ୍କ ନିକଟ ସେହି ମୁହୂର୍ତ୍ତିର ହଠାତ ଉପସ୍ଥିତ ବିଷୟରେ, ଯାହା ସେମାନେ ଜାଣି ପାରିବେ ନାହିଁ, ନିଃଶଙ୍କ ହୋଇଅଛନ୍ତି ? ।୧୦୭।

ତୁମ୍ଭେ କୁହ, "ଏହାହିଁ ଆମ୍ଭର ପଥ, ଅମ୍ଭେ ଓ ଅମ୍ଭର ଅନୁଗାମୀମାନେ ପ୍ରତ୍ୟକ୍ଷକାରୀରୂପେ ତୁମ୍ଭମାନଙ୍କୁ ପରମେଶ୍ୱରଙ୍କ ପ୍ରତି ଅହ୍ୱାନ କରୁଅଛୁଁ; ଏବ ପରମେଶ୍ୱର ମହାନ ପବିତ୍ର, ଏବ ଅମ୍ଭେ ଅଂଶୀବାଦୀମାନଙ୍କର ଅନ୍ତର୍ଗତ ନୋହୁଁ" ।୧୦୮।

ଏବ (ହେ ମୋହମ୍ମଦ) ତୁମ୍ଭ ପୂର୍ବେ ଅମ୍ଭେ ମନୁଷ୍ୟମାନଙ୍କ ଛଡ଼ା ଅଉ କାହାକୁ (ପ୍ରେରିତ ପୁରୁଷ ରୂପେ) ପ୍ରେରଣ କରିନାହୁଁ, ଯାହାଙ୍କ ପ୍ରତି ଅମ୍ଭେ ପ୍ରତ୍ୟାଦେଶ କରିଥିଲୁଁ ଏବ ଯେଉଁମାନେ ନଗରରେ ରହୁଥିଲେ; ସେମାନେ କଅଣ ପୃଥିବୀରେ ବୁଲି ଦେଖି ନାହାନ୍ତି ଯେ ସେମାନଙ୍କ ପୂର୍ବବର୍ତ୍ତୀମାନଙ୍କର ପରିଣାମ କଅଣ ହୋଇ ଅଛି ? ଏବ ନିଶ୍ଚୟ ଧର୍ମଭୀରୁମାନଙ୍କ ପାଇଁ ପରଲୋକର ବାସସ୍ଥାନ ଶ୍ରେଷ୍ଠତର; ତେବେ କଅଣ ତୁମ୍ଭେମାନେ ଏହା ବୁଝି ପାରୁନାହଁ ? ।୧୦୯।

---

ପୁରୁଷ ଓ ଧର୍ମ ପ୍ରବର୍ତ୍ତକ ହେବାର ପ୍ରମାଣ ଅଟେ । ମାତ୍ର ଲୋକମାନେ ଏହି ପ୍ରମାଣ ପାଇଲା ପରେ ମଧ୍ୟ ତାଙ୍କ ଉପରେ ବିଶ୍ୱାସ କଲେ ନାହିଁ । ଏଥିପାଇଁ ଦୁଃଖିତ ନ ହେବାକୁ ପରମେଶ୍ୱର ସାନ୍ତ୍ୱନା ଦେଉଅଛନ୍ତି; କାରଣ ଏହା ସମସ୍ତ ଜଗତବାସୀମାନଙ୍କ ପାଇଁ ଉପଦେଶ ।

୧୦୫ ନିଦର୍ଶନ—ଏପରି ପଦାର୍ଥମାନ ଯାହା ପରମେଶ୍ୱରଙ୍କ ଏକତା, ଅଦ୍ୱିତୀୟତା ଓ ଅସାମାନ୍ୟ ମହିମା ପ୍ରକାଶ କରୁଅଛି ।

୧୦୭ । ପରିବେଷ୍ଟନକାରୀ ଶାସ୍ତି—ପରମେଶ୍ୱରଙ୍କଠାରୁ ଅବିଶ୍ୱାସକାରୀମାନଙ୍କ ପ୍ରତି ପ୍ରେରିତ କଠୋର ଯନ୍ତ୍ରଣାଦାୟକ ଶାସ୍ତି ।

ସେହି ମୁହୂର୍ତ୍ତି—ଶେଷ ବିଚାର ଦିନ । ଦେଖ ୧ମ ଅଧ୍ୟାୟ ଶ୍ଳୋକାଙ୍କ ।

୧୦୯ । ମାନବ ଜାତିର ଉପଦେଷ୍ଟା ମାନବ ଛଡ଼ା ଅଉ କେହି ହୋଇ ନ ପାରନ୍ତି । କାରଣ ସ୍ୱର୍ଗଦୂତମାନଙ୍କଠାରୁ ଉପଦେଶ ଗ୍ରହଣ କରିବାର ଶକ୍ତି ସବୁ ମନୁଷ୍ୟମାନଙ୍କର ନାହିଁ । ଏଥିପାଇଁ ପରମେଶ୍ୱର ନଗରବାସୀ କୌଣସି ମନୁଷ୍ୟକୁ ଧର୍ମପ୍ରବର୍ତ୍ତକରୂପେ ମନୋନୀତ କରି ପ୍ରେରଣ କରନ୍ତି । ଏହା ପରମେଶ୍ୱରଙ୍କ ନିୟମ, ପ୍ରତି ଯୁଗରେ ଏହା ହୋଇ ଆସିଅଛି । ଯେଉଁମାନେ ଏହାର ବ୍ୟତିକ୍ରମ ଆଶା କରନ୍ତି, ସେମାନେ ବିଭ୍ରାନ୍ତ ।

ଏପରିକି, ଯେତେବେଳେ ପ୍ରେରିତପୁରୁଷମାନେ ନିରାଶ ହୋଇ ପଡ଼ିଲେ ଏବଂ ସେମାନେ ଅନୁମାନ କଲେ ଯେ ନିଶ୍ଚୟ ସେମାନଙ୍କୁ ମିଥ୍ୟାବାଦୀ କୁହାଯାଇଅଛି, ସେତେବେଳେ ସେମାନଙ୍କ ନିକଟ ଆମ୍ଭର ସାହାଯ୍ୟ ଉପସ୍ଥିତ ହୋଇଥିଲା, ତାପରେ ଆମ୍ଭେ ଯାହାଙ୍କୁ ଇଚ୍ଛା ରକ୍ଷା କରିଥିଲୁ; ଏବଂ ଅପରାଧୀ ସମ୍ପ୍ରଦାୟ ଠାରୁ ଆମ୍ଭର ଶାସ୍ତି ନିବାରିତ ହୁଏନାହିଁ ।୧୧୦।

ନିଶ୍ଚୟ ସେମାନଙ୍କ ଉପାଖ୍ୟାନରେ ଅନୁସନ୍ଧାନକାରୀମାନଙ୍କ ପାଇଁ ଉଦାହରଣ ରହିଅଛି;(କୋରାନ) କଳ୍ପିତ ବିବରଣ ନୁହେ, ବରଂ ପୂର୍ବରୁ ଯାହା ଅଛି ଏହା ତାହାର ସତ୍ୟତା ପ୍ରମାଣକାରୀ ଓ ସବୁ ବିଷୟର ବ୍ୟାଖ୍ୟାକାରୀ ଏବଂ ଏହା ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ସୁପଥ ଓ କରୁଣା ।୧୧୧।

—*—

---

୧୧୦ । ଆମ୍ଭର ସାହାଯ୍ୟ – ପ୍ରେରିତ ପୁରୁଷମାନଙ୍କୁ ସାହାଯ୍ୟ କରିବାପାଇଁ ପରମେଶ୍ୱରଙ୍କ ପ୍ରତିଶ୍ରୁତ ଅବିଶ୍ୱାସକାରୀମାନଙ୍କପ୍ରତି କଠୋର ଯନ୍ତ୍ରଣାଦାୟକ ଶାସ୍ତି । ଏହା ଉପସ୍ଥିତ ହେବାରେ ବିଳମ୍ବ ଘଟିପାରେ, କିନ୍ତୁ ଏହା ନିଶ୍ଚୟ ଘଟିବ । ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ଦେଇ କହୁଅଛନ୍ତି ଯେ, ନିରାଶ ହେବାର କୌଣସି କାରଣ ନାହିଁ ।

୧୧୧ । ପୂର୍ବରୁ ଯାହା ଅଛି—କୋରାନ ଅବତୀର୍ଣ୍ଣ ହେବା ପୂର୍ବରୁ ଯାହା ଘଟି ସାରିଅଛି । ପବିତ୍ର କୋରାନ ଗ୍ରନ୍ଥରେ ବର୍ଣ୍ଣିତ ପୂର୍ବବର୍ତ୍ତୀ ଧର୍ମପ୍ରବର୍ତ୍ତକମାନଙ୍କର ଉପାଖ୍ୟାନମାନ କଳ୍ପିତ ଗଳ୍ପ ନୁହେ, ବରଂ ପୂର୍ବେ ଘଟିଥିବା ସତ୍ୟ ଘଟନା ଅଟେ ଏବଂ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ଘଟନାମାନଙ୍କର ସତ୍ୟତା ପ୍ରମାଣକାରୀ ଅଟେ । ଏହା ବିଶ୍ୱାସକାରୀ ଓ ସତ୍ୟ ଅନୁସନ୍ଧାନକାରୀ ଲୋକମାନଙ୍କ ପକ୍ଷରେ ମହାଶିକ୍ଷା, ସୁପଥ ଓ ପରମେଶ୍ୱରଙ୍କ କରୁଣାର ବିଷୟ ଅଟେ ।

—o—

## ୧୩ ଅଧ୍ୟାୟ

ନାମ—ଅର୍ ରାଦ୍ (ବଜ୍ରଧ୍ୱନି) ।
ମକ୍କାରେ ଅବତୀର୍ଣ୍ଣ । ଏଥିରେ ୬ ଗୋଟି ବିଭାଗ ଏବଂ ୪୩ଗୋଟି ଶ୍ଲୋକ ଅଛି ।
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ଅଲଫ୍, ଲମ୍, ମୀମ୍, ରା; ଏହି ଶ୍ଲୋକମାନ ଧର୍ମଗ୍ରନ୍ଥ କୋରାନର ଅନ୍ତର୍ଗତ; ଏବଂ ଯାହା ତୁମ୍ଭପ୍ରତି ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି ତାହା ସତ୍ୟ, କିନ୍ତୁ ଅଧିକାଂଶ ଲୋକେ ବିଶ୍ୱାସ କରନ୍ତି ନାହିଁ ।୧।

ପରମେଶ୍ୱର ସେହି ଯେକି ବିନା ସ୍ତମ୍ଭରେ ଆକାଶ ମଣ୍ଡଳକୁ ଠିଆ କରି ଅଛନ୍ତି, ଯାହା ତୁମ୍ଭେମାନେ ଦେଖୁଅଛ; ଏବଂ ସେ ସିଂହାସନ ଉପରେ ପ୍ରତିଷ୍ଠିତ ଅଛନ୍ତି ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ନିୟନ୍ତ୍ରିତ କରି ଅଛନ୍ତି ପ୍ରତ୍ୟେକେ ନିର୍ଦ୍ଦିଷ୍ଟ ସମୟ ଅନୁଯାୟୀ ଗତି କରୁ ଅଛନ୍ତି; ସେ ସବୁ କାର୍ଯ୍ୟର ବ୍ୟବସ୍ଥା କରୁଅଛନ୍ତି ଏବଂ ନିଦର୍ଶନମାନ ବର୍ଣ୍ଣନା କରୁଅଛନ୍ତି ଯେପରିକି ତୁମ୍ଭେମାନେ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କର ସାକ୍ଷାତ ସମ୍ବନ୍ଧରେ ସନ୍ଦେହ ନ କରି ବିଶ୍ୱାସ କରିବ ।୨।

ଏବଂ ସେହି ପୃଥିବୀକୁ ବିସ୍ତାରିତ କରି ଅଛନ୍ତି ଏବଂ ତନ୍ମଧ୍ୟରେ ପର୍ବତମାନ ଓ ନଦୀମାନ ସ୍ଥାପନ କରି ଅଛନ୍ତି, ଏବଂ ତନ୍ମଧ୍ୟରେ ପ୍ରତ୍ୟେକ ଫଳରୁ ଦ୍ୱିବିଧ ଯୁଗଳ ସୃଷ୍ଟି କରିଅଛନ୍ତି, ଏବଂ ସେ ଦିନକୁ ରାତ୍ରିଦ୍ୱାରା ଆଚ୍ଛନ୍ନ କରନ୍ତି; ନିଶ୍ଚୟ ଏହା ମଧ୍ୟରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି ।୩।

ଏବଂ ପୃଥିବୀରେ ଭୂଖଣ୍ଡମାନ ପାଖେ ପାଖେ ଲାଗି ରହିଅଛି, ଏବଂ ଅଙ୍ଗୁରର ଉଦ୍ୟାନ ଓ ଶସ୍ୟ କ୍ଷେତ୍ର ସମୂହ ଏବଂ ସଂଯୁକ୍ତ ଚେର ବିଶିଷ୍ଟ ଖଜୁରୀଗଛ ସବୁ ଏବଂ ଅସଂଯୁକ୍ତଚେର ବିଶିଷ୍ଟ (ଅନ୍ୟଗଛ ସବୁ)

---

ନାମକରଣ—ଏହି ଅଧ୍ୟାୟର ଶ୍ଲୋ ୧୩ ରେ ବଜ୍ରଧ୍ୱନି ପରମେଶ୍ୱରଙ୍କ ମହିମା କୀର୍ତ୍ତନ କରୁଥିବା ବିଷୟ ଉଲ୍ଲେଖ ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ଏହି ଶ୍ଲୋକର ୧ମ ଅଂଶରେ ଯେଉଁ ସାଙ୍କେତିକ ବର୍ଣ୍ଣମାନ ଅଛି, ତହିଁର ସଂପୂର୍ଣ୍ଣ ଶ୍ଲୋକ ଅନା ଅଲ୍ଲାହୋ—ଆଲମୋ-ରାଇ ଯାହାର ଅର୍ଥ ଆମ୍ଭ ସର୍ବଜ୍ଞ ଓ ସର୍ବଦର୍ଶୀ ପରମେଶ୍ୱର । ସାଙ୍କେତିକ ବର୍ଣ୍ଣାଳାପ ଠି ୨ୟ ଅଧ୍ୟାୟର ୧ମ ଶ୍ଲୋକ ଓ ତହିଁର ଟୀକା ଦେଖ ।

୨ । ଗତି କରୁଅଛନ୍ତି=ସୂର୍ଯ୍ୟ ଓ ଚନ୍ଦ୍ର ଗତିଶୀଳ । ୨୧ ଅଧ୍ୟାୟ ୩୩ ଶ୍ଲୋକ ଓ ୩୬ ଅଧ୍ୟାୟ ୪୦ ଶ୍ଲୋକ ଦେଖ ।

ସିଂହାସନ ସମ୍ବନ୍ଧରେ ଦେଖ ଟୀକା ୭ମ ଅଧ୍ୟାୟ ୫୪ ଶ୍ଲୋକ ।

୨।୩।୪ । ସଂସାରର ବିଚିତ୍ର ସୃଷ୍ଟି କୌଶଳ ଦର୍ଶନ କରି ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଅସ୍ତିତ୍ୱ ହୃଦୟଙ୍ଗମ କରିବାପାଇଁ ଏହି ଶ୍ଲୋକମାନଙ୍କରେ ଉପଦେଶ ଦିଆଯାଇଅଛି ।

୩ । ଦ୍ୱିବିଧ ଯୁଗଳସୃଷ୍ଟି=ଦେଖ ୨୦ ଅଧ୍ୟାୟ ୫୩ ଶ୍ଲୋକ, ୩୧ ଅଧ୍ୟାୟ ୧୦ ଶ୍ଲୋକ, ୩୬ ଅଧ୍ୟାୟ ୩୬ ଶ୍ଲୋକ ଓ ୫୧ ଅଧ୍ୟାୟ ୪୯ ଶ୍ଲୋକ । ଉଦ୍ଭିଦରେ ମଧ୍ୟ ସ୍ତ୍ରୀ ଓ ପୁରୁଷରୂପେ ଲିଙ୍ଗ ଭେଦ ଅଛି ।

ସେମାନେ ଏକ ଜଳ ଦ୍ୱାରା ସିଞ୍ଚିତ ହୁଅନ୍ତି ଏବଂ ଆମ୍ଭେ ଫଳଦ୍ୱାରା ଗୋଟିକୁ ଅନ୍ୟ ଉପରେ ଶ୍ରେଷ୍ଠତ୍ୱ ଦାନ କର; ନିଶ୍ଚୟ ଏଥିରେ ଜ୍ଞାନବାନ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି ।୪।

ଏବଂ ଯଦି ତୁମ୍ଭେ ବିସ୍ମିତ ହୁଅ, ତେବେ ସେମାନଙ୍କର କଥା ମଧ୍ୟ ବିସ୍ମୟଜନକ ଯେ, "ଯଦି ଆମ୍ଭେମାନେ ମାଟିରେ ପରିଣତ ହେଉଁ ତେବେ ପ୍ରକୃତରେ କଅଣ ଆମ୍ଭେମାନେ ନୂତନ ଭାବରେ ସୃଷ୍ଟ ହେବୁଁ"? ଏହିମାନେହିଁ ନିଜ ପାଳନକର୍ତ୍ତାଙ୍କୁ ଅବିଶ୍ୱାସ କରନ୍ତି; ଏବଂ ଏହିମାନଙ୍କ ଗଳାରେ ଶୃଙ୍ଖଳ ରହିଅଛି; ଏବଂ ଏହିମାନେହିଁ ନରକାଗ୍ନିର ଅଧିବାସୀ; ସେମାନେ ସେଥିରେ ସର୍ବଦା ବାସ କରିବେ ।୫।

ଏବଂ ସେମାନେ ତୁମ୍ଭ ନିକଟରେ ମଙ୍ଗଳ ପୂର୍ବରୁ ସତ୍ୱର ଅମଙ୍ଗଳ ପାଇଁ କାମନା କରୁଅଛନ୍ତି ଏବଂ ନିଶ୍ଚୟ ସେମାନଙ୍କ ପୂର୍ବେ ଆଦର୍ଶ ଶାସ୍ତିମାନ ସଂଘଟିତ ହୋଇଅଛି ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମାନବ କୁଳର ଅତ୍ୟାଚାର ସତ୍ତ୍ୱେ ସେମାନଙ୍କ ମାର୍ଜନାକାରୀ, ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା କଠୋର ଶାସ୍ତିଦାତା ।୬।

ଏବଂ ଅବିଶ୍ୱାସକାରୀମାନେ କହିଥାନ୍ତି, "ତାଙ୍କର ପାଳନକର୍ତ୍ତାଙ୍କ ଠାରୁ କାହିଁକି ତାଙ୍କ ପ୍ରତି କୌଣସି ନିଦର୍ଶନ ଅବତୀର୍ଣ୍ଣ ହୋଇ ନାହିଁ"? ତୁମ୍ଭେ ତ ଜଣେ ଭୟପ୍ରଦର୍ଶକ ଛଡ଼ା ଅନ୍ୟ କିଛି ନୁହ ଏବଂ (ତୁମ୍ଭ ପୂର୍ବେ) ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ପଥପ୍ରଦର୍ଶକ ଆସିଥିଲେ ।୭।

## ୨ୟ ବିଭାଗ

ପ୍ରତ୍ୟେକ ନାରୀ ଯାହା ଗର୍ଭରେ ଧାରଣ କରେ ଏବଂ ଜରାୟୁ ସମୂହରେ ଯାହା ହ୍ରାସ ଓ ବୃଦ୍ଧି ହୁଏ, ପରମେଶ୍ୱର ତାହା ଅବଗତ ଅଛନ୍ତି; ଏବଂ ତାଙ୍କ ନିକଟରେ ପ୍ରତ୍ୟେକ ବିଷୟର ପରିମାପ ରହିଅଛି ।୮।

ସେ ଅଦୃଶ୍ୟ ଓ ଦୃଶ୍ୟ ସବୁ ବିଷୟର ମହାଜ୍ଞାନୀ, ଶ୍ରେଷ୍ଠତମ ଓ ସମୁନ୍ନତ ।୯।

---

୫ । ଯେଉଁମାନେ ନାସ୍ତିକ ଓ ପରଲୋକର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ଯୁକ୍ତିତର୍କ ଶୁଣି ପ୍ରେରିତ ପୁରୁଷ ବିସ୍ମିତ ହେଉଥିଲେ । ସେଥିପାଇଁ ପରମେଶ୍ୱର କହୁଅଛନ୍ତି, "ଯେଉଁମାନେ ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି-କୌଶଳ ଦର୍ଶନ କରି ମଧ୍ୟ, ମନୁଷ୍ୟ ମୃତ୍ୟୁ ପରେ ମାଟିରେ ପରିଣତ ହେଲା ପରେ ପୁଣି ଜୀବିତ ହେବ—ଏହାକୁ ଅସମ୍ଭବ ମନେ କରୁଅଛନ୍ତି, ସେମାନଙ୍କ କଥା ବାସ୍ତବରେ ବିସ୍ମୟକର । କାରଣ ସେମାନେ ପରମେଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ । ସେମାନଙ୍କ ଗଳାରେ ଅବିଶ୍ୱାସର ଶୃଙ୍ଖଳା ଜଡ଼ିତ ହୋଇ ରହିଅଛି, ଯାହାର ଫଳ ସ୍ୱରୂପ ମୃତ୍ୟୁ ପରେ ସେମାନେ ନରକ ଯନ୍ତ୍ରଣା ଭୋଗ କରିବେ ।"

୬ । ଅବିଶ୍ୱାସକାରୀମାନେ କହୁଥିଲେ, ସେମାନଙ୍କ ଉପରେ ପରମେଶ୍ୱରଙ୍କ ଶାସ୍ତି ଶୀଘ୍ର ଉପସ୍ଥିତ ହେଉ । ମାତ୍ର ଏଥି ପୂର୍ବେ ଅବିଶ୍ୱାସକାରୀମାନଙ୍କ ଉପରେ ଯେଉଁ ଶାସ୍ତି ଉପସ୍ଥିତ ହୋଇଅଛି, ତାହା ଶୁଣି ଓ ସେ ବିଷୟରେ ଚିନ୍ତା କରି ସେମାନଙ୍କର ଶିକ୍ଷା ଲାଭ କରିବା ଉଚିତ । ମାନବ ସମାଜ ପ୍ରତି ପରମେଶ୍ୱରଙ୍କ ଅପାର କରୁଣା ହେତୁ ପରମେଶ୍ୱରଙ୍କ ଶାସ୍ତି ଉପସ୍ଥିତ ହେବାରେ ବିଳମ୍ବ ଘଟିଲେ ମଧ୍ୟ ତାହା ନିଶ୍ଚୟ ଘଟିବ ।

୭ । ଅବିଶ୍ୱାସକାରୀମାନେ ଅଲୌକିକ ନିଦର୍ଶନ ପାଇଁ ବାରମ୍ବାର ଅନୁରୋଧ କରୁଥିଲେ । ମାତ୍ର ତାହା ପରମେଶ୍ୱରଙ୍କ ଇଚ୍ଛାଧୀନ, ପ୍ରେରିତ ପୁରୁଷଙ୍କ ଇଚ୍ଛାଧୀନ ନୁହେ ।

୮-୯ । ପରମେଶ୍ୱର ଗୁପ୍ତ ଓ ପ୍ରକାଶ୍ୟ ସବୁ ବିଷୟର ମହାଜ୍ଞାନୀ, ଏପରିକି ମାତୃଗର୍ଭରେ ସନ୍ତାନର ଉତ୍ପତ୍ତି ଓ ହ୍ରାସ ବୃଦ୍ଧି ତାଙ୍କର ଜ୍ଞାତସାରରେ ହେଉଅଛି ।

ତୁମ୍ଭମାନଙ୍କ ମଧ୍ୟରୁ ଯେ କେହି ବାକ୍ୟ ଗୋପନ କରେ ଏବଂ ଯେ ତାହା ପ୍ରକାଶ କରେ ଏବଂ ଯେକେହି ରାତ୍ରିରେ ଲୁକ୍କାୟିତ ହୁଏ ଏବଂ ଦିବା ଭାଗରେ ବିଚରଣ କରେ ସମସ୍ତେ(ତାଙ୍କ ନିକଟରେ) ସମାନ ।୧୦।

ତାହାପାଇଁ ତାହାର ସମ୍ମୁଖରେ ଓ ତାହାର ପଶ୍ଚାତରେ ପ୍ରହରୀଶ୍ରେଣୀ ରହିଅଛନ୍ତି,ଯେ ପରମେଶ୍ୱରଙ୍କ ଆଦେଶରେ ତାହାକୁ ରକ୍ଷା କରୁଅଛନ୍ତି; ନିଶ୍ଚୟ ପରମେଶ୍ୱର କୌଣସି ସମ୍ପ୍ରଦାୟର ଅବସ୍ଥା ପରିବର୍ତ୍ତିନ କରନ୍ତି ନାହିଁ, ଯେପର୍ଯ୍ୟନ୍ତ ସେମାନେ ନିଜର ଅବସ୍ଥା ପରିବର୍ତ୍ତିନ ନକରନ୍ତି; ଏବଂ ଯେତେବେଳେ ପରମେଶ୍ୱର କୌଣସି ସମ୍ପ୍ରଦାୟ ପ୍ରତି ଅମଙ୍ଗଳ ଇଚ୍ଛା କରନ୍ତି, ସେତେବେଳେ ତାହାର କେହି ପ୍ରତିରୋଧକାରୀ ନାହିଁ, ଏବଂ ତାଙ୍କ ବ୍ୟତୀତ ସେମାନଙ୍କ ପାଇଁ କେହି ରକ୍ଷାକାରୀ ନାହିଁ ।୧୧।

ସେହି ଭୟ ଓ ଆଶ୍ୱାସନା ପାଇଁ ତୁମ୍ଭମାନଙ୍କୁ ବିଦ୍ୟୁତ ପ୍ରଦର୍ଶନ କରନ୍ତି ଏବଂ ଘନ ମେଘ ଉତ୍ପାଦନ କରନ୍ତି ।୧୨।

ଏବଂ ବଜ୍ରଧ୍ୱନି ତାଙ୍କର ମହିମା କୀର୍ତ୍ତିନ କରେ ଏବଂ ସ୍ୱର୍ଗ ଦୂତମାନେ ମଧ୍ୟ ଭୟ ଭକ୍ତି ସହିତ ତାଙ୍କର ପ୍ରଶଂସାଗାନ କରନ୍ତି ଏବଂ ସେ ବଜ୍ର ସମୂହ ପ୍ରେରଣ କରନ୍ତି, ସେ ତଦ୍ଦ୍ୱାରା ଯାହାକୁ ଇଚ୍ଛା ଆଘାତ କରନ୍ତି; ତଥାପି ସେମାନେ ପରମେଶ୍ୱରଙ୍କ ସମ୍ବନ୍ଧରେ ବିରୋଧ କରୁ ଅଛନ୍ତି, ଅଥଚ ସେ ମହା ଶକ୍ତିଶାଳୀ ।୧୩।

ତାଙ୍କର ଉଦ୍ଦେଶ୍ୟରେ ପ୍ରାର୍ଥନା ସତ୍ୟ ଅଟେ; ଏବଂ ତାଙ୍କ ବ୍ୟତୀତ ସେମାନେ ଯେଉଁମାନଙ୍କୁ ପ୍ରାର୍ଥନା କରନ୍ତି ସେମାନେ ସେମାନଙ୍କୁ କୌଣସି ବିଷୟର ଉତ୍ତର ପ୍ରଦାନ କରନ୍ତି ନାହିଁ, ବରଂ ଯେପରି କେହି ଜଳ ପ୍ରତି ନିଜର ହସ୍ତଦ୍ୱୟ ପ୍ରସାରଣ କରେ ଯେ ତାହା ତାହାର ମୁଖରେ ଉପସ୍ଥିତ ହେବ, କିନ୍ତୁ ତାହା ମୁଖ ଉପସ୍ଥିତ ହେବାର ନୁହେ; ଏବଂ ଅବିଶ୍ୱାସକାରୀମାନଙ୍କ ପ୍ରାର୍ଥନା ଭ୍ରାନ୍ତି ଛଡ଼ା ଅନ୍ୟ କିଛି ନୁହେ ।୧୪।

---

୧୦ । ଅର୍ଥାତ୍ ସମସ୍ତଙ୍କର ଅବସ୍ଥା ପରମେଶ୍ୱର ସମାନ ଭାବରେ ଅବଗତ ଅଛନ୍ତି ।

୧୧ । ତାହାପାଇଁ—ମନୁଷ୍ୟ ପାଇଁ । ଏହି ଶ୍ଲୋକର ପ୍ରଥମ ଅଂଶପାଇଁ ଦେଖ ୬ଷ୍ଠ ଅଧ୍ୟାୟ ଶ୍ଲୋ ୬୧ କ । ଶେଷ ଅଂଶ ପାଇଁ ଦେଖ ଟୀକା ୮ମ ଅଧ୍ୟାୟ ଶ୍ଲୋ ୫୩ ।

୧୨।୧୩ । ଆକାଶରେ କଳାମେଘର ଉଦୟ ସହିତ ବିଜୁଳି ଓ ବଜ୍ର ମଧ୍ୟ ପ୍ରକାଶିତ ହୁଏ । ଏଥିରେ ଲୋକମାନଙ୍କପାଇଁ ଭୟ ଓ ଆଶ୍ୱାସନା ଉଭୟ ଅଛି । ବିଜୁଳି ଓ ବଜ୍ରକୁ ଦେଖି ସେମାନେ ଭୀତ ହୁଅନ୍ତି, ମାତ୍ର ମେଘ ଜଳବର୍ଷଣ କରି ସେମାନଙ୍କର ମଙ୍ଗଳ ସାଧନ କରିବ ବୋଲି ଆଶ୍ୱସ୍ତ ହୁଅନ୍ତି । ସେହିପରି ପରମେଶ୍ୱରଙ୍କଠାରୁ ଯେଉଁ ପ୍ରତ୍ୟାଦେଶ ଅବତୀର୍ଣ୍ଣ ହୋଇଅଛି, ତାହା ବିଶ୍ୱାସକାରୀମାନଙ୍କ ପାଇଁ ମଙ୍ଗଳଜନକ ଏବଂ ଅବିଶ୍ୱାସକାରୀମାନଙ୍କ ପାଇଁ କ୍ଷତିକାରକ । ଏ ବିଷୟ ହୃଦୟଙ୍ଗମ କରି ପରମେଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ଆବଶ୍ୟକ ।

ବଜ୍ରଧ୍ୱନି ଯେପରି ପରମେଶ୍ୱରଙ୍କ ମହିମା ଘୋଷଣା କରେ, ସ୍ୱର୍ଗଦୂତମାନେ ମଧ୍ୟ ଭୟ ଭକ୍ତି ସହିତ ତାଙ୍କର ମହିମା କୀର୍ତ୍ତିନ କରନ୍ତି । ମାତ୍ର ମନୁଷ୍ୟମାନେ ଏପରି ହତବୁଦ୍ଧି ଯେ ସେମାନେ ପରମେଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ ।

୧୪ । ସୁତରାଂ ପରମେଶ୍ୱରଙ୍କୁ ପ୍ରାର୍ଥନା କରିବାହିଁ ସତ୍ୟ ଅଟେ; ତାଙ୍କ ଛଡ଼ା ଅନ୍ୟ ଉପାସ୍ୟକୁ ପ୍ରାର୍ଥନା କରିବା ଭ୍ରମାତ୍ମକ ଅଟେ । ଯେପରି ଜଳ ଆଡକୁ ଦୁଇହାତ ବଢ଼ାଇଲେ ଏବଂ ତାକୁ ଡାକିଲେ ସେ ଯେପରି ମନୁଷ୍ୟର ମୁହଁ ନିକଟରେ ଉପସ୍ଥିତ ହୋଇ ନ ପାରେ, ସେହିପରି ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାକୁ ଡାକିଲେ ସେ ଉତ୍ତର ଦେଇ ନ ପାରେ ।

ଏବଂ ଆକାଶ ମଣ୍ଡଳ ଓ ଭୂମଣ୍ଡଳରେ ଯାହା କିଛି ଅଛି ସେ ସବୁ ସ୍ୱଇଚ୍ଛାରେ କିମ୍ବା ଅନିଚ୍ଛାରେ, ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି ଏବଂ ସେମାନଙ୍କ ଛାୟାସବୁ ମଧ୍ୟ ସକାଳେ ଓ ସନ୍ଧ୍ୟାରେ (ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି) ୧୫ ।

ତୁମ୍ଭେ କୁହ, "ଆକାଶମଣ୍ଡଳ ଓ ଭୂମଣ୍ଡଳର ପାଳନକର୍ତ୍ତା କିଏ ?" କୁହ, "ପରମେଶ୍ୱର" । କୁହ, "ତେବେ କଅଣ ତୁମ୍ଭେମାନେ ତାଙ୍କ ପରିବର୍ତ୍ତେ ଅନ୍ୟ ଅଭିଭାବକମାନଙ୍କୁ ଗ୍ରହଣ କରୁଅଛ, ଯେଉଁମାନେ ନିଜ ପାଇଁ କୌଣସି ଲାଭ କିମ୍ବା କ୍ଷତି କରିବାକୁ ସମର୍ଥ ନୁହନ୍ତି ?" କୁହ, "ତେବେ କଅଣ ଅନ୍ଧ ଓ ଚକ୍ଷୁଷ୍ମାନ ପରସ୍ପର ସମାନ ଅଥବା ଅନ୍ଧକାର ଓ ଅଲୋକ କଅଣ ସମାନ ?" କିମ୍ବା ସେମାନେ କଅଣ ପରମେଶ୍ୱରଙ୍କ ସହିତ ଏପରି ଅଂଶୀ ଉପାସ୍ୟ ସ୍ଥିର କରୁଅଛନ୍ତି ଯେଉଁମାନେ ତାଙ୍କ ସୃଷ୍ଟିର ଅନୁରୂପ ସୃଷ୍ଟି କରିଅଛନ୍ତି, ଏବଂ ସେମାନଙ୍କ ଜାଣିବାରେ ତଦନୁରୂପ ସୃଷ୍ଟି ହୋଇଅଛି ? କୁହ, "ପରମେଶ୍ୱରହିଁ ସବୁ ବସ୍ତୁର ସୃଷ୍ଟିକର୍ତ୍ତା ଏବଂ ସେ ଅଦ୍ୱିତୀୟ ପରାକ୍ରାନ୍ତ" ।୧୬।

ସେ ଆକାଶରୁ ଜଳ ବର୍ଷଣ କରନ୍ତି ତାପରେ ତାହା ନିଜ ପରିମାଣ ଅନୁସାରେ ନାଳମାନଙ୍କରେ ପ୍ରବାହିତ ହୁଏ, ତାପରେ ନଈବଢ଼ି ହୋଇ ଫେଣ ସବୁ ସ୍ରୋତ ଉପରେ ଭାସିଯାଏ; ଏବଂ ଅଳଙ୍କାର ଅଥବା ଜିନିଷପତ୍ର ନିର୍ମାଣ ପାଇଁ ଯାହା ସେମାନେ ତରଳାନ୍ତି ତାହାର ଖାଦ ଫେଣ ପରି ଉପରକୁ ଉଠେ; ଏହିପରି ପରମେଶ୍ୱର ସତ୍ୟ ଓ ମିଥ୍ୟାର ପ୍ରଭେଦ ବର୍ଣ୍ଣନା କରନ୍ତି ଅତଏବ ଯାହାଖାଦ ତାହା ବାସ୍ତବରେ ଏହିପରି ବ୍ୟର୍ଥ ହୋଇଯାଏ ଏବଂ ଯାହା ମାନବ ମଣ୍ଡଳକୁ ସୁଫଳ ଦାନକରେ ତାହା ବାସ୍ତବରେ ତଳେ ରହିଥାଏ; ଏହିପରି ପରମେଶ୍ୱର ଉଦାହରଣମାନ ବର୍ଣ୍ଣନା କରନ୍ତି ।୧୭।

ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ସ୍ୱୀକାର କରିଅଛନ୍ତି ସେମାନଙ୍କ ପାଇଁ ମଙ୍ଗଳ, ଏବଂ ଯେଉଁମାନେ ତାଙ୍କୁ ସ୍ୱୀକାର କରି ନାହାନ୍ତି, ଯଦିବା ପୃଥିବୀରେ ଯାହାକିଛି ଅଛି ସେ ସମସ୍ତ ଏବଂ ତାହା ସହିତ ତଦନୁରୂପ ସେମାନଙ୍କର ଥାଏ ତେବେ ନିଶ୍ଚୟ ସେମାନେ ସବୁକୁ ବନ୍ଧନମୁକ୍ତିରେ ଦେବାପାଇଁ (ବୃଥାରେ) ଗୃହିବେ, ସେହି-

---

୧୫ । ଅକାଶରେ ଥିବା ସ୍ୱର୍ଗ ଦୂତମାନେ ଏବଂ ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ଇତ୍ୟାଦି ଜ୍ୟୋତିଷ୍କମାନେ ଏବଂ ପୃଥିବୀରେ ଥିବା ଜୀବଜନ୍ତୁମାନେ, କେହି ଇଚ୍ଛାରେ କେହି ପରମେଶ୍ୱରଙ୍କ ନିର୍ଦ୍ଦେଶ ଅନୁଯାୟୀ, ସବୁବେଳେ ତାଙ୍କର ଆଦେଶ ଅନୁଯାୟୀ କାର୍ଯ୍ୟ କରୁଅଛନ୍ତି ଏବଂ ପୃଥିବୀ ପୃଷ୍ଠରେ ଥିବା ଜୀବଜନ୍ତୁ ଓ ବୃକ୍ଷାଦିର ଛାୟାସବୁ ସକାଳ ଓ ସନ୍ଧ୍ୟା ସମୟରେ ଭୂ ପୃଷ୍ଠରେ ପ୍ରସାରିତ ହୋଇ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି ।

ଏହି ଶ୍ଳୋକ ପାଠ ବା ଶ୍ରବଣ ପରେ ସଙ୍ଗେ ସଙ୍ଗେ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରିବା କର୍ତ୍ତବ୍ୟ ।

୧୬ । ଅଂଶୀବାଦୀମାନେ ଯେଉଁମାନଙ୍କୁ ଅଂଶୀ ଉପାସ୍ୟ ସ୍ଥିର କରି ଅଛନ୍ତି ସେମାନେ ସେମାନଙ୍କର ଲାଭ କ୍ଷତି କରିବାକୁ କିମ୍ବା ପରମେଶ୍ୱରଙ୍କ ସଦୃଶ କୌଣସି ବସ୍ତୁ ସୃଷ୍ଟି କରିବାକୁ ସକ୍ଷମ ନୁହନ୍ତି । ସୁତରାଂ ସେମାନଙ୍କୁ ଉପାସନା କରିବା ବୁଦ୍ଧିମାନ ବ୍ୟକ୍ତିର କାର୍ଯ୍ୟ ନୁହେଁ ।

୧୭ । ଆକାଶରୁ ଜଳ ବର୍ଷଣ ପରେ ନଦୀ ବୃଦ୍ଧି ହୋଇ ନିକୃଷ୍ଟ ପଦାର୍ଥ ଓ ଫେନ ଇତ୍ୟାଦି ଜଳରେ ଭାସି ବୁଲିଯାଏ ଏବଂ ମନୁଷ୍ୟମାନଙ୍କର ଲାଭଜନକ ପଦାର୍ଥମାନ ( ଯଥା ଜଳ, ପଙ୍କ, ମାଛ ଇତ୍ୟାଦି ) ଭୂମିରେ ରହିଯାଏ । ଅଳଙ୍କାର କିମ୍ବା ଅନ୍ୟ ଜିନିଷ ପ୍ରସ୍ତୁତ କରିବା ସମୟରେ ସୁନା ରୁପା ଇତ୍ୟାଦି ଧାତୁମାନଙ୍କୁ ତରଳାଇଲେ ନିକୃଷ୍ଟ ମଳ, ଖାଦ୍ୟ ଇତ୍ୟାଦି ଉପରେ ଭାସି ଉଠେ ଏବଂ ଖାଣ୍ଟି ଧାତୁଦ୍ରବ୍ୟ ତଳେ ବସି ରହେ । ସେହିପରି ଆଧ୍ୟାତ୍ମିକ ଜଗତରେ ଅସତ୍ୟ ଶୀଘ୍ର ବ୍ୟର୍ଥ ହୋଇଯିବ ଏବଂ ସତ୍ୟ ଧର୍ମ ଚିରସ୍ଥାୟୀ ହୋଇ ରହିବ ।

ମାନଙ୍କ ପାଇଁ ହିସାବ ଅତି କଠୋର ହେବ, ଏବଂ ସେମାନଙ୍କର ବାସସ୍ଥାନ ନରକ, ଏବଂ ତାହା ନିକୃଷ୍ଟ ଶଯ୍ୟା ଅଟେ ।୧୮।

## ୩ୟ ବିଭାଗ

ତେବେ କଅଣ ତୁମ୍ଭର ପାଳନକର୍ତ୍ତାଙ୍କ ଠାରୁ ତୁମ୍ଭପ୍ରତି ଯାହା ଅବତୀର୍ଣ୍ଣ ହୋଇଅଛି ଯେ, ତାହାକୁ ସତ୍ୟ ବୋଲି ଜାଣେ, ସେ କଅଣ ଅନ୍ଧ ସଙ୍ଗେ ସମାନ ? କେବଳ ମାତ୍ର ଜ୍ଞାନବାନମାନେ ମନଯୋଗ ଦେଇଥାନ୍ତି, ।୧୯।

ଯେଉଁମାନେ ପରମେଶ୍ୱରଙ୍କ ଅଙ୍ଗୀକାର ପୂର୍ଣ୍ଣ କରନ୍ତି ଏବଂ ପ୍ରତିଶ୍ରୁତି ଭଙ୍ଗ କରନ୍ତି ନାହିଁ ।୨୦।

ଏବଂ ପରମେଶ୍ୱର ଯେଉଁ ସମ୍ପର୍କମାନ ପ୍ରତିଷ୍ଠିତ କରିବାକୁ ଆଦେଶ କରି ଅଛନ୍ତି ତାହା ଯେଉଁମାନେ ପ୍ରତିଷ୍ଠିତ କରନ୍ତି ଏବଂ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି ଓ କଠୋର ହିସାବର ଆଶଙ୍କା କରନ୍ତି, ।୨୧।

ଏବଂ ଯେଉଁମାନେ ନିଜ ପାଳକର୍ତ୍ତାଙ୍କର ସନ୍ତୁଷ୍ଟି ପାଇଁ ଧୈର୍ଯ୍ୟ ଧାରଣ କରନ୍ତି, ଆରାଧନା ପ୍ରତିଷ୍ଠିତ କରନ୍ତି ଏବଂ ଆମ୍ଭେ ସେମାନଙ୍କୁ ଯାହା ଜୀବିକା ଦେଇଅଛୁଁ ସେଥିରୁ ପ୍ରକାଶ୍ୟରେ ଓ ଗୋପନରେ ସତ୍‌ପଥରେ ବ୍ୟୟ କରନ୍ତି ଏବଂ ସତ୍‌କାର୍ଯ୍ୟ ଦ୍ୱାରା ଅସତ୍‌କାର୍ଯ୍ୟକୁ ଦୂରୀଭୂତ କରନ୍ତି, ସେହିମାନଙ୍କ ପାଇଁ ପରଲୋକର (ସୁଖମୟ) ଘର ରହିଅଛି, ।୨୨।

ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ, ଯେଉଁଥିରେ ସେମାନେ ଓ ସେମାନଙ୍କ ପୂର୍ବପୁରୁଷମାନଙ୍କ ଓ ସେମାନଙ୍କ ପତ୍ନୀମାନଙ୍କ ଓ ସେମାନଙ୍କ ସନ୍ତାନମାନଙ୍କ ମଧ୍ୟରୁ ପୁଣ୍ୟବାନ ଲୋକମାନେ ପ୍ରବେଶ କରିବେ, ଏବଂ ପ୍ରତି ଦ୍ୱାରରୁ ସେମାନଙ୍କ ପ୍ରତି ସ୍ୱର୍ଗଦୂତମାନେ ଉପସ୍ଥିତ ହେବେ । ୨୩ ।

(ଏବଂ କହିବେ) "ତୁମ୍ଭମାନଙ୍କ ଉପରେ ଶାନ୍ତି ! କାରଣ ତୁମ୍ଭେମାନେ ଧୈର୍ଯ୍ୟ ଧାରଣ କରିଥିଲ, ସୁତରାଂ ପରଲୋକର ଘର କେଡ଼େ ସୁଖମୟ !" ।୨୪।

ଏବଂ ଯେଉଁମାନେ ପ୍ରତିଶ୍ରୁତି ପରେ ପରମେଶ୍ୱରଙ୍କ ଅଙ୍ଗୀକାର ଭଙ୍ଗ କରନ୍ତି ଏବଂ ପରମେଶ୍ୱର ଯେଉଁ ସମ୍ପର୍କମାନ ପ୍ରତିଷ୍ଠିତ କରିବାକୁ ଆଦେଶ କରି ଅଛନ୍ତି ତାହା ଯେଉଁମାନେ ବିଚ୍ଛିନ୍ନ କରନ୍ତି ଏବଂ ପୃଥିବୀରେ ଅଶାନ୍ତି ଉତ୍ପାଦନ କରନ୍ତି, ସେମାନଙ୍କ ଉପରେ ଅଭିଶାପ ଏବଂ ସେହିମାନଙ୍କ ପାଇଁ ନିକୃଷ୍ଟ ଘର ।୨୫।

---

୧୮ । ଅବିଶ୍ୱାସକାରୀମାନେ ପରଲୋକର ଶାସ୍ତିରୁ ରକ୍ଷା ପାଇବା ସକାଶେ ସେମାନଙ୍କର ପାର୍ଥିବ ସର୍ବସ୍ୱ ବରଂ ତାହାର ଦୁଇଗୁଣ ପ୍ରାୟଶ୍ଚିତ୍ତ ସ୍ୱରୂପ ବିନିମୟ ଦେବାପାଇଁ ଇଚ୍ଛା କରିବେ; ମାତ୍ର ତାହା ଗ୍ରହଣ କରି ହେବନାହିଁ ଏବଂ ସେମାନେ ନରକ ଯନ୍ତ୍ରଣାରୁ ରକ୍ଷା ପାଇ ପାରିବେ ନାହିଁ ।

୧୯।୨୪ । ଏହି ଶ୍ଳୋକମାନଙ୍କରେ ବିଶ୍ୱାସକାରୀମାନଙ୍କର ପ୍ରକୃତି ଏବଂ ସେମାନଙ୍କର ପରଲୋକର ପୁରସ୍କାର ବିଷୟ ବର୍ଣ୍ଣିତ ହୋଇଅଛି ।

୨୧ । ସମ୍ପର୍କମାନ ପ୍ରତିଷ୍ଠିତ କରନ୍ତି—ପରମେଶ୍ୱର ମାନବ ସମାଜ ମଧ୍ୟରେ ପରସ୍ପର ପ୍ରତି ଯେଉଁ ସମ୍ପର୍କମାନ ସ୍ଥିର କରି ଦେଇ ଅଛନ୍ତି ସେମାନେ ତାହାର ବ୍ୟତିକ୍ରମ କରନ୍ତି ନାହିଁ ।

୨୫।୨୬ । ଏହି ଶ୍ଳୋକମାନଙ୍କରେ ଅବିଶ୍ୱାସକାରୀମାନଙ୍କର ପ୍ରକୃତି ଓ ପରଲୋକର ଶାସ୍ତି ବିଷୟ ବର୍ଣ୍ଣିତ ହୋଇଅଛି ।

ପରମେଶ୍ୱର ଯାହା ପାଇଁ ଇଚ୍ଛା ଜୀବିକା ପ୍ରଶସ୍ତ ଓ ସଙ୍କୁଚିତ କରି ଥାଆନ୍ତି; ଏବଂ ସେମାନେ ପାର୍ଥିବ ଜୀବନରେ ସନ୍ତୁଷ୍ଟ; ଏବଂ ପରଲୋକ ତୁଳନାରେ ପାର୍ଥିବ ଜୀବନ ଅତି ତୁଚ୍ଛ । ୨୬ ।

## ୪ର୍ଥ ବିଭାଗ

ଏବଂ ଅବିଶ୍ୱାସକାରୀମାନେ କହନ୍ତି, "କାହିଁକି ତାଙ୍କର ପାଳନକର୍ତ୍ତାଙ୍କଠାରୁ ତାଙ୍କ ପ୍ରତି କୌଣସି ନିଦର୍ଶନ ଅବତୀର୍ଣ୍ଣ ହେଉନାହିଁ ?" ତୁମ୍ଭେ କୁହ, "ନିଶ୍ଚୟ ପରମେଶ୍ୱର ଯାହାକୁ ଇଚ୍ଛାବି ଭ୍ରାନ୍ତ କରନ୍ତି ଏବଂ ଯେ ତାଙ୍କ ପ୍ରତି ମନଯୋଗୀ ହୁଏ ତାହାକୁ ନିଜପ୍ରତି ସୁପଥ ଦେଖାନ୍ତି ।୨୭।

"ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଏବଂ ଯେଉଁମାନଙ୍କର ହୃଦୟ ପରମେଶ୍ୱରଙ୍କ ସ୍ମରଣ କରିବାଦ୍ୱାରା ଶାନ୍ତିଲାଭ କରେ: ବାସ୍ତବରେ ପରମେଶ୍ୱରଙ୍କ ସ୍ମରଣ କରିବା ଦ୍ୱାରାହିଁ ହୃଦୟ ସବୁ ଶାନ୍ତିଲାଭ କରିଥାଏ ।୨୮।

"ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଏବଂ ସତ୍‌କାର୍ଯ୍ୟ କରନ୍ତି, ସେହିମାନଙ୍କ ପାଇଁ ଆନନ୍ଦ ଏବଂ ଉତ୍ତମ ଫେରି ଯିବାର ସ୍ଥାନ ଅଛି" ।୨୯।

ଏହି ରୂପେ ଆମ୍ଭେ ତୁମ୍ଭଙ୍କୁ ଏପରି ଏକ ସମ୍ପ୍ରଦାୟ ମଧ୍ୟକୁ ପଠାଇଅଛୁଁ ଯାହାର ପୂର୍ବେ ନିଶ୍ଚୟ ବହୁ ସମ୍ପ୍ରଦାୟ ଚାଲି ଯାଇ ଅଛନ୍ତି; ଆମ୍ଭେ ତୁମ୍ଭପ୍ରତି ଯାହା ପ୍ରତ୍ୟାଦେଶ କରିଅଛୁଁ ତାହା ଯେପରି ତୁମ୍ଭେ ସେମାନଙ୍କ ନିକଟ ପାଠକର; ଏବଂ ସେମାନେ ଦୟାମୟ ପରମେଶ୍ୱରଙ୍କ ପ୍ରତି ଅବିଶ୍ୱାସ କରୁଅଛନ୍ତି । ତୁମ୍ଭେ କୁହ 'ସେହି ଆମ୍ଭର ପାଳନକର୍ତ୍ତା, ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ତାଙ୍କର ଉପରେ ଆମ୍ଭେ ନିର୍ଭର କରୁଁ ଏବଂ ତାଙ୍କର ଅଡ଼କୁ ଆମ୍ଭଙ୍କୁ ଫେରିଯିବାକୁ ହେବ' ।୩୦।

ଏବଂ କୋରାନ ଯଦି ଏପରି ହୁଅନ୍ତା ଯଦ୍ଦ୍ୱାରା ପର୍ବତମାନ ଚାଳିତ ହୁଅନ୍ତେ ଅଥବା ଯଦ୍ଦ୍ୱାରା ପୃଥିବୀ କର୍ତ୍ତିତ କରି ଯାଆନ୍ତା ଅଥବା ଯଦ୍ଦ୍ୱାରା ମୃତ ବ୍ୟକ୍ତି କଥା କୁହନ୍ତା; (ତଥାପି ଏମାନେ ବିଶ୍ୱାସ କରନ୍ତେ ନାହିଁ) ବରଂ ସମସ୍ତ କାର୍ଯ୍ୟ ପରମେଶ୍ୱରଙ୍କ ଅଧୀନ ଅଟେ; ତେବେ କଅଣ ବିଶ୍ୱାସକାରୀମାନେ ଜାଣନ୍ତି ନାହିଁ ଯେ, ଯଦି ପରମେଶ୍ୱର ଇଚ୍ଛା କରିଥାନ୍ତେ ତେବେ ନିଶ୍ଚୟ ସେ ସମସ୍ତ ମାନବମାନଙ୍କୁ ପଥ ପ୍ରଦର୍ଶନ କରିଥାନ୍ତେ ? ଏବଂ ଅବିଶ୍ୱାସକାରୀମାନେ ଯାହା କରୁଅଛନ୍ତି ସେଥିପାଇଁ ସେମାନଙ୍କ ପ୍ରତି ବିପଦ ଉପସ୍ଥିତ ନ ହୋଇ ରହିବ ନାହିଁ, ଅଥବା ପରମେଶ୍ୱରଙ୍କ ଅଙ୍ଗୀକାର ଉପସ୍ଥିତ ନହେବା ପର୍ଯ୍ୟନ୍ତ ଏହା ସେମାନଙ୍କ ଘର ନିକଟରେ ରହିଥିବ; ନିଶ୍ଚୟ ପରମେଶ୍ୱର ଅଙ୍ଗୀକାର ଭଙ୍ଗ କରନ୍ତି ନାହିଁ ।୩୧।

---

୩୧ । ଅବିଶ୍ୱାସକାରୀ ବିଧର୍ମୀ ଲୋକମାନେ ଅଲୌକିକ ନିଦର୍ଶନ ସକାଶେ ବାରମ୍ବାର ଜିଦ୍ କରୁଥିଲେ ଏବଂ କେତେକ ବିଶ୍ୱାସକାରୀମାନଙ୍କର ମଧ୍ୟ ଇଚ୍ଛା ଥିଲା ଯେ ଅଲୌକିକ ନିଦର୍ଶନ ଉପସ୍ଥିତ ହେଲେ ସେମାନଙ୍କର ବିଶ୍ୱାସ ଦୃଢ଼ତର ହୁଅନ୍ତା । ଏହାର ଉତ୍ତରରେ ପରମେଶ୍ୱର କହୁ ଅଛନ୍ତି, "ଏହି ଅଲୌକିକ କାର୍ଯ୍ୟମାନ ସମ୍ପାଦନ କରିବା ପରମେଶ୍ୱରଙ୍କ ପକ୍ଷରେ ଅସମ୍ଭବ ନୁହେଁ । ବିଶ୍ୱାସକାରୀମାନଙ୍କର ମନେ ରଖିବା ଉଚିତ ଯେ ପ୍ରକୃତ ବିଶ୍ୱାସକାରୀମାନଙ୍କର ପରୀକ୍ଷା ସକାଶେ ପରମେଶ୍ୱର ଅଲୌକିକ ନିଦର୍ଶନମାନ ସମ୍ପାଦନ କରିବାକୁ ଇଚ୍ଛା କରନ୍ତି ନାହିଁ । ଏବଂ ଅବିଶ୍ୱାସକାରୀମାନଙ୍କର ମନେ ରଖିବା ଉଚିତ ଯେ ସେମାନଙ୍କର ଅବାଧ୍ୟତାପାଇଁ ପରମେଶ୍ୱରଙ୍କ ଶାସ୍ତି ବିଳମ୍ବ ହେଲେ ମଧ୍ୟ ନିଶ୍ଚୟ ଉପସ୍ଥିତ ହେବ ଏବଂ ଏବେ ମଧ୍ୟ ସମୟ ସମୟରେ ସେମାନଙ୍କର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ବିପଦ ଉପସ୍ଥିତ ହେଉଅଛି । ତାହା ଦେଖି ସେମାନଙ୍କର ଶିକ୍ଷା ଲାଭ କରିବା ଉଚିତ ।"

## ୫ମ ବିଭାଗ

ନିଶ୍ଚୟ ତୁମ୍ଭ ପୂର୍ବେ ମଧ୍ୟ ପ୍ରେରିତ ପୁରୁଷମାନଙ୍କ ପ୍ରତି ଉପହାସ କରାଯାଇ ଥିଲା; କିନ୍ତୁ ଅବିଶ୍ୱାସକାରୀମାନଙ୍କୁ ଅମ୍ଭେ ଅବକାଶ ଦେଇଥିଲୁଁ, ତାପରେ ଅମ୍ଭେ ସେମାନଙ୍କୁ ଧରିଥିଲୁଁ ; ତାପରେ ଅମ୍ଭର ଶାସ୍ତି (କିପରି ଭୟଙ୍କର) ହୋଇଥିଲା ।୩୨।

ତେବେ କିଅଣ ପରମେଶ୍ୱର ଯେ ପ୍ରତ୍ୟେକ ବ୍ୟକ୍ତି ଯାହା ଅର୍ଜନ କରୁଅଛି ତାହା ଅବଗତ ଅଛନ୍ତି, ଅନ୍ୟମାନଙ୍କ ପରି ଅଟନ୍ତି ? ତଥାପି ସେମାନେ ପରମେଶ୍ୱରଙ୍କ ପାଇଁ ଅଂଶୀ ଉପାସ୍ୟ ସ୍ଥିର କରିଅଛନ୍ତି; ତୁମ୍ଭେ କୁହ, "ତୁମ୍ଭେମାନେ ସେମାନଙ୍କର ନାମ ପ୍ରକାଶକର; ଅଥବା ତୁମ୍ଭେମାନେ କିଅଣ ତାଙ୍କୁ କୌଣସି ବିଷୟ ଜଣାଇବାକୁ ଗୃହ ଯାହା ସେ ପୃଥିବୀ ମଧ୍ୟରେ ଜାଣନ୍ତି ନାହିଁ ? କିମ୍ବା (ବାଜେ) କଥା ପ୍ରକାଶ କରୁଅଛ ? ବରଂ ଅବିଶ୍ୱାସକାରୀମାନଙ୍କ ପାଇଁ ସେମାନଙ୍କର ଚକ୍ରାନ୍ତ ସୁଶୋଭିତ କରି ହୋଇଅଛି ଏବଂ ସେମାନଙ୍କୁ ସୁପଥରୁ ପ୍ରତିରୋଧ କରି ହୋଇ ଅଛି; ଏବଂ ପରମେଶ୍ୱର ଯାହାକୁ ପଥଭ୍ରାନ୍ତ କରନ୍ତି ବାସ୍ତବରେ ତାହା ପାଇଁ କେହି ପଥ ପ୍ରଦର୍ଶକ ନାହିଁ ।୩୩।

ସେମାନଙ୍କ ପାଇଁ ପାର୍ଥିବ ଜୀବନରେ ଶାସ୍ତି ରହିଅଛି ଏବଂ ପରକାଳର ଶାସ୍ତି ନିଶ୍ଚୟ କଠୋରତର; ଏବଂ ସେମାନଙ୍କ ପାଇଁ ପରମେଶ୍ୱରଙ୍କ (ଶାସ୍ତିରୁ) ରକ୍ଷାକାରୀ କେହି ନାହିଁ ।୩୪।

ଧର୍ମଭୀରୁମାନଙ୍କୁ ଯେଉଁ ସ୍ୱର୍ଗୋଦ୍ୟାନର ଅଙ୍ଗୀକାର କରି ହୋଇଅଛି ତାହାର ଦୃଷ୍ଟାନ୍ତ; ତାହାର ନିମ୍ନରେ ନଦୀମାନ ପ୍ରବାହିତ; ତାହାର ଫଳସବୁ ଓ ତାହାର ଛାୟା ଚିରସ୍ଥାୟୀ; ଏହାହିଁ ଧର୍ମଭୀରୁ ମାନଙ୍କ ପରିଣାମ ଏବଂ ଅବିଶ୍ୱାସକାରୀ ମାନଙ୍କ ପରିଣାମ ନରକାଗ୍ନି ।୩୫।

ଏବଂ ଅମ୍ଭେ ଯେଉଁମାନଙ୍କୁ ଗ୍ରନ୍ଥ ଦେଇଅଛୁଁ, ସେମାନେ ତୁମ୍ଭପ୍ରତି ଯାହା ଅବତୀର୍ଣ୍ଣ ହୋଇଅଛି ସେଥିରେ ସନ୍ତୁଷ୍ଟ ହୁଅନ୍ତି, ଏବଂ ଭିନ୍ନ ଭିନ୍ନ ସମ୍ପ୍ରଦାୟରୁ କେହି କେହି ତାହାର କେତେକ ବିଷୟ ଅସ୍ୱୀକାର କରିଥାନ୍ତି; ତୁମ୍ଭେ କୁହ, "ଅମ୍ଭେ କେବଳ ମାତ୍ର ପରମେଶ୍ୱରଙ୍କ ଉପାସନା କରିବାକୁ ଏବଂ ତାଙ୍କ ସହିତ ଅଂଶୀ ସ୍ଥାପନ ନ କରିବାକୁ ଆଦିଷ୍ଟ ହୋଇଅଛୁଁ; ଅମ୍ଭେ ତାଙ୍କର ଆଡ଼କୁ ଡାକୁ ଅଛୁଁ ଏବଂ ତାଙ୍କର ଆଡ଼କୁ ଅମ୍ଭଙ୍କୁ ଫେରିଯିବାକୁ ହେବ ।୩୬।

---

୩୩ । ଯେଉଁ ପରମେଶ୍ୱର ପ୍ରତ୍ୟେକ ବ୍ୟକ୍ତିର କୃତ କର୍ମମାନ ଅବଗତ ଅଛନ୍ତି ଅଂଶୀ ଉପାସ୍ୟମାନେ କିଅଣ ତାଙ୍କର ସମକକ୍ଷ ହୋଇ ପାରନ୍ତି ? ମାତ୍ର ଏହା ଜାଣି ସୁଦ୍ଧା ଲୋକମାନେ ପରମେଶ୍ୱରଙ୍କ ସହିତ ଅଂଶୀ ଉପାସ୍ୟ ସ୍ଥାପନ କରୁ ଅଛନ୍ତି, ଏହା ବଡ଼ ଅନ୍ୟାୟ । ସେଥିପାଇଁ ପରମେଶ୍ୱର କହୁ ଅଛନ୍ତି ଯେ, ଅବିଶ୍ୱାସକାରୀମାନେ ଯେଉଁମାନଙ୍କୁ ଅଂଶୀ ଉପାସ୍ୟ ସ୍ଥିର କରିଅଛନ୍ତି ସେମାନେ ଯଦି ପ୍ରକୃତରେ ପରମେଶ୍ୱରଙ୍କ ଅଂଶୀଦାର ହୋଇଥାନ୍ତେ ତେବେ ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ଜାଣି ଥାଆନ୍ତେ ଏବଂ ସେମାନଙ୍କ ଉପାସନା ପାଇଁ ଲୋକମାନଙ୍କୁ ଆଦେଶ କରିଥାନ୍ତେ । ମାତ୍ର ପରମେଶ୍ୱର ସେମାନଙ୍କୁ ଜାଣନ୍ତି ନାହିଁ କିମ୍ବା ଏପରି ଆଦେଶ କରି ନାହାନ୍ତି । ସୁତରାଂ ଅବିଶ୍ୱାସକାରୀମାନେ ଯେଉଁମାନେ ପ୍ରକୃତରେ ପରମେଶ୍ୱରଙ୍କ ଅଂଶୀଦାର ନୁହନ୍ତି ସେମାନଙ୍କୁ କାଳ୍ପନିକ ନାମ ପ୍ରଦାନ କରି ପାର୍ଥିବ ଉପକାର ଆଶାରେ ଉପାସନା କରୁ ଅଛନ୍ତି । ମାତ୍ର ଏହା ଭ୍ରାନ୍ତଧାରଣା ଏବଂ ଏହାଦ୍ୱାରା ସେମାନେ ସୁଫଳ ଲାଭ କରି ପାରିବେ ନାହିଁ ।

୩୬ । ଗ୍ରନ୍ଥଧାରୀ ଅର୍ଥାତ୍ ଇହୁଦୀ ଓ ଖ୍ରୀଷ୍ଟାନମାନଙ୍କ ମଧ୍ୟରୁ ଅନେକେ ସେମାନଙ୍କ ଧର୍ମ ଗ୍ରନ୍ଥରେ କୋରାନ ସମ୍ବନ୍ଧରେ ଭବିଷ୍ୟତ ବାଣୀ ଅବଗତ ହୋଇ କୋରାନ ପ୍ରତି ବିଶ୍ୱାସ ସ୍ଥାପନ କରିଅଛନ୍ତି ଅର୍ଥାତ ଇସଲାମ ଧର୍ମ ଗ୍ରହଣ

'ଏବଂ ଏହିପରି ଅମ୍ଭେ ଏହାକୁ ଆରବୀଭାଷାରେ ଆଦେଶ ରୂପେ ଅବତୀର୍ଣ୍ଣ କରିଅଛୁଁ; ଏବଂ ତୁମ୍ଭ ନିକଟ ଜ୍ଞାନ ଆସିବା ପରେ ମଧ୍ୟ ଯଦି ତୁମ୍ଭେ ସେମାନଙ୍କର ପ୍ରବୃତ୍ତିର ଅନୁସରଣ କର, ତେବେ ପରମେଶ୍ୱରଙ୍କ ବିରୁଦ୍ଧରେ ତୁମ୍ଭପାଇଁ କେହି ଅଭିଭାବକ ଅଥବା ରକ୍ଷାକାରୀ ନାହିଁ ।୩୭।

## ୬ଷ୍ଠ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭ ପୂର୍ବେ ପ୍ରେରିତପୁରୁଷମାନଙ୍କୁ ପଠାଇଥିଲୁଁ; ଏବଂ ସେମାନଙ୍କୁ ସ୍ତ୍ରୀ ଓ ସନ୍ତାନ ସନ୍ତତି ଦେଇଥିଲୁଁ; ଏବଂ ପରମେଶ୍ୱରଙ୍କ ଆଦେଶ ବ୍ୟତୀତ କୌଣସି ପ୍ରେରିତ ପୁରୁଷଙ୍କର ନିଦର୍ଶନ ଆଣିବାର କ୍ଷମତା ନାହିଁ; ପ୍ରତ୍ୟେକ ଯୁଗପାଇଁ ନିର୍ଦ୍ଦିଷ୍ଟ ପ୍ରତ୍ୟାଦେଶ ରହିଅଛି ।୩୮।

ପରମେଶ୍ୱର ଯାହା ଇଚ୍ଛା ବିଲୁପ୍ତ କରନ୍ତି ଓ ପ୍ରତିଷ୍ଠିତ କରନ୍ତି ଏବଂ ତାଙ୍କର ନିକଟରେ ମୂଳଗ୍ରନ୍ଥ ରହିଅଛି ।୩୯।

ଏବଂ ଅମ୍ଭେ ସେମାନଙ୍କୁ ଯେଉଁ ଶାସ୍ତିର ଅଙ୍ଗୀକାର କରିଅଛୁଁ ଯଦି ତାହାର କିୟଦଂଶ ତୁମ୍ଭକୁ (ତୁମ୍ଭର ଜୀବିତ କାଳରେ) ପ୍ରଦର୍ଶନ କରୁଁ ଅଥବା ( ଅଙ୍ଗୀକାର ପୂର୍ଣ୍ଣହେବା ପୂର୍ବରୁ ) ତୁମ୍ଭକୁ ମୃତ୍ୟୁଦାନ କରୁଁ ସେଥିରେ କିଛି ଯାଏ ଆସେ ନାହିଁ; ତେବେ କେବଳ ପ୍ରଚାର କରିବା ତୁମ୍ଭର କାର୍ଯ୍ୟ ଏବଂ ହିସାବ ଗ୍ରହଣ କରିବା ଅମ୍ଭର କାର୍ଯ୍ୟ ।୪୦।

ତେବେ କଅଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଅମ୍ଭେ ପୃଥିବୀକୁ କ୍ରମେ କ୍ରମେ ତାହାର ପ୍ରାନ୍ତ ସମୂହରୁ ସଙ୍କୁଚିତ କରି ଆଣୁଅଛୁଁ ? ଏବଂ ପରମେଶ୍ୱର ଆଦେଶ କରୁଅଛନ୍ତି, ତାଙ୍କର ଆଦେଶର ପ୍ରତିରୋଧକାରୀ କେହି ନାହିଁ ଏବଂ ସେ ଶୀଘ୍ର ହିସାବ ଗ୍ରହଣକାରୀ ।୪୧

---

କରିଅଛନ୍ତି । ଯାହା ସେମାନଙ୍କ ମଧ୍ୟରୁ କେତେକ ଲୋକ ସେମାନଙ୍କ ଧର୍ମଗ୍ରନ୍ଥ ସହିତ କେତେକ ବିଷୟରେ କୋରାନର ଅସାମଞ୍ଜସ୍ୟ ଦେଖି କୋରାନକୁ ଅସ୍ୱୀକାର କରୁଅଛନ୍ତି । ସେମାନଙ୍କ ପ୍ରତି ଲକ୍ଷ୍ୟ କରି ପରମେଶ୍ୱର କହୁଅଛନ୍ତି ଯେ ଧର୍ମର ମୂଳମନ୍ତ୍ର ସମ୍ବନ୍ଧରେ ପୂର୍ବବର୍ତ୍ତୀ ଗ୍ରନ୍ଥ ସହିତ କୋରାନର ଅସାମଞ୍ଜସ୍ୟ ନାହିଁ । କେବଳ ପାର୍ଥିବ ସାମାଜିକ ବିଷୟ ନେଇ ଅସମଞ୍ଜସ୍ୟ ରହିଅଛି ଏବଂ ଦେଶକାଳ ଭେଦରେ ଏପରି ପାର୍ଥକ୍ୟ ରହିବା ସ୍ୱାଭାବିକ । ସୁତରାଂ କୋରାନକୁ ଅସ୍ୱୀକାର ବା ଅଗ୍ରାହ୍ୟ କରିବାର କୌଣସି କାରଣ ନାହିଁ ।

୩୭ । ଏହି ଶ୍ଳୋକରେ 'ତୁମ୍ଭେ' ଏକ ବଚନ ଥିଲେ ମଧ୍ୟ ଏହା ସମସ୍ତ ବିଶ୍ୱାସକାରୀମାନଙ୍କ ପ୍ରତି ଲକ୍ଷ୍ୟ କରାଯାଇଅଛି ।

୩୮।୩୯ । ମହାପୁରୁଷ ମୋହମ୍ମଦ ଏକାଧିକ ନାରୀଙ୍କୁ ବିବାହ କରିଥିବାରୁ ବିଧର୍ମୀମାନେ ତାଙ୍କର ପ୍ରେରିତ ପୁରୁଷ ହେବା ବିଷୟରେ ସନ୍ଦେହ କରୁଥିଲେ । ସେଥିପାଇଁ ପରମେଶ୍ୱର କହୁଅଛନ୍ତି ଯେ ତାଙ୍କ ପୂର୍ବରେ ଯେଉଁ ବିଖ୍ୟାତ ପ୍ରେରିତ ପୁରୁଷମାନେ ଆସିଥିଲେ ସେମାନେ ମଧ୍ୟ ଏକାଧିକ ପତ୍ନୀ ଗ୍ରହଣ କରିଥିଲେ । ସୁତରାଂ ଏହା ସନ୍ଦେହର କାରଣ ହୋଇ ନପାରେ । ଅଉ ଯେଉଁମାନେ ଅଲୌକିକ ନିଦର୍ଶନ ପାଇଁ ହଠ କରୁଥିଲେ ସେମାନଙ୍କୁ ଲକ୍ଷ୍ୟ କରି କୁହାଯାଇଅଛି ଯେ ଅଲୌକିକ ନିଦର୍ଶନ ଉପସ୍ଥିତ କରିବାର ଅଧିକାର ପ୍ରେରିତ ପୁରୁଷଙ୍କ ହାତରେ ନାହିଁ; ତାହା ପରମେଶ୍ୱରଙ୍କ ହାତରେ । କୋରାନ ଗ୍ରନ୍ଥ ସହିତ ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କର କେତେକ ବିଷୟର ପାର୍ଥକ୍ୟ ସମ୍ବନ୍ଧରେ କୁହାଯାଇଅଛି ଯେ, ଦେଶକାଳ ଭେଦରେ ଆଦେଶର ପରିବର୍ତ୍ତନ କରିବାର ଅଧିକାର ପରମେଶ୍ୱରଙ୍କ ହାତରେ ରହିଅଛି ।

୪୦ । ଦେଖ ଟୀକା ୧୦ମ ଅଧ୍ୟାୟ ଶ୍ଳୋ୪୬କ ।

୪୧ । ପୃଥିବୀକୁ ତାହାର ପ୍ରାନ୍ତ ସମୂହରୁ ସଙ୍କୁଚିତ କରି ଆଣୁଅଛୁଁ—ଅର୍ଥାତ୍ ଇସଲାମ ଧର୍ମ କ୍ରମଶଃ ବିସ୍ତୃତ ହେବାରୁ ବିଧର୍ମୀମାନଙ୍କର ଆଧିପତ୍ୟ ଓ ପ୍ରତିପତ୍ତି କ୍ରମଶଃ ହ୍ରାସପ୍ରାପ୍ତ ହେଉଅଛି । ସୁତରାଂ ପୃଥିବୀ ସେମାନଙ୍କ

ଏବଂ ନିଶ୍ଚୟ ସେମାନଙ୍କର ପୂର୍ବବର୍ତ୍ତୀଲୋକମାନେ ମଧ୍ୟ ଚକ୍ରାନ୍ତ କରିଥିଲେ; କିନ୍ତୁ ସମସ୍ତ କୌଶଳର ଅଧିକାରୀ ପରମେଶ୍ୱର ଅଟନ୍ତି ପ୍ରତ୍ୟେକ ବ୍ୟକ୍ତି (ପାପ ବା ପୁଣ୍ୟ) ଯାହା ଅର୍ଜନ କରେ ତାହା ସେ ଜାଣନ୍ତି; ଏବଂ ଅବିଶ୍ୱାସକାରୀମାନେ ଶୀଘ୍ର ଜାଣିବେ ଯେ ପରଲୋକର [ ସୁଖମୟ ] ଘର କେଉଁମାନଙ୍କ ପାଇଁ ରହିଅଛି ।୪୨।

ଏବଂ ଅବିଶ୍ୱାସକାରୀମାନେ କହନ୍ତି ଯେ ତୁମ୍ଭେ ପ୍ରେରିତ ପୁରୁଷ ନୁହ, ତୁମ୍ଭେ କୁହ, "ଆମ୍ଭର ଓ ତୁମ୍ଭମାନଙ୍କର ମଧ୍ୟରେ ପରମେଶ୍ୱରଙ୍କ ସାକ୍ଷ୍ୟ, ଏବଂ ଯେଉଁମାନଙ୍କ ନିକଟରେ ଧର୍ମ ଗ୍ରନ୍ଥର ଜ୍ଞାନ ଅଛି ସେମାନଙ୍କ ସାକ୍ଷ୍ୟହିଁ ଯଥେଷ୍ଟ ଅଟେ ।" ।୪୩।

—o—

ପଷରେ କ୍ରମଶଃ ସଙ୍କୁଚିତ ହୋଇଆସୁଅଛି । ଏହା ପରମେଶ୍ୱରଙ୍କ ଆଦେଶରେ ହେଉଅଛି । ସୁତରାଂ ଏହାକୁ ପ୍ରତିରୋଧ କରିବାର କାହାର ଅଧିକାର ନାହିଁ ।

୪୨ । ଦେଖ ୩ୟ ଅଧ୍ୟାୟ ୫୪ ଶ୍ଳୋକ ।

୪୩ । ଯେଉଁମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରେରିତ ପୁରୁଷ ହେବା ବିଷୟରେ ଅସ୍ୱୀକାର କରୁଅଛନ୍ତି ସେମାନଙ୍କୁ ଲକ୍ଷ୍ୟ କରି ପରମେଶ୍ୱର କହୁଅଛନ୍ତି ଯେ ଯେଉଁମାନଙ୍କର ଏ ବିଷୟରେ ସନ୍ଦେହ ହେଉଅଛି ସେମାନେ ପୂର୍ବବର୍ତ୍ତୀ ଗ୍ରନ୍ଥମାନ ପାଠ କରିଥିବା ଜ୍ଞାନୀ ଲୋକମାନଙ୍କୁ ପଚାରିଲେ ଏହି ପୃଥିବୀରେ ସେମାନେ ଏହାର ସତ୍ୟତାର ପ୍ରମାଣ ପାଇପାରିବେ । ଯେଉଁମାନେ ଏଥିରେ ସନ୍ତୁଷ୍ଟ ନହେବେ ପରଲୋକରେ ପରମେଶ୍ୱର ସେମାନଙ୍କର ବିଚାର କରିବେ ।

—o—

## ୧୪ଶ ଅଧ୍ୟାୟ

ନାମ—ଇବ୍ରାହିମ୍ ।
ମକ୍କାରେ ଅବତୀର୍ଣ୍ଣ । ଏଥିରେ ୭ଗୋଟି ବିଭାଗ ଏବଂ ୫୨ ଗୋଟି ଶ୍ଳୋକ ଅଛି ।
ଦୟାମୟ ଓ କରୁଣା ସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ) ।

### ୧ମ ବିଭାଗ

ଅଲିଫ୍, ଲାମ୍, ରା; ଏହି କୋରାନ ଗ୍ରନ୍ଥ ଆମ୍ଭେ ତୁମ୍ଭ ପ୍ରତି ଅବତୀର୍ଣ୍ଣ କରିଅଛୁଁ, ଯେପରି ତୁମ୍ଭେ ଲୋକମାନଙ୍କୁ ଅନ୍ଧକାରରୁ ବାହାର କରି ଆଲୋକ ଆଡ଼କୁ ସେମାନଙ୍କର ପାଳନକର୍ତ୍ତାଙ୍କର ଆଦେଶରେ ଗୌରବାନ୍ୱିତ ଓ ପ୍ରଶଂସିତ ପରମେଶ୍ୱରଙ୍କ ପଥରେ ଚାଳିତକର, ୧ ।

ଆକାଶ ମଣ୍ଡଳ ମଧ୍ୟରେ ଯାହା ଅଛି ଏବଂ ଭୂମଣ୍ଡଳ ମଧ୍ୟରେ ଯାହା ଅଛି ତାହା ପରମେଶ୍ୱରଙ୍କର ଅଟେ; ଏବଂ ସୁକଠୋର ଶାସ୍ତି ହେତୁ ଅବିଶ୍ୱାସକାରୀମାନଙ୍କର ସର୍ବନାଶ । ୨ ।

ଯେଉଁମାନେ ପରଲୋକ ଅପେକ୍ଷା ପାର୍ଥିବ ଜୀବନକୁ ପ୍ରିୟତର ଜ୍ଞାନ କରନ୍ତି ଏବଂ ପରମେଶ୍ୱରଙ୍କ ପଥରୁ ଲୋକମାନଙ୍କୁ ପ୍ରତିରୋଧ କରନ୍ତି ଏବଂ ତାହାକୁ ବକ୍ର କରିବାକୁ ଇଚ୍ଛା କରନ୍ତି; ସେହିମାନେହିଁ ସୁଦୂର ବିପଥରେ ରହିଅଛନ୍ତି । ୩ ।

ଏବଂ ଆମ୍ଭେ କୌଣସି ପ୍ରେରିତ ପୁରୁଷଙ୍କୁ ତାଙ୍କ ସମ୍ପ୍ରଦାୟର ଭାଷା ଛଡ଼ା ପ୍ରେରଣ କରିନାହୁଁ, ଯେପରି ସେ ସେମାନଙ୍କୁ ଭଲରୂପେ ସେମାନଙ୍କ କର୍ତ୍ତବ୍ୟ ବୁଝାଇ ପାରିବେ; ତାପରେ ପରମେଶ୍ୱର ଯାହାକୁ ଇଚ୍ଛା ବିଭ୍ରାନ୍ତ କରନ୍ତି ଏବଂ ଯାହାକୁ ଇଚ୍ଛା ପଥ ପ୍ରଦର୍ଶନ କରନ୍ତି, ଏବଂ ସେ ମହା ପରାକ୍ରାନ୍ତ ବିଜ୍ଞାନୀ ।୪।

ଏବଂ ନିଶ୍ଚୟ ଆମ୍ଭେ ମୂସାଙ୍କୁ ଆମ୍ଭର ନିଦର୍ଶନମାନଙ୍କ ସହିତ ପଠାଇ ଥିଲୁଁ, ଏବଂ କହିଥିଲୁଁ, 'ତୁମ୍ଭେ ନିଜ ସମ୍ପ୍ରଦାୟକୁ ଅନ୍ଧକାରରୁ ଆଲୋକ ଆଡ଼କୁ ବାହାର କର, ଏବଂ ପରମେଶ୍ୱରଙ୍କ ଦିନମାନଙ୍କ

---

ନାମକରଣ—ଏହି ଅଧ୍ୟାୟର ୬ଷ୍ଠ ବିଭାଗରେ ମହାପୁରୁଷ ଇବ୍ରାହିମଙ୍କ ପ୍ରାର୍ଥନା ବର୍ଣ୍ଣିତ ହୋଇଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ଏହି ଶ୍ଳୋକର ପ୍ରଥମ ଅଂଶ ପାଇଁ ଦେଖ ଟୀକା ୧୦ମ ଅଧ୍ୟାୟ ୧ମ ଶ୍ଳୋକ । ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ଦେଖ ୨ୟ ଅଧ୍ୟାୟ ୧ମ ଶ୍ଳୋକ ଓ ତହିଁର ଟୀକା ।

୩ । ବକ୍ର କରିବାକୁ—ସେଥିରେ ନାନାପ୍ରକାର ମିଥ୍ୟାକ୍ରୁଟି ଓ ଦୋଷ ଦେଖାଇବାକୁ ।

୪ । ଯେଉଁ ପ୍ରେରିତ ପୁରୁଷ ଯେଉଁ ସମ୍ପ୍ରଦାୟର ଉପଦେଷ୍ଟା ସ୍ୱରୂପ ପ୍ରେରିତ ହୁଅନ୍ତି ସେ ସେହି ସମ୍ପ୍ରଦାୟର ଭାଷାରେ ଉପଦେଶ ଦିଅନ୍ତି ଯେପରିକି ସେମାନେ ଭଲରୂପେ ବୁଝିପାରିବେ । ଯେଉଁମାନେ ତାଙ୍କ ଉପଦେଶ ଅନୁଯାୟୀ କାର୍ଯ୍ୟ କରନ୍ତି ପରମେଶ୍ୱର ନିଜ ଅନୁଗ୍ରହରୁ ସେମାନଙ୍କୁ ଶକ୍ତି ଦେଇ ସତ୍ ପଥରେ ଚଳାନ୍ତି; ମାତ୍ର ଯେଉଁମାନେ ଅବାଧ ହୋଇ ତାଙ୍କର ଦୁର୍ବ୍ୟବହାର କରନ୍ତି ସେମାନେ ସତ୍ପଥ ଅନୁସରଣ କରିବାର ପ୍ରବୃତ୍ତି ହରାନ୍ତି । ଦେଖ ଟୀକା ୨ୟ ଅଧ୍ୟାୟ ୭ ଶ୍ଳୋକ ।

ସମ୍ବନ୍ଧରେ ସେମାନଙ୍କୁ ସ୍ମରଣ କରାଇ ଦିଅ” ନିଶ୍ଚୟ ଏଥିରେ ପ୍ରତ୍ୟେକ ଧୈର୍ଯ୍ୟଶୀଳ କୃତଜ୍ଞ ବ୍ୟକ୍ତିପାଇଁ ନିଦର୍ଶନମାନ ରହିଅଛି । ୫ ।

ଏବଂ ଯେତେବେଳେ ମୂସା ନିଜ ସମ୍ପ୍ରଦାୟକୁ କହିଥିଲେ, “ତୁମ୍ଭମାନଙ୍କ ପ୍ରତି ପରମେଶ୍ୱରଙ୍କ ଅନୁଗ୍ରହ ବିଷୟ ସ୍ମରଣ କର, ଯେତେବେଳେ ସେ ଫେରଅଉନ୍ ବଂଶର ଅତ୍ୟାଚାରରୁ ତୁମ୍ଭମାନଙ୍କୁ ଉଦ୍ଧାର କରିଥିଲେ, ଯେଉଁମାନେ ତୁମ୍ଭମାନଙ୍କୁ ଜଘନ୍ୟ ଶାସ୍ତି ପ୍ରଦାନ କରୁଥିଲେ ଏବଂ ତୁମ୍ଭମାନଙ୍କର ପୁତ୍ରମାନଙ୍କୁ ହତ୍ୟା କରୁଥିଲେ ଏବଂ ତୁମ୍ଭମାନଙ୍କର ନାରୀମାନଙ୍କୁ ଜୀବିତ ରଖୁଥିଲେ; ଏବଂ ଏହା ମଧ୍ୟରେ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କଠାରୁ ତୁମ୍ଭମାନଙ୍କ ପ୍ରତି ମହା ପରୀକ୍ଷା ଥିଲା ।” ।୬।

## ୨ୟ ବିଭାଗ

ଏବଂ ଯେତେବେଳେ ତୁମ୍ଭମାନଙ୍କର ପାଳନକର୍ତ୍ତା ମୂସାଙ୍କ ଦ୍ୱାରା ଜଣାଇ ଦେଇଥିଲେ, “ଯଦି ତୁମ୍ଭେମାନେ କୃତଜ୍ଞ ହୁଅ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କୁ ଅଧିକତର ଅନୁଗ୍ରହ ପ୍ରଦାନ କରିବୁଁ ଏବଂ ଯଦି ତୁମ୍ଭେମାନେ ଅବିଶ୍ୱାସ କର ତେବେ ନିଶ୍ଚୟ ଅମ୍ଭର ଶାସ୍ତି କଠୋରତର” । ୭ ।

ଏବଂ ମୂସା କହିଥିଲେ, “ ଯଦି ତୁମ୍ଭେମାନେ ଏବଂ ପୃଥିବୀରେ ଥିବା ସମସ୍ତେ ଅବିଶ୍ୱାସ କର, ତେବେ ନିଶ୍ଚୟ ପରମେଶ୍ୱର ଅଭାବ ଶୂନ୍ୟ ଓ ପ୍ରଶଂସିତ” । ୮ ।

ହେ ଲୋକଗଣ, ତେବେ କଅଣ ତୁମ୍ଭମାନଙ୍କ ନିକଟ ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ନୂହ୍ ଏବଂ ଅାଦ୍ ଓ ସମୁଦ୍ ସମ୍ପ୍ରଦାୟମାନଙ୍କର ସମ୍ବାଦ ଉପସ୍ଥିତ ହୋଇନାହିଁ ? ଏବଂ ସେମାନଙ୍କର ପରବର୍ତ୍ତୀମାନଙ୍କର ସମ୍ବାଦ, ପରମେଶ୍ୱରଙ୍କ ବ୍ୟତୀତ ଯେଉଁମାନଙ୍କୁ ଅନ୍ୟ କେହି ଜାଣେନାହିଁ ? ସେମାନଙ୍କ ନିକଟରେ ସେମାନଙ୍କ ପ୍ରେରିତ ପୁରୁଷମାନେ ପ୍ରକାଶ୍ୟ ନିଦର୍ଶନମାନଙ୍କ ସହିତ ଉପସ୍ଥିତ ହୋଇଥିଲେ, କିନ୍ତୁ ସେମାନେ ସେମାନଙ୍କର ହାତସବୁ ସେମାନଙ୍କ ମୁଖ ମଧ୍ୟରେ ସ୍ଥାପନ କରିଥିଲେ ଏବଂ କହିଥିଲେ,“ନିଶ୍ଚୟ ତୁମ୍ଭେ ଯେଉଁ ସମାଚାର ସହିତ ପ୍ରେରିତ ହୋଇଅଛ ତାହା ଅମ୍ଭେମାନେ ଅବିଶ୍ୱାସ କରୁଁ, ଏବଂ ତୁମ୍ଭେ ଯେଉଁ ଧର୍ମପ୍ରତି ଅମ୍ଭମାନଙ୍କୁ ଆହ୍ୱାନ କରୁଅଛ ନିଶ୍ଚୟ ସେ ବିଷୟରେ ଅମ୍ଭମାନଙ୍କର ଘୋର ସନ୍ଦେହ ରହିଅଛି” । ୯ ।

---

୫ । ପରମେଶ୍ୱରଙ୍କ ଦିନମାନଙ୍କ ସମ୍ବନ୍ଧରେ—ପରମେଶ୍ୱରଙ୍କ ବିଶିଷ୍ଟ କାର୍ଯ୍ୟାବଳୀ ସମ୍ବନ୍ଧରେ, ଅର୍ଥାତ ସେ ପୁଣ୍ୟବାନ ଲୋକମାନଙ୍କୁ ପୁରସ୍କାର ଏବେ ପାପୀମାନଙ୍କୁ ଶାସ୍ତି ପ୍ରଦାନ କରିଥାନ୍ତି ଏହି ବିଷୟ ସମ୍ବନ୍ଧରେ ।

୮ । ଲୋକମାନେ ଯଦି ପରମେଶ୍ୱରଙ୍କ ପ୍ରତି ଅବିଶ୍ୱାସ କରନ୍ତି ସେଥିରେ ପରମେଶ୍ୱରଙ୍କର କିଛି କ୍ଷତି ହେବ ନାହିଁ, କାରଣ ସେ କୌଣସି ବିଷୟରେ କାହାର ଉପରେ ଲେଶମାତ୍ର ନିର୍ଭର କରନ୍ତି ନାହିଁ ।

୯ । ସେମାନେ ସେମାନଙ୍କର ହାତସବୁ ସେମାନଙ୍କ ମୁଖ ମଧ୍ୟରେ ସ୍ଥାପନ କରିଥିଲେ—ଅବିଶ୍ୱାସକାରୀମାନେ ପ୍ରେରିତ ପୁରୁଷମାନଙ୍କର କଥା ଶୁଣିବା ଦୂରରେ ଥାଉ, ସେମାନଙ୍କ ମୁହିଁ ବନ୍ଦ କରିବା ପାଇଁ ନିଜର ହାତସବୁ ସେମାନଙ୍କ ମୁହିଁ ଭିତରେ ପ୍ରବେଶ କରାଇଥିଲେ, ଅର୍ଥାତ୍ ସତ୍ୟଧର୍ମ ପ୍ରଚାର କାର୍ଯ୍ୟରେ ବାଧା ଦେବାପାଇଁ ନାନାପ୍ରକାର ଅତ୍ୟାଚାର କରିଥିଲେ ।

ପରମେଶ୍ୱରଙ୍କ ବ୍ୟତୀତ ସେମାନଙ୍କୁ କେହି ଜାଣନ୍ତି ନାହିଁ—ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ପୂର୍ବରୁ ପୃଥିବୀର ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ଯୁଗରେ ଧର୍ମପ୍ରବର୍ତ୍ତକ ଓ ପ୍ରେରିତ ପୁରୁଷମାନେ ଆବିର୍ଭୂତ ହୋଇ ସତ୍ୟ-ସନାତନ ଧର୍ମ ପ୍ରଚାର କରିଥିଲେ । ସେମାନଙ୍କ ସମ୍ବାଦ ପରମେଶ୍ୱରଙ୍କ ବ୍ୟତୀତ କେହି ଜାଣନ୍ତି ନାହିଁ । କୋରାନରେ ସମସ୍ତଙ୍କ ନାମ ଓ କାର୍ଯ୍ୟ କଳାପର ଉଲ୍ଲେଖ ନାହିଁ । କେବଳ କେତେକ ପ୍ରସିଦ୍ଧ ଧର୍ମପ୍ରବର୍ତ୍ତକ-ମାନଙ୍କ ନାମ ଓ ସଂକ୍ଷିପ୍ତ ପରିଚୟ ଦିଆଯାଇଅଛି ମାତ୍ର । ଏକ ପ୍ରବଚନ (ହଦିସ)ରୁ ପ୍ରକାଶ ଯେ, ପୃଥିବୀର ସୃଷ୍ଟି-

ସେମାନଙ୍କର ପ୍ରେରିତ ପୁରୁଷମାନେ କହିଥିଲେ, "ଆକାଶମଣ୍ଡଳ ଓ ଭୂମଣ୍ଡଳର ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ସମ୍ବନ୍ଧରେ କଅଣ କିଛି ସନ୍ଦେହ ଅଛି ? ସେ ତୁମ୍ଭମାନଙ୍କୁ ତୁମ୍ଭମାନଙ୍କର ଅପରାଧ କ୍ଷମା କରିବାକୁ ଡାକୁ ଅଛନ୍ତି ଏବଂ ତୁମ୍ଭମାନଙ୍କୁ ଅନୁତାପ କରିବା ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଅବକାଶ ଦେଉଅଛନ୍ତି;" ସେମାନେ କହିଥିଲେ, "ତୁମ୍ଭେମାନେ ଆମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଆଉ କିଛି ନୁହ; ଆମ୍ଭମାନଙ୍କର ପୂର୍ବ ପୁରୁଷମାନେ ଯାହାଙ୍କୁ ଉପାସନା କରୁଥିଲେ, ତୁମ୍ଭେମାନେ ସେଥିରୁ ଆମ୍ଭମାନଙ୍କୁ ପ୍ରତିରୋଧ କରିବାକୁ ଇଚ୍ଛା କରୁଅଛ, ଅତଏବ ଆମ୍ଭମାନଙ୍କ ଆଗରେ ପ୍ରକାଶ୍ୟ ପ୍ରମାଣ ଉପସ୍ଥିତ କର ।"୧୦।

ସେମାନଙ୍କର ପ୍ରେରିତପୁରୁଷମାନେ ସେମାନଙ୍କୁ କହିଥିଲେ, "ଆମ୍ଭେମାନେ ତୁମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଆଉ କିଛି ନୋହୁଁ ସତ, କିନ୍ତୁ ପରମେଶ୍ୱର ସ୍ୱୀୟ ସେବକମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ଅନୁଗୃହୀତ କରନ୍ତି; ଏବଂ ପରମେଶ୍ୱରଙ୍କ ଆଦେଶ ବ୍ୟତୀତ ତୁମ୍ଭମାନଙ୍କ ଆଗରେ କୌଣସି ପ୍ରମାଣ ଉପସ୍ଥିତ କରିବା ଆମ୍ଭମାନଙ୍କର ସାଧ୍ୟ ନୁହେଁ; ଏବଂ ପରମେଶ୍ୱରଙ୍କ ଉପରେହିଁ ବିଶ୍ୱାସକାରୀମାନଙ୍କର ନିର୍ଭର କରିବା ଉଚିତ । ୧୧ ।

"ଏବଂ ଆମ୍ଭେମାନେ କାହିଁକି ପରମେଶ୍ୱରଙ୍କ ଉପରେ ନିର୍ଭର ନ କରିବୁଁ ? ଏବଂ ନିଶ୍ଚୟ ସେ ଆମ୍ଭମାନଙ୍କୁ ଆମ୍ଭମାନଙ୍କର ପଥସବୁ ଦେଖାଇ ଅଛନ୍ତି; ଏବଂ ତୁମ୍ଭେମାନେ ଆମ୍ଭମାନଙ୍କୁ ଯାହା ଯନ୍ତ୍ରଣା ଦେବ ତାହା ଅବଶ୍ୟ ଆମ୍ଭେମାନେ ସହ୍ୟ କରିବୁଁ; ଏବଂ ପରମେଶ୍ୱରଙ୍କ ଉପରେହିଁ ନିର୍ଭରଶୀଳମାନଙ୍କର ନିର୍ଭର କରିବା ଉଚିତ" । ୧୨ ।

## ୩ୟ ବିଭାଗ

ଏବଂ ଅବିଶ୍ୱାସକାରୀମାନେ ସେମାନଙ୍କର ପ୍ରେରିତ ପୁରୁଷମାନଙ୍କୁ କହିଥିଲେ, "ଆମ୍ଭେମାନେ ନିଶ୍ଚୟ ତୁମ୍ଭମାନଙ୍କୁ ଆମ୍ଭମାନଙ୍କ ଦେଶରୁ ବାହାର କରିଦେବୁଁ ଅଥବା ତୁମ୍ଭେମାନେ ଅବଶ୍ୟ ଆମ୍ଭମାନଙ୍କ ଧର୍ମରେ ଫେରି ଆସିବ;" ତାପରେ ସେମାନଙ୍କର ପାଳନକର୍ତ୍ତା ସେମାନଙ୍କ ପ୍ରତି ପ୍ରତ୍ୟାଦେଶ କରିଥିଲେ, "ନିଶ୍ଚୟ ଆମ୍ଭେ ଅତ୍ୟାଚାରୀମାନଙ୍କୁ ଧ୍ୱଂସ କରିଦେବୁଁ ।୧୩।

"ଏବଂ ନିଶ୍ଚୟ ଆମ୍ଭେ ସେମାନଙ୍କ ପରେ ତୁମ୍ଭମାନଙ୍କୁ ପୃଥିବୀରେ ଅଧିବାସ କରିବୁଁ; ଏହା ତାହାର ପାଇଁ ଯେ ଆମ୍ଭ ସମ୍ମୁଖରେ ଦଣ୍ଡାୟମାନ ହେବାକୁ ଭୟ କରେ ଏବଂ ଆମ୍ଭର ପ୍ରତିଶ୍ରୁତ ଶାସ୍ତିରେ ଭୀତ ହୁଏ । ୧୪ ।

---

ଠାରୁ ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ପର୍ଯ୍ୟନ୍ତ ଦୁନିଆରେ ଏକ ଲକ୍ଷ ଚବିଶ ହଜାର ଧର୍ମପ୍ରଚାରକ ଆସିଥିଲେ ।

୧୧ । ଅନୁଗୃହୀତ କରନ୍ତି—ମନୁଷ୍ୟମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ଧର୍ମପ୍ରବର୍ତ୍ତକରୂପେ ନିର୍ବାଚନ କରନ୍ତି ।

୧୨ । ପଥସବୁ ଦେଖାଇ ଅଛନ୍ତି—ଯେଉଁ ଉପାୟମାନ ଅବଲମ୍ବନ କଲେ ଆମ୍ଭେମାନେ ଇହକାଳ ଓ ପରକାଳରେ ସୁଫଳ ଲାଭ କରିପାରିବୁଁ ତାହା ସେ ଆମ୍ଭମାନଙ୍କୁ ଜଣାଇ ଦେଇଅଛନ୍ତି ।

୧୪ । ସମ୍ମୁଖରେ ଦଣ୍ଡାୟମାନ ହେବାକୁ ଭୟ କରେ—ଦିନେ ବିଚାର ପାଇଁ ଆମ୍ଭ ଅଦାଲତରେ ଉପସ୍ଥିତ ହେବାକୁ ହେବ ଏହି କଥାକୁ ଭୟ କରେ ।

ଏବଂ ସେମାନେ ବିଜୟ ପ୍ରାର୍ଥନା କରିଥିଲେ ଏବଂ ପ୍ରତ୍ୟେକ ଉଦ୍ଧତ ବିରୁଦ୍ଧାଚାରୀର ମନସ୍କାମନା ବିଫଳ ହୋଇଥିଲା; ।୧୫।

ତାହାର ସମ୍ମୁଖରେ ନରକ ଏବଂ ତାହାକୁ ଫୁଟନ୍ତା ଦୁର୍ଗନ୍ଧି ଜଳ ପାନ କରିବାକୁ ଦିଆଯିବ; ୧୬।

ସେ ଏହାକୁ ଅଳ୍ପ ଅଳ୍ପ କରି ପାନ କରିବ କିନ୍ତୁ ଭଲରୂପେ ଢୋକି ପାରିବ ନାହିଁ ଏବଂ ପ୍ରତ୍ୟେକ ସ୍ଥାନରୁ ତାହା ନିକଟ ମୃତ୍ୟୁ ଉପସ୍ଥିତ ହେବ କିନ୍ତୁ ସେ ମରିବ ନାହିଁ; ଏବଂ ତାହାର ସମ୍ମୁଖରେ କଠିନ ଶାସ୍ତି ରହିଅଛି ।୧୭।

ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ପ୍ରତି ଅବିଶ୍ୱାସ କରିଅଛନ୍ତି ସେମାନଙ୍କର ଦୃଷ୍ଟାନ୍ତ ଏହି ଯେ, ସେମାନଙ୍କର କୃତ କର୍ମମାନ ଭସ୍ମରାଶି ପରି, ଯାହା ଝଡ଼ ଦିନର ପ୍ରବଳ ପବନ ଉଡ଼ାଇନିଏ; ସେମାନେ ଯାହା ଅର୍ଜନ କରିଅଛନ୍ତି, ତାହାର କୌଣସି ବିଷୟ ଉପରେ ସେମାନଙ୍କର କ୍ଷମତା ରହିବ ନାହିଁ, ଏହାହିଁ ସୁଦୂର ପଥଭ୍ରାନ୍ତି ।୧୮।

ତୁମ୍ଭେ କଅଣ ଲକ୍ଷ୍ୟ କରୁନାହଁ ଯେ ପରମେଶ୍ୱର ଆକାଶମଣ୍ଡଳ ଓ ଭୂମଣ୍ଡଳକୁ ସତ୍ୟରୂପେ ସୃଷ୍ଟି କରିଅଛନ୍ତି ? ସେ ଯଦି ଇଚ୍ଛା କରନ୍ତି ତୁମ୍ଭମାନଙ୍କୁ ନେଇଯିବେ ଏବଂ ଏକ ନୂତନ ସମ୍ପ୍ରଦାୟ ସୃଷ୍ଟି କରିବେ; ।୧୯।

ଏବଂ ଏହା ପରମେଶ୍ୱରଙ୍କ ପାଇଁ କଷ୍ଟକର ନୁହେଁ ।୨୦।

ଏବଂ ସେମାନେ ସମସ୍ତେ ପରମେଶ୍ୱରଙ୍କ ସମ୍ମୁଖକୁ ଆସିବେ; ତାପରେ ସେମାନଙ୍କ ମଧ୍ୟରୁ ଦୁର୍ବଳମାନେ ଅହଙ୍କାରୀମାନଙ୍କୁ କହିବେ, "ନିଶ୍ଚୟ ଆମ୍ଭେମାନେ ତୁମ୍ଭମାନଙ୍କର ଅନୁସରଣକାରୀ ଥିଲୁଁ, ଅତଏବ ତୁମ୍ଭେମାନେ କଅଣ ଆମ୍ଭମାନଙ୍କ ପାଇଁ ପରମେଶ୍ୱରଙ୍କ ଶାସ୍ତିରୁ କିଛି ଦୂରୀଭୂତ କରିପାରି" ? ସେମାନେ କହିବେ, "ଯଦି ପରମେଶ୍ୱର ଆମ୍ଭମାନଙ୍କୁ ସୁପଥ ଦେଖାଇ ଥାନ୍ତେ, ତେବେ ନିଶ୍ଚୟ ଆମ୍ଭେମାନେ ମଧ୍ୟ ତୁମ୍ଭମାନଙ୍କୁ ପଥ ଦେଖାଇଥାନ୍ତୁ; ଆମ୍ଭେମାନେ ଅଧୀର ହେଉଁ ଅଥବା ଧୈର୍ଯ୍ୟ ଧାରଣ କରୁଁ, ଆମ୍ଭମାନଙ୍କ ପକ୍ଷରେ ଉଭୟ ସମାନ; ଆମ୍ଭମାନଙ୍କ ପାଇଁ ପଳାୟନର ସ୍ଥାନ ନାହିଁ" ।୨୧।

## ୪ର୍ଥ ବିଭାଗ

ଏବଂ ଯେତେବେଳେ ବିଚାର କାର୍ଯ୍ୟ ମୀମାଂସା ହୋଇଯିବ, ସଇତାନ କହିବ, "ନିଶ୍ଚୟ ପରମେଶ୍ୱର ତୁମ୍ଭମାନଙ୍କୁ ସତ୍ୟ ପ୍ରତିଜ୍ଞାର ଅଙ୍ଗୀକାର କରିଥିଲେ ଏବଂ ଆମ୍ଭେ ମଧ୍ୟ ତୁମ୍ଭମାନଙ୍କୁ ଅଙ୍ଗୀକାର କରିଥିଲିଁ,

---

୧୫ । ସେମାନେ ବିଜୟ ପ୍ରାର୍ଥନା କରିଥିଲେ—ଅବିଶ୍ୱାସକାରୀମାନେ ପ୍ରାର୍ଥନା କରିଥିଲେ ଯେ, ସତ୍ୟ ପଥରେ ଅଛି ତାହାର ବିଜୟ ହେଉ ଏବଂ ସେମାନେ ଆଶା କରିଥିଲେ ସେମାନଙ୍କର ବିଜୟ ହେବ । ମାତ୍ର ଫଳରେ ସେମାନେ ଧ୍ୱଂସ ପ୍ରାପ୍ତ ହୋଇଥିଲେ ।

୧୬ । ୧୭ । ଏହି ଦୁଇ ଶ୍ଳୋକରେ ଉଦ୍ଧତ ବିରୁଦ୍ଧାଚାରୀମାନଙ୍କର ପରଲୋକର ଶାସ୍ତିର ବିଷୟ ବର୍ଣ୍ଣିତ ହୋଇଅଛି ।

୧୮ । କ୍ଷମତା ରହିବ ନାହିଁ—ସେଥିରେ ବିନ୍ଦୁମାତ୍ର ପୁଣ୍ୟ ପାଇବେ ନାହିଁ ।

୧୯ । ନୂତନ ସୃଷ୍ଟି—ପରମେଶ୍ୱର ଇଚ୍ଛା କଲେ ଅବିଶ୍ୱାସକାରୀ ସମ୍ପ୍ରଦାୟକୁ ବିଲୁପ୍ତ କରି ଏକ ବିଶ୍ୱାସକାରୀ ସମ୍ପ୍ରଦାୟକୁ ସୃଷ୍ଟି କରିପାରନ୍ତି ।

୨୧ । ଏହି ଶ୍ଳୋକରେ ଶେଷ ବିଚାର ଦିନର ଘଟଣା ବର୍ଣ୍ଣିତ ହୋଇଅଛି । ଅବିଶ୍ୱାସକାରୀମାନଙ୍କ ମଧ୍ୟରେ କେହି କାହାର ସହାୟ ହେବେ ନାହିଁ ।

ତାପରେ ତୁମ୍ଭମାନଙ୍କ ସହିତ ତାହା ଭଙ୍ଗ କରିଥିଲି; ଏବଂ ଏହାଛଡ଼ା ତୁମ୍ଭମାନଙ୍କ ଉପରେ ଆମ୍ଭର କୌଣସି ଅଧିକାର ନଥିଲା ଯେ ଆମ୍ଭେ ତୁମ୍ଭମାନଙ୍କୁ ଆହ୍ୱାନ କରିଥିଲି, ପରେ ତୁମ୍ଭେମାନେ ମଧ୍ୟ ଆମ୍ଭ ଆହ୍ୱାନ ଗ୍ରହଣ କରିଥିଲ; ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ତିରସ୍କାର କରନା ବରଂ ତୁମ୍ଭେମାନେ ନିଜକୁ ତିରସ୍କାର କର; ଆମ୍ଭେ ତୁମ୍ଭମାନଙ୍କର ସାହାଯ୍ୟକାରୀ ନୋହୁଁ ଏବଂ ତୁମ୍ଭେମାନେ ମଧ୍ୟ ଆମ୍ଭର ସାହାଯ୍ୟକାରୀ ନୁହଁ; ତୁମ୍ଭେମାନେ ଯେ ପୂର୍ବରୁ ଆମ୍ଭକୁ ଅଂଶୀ ସ୍ଥିର କରିଥିଲ, ନିଶ୍ଚୟ ଆମ୍ଭେ ତାହା ଅସ୍ୱୀକାର କରୁଅଛୁଁ; ନିଶ୍ଚୟ ଅତ୍ୟାଚାରୀମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି' ।୨୨।

ଏବଂ ଯେଉଁମାନେ ବିଶ୍ୱାସସ୍ଥାପନ କରିଅଛନ୍ତି ଏବଂ ସତ୍‌କାର୍ଯ୍ୟ କରନ୍ତି, ସେହିମାନେହିଁ ସ୍ୱର୍ଗୋଦ୍ୟାନରେ ପ୍ରବିଷ୍ଟ ହେବେ, ଯାହାର ନିମ୍ନଦେଶରେ ନଦୀମାନ ପ୍ରବାହିତ, ସେମାନଙ୍କର ପାଳନକର୍ତ୍ତାଙ୍କର ଆଦେଶରେ ସେମାନେ ସେଠାରେ ସର୍ବଦା ବାସ କରିବେ; ସେଠାରେ ସେମାନଙ୍କର ସାଦର ସମ୍ଭାଷଣ ହେବ '(ସଲାମ) ଶାନ୍ତି' ।୨୩।

ତୁମ୍ଭେ କଅଣ ଲକ୍ଷ୍ୟ କରନାହିଁ ଯେ ପରମେଶ୍ୱର କିପରି ଉପମା ବର୍ଣ୍ଣନା କରନ୍ତି ? ଉତ୍ତମ ବାକ୍ୟର ଉପମା ଉତ୍ତମ ବୃକ୍ଷ ପରି ଯାହାର ଚେରମାନ ଭୂମିରେ ସୁଦୃଢ଼ ଏବଂ ଯାହାର ଶାଖାମାନ ଆକାଶ ଉପରକୁ ଉଠିଥାଏ ।୨୪।

ତାହାର ପାଳନକର୍ତ୍ତାଙ୍କର ଆଦେଶରେ ତାହା ସବୁ ସମୟରେ ଫଳଦାନ କରୁଥାଏ, ଏବଂ ପରମେଶ୍ୱର ମାନବମଣ୍ଡଳୀ ପାଇଁ ଉପମା ବର୍ଣ୍ଣନା କରନ୍ତି ଯେପରି ସେମାନେ ଉପଦେଶ ଗ୍ରହଣ କରିବେ ।୨୫।

ଏବଂ ମନ୍ଦବାକ୍ୟର ଉପମା ମନ୍ଦ ବୃକ୍ଷ ପରି, ଯେକି ଭୂମି ଉପରେ ଲୋଟୁଥାଏ, ଯାହାର ସ୍ଥାୟିତ୍ୱ ନାହିଁ ।୨୬।

ଯେଉଁମାନେ ସୁଦୃଢ଼ ବାକ୍ୟରେ ବିଶ୍ୱାସସ୍ଥାପନ କରିଅଛନ୍ତି, ପରମେଶ୍ୱର ସେମାନଙ୍କୁ ପାର୍ଥିବ ଜୀବନରେ ଓ ପରକାଳରେ ସୁପ୍ରତିଷ୍ଠିତ କରିବେ; ଏବଂ ପରମେଶ୍ୱର ଅତ୍ୟାଚାରୀମାନଙ୍କୁହିଁ ବିଭ୍ରାନ୍ତ କରିବେ; ଏବଂ ପରମେଶ୍ୱର ଯାହା ଇଚ୍ଛା ତାହା କରନ୍ତି ।୨୭।

---

୨୨ । ବିଚାର କାର୍ଯ୍ୟ ମୀମାଂସା ହୋଇଯିବ—ଶେଷ ବିଚାର ଦିନ ଯେତେବେଳେ ସମସ୍ତଙ୍କୁ ସେମାନଙ୍କର କର୍ମ ଅନୁଯାୟୀ ପୁରସ୍କାର କିମ୍ବା ଶାସ୍ତି ଦିଆଯିବ ।
ପାପାଚାରୀମାନଙ୍କ ସହିତ ସଇତାନ ମଧ୍ୟ ନର୍କରେ ନିକ୍ଷିପ୍ତ ହେବ ଏବଂ ତାକୁ ସେଠାରେ ଦେଖି ନର୍କବାସୀ-ମାନେ ତାକୁ ତିରସ୍କାର କରିବାକୁ ଲାଗିବେ । ତାହାର ଉତ୍ତରରେ ସଇତାନ ସେମାନଙ୍କୁ ଯାହା କହିବ ତାହା ଏହି ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ।
ପାପାଚାରୀମାନେ ସଇତାନକୁ ପରମେଶ୍ୱରଙ୍କ ସମକକ୍ଷ ମନେ କରି ତାହାର ପ୍ରବର୍ତ୍ତନା ଅନୁଯାୟୀ ପାପକାର୍ଯ୍ୟ-ମାନ କରୁଥିଲେ, ମାତ୍ର ସଇତାନ ସେମାନଙ୍କ କର୍ମଫଳର ଦାୟିତ୍ୱ ଗ୍ରହଣ କରିନଥିଲା ।
୨୭ । ପରମେଶ୍ୱର ଯାହା ଇଚ୍ଛା ତାହା କରନ୍ତି; ମାତ୍ର ଅନ୍ୟାୟକାରୀମାନଙ୍କୁ ସେମାନଙ୍କ ଭ୍ରମରେ ଛାଡ଼ିଦିଅନ୍ତି ।
ସୁଦୃଢ଼ ବାକ୍ୟରେ—ଉପରୋକ୍ତ ୨୪ । ୨୫ ଶ୍ଳୋକରେ ବର୍ଣ୍ଣିତ ଉତ୍ତମ ବାକ୍ୟ ବା 'କଲମା ତୟବ'ରେ ।

## ୫ମ ବିଭାଗ

ତୁମ୍ଭେ କଅଣ ସେମାନଙ୍କ ପ୍ରତି ଲକ୍ଷ୍ୟ କରୁନାହଁ ଯେଉଁମାନେ ପରମେଶ୍ୱରଙ୍କ ଅନୁଗ୍ରହକୁ ଅବିଶ୍ୱାସରେ ପରିବର୍ତ୍ତିନ କରିଅଛନ୍ତି ଏବଂ ନିଜ ସମ୍ପ୍ରଦାୟକୁ ଧ୍ୱଂସକାରୀ ଗୃହରେ ପକାଇ ଦେଇଅଛନ୍ତି ।୨୮।

ନର୍କରେ ? ! ସେମାନେ ସେଥିରେ ଦଗ୍ଧ ହେବାପାଇଁ ପ୍ରବେଶ କରିବେ ଏବଂ ତାହା ନିକୃଷ୍ଟତର ବାସସ୍ଥାନ ।୨୯।

ଏବଂ ସେମାନେ (ମୂର୍ତ୍ତିମାନଙ୍କୁ) ପରମେଶ୍ୱରଙ୍କ ସମକକ୍ଷ ସ୍ଥିରକରି ଅଛନ୍ତି ଯଦ୍ଦ୍ୱାରା ତାଙ୍କ ସୁପଥରୁ (ଲୋକମାନଙ୍କୁ) ବିଭ୍ରାନ୍ତ କରିବେ; ତୁମ୍ଭେ କୁହ, "ତୁମ୍ଭେମାନେ (କ୍ଷଣସ୍ଥାୟୀ ସୁଖ) ଭୋଗକର, ତାପରେ ନିଶ୍ଚୟ ତୁମ୍ଭମାନଙ୍କୁ ନରକର ଅଗ୍ନିରେ ପ୍ରବେଶ କରିବାକୁ ହେବ ।" ୩୦ ।

ତୁମ୍ଭେ ଆମ୍ଭର ବିଶ୍ୱାସକାରୀ ସେବକମାନଙ୍କୁ କୁହ, ଯେପରି ସେମାନେ ଆରାଧନା ପ୍ରତିଷ୍ଠିତ କରିବେ ଏବଂ ସେମାନଙ୍କୁ ଯେଉଁ ଜୀବିକା ଆମ୍ଭେ ଦେଇ ଅଛୁଁ ସେଥିରୁ ଗୋପନରେ ଏବଂ ପ୍ରକାଶ୍ୟରେ ସତ୍‌ପଥରେ ବ୍ୟୟ କରିବେ, ସେହି ଦିନ ଆସିବାର ପୂର୍ବେ ଯେଉଁଥିରେ କ୍ରୟ ବିକ୍ରୟ ନଥିବ ଏବଂ ପରସ୍ପର ବନ୍ଧୁତା ନଥିବ ।୩୧।

ସେହି ପରମେଶ୍ୱର ଯେକି ଆକାଶ ମଣ୍ଡଳ ଓ ଭୂମଣ୍ଡଳକୁ ସୃଷ୍ଟି କରିଅଛନ୍ତି ତାପରେ ଆକାଶରୁ ଜଳ ବର୍ଷାଇଅଛନ୍ତି, ତାପରେ ତୁମ୍ଭମାନଙ୍କ ଜୀବିକା ପାଇଁ ତଦ୍ଦ୍ୱାରା ଫଳସବୁ ଜନ୍ମାଇଅଛନ୍ତି, ଏବଂ ତୁମ୍ଭମାନଙ୍କ-ପାଇଁ ନୌକାମାନଙ୍କୁ ଅଧୀନ କରିଅଛନ୍ତି ଯେପରି ସେମାନେ ସାଗରରେ ତାଙ୍କ ଆଦେଶରେ ପରିଚାଳିତ ହେବେ, ଏବଂ ତୁମ୍ଭମାନଙ୍କ ପାଇଁ ନଦୀମାନଙ୍କୁ ମଧ୍ୟ ଅଧୀନ କରି ଅଛନ୍ତି ।୩୨।

ଏବଂ ସବୁବେଳେ ଘୂରୁଥିବା ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମ୍ଭମାନଙ୍କର ଅଧୀନ କରି ଅଛନ୍ତି ଏବଂ ରାତ୍ରି ଓ ଦିନକୁ ତୁମ୍ଭମାନଙ୍କର ଅଧୀନ କରିଅଛନ୍ତି ।୩୩।

ଏବଂ ତୁମ୍ଭେମାନେ ତାଙ୍କ ନିକଟ ଯାହା ପ୍ରାର୍ଥନା କରୁଅଛ ସେ ସବୁ ତୁମ୍ଭମାନଙ୍କୁ ଦେଇ ଅଛନ୍ତି, ଏବଂ ଯଦି ତୁମ୍ଭେମାନେ ପରମେଶ୍ୱରଙ୍କ ଅନୁଗ୍ରହ ଗଣନା କର ତୁମ୍ଭେମାନେ ତାହାର ସଂଖ୍ୟା ସ୍ଥିର କରିପାରିବ ନାହିଁ; ନିଶ୍ଚୟ ମନୁଷ୍ୟ ଅତ୍ୟାଚାରୀ ଅକୃତଜ୍ଞ । ୩୪ ।

---

୨୮ । ଅବିଶ୍ୱାସକାରୀ ବିଧର୍ମୀ ଆରବମାନେ ପରମେଶ୍ୱରଙ୍କ ଅନୁଗ୍ରହ ସ୍ୱରୂପ ସେମାନଙ୍କ ପ୍ରତି ପ୍ରେରିତ ସତ୍ୟ ଧର୍ମ ଓ ସତ୍‌ପଥକୁ ପ୍ରତ୍ୟାଖ୍ୟାନ କରି ପରଲୋକରେ ନରକ ଯନ୍ତ୍ରଣା ଭୋଗର ପଥ ପରିଷ୍କାର କରିଅଛନ୍ତି ।

୩୦ । ତାଙ୍କ ସୁପଥରୁ—ପରମେଶ୍ୱରଙ୍କ ନିର୍ଦ୍ଧାରିତ ସତପଥରୁ ।

୩୨।୩୩।୩୪ । ବୃଷ୍ଟି, ନଦୀ, ନୌକା, ଚନ୍ଦ୍ର, ସୂର୍ଯ୍ୟ, ଦିନ, ରାତ୍ରି ସମସ୍ତେ ମନୁଷ୍ୟମାନଙ୍କ ଉପକାରଜନକ କାର୍ଯ୍ୟରେ ନିଯୁକ୍ତ ରହିଅଛନ୍ତି—ମନୁଷ୍ୟମାନଙ୍କ ପ୍ରତି ପରମେଶ୍ୱରଙ୍କ ଅଗଣିତ ଅନୁଗ୍ରହ ରାଶି ବିବେଚନା କରି ପରମେଶ୍ୱରଙ୍କ ପ୍ରତି ମନୁଷ୍ୟମାନଙ୍କର କୃତଜ୍ଞ ହେବା ଆବଶ୍ୟକ । ମାତ୍ର ତାହା ନକରି ସେମାନେ ଅକୃତଜ୍ଞ ହୋଇଅଛନ୍ତି, ସୁତରାଂ ସେମାନେ ନିଜପ୍ରତି ଅତ୍ୟାଚାର କରୁଅଛନ୍ତି ।

୩୧ । ସେହିଦିନ—ଶେଷ ବିଚାରର ଦିନ ।

କ୍ରୟ ବିକ୍ରୟ ନଥିବ—କ୍ରୟ ବିକ୍ରୟ ଅର୍ଥାତ୍ ପାର୍ଥିବ ଧନ ସାହାଯ୍ୟରେ ଉପକାର ଲାଭ କରିବା ବା ପୁଣ୍ୟ ଅର୍ଜ୍ଜନ କରିବା ଇହକାଳର କାର୍ଯ୍ୟଅଟେ । ଇହ ଲୋକ ଆମ୍ଭମାନଙ୍କର କର୍ମକ୍ଷେତ୍ର ଏବଂ ପରଲୋକ କର୍ମଫଳ ଭୋଗର ସ୍ଥାନ-ଅଟେ । ସୁତରାଂ ପରଲୋକରେ ପାର୍ଥିବ ଧନ ସାହାଯ୍ୟରେ କୌଣସି ପୁଣ୍ୟ ଅର୍ଜ୍ଜନ କରିବାର ସୁବିଧା ମିଳିବ ନାହିଁ । ବନ୍ଧୁତା ନଥିବ—ସେଦିନ ବନ୍ଧୁ ହିସାବରେ କେହି ନିଜ ଅର୍ଜ୍ଜିତ ପୁଣ୍ୟର କିଛି ଅଂଶ ଅନ୍ୟକୁ ଦେବେ ନାହିଁ ।

## ୧୪ଶ ବିଭାଗ

ଏବଂ ଯେତେବେଳେ ଇବ୍ରାହିମ କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଏହି ସହରକୁ ଶାନ୍ତିପୂର୍ଣ୍ଣ କର ଏବଂ ଆମ୍ଭଙ୍କୁ ଓ ଆମ୍ଭର ପୁତ୍ରମାନଙ୍କୁ ପ୍ରତିମା ପୂଜାରୁ ରକ୍ଷା କର । ୩୫ ।

"ହେ ଆମ୍ଭର ପାଳନକର୍ତ୍ତା ! ନିଶ୍ଚୟ ସେମାନେ ମାନବ ମଣ୍ଡଳୀରୁ ଅନେକ ଲୋକଙ୍କୁ ବିପଥଗାମୀ କରିଅଛନ୍ତି; ତାପରେ ଯେ ଆମ୍ଭର ଅନୁସରଣ କରେ ସେ ନିଶ୍ଚୟ ଆମ୍ଭର; ଏବଂ ଯେ ଆମ୍ଭଙ୍କୁ ଅମାନ୍ୟ କରେ ତେବେ ନିଶ୍ଚୟ ତୁମ୍ଭେ କ୍ଷମାଶୀଳ କରୁଣାମୟ । ୩୬ ।

"ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ନିଶ୍ଚୟ ଆମ୍ଭେ ଆମ୍ଭର ସନ୍ତାନମାନଙ୍କ ମଧ୍ୟରୁ (କେତେକଙ୍କୁ) ତୁମ୍ଭର ପବିତ୍ର ଗୃହର ନିକଟରେ ଥିବା ଫଳଶସ୍ୟ ବିହୀନ ପ୍ରାନ୍ତରରେ ରଖିଯାଉଅଛୁଁ, ହେ ଆମ୍ଭମାନଙ୍କର ପାଳନକର୍ତ୍ତା । ଯେପରି ସେମାନେ ଆରାଧନା ପ୍ରତିଷ୍ଠିତ କରିବେ; ସୁତରାଂ ତୁମ୍ଭେ ମାନବମଣ୍ଡଳୀର ଅନ୍ତଃକରଣକୁ ସେମାନଙ୍କ ପ୍ରତି ଆକୃଷ୍ଟ କର ଏବଂ ସେମାନଙ୍କୁ ଫଳସବୁ ଦ୍ୱାରା ଜୀବିକା ଦାନ କର, ଯେପରି ସେମାନେ କୃତଜ୍ଞ ହେବେ । ୩୭ ।

"ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ଆମ୍ଭେମାନେ ଯାହା ଗୋପନ କରୁଁ ଏବଂ ଆମ୍ଭେମାନେ ଯାହା ପ୍ରକାଶ କରୁଁ ତାହା ତୁମ୍ଭେ ନିଶ୍ଚୟ ଜାଣ; ଏବଂ ଭୂମଣ୍ଡଳ ମଧ୍ୟରେ ଓ ଆକାଶମଣ୍ଡଳ ମଧ୍ୟରେ ଥିବା କୌଣସି ବିଷୟ ପରମେଶ୍ୱରଙ୍କଠାରୁ ଲୁଚି ରହେନା । ୩୮ ।

"ସମସ୍ତ ପ୍ରଶଂସା ପରମେଶ୍ୱରଙ୍କ ପାଇଁ ଯେ ଆମ୍ଭଙ୍କୁ ଏହି ବୃଦ୍ଧ ବୟସରେ ଇସମାଇଲ ଓ ଇସହାକ ନାମକ ଦୁଇପୁତ୍ର ଦେଇ ଅଛନ୍ତି, ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ପ୍ରାର୍ଥନା ଶ୍ରବଣକାରୀ । ୩୯ ।

"ହେ ଆମ୍ଭର ପାଳନକର୍ତ୍ତା ! ତୁମ୍ଭେ ଆମ୍ଭଙ୍କୁ ଓ ଆମ୍ଭର ସନ୍ତାନମାନଙ୍କୁ ଆରାଧନା ପ୍ରତିଷ୍ଠାକାରୀ କର; ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ଆମ୍ଭର ଏହି ପ୍ରାର୍ଥନା ଗ୍ରହଣ କର । ୪୦ ।

"ହେ ଆମ୍ଭମାନଙ୍କର ପାଳନ କର୍ତ୍ତା ! ହିସାବ ପ୍ରତିଷ୍ଠା ଦିନରେ ତୁମ୍ଭେ ଆମ୍ଭଙ୍କୁ, ଆମ୍ଭର ପିତାମାତାଙ୍କୁ ଏବଂ ବିଶ୍ୱାସକାରୀମାନଙ୍କୁ କ୍ଷମା ଦାନ କର । ୪୧ ।

---

୩୫—୪୧ । ମହାପୁରୁଷ ଇବ୍ରାହିମ ପରମେଶ୍ୱରଙ୍କ ଆଦେଶରେ ପୃଥିବୀର ପ୍ରାଚୀନତମ ଉପାସନା ମନ୍ଦିର ଅର୍ଥାତ୍ ମକ୍କା ନଗରସ୍ଥ କାବା ମନ୍ଦିରର ପ୍ରତିଷ୍ଠା କାର୍ଯ୍ୟ ଶେଷ କରି ସେଠାରେ ତାଙ୍କର ପ୍ରିୟପୁତ୍ର ଇସମାଇଲ ଏବଂ ତାଙ୍କର ମାତା ହାଜେରା ବିବିଙ୍କୁ ରଖି ନିଜ ଦେଶକୁ ଫେରିବା ସମୟରେ ପରମେଶ୍ୱରଙ୍କଠାରେ ଯେପରି ପ୍ରାର୍ଥନା କରିଥିଲେ ତାହା ଏହି ଶ୍ଳୋକମାନଙ୍କରେ ବର୍ଣ୍ଣିତ ହୋଇଅଛି ।

୩୫ । ଏହି ସହରକୁ ଶାନ୍ତିପୂର୍ଣ୍ଣ କର—ମକ୍କା ସହରରେ ପବିତ୍ର କାବା ମନ୍ଦିର ଅବସ୍ଥିତ ଥିବାରୁ ସେଠାରେ ଯୁଦ୍ଧ ବିଗ୍ରହ ସବୁ ସମୟରେ ନିଷିଦ୍ଧ, ସୁତରାଂ ଏହା ଶାନ୍ତିପୂର୍ଣ୍ଣ ।

୩୬ । ସେମାନେ—ମହାପୁରୁଷ ନୂହଙ୍କ ବଂଶଧରମାନଙ୍କ ମଧ୍ୟରୁ ଅତ୍ୟାଗୃହୀ ଲୋକମାନେ । ମହାପୁରୁଷ ନୂହଙ୍କ ସମୟରେ ଅବିଶ୍ୱାସୀ ଅତ୍ୟାଗୃହୀ ଲୋକମାନେ ଜଳପ୍ଲାବନରେ ଧ୍ୱଂସପ୍ରାପ୍ତ ହୋଇ ଯେଉଁମାନେ ତାଙ୍କ ସହିତ ନୌକାରେ ରକ୍ଷା ପାଇଥିଲେ ସେମାନଙ୍କର ବଂଶଧରମାନେ କାଳକ୍ରମେ ବୃଦ୍ଧି ପ୍ରାପ୍ତ ହୋଇ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅବିଶ୍ୱାସୀ ଅତ୍ୟାଗୃହୀ ଓ ପାପାଗ୍ରହୀ ହୋଇ ପଡ଼ିଥିଲେ । ସୁତରାଂ ମହାପୁରୁଷ ଇବ୍ରାହିମ ତାଙ୍କର ଅନୁଚରମାନଙ୍କୁ ପାପାଗ୍ରହରୁ ରକ୍ଷା କରିବା ନିମନ୍ତେ ପରମେଶ୍ୱରଙ୍କୁ ପ୍ରାର୍ଥନା କରିଥିଲେ ।

୪୧ । ହିସାବ ପ୍ରତିଷ୍ଠା ଦିନରେ—ଶେଷ ବିଚାର ଦିନରେ, ଯେଉଁଦିନ ସମସ୍ତଙ୍କର ପାପପୁଣ୍ୟର ହିସାବ ନିଆଯିବ । ମହାପୁରୁଷ ଇବ୍ରାହିମ ମକ୍କାରେ ନିଜ ପିତାମାତାଙ୍କ କ୍ଷମା ପାଇଁ ପ୍ରାର୍ଥନା କରିଥିଲେ ଯେତେବେଳେ ସେ ଶିଶୁପୁ

## ୭ମ ବିଭାଗ

ଏବଂ ଅତ୍ୟାଗୃହୀମାନେ ଯାହା କରନ୍ତି ସେ ବିଷୟ ପ୍ରତି ପରମେଶ୍ୱରଙ୍କୁ ଅମନଯୋଗୀ ମନେ କରନା; ସେ ସେମାନଙ୍କୁ କେବଳ ସେହିଦିନ ପାଇଁ ଅବକାଶ ଦେଇଅଛନ୍ତି ଯେତେବେଳେ ଚକ୍ଷୁ ସବୁ ଉନ୍ମୁକ୍ତ ରହିବ; । ୪୨ ।

ସେମାନେ ମୁଣ୍ଡ ଉପରକୁ ଉଠାଇ ଦଉଡ଼ିବେ, ସେମାନଙ୍କର ଦୃଷ୍ଟି ସେମାନଙ୍କ ଅଡ଼କୁ ରହିବ ନାହିଁ, ସେମାନଙ୍କର ଅନ୍ତର ସବୁ ଭୟରେ ଜ୍ଞାନ-ଶୂନ୍ୟ ହେବ । ୪୩ ।

ଏବଂ ମାନବ ମଣ୍ଡଳୀକୁ ସେହି ଦିନର ଭୟ ପ୍ରଦର୍ଶନ କର ଯେଉଁଦିନ ସେମାନଙ୍କ ପ୍ରତି ଶାସ୍ତି ଉପସ୍ଥିତ ହେବ; ସେତେବେଳେ ଅତ୍ୟାଗୃହୀମାନେ କହିବେ, "ହେ ଅମ୍ଭମାନଙ୍କ ପାଳନ କର୍ତ୍ତା । ଅମ୍ଭମାନଙ୍କୁ ଅଳ୍ପ ସମୟ ପାଇଁ ଅବକାଶ ଦିଅ ଯେପରି ଅମ୍ଭେମାନେ ତୁମ୍ଭର ଅହ୍ୱାନ ଗ୍ରହଣ କରିବୁଁ ଏବଂ ପ୍ରେରିତ ମହାପୁରୁଷମାନଙ୍କର ଅନୁସରଣ କରିବୁ, ସେମାନେ ଉତ୍ତର ପାଇବେ, ତୁମ୍ଭେମାନେ କଅଣ ପୂର୍ବେ ଶପଥ କରି ନଥିଲ ଯେ ତୁମ୍ଭମାନଙ୍କ ପାଇଁ କୌଣସି ବ୍ୟତିକ୍ରମ ଘଟିବ ନାହିଁ ? ୪୪ ।

"ଅଥଚ ତୁମ୍ଭେମାନେ ସେହିମାନଙ୍କର ଗୃହମାନଙ୍କରେ ରହୁଥିଲ ଯେଉଁମାନେ ନିଜ ପ୍ରତି ଅତ୍ୟାଗ୍ରହ କରିଥିଲେ ଏବଂ ଏହା ତୁମ୍ଭମାନଙ୍କ ନିକଟ ପ୍ରକାଶିତ ହୋଇଥିଲା ଯେ ଅମ୍ଭେ ସେମାନଙ୍କ ସହିତ କିପରି ବ୍ୟବହାର କରିଥିଲୁଁ ଏବଂ ତୁମ୍ଭମାନଙ୍କ ପାଇଁ ଅମ୍ଭେ ଦୃଷ୍ଟାନ୍ତମାନ ବର୍ଣ୍ଣନା କରିଥିଲୁଁ" । ୪୫ ।

ଏବଂ ନିଶ୍ଚୟ ସେମାନେ ସତ୍ୟ ବିରୁଦ୍ଧରେ ସେମାନଙ୍କର ଗୁପ୍ତ ମନ୍ତ୍ରଣାଦ୍ୱାରା ଚକ୍ରାନ୍ତ କରିଥିଲେ, ଏବଂ ପରମେଶ୍ୱରଙ୍କ ନିକଟରେ ସେମାନଙ୍କର ଚକ୍ରାନ୍ତ ରହିଅଛି; ଏବଂ ଯଦିଚ ସେମାନଙ୍କ ଚକ୍ରାନ୍ତ ଏପରି ଥିଲା ଯେ ତଦ୍ୱାରା ପର୍ବତ ବିଚଳିତ ହୁଅନ୍ତା । ୪୬ ।

ଅତଏବ ତୁମ୍ଭେ ଏପରି ମନେ କରନା ଯେ ପରମେଶ୍ୱର ତାଙ୍କର ପ୍ରେରିତ ପୁରୁଷମାନଙ୍କ ସହିତ ନିଜ ସାହାଯ୍ୟର ଅଙ୍ଗୀକାର ଭଙ୍ଗ କରିବେ; ନିଶ୍ଚୟ ପରମେଶ୍ୱର ପରାକ୍ରାନ୍ତ ପ୍ରତିଶୋଧ ଗ୍ରହଣକାରୀ । ୪୭ ।

---

ଇସମାଇଲଙ୍କୁ ଦେଇ ତାଙ୍କମାତା ବିବି ହାଜେରାଙ୍କ ସହ ମକ୍କାରେ ଅବସ୍ଥିତ କରିଥିଲେ । ଟୀକାକାରମାନଙ୍କ ମତରେ ସେତେବେଳେ ମହାପୁରୁଷ ଇବ୍ରାହିମଙ୍କ ପିତାମାତା ଜୀବିତ ଥିଲେ । ଦେଖ ଟୀକା ୯ମ ଅଧ୍ୟାୟ ୧୧୪ ଶ୍ଳୋକ ।

୪୨ । ଚକ୍ଷୁ ସବୁ ଉନ୍ମୁକ୍ତ ରହିବ—ଭୟରେ ଚକ୍ଷୁ ସବୁ ଖୋଲା ରଖିବେ, ପଲକ ମାରି ପାରିବେ ନାହିଁ ।

୪୨।୪୩।୪୪—ଏହି ଶ୍ଳୋକ ମାନଙ୍କରେ ଶେଷ ବିଚାର ଦିନର ଘଟଣାମାନ ବର୍ଣ୍ଣିତ ହୋଇଅଛି । ଅବିଶ୍ୱାସୀ ପାପାଚାରୀ ମାନଙ୍କର ଦୁର୍ଦ୍ଦଶାର ବିଷୟ ଉଲ୍ଲେଖ କରାଯାଇଅଛି ।

୪୪ । ବ୍ୟତିକ୍ରମ ଘଟିବ ନାହିଁ—ମୃତ୍ୟୁରେ ତୁମ୍ଭମାନଙ୍କ ପୁନରୁତ୍ଥାନ ଓ ଶେଷ ବିଚାର ହେବନାହିଁ ବୋଲି ତୁମ୍ଭେମାନେ ଶପଥ କରି କହୁଥିଲ ।

୪୫ । ପୂର୍ବେ ଯେଉଁମାନେ ଅବିଶ୍ୱାସୀ ଓ ଅତ୍ୟାଚାରୀ ହୋଇ ପରମେଶ୍ୱରଙ୍କ ଅଦେଶରେ ଧ୍ୱଂସ ପ୍ରାପ୍ତ ହୋଇଥିଲେ, ସେହିମାନଙ୍କ ଦେଶରେ ରହି ଓ ସେମାନଙ୍କ ଶୋଚନୀୟ ପରିଣାମ ବିଷୟ ଅବଗତ ହୋଇ, ପରବର୍ତ୍ତୀ ଯୁଗର ଲୋକମାନଙ୍କର ଉଚିତ ଥିଲା ଯେ ସେମାନେ ସେଥିରୁ ଶିକ୍ଷାଲାଭ କରି ପରମେଶ୍ୱରଙ୍କ ଅନୁଗତ ହୋଇଥାନ୍ତେ । ମାତ୍ର ସେମାନେ ତାହା ନ କରି ଅବାଧ୍ୟତା କରିଥିଲେ । ସୁତରାଂ ସେମାନେ ଶାସ୍ତିଭୋଗ କରିବାର ଉପଯୁକ୍ତ ।

୪୬ । ୪୭ । ପରମେଶ୍ୱରଙ୍କ ସତ୍ୟ ଧର୍ମର ଲୋପ କରିବା ପାଇଁ ଅବିଶ୍ୱାସକାରୀ ବିଧର୍ମୀମାନେ ଭୀଷଣ ଚକ୍ରାନ୍ତ କରିଥିଲେ । ମାତ୍ର ପରମେଶ୍ୱର ସେମାନଙ୍କ ଚକ୍ରାନ୍ତକୁ ବ୍ୟର୍ଥ କରିଦେଇ ପ୍ରେରିତ ପୁରୁଷମାନଙ୍କୁ ଜୟଯୁକ୍ତ କରିଥିଲେ ।

ଏପରି ଦିନ ଆସିବ ଯେଉଁଦିନ ପୃଥିବୀ ଅନ୍ୟ ପୃଥିବୀରେ ପରିବର୍ତ୍ତିତ ହେବ ଏବଂ ଆକାଶ ମଧ୍ୟ ଏବଂ ସେମାନେ ଅଦ୍ୱିତୀୟ ପରାକ୍ରାନ୍ତ ପରମେଶ୍ୱରଙ୍କ ଆଗରେ ଉପସ୍ଥିତ ହେବେ; ୪୮ ।

ଏବଂ ସେହି ଦିନ ତୁମ୍ଭେ ଅପରାଧୀମାନଙ୍କୁ ଶୃଙ୍ଖଳରେ ଆବଦ୍ଧ ଦେଖିବ; ୪୯ ।

ସେମାନଙ୍କର ଜାମା କାଳିମା ମଣ୍ଡିତ ହେବ ଏବଂ ଅଗ୍ନି ସେମାନଙ୍କର ମୁଖମଣ୍ଡଳ ସବୁ ଆବୃତ କରିବ । ୫୦ ।

ସେତେବେଳେ ଯେ ଯାହା ଅର୍ଜ୍ଜନ କରିଅଛନ୍ତି ପ୍ରତ୍ୟେକଙ୍କୁ ପରମେଶ୍ୱର ତାହାର ପ୍ରତିଫଳ ପ୍ରଦାନ କରିବେ; ନିଶ୍ଚୟ ପରମେଶ୍ୱର ଶୀଘ୍ର ହିସାବ ଗ୍ରହଣକାରୀ । ୫୧ ।

ଏ କୋରାନ ମାନବ ମଣ୍ଡଳୀ ପାଇଁ ସତ୍ୟ ପ୍ରଚାରକ ଅଟେ ଯେପରି ତଦ୍ୱାରା ସେମାନେ ସାବଧାନ ହେବେ ଏବଂ ଯେପରି ସେମାନେ ଜାଣିବେ ଯେ ସେହି ପରମେଶ୍ୱର ଏକମାତ୍ର ଅଦ୍ୱିତୀୟ ଉପାସ୍ୟ ଏବଂ ଯେପରି ଜ୍ଞାନୀ ଲୋକମାନେ ଉପଦେଶ ଗ୍ରହଣ କରିବେ । ୫୨ ।

---

୪୮, ୪୯, ୫୦, ୫୧ । ଏହି ଶ୍ଳୋକମାନଙ୍କରେ ଶେଷ ବିଚାର ଦିନର ଅବସ୍ଥା ବର୍ଣ୍ଣିତ ହୋଇଅଛି ।
ପରିବର୍ତ୍ତିତ ପୃଥିବୀ ଓ ଆକାଶ—ଟୀକାକାରମାନଙ୍କ ମତରେ ଶେଷ ବିଚାର ହେବା ପୂର୍ବରୁ ମହା ପ୍ରଳୟ ଉପସ୍ଥିତ ହୋଇ ଆକାଶ ଓ ପୃଥିବୀ ସବୁ ଧ୍ୱଂସ ପ୍ରାପ୍ତ ହେବ ଏବଂ ତାପରେ ଆକାଶ ଓ ପୃଥିବୀର ନୂତନ ସୃଷ୍ଟି ହେବ । ଏହି ନୂତନ ଆକାଶ ତଳେ ଓ ନୂତନ ପୃଥିବୀ ଉପରେ ପୁନର୍ଜୀବିତ ଲୋକମାନେ ପରମେଶ୍ୱରଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଏକତ୍ରିତ ହେବେ ଏବଂ ସେମାନଙ୍କର ପାପପୁଣ୍ୟର ହିସାବ ନିଆଯାଇ ସେମାନଙ୍କୁ ପାପର ଶାସ୍ତି ଓ ପୁଣ୍ୟର ପୁରସ୍କାର ଦିଆଯିବ ।

୫୨ । ପରଲୋକରେ କର୍ମଫଳ ଭୋଗର ବିଷୟ ଅବଗତ ହୋଇ ଲୋକମାନଙ୍କର ଶିକ୍ଷା ଲାଭ କରିବା ଉଚିତ ଏବଂ ଏକମାତ୍ର ଅଦ୍ୱିତୀୟ ପରମେଶ୍ୱରଙ୍କୁ ଉପାସନା କରିବା ଉଚିତ ।

## ୧୫ଶ ଅଧ୍ୟାୟ

ନାମ—ଅଲ୍ ହଜର୍ (ପର୍ବତ)। ମକ୍କାରେ ଅବତୀର୍ଣ୍ଣ। ଏଥିରେ ଚୋ୬ଟି ବିଭାଗ ଏବ ୯୯ଗୋଟି ଶ୍ଳୋକ ଅଛି।

ଦୟାମୟ ଓ କରୁଣା ସାଗର ପରମେଶ୍ୱରଙ୍କ ନାମରେ (ଅରମ୍ଭ)।

### ୧ମ ବିଭାଗ

ଅଲଫ୍—ଲମ—ର ଏହି ଶ୍ଳୋକମାନ ଧର୍ମ୍ମଟ୍ରନ୍ଥର ଏବଂ ପ୍ରକାଶ୍ୟ ବର୍ଣ୍ଣନାକାରୀ କୋରାନର ଅନ୍ତର୍ଗତ ଅଟେ ।୧।

### ଚତୁର୍ଦ୍ଦଶ ଭାଗ

ଅବିଶ୍ୱାସକାରୀମାନେ ବାରମ୍ବାର ଅକାଙ୍କ୍ଷା କରିବେ ଯେ ଯଦି ସେମାନେ ପରମେଶ୍ୱରଙ୍କଠାରେ ଅତ୍ମସମପର୍ଣକାରୀ ମୁସଲମାନ ହୋଇଥାନ୍ତେ। ୨।

ସେମାନଙ୍କୁ ଏହି ପୃଥିବୀରେ ଅହାର କରିବାକୁ ଓ ବିହାର କରିବାକୁ ଏବଂ ଅକାଙ୍କ୍ଷା ପରିତୃପ୍ତ କରିବାକୁ ଅବସର ଦିଅ, ତାପରେ ଶୀଘ୍ର ସେମାନେ ନିଜ ମୂର୍ଖତା ଜାଣିପାରିବେ। ୩।

ଅମ୍ଭେ ଲିଖିତ ନିର୍ଦ୍ଦିଷ୍ଟ ସମୟ ବ୍ୟତୀତ କୌଣସି ନଗରକୁ ଧ୍ୱଂସ କରିନାହୁଁ। ୪।

କୌଣସି ସମ୍ପ୍ରଦାୟ ତାହାର ଧ୍ୱଂସର ନିର୍ଦ୍ଦିଷ୍ଟ କାଳକୁ ଅଗ ପଛ କରିପାରେ ନା। ୫।

ଏବଂ ସେମାନେ କହନ୍ତି, "ହେ ଲୋକ, (ଯାହାଙ୍କ ପ୍ରତି ଉପଦେଶ ଅବତୀର୍ଣ୍ଣ ହୋଇଅଛି), ନିଶ୍ଚୟ ତୁମ୍ଭେ ପାଗଳ। ୬।

---

ନାମକରଣ—ଏହି ଅଧ୍ୟାୟର ୬ଷ୍ଠ ବିଭାଗରେ ପର୍ବତବାସୀମାନଙ୍କ ବିଷୟ ଉଲ୍ଲେଖ ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି।

୧। ଏହି ଶ୍ଳୋକର ୧ମ ଅଂଶ ପାଇଁ ଦେଖ ୧୦ମ ଅଧ୍ୟାୟର ୧ମ ଶ୍ଳୋକ। ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ୨ୟ ଅଧ୍ୟାୟର ୧ମ ଶ୍ଳୋକ ଦେଖ।

୨। ଅବିଶ୍ୱସକାରୀମାନେ ମୃତ୍ୟୁ ପରେ ନରକ ଯନ୍ତ୍ରଣା ଭୋଗ କରିବା ହେତୁ ବାରମ୍ବାର ଇଚ୍ଛା କରିବେ ଯେ ଯଦି ସେମାନେ ପାର୍ଥିବ ଜୀବନରେ ପରମେଶ୍ୱରଙ୍କଠାରେ ବିଶ୍ୱାସ କରି ଇସଲାମ ଧର୍ମ ଗ୍ରହଣ କରିଥାନ୍ତେ ତେବେ ସେମାନଙ୍କର ମଙ୍ଗଳ ହୋଇଥା'ନ୍ତା। ମାତ୍ର ସେତେବେଳର ଅନୁତାପ ଦ୍ୱାରା କୌଣସି ଲାଭ ହେବ ନାହିଁ।

୩। ସୁତରାଂ ପରମେଶ୍ୱର ଅଦେଶ କରୁଅଛନ୍ତି, ଅବିଶ୍ୱାସକାରୀମାନଙ୍କୁ ପାର୍ଥିବ ଜୀବନ ସୁଖରେ ଯାପନ କରିବାକୁ ଅବସର ଦିଅ। ମୃତ୍ୟୁପରେ ସେମାନେ ନିଜ କାର୍ଯ୍ୟର ପରିଣାମ ବୁଝିପାରିବେ।

୪। ୫। କାରଣ ଅତ୍ୟାଚାରୀମାନଙ୍କୁ ଧ୍ୱଂସ କରିବା ପାଇଁ ପରମେଶ୍ୱର ଯେଉଁ ନିୟମ ସ୍ଥିର କରି ପୂର୍ବରୁ ଜଣାଇ ଦେଇଅଛନ୍ତି ଏବ ଯେଉଁ ସମୟ ନିର୍ଦ୍ଦିଷ୍ଟ କରିଅଛନ୍ତି ତାହା ଗତ ନହେବା ପର୍ଯ୍ୟନ୍ତ ସେମାନଙ୍କୁ ଧ୍ୱଂସ କରିବେ ନାହିଁ।

୬। ଅବିଶ୍ୱାସକାରୀମାନେ ମହାପୁରୁଷ ମୋହମ୍ମଦଙ୍କୁ ପାଗଳ ବୋଲି କହୁଥିଲେ।

"ଯଦି ତୁମ୍ଭେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ ହୁଅ, ତେବେ କାହିଁକି ତୁମ୍ଭେ ଆମ୍ଭମାନଙ୍କ ନିକଟ ସ୍ୱର୍ଗ ଦୂତମାନଙ୍କୁ ଆଣୁନାହଁ ?" । ୭ ।

ହେ ମୋହମ୍ମଦ ! ସେମାନଙ୍କୁ କହିଦିଅ ଯେ ଆମ୍ଭେ ସତ୍ୟ କାରଣ ବ୍ୟତୀତ ସ୍ୱର୍ଗଦୂତମାନଙ୍କୁ ଅବତୀର୍ଣ୍ଣ କରୁନା ଏବଂ ସେତେବେଳେ ସେମାନେ ଅବକାଶ ପାଇବେ ନାହିଁ । ୮ ।

ନିଶ୍ଚୟ ଆମ୍ଭେହିଁ ଉପଦେଶ ଅବତୀର୍ଣ୍ଣ କରିଅଛୁଁ ଏବଂ ନିଶ୍ଚୟ ଆମ୍ଭେହିଁ ଏହାର ସୁରକ୍ଷିତ ରକ୍ଷକ । ୯ ।

ଏବଂ ନିଶ୍ଚୟ ହେ ମୋହମ୍ମଦ ଆମ୍ଭେ ତୁମ୍ଭ ପୂର୍ବେ ପୂର୍ବବର୍ତ୍ତୀ ଧର୍ମସମ୍ପ୍ରଦାୟମାନଙ୍କ ମଧ୍ୟରେ ପ୍ରେରିତ ପୁରୁଷ ପ୍ରେରଣ କରିଥିଲୁଁ । ୧୦ ।

ଏବଂ ସେମାନଙ୍କ ମଧ୍ୟରେ ଏପରି କୌଣସି ପ୍ରେରିତ ପୁରୁଷ ଆସି ନଥିଲେ ଯାହାଙ୍କୁ ସେମାନେ ଉପହାସ କରିନାହାନ୍ତି । ୧୧ ।

ଏହିପରି ଆମ୍ଭେ ଅପରାଧୀମାନଙ୍କର ହୃଦୟରେ ଏହା ସଞ୍ଚାରିତ କରୁଁ,—୧୨ ।

ଯେ ସେମାନେ ସେଥିପ୍ରତି ବିଶ୍ୱାସ ସ୍ଥାପନ କରିବେ ନାହିଁ; ଏବଂ ନିଶ୍ଚୟ ପୂର୍ବବର୍ତ୍ତୀ ଆଦର୍ଶ ଅତୀତ ହୋଇଅଛି ।୧୩।

ଏବଂ ଯଦି ଆମ୍ଭେ ସେମାନଙ୍କ ପ୍ରତି ଆକାଶର କୌଣସି ଦ୍ୱାର ଖୋଲିଦେଉଁ, ଯଦ୍ୱାରା ସେମାନେ ତନ୍ମଧ୍ୟରେ ଆରୋହଣ କରିପାରିବେ ।୧୪।

ତଥାପି ସେମାନେ କହିବେ, "ନିଶ୍ଚୟ ଆମ୍ଭମାନଙ୍କର ଚକ୍ଷୁମାନ ଆବୃତ କରା ହୋଇଅଛି, ବରଂ ଆମ୍ଭେମାନେ ସମ୍ମୋହିତ ସମ୍ପ୍ରଦାୟ" ।୧୫।

## ୨ୟ ବିଭାଗ

ଏବଂ ନିଶ୍ଚୟ ଆମ୍ଭେ ଆକାଶମଣ୍ଡଳରେ (ନକ୍ଷତ୍ରମାନଙ୍କର) କକ୍ଷମାନ ନିର୍ମାଣ କରିଅଛୁଁ ଏବଂ ଆମ୍ଭେ ଦର୍ଶନକାରୀମାନଙ୍କ ପାଇଁ ତାହା ସୁଶୋଭିତ କରିଅଛୁଁ ୧୬।

---

୮ । ଆମ୍ଭେ—ପରମେଶ୍ୱର

୯ । ଉପଦେଶ—କୋରାନ

୧୨ । ୧୩ । ପ୍ରେରିତ ପୁରୁଷଙ୍କୁ ଉପହାସ କରିବା ଅବିଶ୍ୱାସକାରୀମାନଙ୍କ ପକ୍ଷରେ ସ୍ୱାଭାବିକ । ଏଥିପୂର୍ବେ ମଧ୍ୟ ଏହା ପ୍ରମାଣିତ ହୋଇଅଛି ଯେ ସେମାନେ ବିଶ୍ୱାସ ସ୍ଥାପନ କରିବେ ନାହିଁ ।

୧୪ । ୧୫ । ଅବିଶ୍ୱାସକାରୀମାନେ ପ୍ରକାଶ୍ୟ ନିଦର୍ଶନ ଦେଖିଲେ ମଧ୍ୟ ବିଶ୍ୱାସ କରିବେ ନାହିଁ, ବରଂ ସେମାନେ କହିବେ ଯେ କୁହୁକଦ୍ୱାରା ସେମାନଙ୍କୁ ବଶୀଭୂତ କରାଯାଇଅଛି ।

୧୬ । ୧୭ । ୧୮ । ପରମେଶ୍ୱର ଆକାଶ ମଣ୍ଡଳରେ ନକ୍ଷତ୍ରମାନଙ୍କର କକ୍ଷମାନ ନିର୍ମାଣ କରି ଗ୍ରହ ନକ୍ଷତ୍ର ଇତ୍ୟାଦିଙ୍କୁ ସେମାନଙ୍କ ନିର୍ଦ୍ଦିଷ୍ଟ କକ୍ଷମାନଙ୍କରେ ଭ୍ରମଣ କରାଉଅଛନ୍ତି । ସଇତାନ ଓ ତାହାର ସଙ୍ଗୀମାନେ ଆକାଶରେ ପ୍ରବେଶ କରି ସ୍ୱର୍ଗର ଗୁପ୍ତ ବିଷୟ ଯେପରି ଜାଣି ନପାରିବେ ସେଥିପାଇଁ ସ୍ୱର୍ଗଦୂତମାନେ ପ୍ରହରୀରୂପେ ନିଯୁକ୍ତ ହୋଇଅଛନ୍ତି । ଯେଉଁ ସଇତାନମାନେ ଲୁକ୍କାୟିତ ଭାବରେ ସେଠାରେ ପ୍ରବେଶ କରନ୍ତି ସ୍ୱର୍ଗ ଦୂତମାନେ ସେମାନଙ୍କୁ ଅଗ୍ନିଶିଖାଦ୍ୱାରା ପ୍ରହାର କରନ୍ତି ଯାହା ସେମାନଙ୍କୁ ଅନୁସରଣ କରେ । ଏହି ଅଗ୍ନିଶିଖା ଆକାଶରେ ଉଲ୍କା ପିଣ୍ଡ ରୂପରେ ପ୍ରକାଶ ପାଏ ।

ଏବଂ ଆମ୍ଭେ ତାହାକୁ ପ୍ରତ୍ୟେକ ବିତାଡ଼ିତ ସଇତାନର ପ୍ରବେଶରୁ ସୁରକ୍ଷିତ କରିଅଛୁଁ :—।୧୭।

କିନ୍ତୁ ଯେ କେହି ଗୋପନରେ ତାହା ଶ୍ରବଣ କରେ ତେବେ ତାହାକୁ ସମୁଜ୍ଜ୍ୱଳ ଅଗ୍ନିଶିଖା ଅନୁସରଣ କରେ ।୧୮।

ଏବଂ ଆମ୍ଭେ ପୃଥିବୀକୁ ପ୍ରସାରିତ କରିଅଛୁଁ ଏବଂ ତନ୍ମଧ୍ୟରେ ସୁଦୃଢ଼ ପର୍ବତମାଳା ସ୍ଥାପନ କରିଅଛୁଁ ଏବଂ ତନ୍ମଧ୍ୟରେ ଆବଶ୍ୟକ ଅନୁଯାୟୀ ପ୍ରତ୍ୟେକ ବିଷୟ ଉତ୍ପାଦନ କରିଅଛୁଁ ।୧୯।

ଏବଂ ଆମ୍ଭେ ତନ୍ମଧ୍ୟରେ ତୁମ୍ଭମାନଙ୍କ ପାଇଁ ଜୀବିକା ସୃଷ୍ଟି କରିଅଛୁଁ ଏବଂ, ତୁମ୍ଭେ ଯାହାର ଜୀବିକା ପାଇଁ ଦାୟୀ ନୁହ, ତାହାପାଇଁ ମଧ୍ୟ ଜୀବିକା ସୃଷ୍ଟି କରିଅଛୁଁ ।୨୦।

ଏବଂ ଏପରି କୌଣସି ବିଷୟ ନାହିଁ ଯାହାର ଭଣ୍ଡାର ଆମ୍ଭ ନିକଟ ନାହିଁ; ଏବଂ ନିରୂପିତ ପରିମାଣ ବ୍ୟତୀତ ଆମ୍ଭେ ତାହା ଅବତୀର୍ଣ୍ଣ କରୁଁ ନାହୁଁ ।୨୧।

ଏବଂ ଆମ୍ଭେ ମେଘ ବହନକାରୀ ବାୟୁ ପ୍ରେରଣ କରୁଁ, ତାପରେ ଆକାଶରୁ ବାରି ବର୍ଷଣ କରୁଁ, ତାପରେ ତାହା ତୁମ୍ଭମାନଙ୍କୁ ପାନ କରାଉଁ ଏବଂ ତୁମ୍ଭେମାନେ ଏହାର ସଞ୍ଚୟକାରୀ ନୁହ ।୨୨।

ଏବଂ ନିଶ୍ଚୟ ଆମ୍ଭେ ଜୀବଦାନ କରୁଁ ଓ ମୃତ୍ୟୁ ସଂଘଟନ କରୁଁ ଏବଂ ଆମ୍ଭେହିଁ ଉତ୍ତରାଧିକାରୀ ।୨୩।

---

ଏହି ଶ୍ଳୋକମାନଙ୍କରେ ଏକ ଆଧ୍ୟାତ୍ମିକ ଭାବ ରହିଅଛି । ଯେତେବେଳେ ପୁଣ୍ୟାତ୍ମା ବ୍ୟକ୍ତିମାନେ ନିର୍ଜନ ଓ ନିଃଶବ୍ଦ ରାତିରେ ଦିଗନ୍ତ ବିସ୍ତାରିତ ତାରକା ଖଚିତ ସ୍ୱଚ୍ଛ ସୁନୀଳ ଗଗନ ପ୍ରତି ଦୃଷ୍ଟି ନିବେଶ କରି ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ବିଷୟରେ ଧ୍ୟାନ କରନ୍ତି ସାଂସାରିକ ଜଞ୍ଜାଳ ଜନିତ ଦୁଃଖ ତାପରେ ତାପିତ ସେମାନଙ୍କ ହୃଦୟରୁ କ୍ଷଣକାଳ ପାଇଁ ସମସ୍ତ ଅବସନ୍ନତା ଦୂର ହୋଇଯାଏ ଏବଂ ସେମାନଙ୍କ ହୃଦୟରେ ଏକ ଅପୂର୍ବ ପ୍ରଶାନ୍ତ ଭାବ ଜାଗ୍ରତ ହୁଏ ଏବଂ ସେମାନେ ସତ୍ୟଂଶିବଂ ସୁନ୍ଦର ପରମେଶ୍ୱରଙ୍କ ସତ୍ତା ହୃଦୟଙ୍ଗମ କରି ହୃଦୟରେ ଶାନ୍ତି ଲାଭ କରନ୍ତି ଏବଂ ସେମାନଙ୍କର ଆଧ୍ୟାତ୍ମିକ ଉନ୍ନତି ଲାଭ ହୁଏ । ମାତ୍ର ପାପାତ୍ମା ବ୍ୟକ୍ତିମାନେ ସର୍ବଦା କୁପ୍ରବୃତ୍ତିମାନଙ୍କଦ୍ୱାରା ଚାଳିତ ହୋଇ ସାଂସାରିକ ଜଞ୍ଜାଳରେ ଲିପ୍ତ ଥିବାରୁ ଏହି ସୌନ୍ଦର୍ଯ୍ୟ ଅନୁଭବ କରିବାର ପ୍ରବୃତ୍ତି ସେମାନଙ୍କର ନଥାଏ । ସେମାନେ ପରମେଶ୍ୱରଙ୍କର ଅସଂଖ୍ୟ ସଦ୍‌ଗୁଣାବଳୀ ପ୍ରତି ଚକ୍ଷୁ ବନ୍ଦ କରି ଦେଇ କେବଳ ତାଙ୍କର ଦୋଷ ବାଛିବାରେ ମନୋନିବେଶ କରିଥାନ୍ତି । ସେମାନେ ଯଦି ଦୈବାତ୍ ଏହି ଆକାଶ ପ୍ରତି ଦୃଷ୍ଟି ନିକ୍ଷେପ କରନ୍ତି ପରମେଶ୍ୱରଙ୍କ ଆଦେଶରେ ସ୍ୱର୍ଗଦୂତମାନେ ସେମାନଙ୍କୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ସେମାନଙ୍କ ପ୍ରତି ଜ୍ୱଳନ୍ତ ଅଗ୍ନିଶିଖା ନିକ୍ଷେପ କରନ୍ତି ଯାହାକି ଉଲ୍‌କା ରୂପରେ ଆକାଶରେ ପ୍ରକାଶ ପାଏ । ଏହାକୁ ସେମାନେ ଅମଙ୍ଗଳର ଚିହ୍ନ ସ୍ୱରୂପ ମନେ କରି ହୃଦୟରେ ଦୁଃଖ ଅନୁଭବ କରନ୍ତି । ସଂସାରରେ ଏହିପରି ଶାସ୍ତି ଭୋଗ କରିବା ଛଡ଼ା ମୃତ୍ୟୁପରେ ସେମାନେ ନରକ ଯନ୍ତ୍ରଣା ଭୋଗ କରିବେ ।

୨୧ । ବିଶ୍ୱ ବ୍ରହ୍ମାଣ୍ଡର ଯାବତୀୟ ପଦାର୍ଥର ଅସରନ୍ତି ଭଣ୍ଡାର ( ଯାହା ଆମ୍ଭେମାନେ ଜାଣୁ କିମ୍ବା ନଜାଣୁ ) ପରମେଶ୍ୱରଙ୍କ ନିକଟରେ ଗଚ୍ଛିତ ରହିଅଛି ଏବଂ ସେ ଆବଶ୍ୟକ ମତେ ସେଥିରୁ ତାଙ୍କର ସୃଷ୍ଟ ଜୀବମାନଙ୍କ ମଧ୍ୟରେ ବଣ୍ଟନ କରନ୍ତି । ଏହାର ଅପବ୍ୟୟ ହେବାର ଅବକାଶ ନାହିଁ ।

୨୨ । ମେଘ ବହନକାରୀ ବାୟୁ—ଯେଉଁ ବାୟୁ ଜଳ ବର୍ଷଣକାରୀ ମେଘମାଳା ବହନ କରେ । ଜଳକୁ ସବୁଦିନ ପାଇଁ ସଞ୍ଚୟ କରି ରଖିବା ମନୁଷ୍ୟମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ଯଦି ବର୍ଷା ନହୁଅନ୍ତା ତେବେ ସେମାନେ ବିଶେଷ କଷ୍ଟ ଭୋଗ କରନ୍ତେ ।

୨୩ । ଉତ୍ତରାଧିକାରୀ—ମନୁଷ୍ୟମାନେ ଗୋଟି ଗୋଟି ହୋଇ ମୃତ୍ୟୁ ଲାଭ କରୁଅଛନ୍ତି ଏବଂ କରୁଥିବେ । ମାତ୍ର ପରମେଶ୍ୱର ସର୍ବଦା ଜୀବିତ ଅଛନ୍ତି । ସୁତରାଂ ପରମେଶ୍ୱର ସେମାନଙ୍କର ଉତ୍ତରାଧିକାରୀ ସ୍ୱରୂପ ।

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କର ପୂର୍ବରେ ଥିବା ଲୋକମାନଙ୍କୁ ଜାଣୁଁ ଏବଂ ନିଶ୍ଚୟ ତୁମ୍ଭମାନଙ୍କର ପରବର୍ତ୍ତୀ ଲୋକମାନଙ୍କୁ ମଧ୍ୟ ଜାଣୁଁ ।୨୪।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତାହିଁ ସେମାନଙ୍କୁ ଶେଷ ବିଚାର ଦିନ ଏକତ୍ରିତ କରିବେ; ନିଶ୍ଚୟ ସେ ସୁବିଜ୍ଞ ମହାଜ୍ଞାନୀ ।୨୫।

## ୩ୟ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ମାନବକୁ କଳାକାଦୁଅରୁ ଶବ୍ଦ କରୁଥିବା ଶୁଖିଲା ମାଟି ଦ୍ୱାରା ସୃଷ୍ଟି କରିଅଛୁଁ ।୨୬।

ଏବଂ ତାହା ପୂର୍ବରୁ ଦାନବକୁ ଜ୍ୱଳନ୍ତ ଅଗ୍ନିଶିଖାରୁ ସୃଷ୍ଟି କରିଅଛୁଁ ।୨୭।

ଏବଂ ଯେତେବେଳେ ତୁମ୍ଭର ପାଳନକର୍ତ୍ତା ସ୍ୱର୍ଗଦୂତମାନଙ୍କୁ କହିଥିଲେ, "ନିଶ୍ଚୟ ଅମ୍ଭେ କଳାକାଦୁଅରୁ ଶବ୍ଦ କରୁଥିବା ଶୁଖିଲା ମାଟି ଦ୍ୱାରା ମାନବକୁ ସୃଷ୍ଟି କରିବୁଁ ।୨୮।

"ତାପରେ ଯେତେବେଳେ ଅମ୍ଭେ ତାହାକୁ ସଙ୍ଗଠିତ କରିବୁଁ ଏବଂ ସେଥିମଧ୍ୟରେ ନିଜର ଆତ୍ମା ଫୁତ୍କାର କରିବୁଁ ସେତେବେଳେ ତୁମ୍ଭେମାନେ ତାଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କରିବ" ।୨୯।

ତାପରେ ସ୍ୱର୍ଗଦୂତମାନେ ସମସ୍ତେ ଏକତ୍ରରେ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ—୩୦।

କିନ୍ତୁ ଇବ୍‌ଲିସ୍ (କରିନଥିଲା); ସେ ସାଷ୍ଟାଙ୍ଗ ପ୍ରଣିପାତକାରୀମାନଙ୍କ ସଙ୍ଗୀହେବାକୁ ଅସ୍ୱୀକାର କରିଥିଲା ।୩୧।

ପରମେଶ୍ୱର କହିଥିଲେ, ''ହେ ଇବ୍‌ଲିସ୍ । ତୁମ୍ଭର କଅଣ ହେଲା ଯେ ତୁମ୍ଭେ ସାଷ୍ଟାଙ୍ଗ ପ୍ରଣିପାତକାରୀମାନଙ୍କର ସଙ୍ଗୀ ହେଲନାହିଁ ?୩୨।''

ସେ କହିଥିଲା, ''ଅମ୍ଭେ ଏପରି ନୋହୁଁ ଯେ ମାନବକୁ ସାଷ୍ଟାଙ୍ଗ ପ୍ରଣିପାତ କରିବୁଁ ଯାହାକୁ ତୁମ୍ଭେ କଳାକାଦୁଅରୁ ଶବ୍ଦକରୁଥିବା ଶୁଖିଲା ମାଟି ଦ୍ୱାରା ସୃଷ୍ଟି କରିଅଛ"।୩୩।

ପରମେଶ୍ୱର କହିଥିଲେ, "ତୁମ୍ଭେ ଏଠାରୁ ବାହାରିଯାଅ, କାରଣ ନିଶ୍ଚୟ ତୁମ୍ଭେ ଅଭିଶପ୍ତ ।୩୪।

"ଏବଂ ନିଶ୍ଚୟ ଶେଷବିଚାର ଦିନ ପର୍ଯ୍ୟନ୍ତ ତୁମ୍ଭ ଉପରେ ଅଭିଶାପ ।୩୫।"

ସେ କହିଥିଲା, "ହେ ଅମ୍ଭର ପାଳନକର୍ତ୍ତା । ତେବେ ଅମ୍ଭକୁ ପୁନରୁତ୍‌ଥାନ ଦିବସ ପର୍ଯ୍ୟନ୍ତ ଅବକାଶ ଦିଅ ।''୩୬।

ପରମେଶ୍ୱର କହିଥିଲେ, "ନିଶ୍ଚୟ ତୁମ୍ଭେ ଅବକାଶ ପ୍ରାପ୍ତ ମାନଙ୍କର ଅନ୍ତର୍ଗତ, ନିର୍ଦ୍ଦିଷ୍ଟ ସମୟର ଦିନ ପର୍ଯ୍ୟନ୍ତ ।''୩୮।

---

୨୬ । ୨୮ । ୨୯ । ଏହି ଶ୍ଳୋକମାନଙ୍କରେ ଆଦିମାନବ ଆଦମଙ୍କ ସୃଷ୍ଟି ଓ ସଗଠନ ବିଷୟ ବର୍ଣ୍ଣିତ ହୋଇଅଛି । ପ୍ରଥମେ କଳା କାଦୁଅରୁ ତାଙ୍କର ଶରୀର ଗଢ଼ା ହୋଇଥିଲା; ତାପରେ ତାକୁ ଶୁଖାଇ ଦେବାରୁ ଶୁଖିଯାଇ ସେଥିରୁ ଶବ୍ଦ ବାହାରିଥିଲା । ତାପରେ କ୍ରମେ କ୍ରମେ ତାକୁ ସମ୍ପୂର୍ଣ୍ଣ ରୂପେ ଗଠନ କରି ସେଥିରେ ଆତ୍ମା ପ୍ରବେଶ କରାଇ ତାକୁ ଜୀବଦାନ କରାଯାଇଥିଲା ।

୩୧ । ଇବ୍‌ଲିସ—ସଏତାନ

୩୮ । ନିର୍ଦ୍ଦିଷ୍ଟ ସମୟର ଦିନ—ଅର୍ଥାତ୍ ଶେଷ ବିଚାର ଦିନ

ସେ କହିଥିଲା, "ହେ ଅମ୍ଭର ପାଳନକର୍ତ୍ତା ! ଯେହେତୁ ତୁମ୍ଭେ ଅମ୍ଭଙ୍କୁ ବିଭ୍ରାନ୍ତ କରିଅଛ ଅମ୍ଭେ ମଧ୍ୟ ସେମାନଙ୍କ ପାଇଁ ପୃଥିବୀକୁ ସୁଶୋଭିତ କରିବୁଁ ଏବଂ ନିଶ୍ଚୟ ଅମ୍ଭେ ସେମାନଙ୍କ ମଧ୍ୟରୁ ସମସ୍ତଙ୍କୁ ବିଭ୍ରାନ୍ତ କରିବୁଁ" ।୩୯।

"ତେବେ ସେମାନଙ୍କ ମଧ୍ୟରୁ ତୁମ୍ଭର ପ୍ରକୃତ ସେବକମାନଙ୍କ ବ୍ୟତୀତ ।"୪୦।

ପରମେଶ୍ୱର କହିଥିଲେ, "ଏହାହିଁ ଅମ୍ଭ ପାଖରେ ସରଳ ପଥ ଅଟେ" ।୪୧।

"ନିଶ୍ଚୟ ଅବାଧ୍ୟମାନଙ୍କ ମଧ୍ୟରୁ ଯେଉଁମାନେ ତୁମ୍ଭର ଅନୁସରଣ କରିବେ ସେମାନଙ୍କ ବ୍ୟତୀତ ଅମ୍ଭର ସେବକମାନଙ୍କ ଉପରେ ତୁମ୍ଭର କୌଣସି ଅଧିକାର ରହିବ ନାହିଁ ।"୪୨।

ଏବଂ ନିଶ୍ଚୟ ନରକ ସେମାନଙ୍କର ସମସ୍ତଙ୍କ ପାଇଁ ପ୍ରତିଶ୍ରୁତସ୍ଥାନ ।୪୩।

ତାହାର ସପ୍ତଦ୍ୱାର ରହିଅଛି; ପ୍ରତ୍ୟେକ ଦ୍ୱାର ପାଇଁ ସେମାନଙ୍କ ମଧ୍ୟରୁ ନିର୍ଦ୍ଦିଷ୍ଟ ଦଳ ହେବେ ।୪୪।

## ୪ର୍ଥ ବିଭାଗ

ନିଶ୍ଚୟ ଧର୍ମଭୀରୁମାନେ ସ୍ୱର୍ଗୋଦ୍ୟାନ ଓ ଝରଣାମାନଙ୍କ ମଧ୍ୟରେ ରହିବେ ।୪୫।

ସେମାନଙ୍କୁ ଅଭ୍ୟର୍ଥନା କରି କୁହାଯିବ "ତୁମ୍ଭେମାନେ ଶାନ୍ତି ଓ ନିରାପଦରେ ସେଥିରେ ପ୍ରବେଶ କର ।" ୪୬ ।

ସେମାନଙ୍କର ଅନ୍ତଃକରଣରେ ଯେଉଁ ଦୁଃଖକଷ୍ଟ ଥିବ ତାହାକୁ ଅମ୍ଭେ ଦୂରୀଭୂତ କରିଦେବୁଁ, ସେମାନେ ଭାଇ ଭାଇ ପରି ପରସ୍ପର ମୁହାଁମୁହିଁ ହୋଇ ଆସନ ଉପରେ ବସିବେ ।୪୭।

ସେଠାରେ କ୍ଳାନ୍ତି ସେମାନଙ୍କୁ ସ୍ପର୍ଶ କରିବ ନାହିଁ ଏବଂ ସେଠାରୁ ସେମାନଙ୍କୁ ବାହାର କରାଯିବ ନାହିଁ ।୪୮।

(ହେ ମୋହମ୍ମଦ) ତୁମ୍ଭେ ଅମ୍ଭର ସେବକମାନଙ୍କୁ ଜଣାଇ ଦିଅ ଯେ ନିଶ୍ଚୟ ଅମ୍ଭେ କ୍ଷମାଶୀଳ କରୁଣାମୟ;।୪୯ ।

ଏବଂ ନିଶ୍ଚୟ ଅମ୍ଭର ଶାସ୍ତି ମଧ୍ୟ କଠୋର ଶାସ୍ତି ।୫୦।

ଏବଂ ତୁମ୍ଭେ ସେମାନଙ୍କୁ ଇବ୍ରାହିମଙ୍କର ଅତିଥିମାନଙ୍କର ବିଷୟ ଜଣାଇ ଦିଅ । ୫୧।

ଯେତେବେଳେ ସେମାନେ ତାଙ୍କ ନିକଟ ଆସିଥିଲେ, ତାପରେ ଶାନ୍ତି ସମ୍ଭାଷଣ କରିଥିଲେ ଇବ୍ରାହିମ କହିଥିଲେ, "ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କୁ ଭୟ କରୁଅଛୁଁ" ।୫୨।

---

୩୯ । ତୁମ୍ଭେ ଅମ୍ଭକୁ ବିଭ୍ରାନ୍ତ କରିଅଛ—ଇବଲିସ୍ ବା ସଇତାନ ଅହଙ୍କାର ହେତୁ ପରମେଶ୍ୱରଙ୍କ ପ୍ରତି ମିଥ୍ୟା ଅଭିଯୋଗ କରି ଏପରି କହିଥିଲା ।

୪୧ । ଏହାହିଁ ଅମ୍ଭପାଖରେ ସରଳ ପଥ—ପରମେଶ୍ୱର କହୁଅଛନ୍ତି, ତାଙ୍କର ପ୍ରକୃତ ସେବକମାନଙ୍କୁ ପରୀକ୍ଷା କରିବାର ଏହା ସହଜ ଉପାୟ । ଅର୍ଥାତ୍ ଯେଉଁମାନେ ସଇତାନର ପ୍ରବଞ୍ଚନାରେ ପରମେଶ୍ୱରଙ୍କୁ ନଭୁଲି ତାଙ୍କର ଆଦେଶ ପାଳନ କରିବେ ସେହିମାନେ ତାଙ୍କର ପ୍ରକୃତ ସେବକ ।

୪୪ । ସପ୍ତଦ୍ୱାର—ସପ୍ତ ଗୋଟିଏ ଗୁଢ଼ ସଂଖ୍ୟା ଅଟେ । ବିଭିନ୍ନ ଶ୍ରେଣୀର ପାପୀ ଓ ଅପରାଧୀମାନେ ବିଭିନ୍ନ ଦ୍ୱାର ଦେଇ ନରକ ଭିତରକୁ ଯିବେ ।

୫୧ । ଇବ୍ରାହିମଙ୍କ ଅତିଥି—ମହାପୁରୁଷ ଇବ୍ରାହିମଙ୍କ ପ୍ରତି ପ୍ରେରିତ ସ୍ୱର୍ଗ ଦୂତମାନେ । ଏ ବିଷୟ ୧୧ଶ ଅଧ୍ୟାୟ ୭ମ ବିଭାଗରେ ବର୍ଣ୍ଣିତ ହୋଇଅଛି ।

ସେମାନେ କହିଥିଲେ, "ଭୀତ ହୁଅନା, ନିଶ୍ଚୟ ଅମ୍ଭେମାନେ ତୁମ୍ଭକୁ ଗୋଟିଏ ଜ୍ଞାନବାନ ବାଳକର ସୁସମ୍ବାଦ ଦେଉଅଛୁଁ" ।୫୩।

ଇବ୍ରାହିମ କହିଥିଲେ, "ଯେତେବେଳେ ବାର୍ଦ୍ଧକ୍ୟ ଅମ୍ଭକୁ ସ୍ପର୍ଶ କରିଅଛି ସେତେବେଳେ ଯେ ତୁମ୍ଭେମାନେ ଅମ୍ଭକୁ ସୁସମ୍ବାଦ ଦେଉଅଛ, ତାହା କେଉଁ ବିଷୟର ସୁସମ୍ବାଦ ?"୫୪।

ସେମାନେ କହିଥିଲେ, "ଅମ୍ଭେମାନେ ତୁମ୍ଭକୁ ସତ୍ୟ ଭାବରେ ସୁସମ୍ବାଦ ଦେଉଅଛୁଁ, ସୁତରାଂ ତୁମ୍ଭେ ନିରାଶମାନଙ୍କ ଅନ୍ତର୍ଗତ ହୁଅନା" ୫୫।

ଇବ୍ରାହିମ କହିଥିଲେ, "ବିଭ୍ରାନ୍ତମାନଙ୍କ ବ୍ୟତୀତ କିଏ ନିଜ ପାଳନକର୍ତ୍ତାଙ୍କର ଅନୁଗ୍ରହରୁ ନିରାଶ ହୋଇଥାଏ ?"୫୬।

ସେ ପୁଣି କହିଥିଲେ, "ହେ ଦୂତମାନେ ! ତେବେ ତୁମ୍ଭମାନଙ୍କର ପ୍ରକୃତ ଉଦ୍ଦେଶ୍ୟ କଅଣ ?"୫୭।

ସେମାନେ କହିଥିଲେ, "ନିଶ୍ଚୟ ଅମ୍ଭେମାନେ ଏକ ଅପରାଧୀ ସମ୍ପ୍ରଦାୟ ପ୍ରତି ପ୍ରେରିତ ହୋଇଅଛୁଁ ।୫୮।

"ଲୁତ୍‌ବଂଶ ବ୍ୟତୀତ, ନିଶ୍ଚୟ ଅମ୍ଭେମାନେ ସେମାନଙ୍କ ମଧ୍ୟରୁ ସମସ୍ତଙ୍କୁ ରକ୍ଷା କରିବୁଁ ।୫୯।

"ତାଙ୍କର ପତ୍ନୀଙ୍କ ବ୍ୟତୀତ, ଅମ୍ଭେମାନେ ଅଦୃଷ୍ଟ ହୋଇଅଛୁ ଯେ ସେ ପଶ୍ଚାତବର୍ତ୍ତୀମାନଙ୍କ ଅନ୍ତର୍ଗତ ହେବେ ।" ୬୦ ।

## ୫ମ ବିଭାଗ

ତାପରେ ଯେତେବେଳେ ଦୂତମାନେ ଲୁତ୍ ବଂଶ ନିକଟରେ ଉପସ୍ଥିତ ହୋଇଥିଲେ । ୬୧ ।

ଲୁତ୍ କହିଥିଲେ "ନିଶ୍ଚେ ତୁମ୍ଭେମାନେ ଅପରିଚିତ ସମ୍ପ୍ରଦାୟ ।" ୬୨ ।

ସେମାନେ କହିଥିଲେ, "ବରଂ ଅମ୍ଭେମାନେ ସେହି ସମ୍ବନ୍ଧରେ ତୁମ୍ଭ ନିକଟ ଅସିଅଛୁଁ ଯେଉଁ ବିଷୟରେ ସେମାନେ ସନ୍ଦେହଯୁକ୍ତ ରହିଅଛନ୍ତି" । ୬୩ ।

"ଏବଂ ଅମ୍ଭେମାନେ ତୁମ୍ଭ ନିକଟ ସତ୍ୟ ବିଷୟ ଅଣିଅଛୁଁ ଏବଂ ଅମ୍ଭେମାନେ ନିଶ୍ଚୟ ସତ୍ୟବାଦୀ । ୬୪ ।

---

୫୯ । ଲୁତଙ୍କ ବଂଶ ବ୍ୟତୀତ—ମହାପୁରୁଷ ଲୁତଙ୍କ ପରିବାର ଓ ଅନୁଗତ ଲୋକମାନଙ୍କ ଛଡ଼ା ।

୬୦ । ସେ—ଲୁତଙ୍କ ପତ୍ନୀ; ସେ ଶାସ୍ତିରୁ ରକ୍ଷା ପାଇନଥିଲେ ।

୬୧ । ମହାପୁରୁଷ ଲୁତଙ୍କ ପ୍ରସଙ୍ଗ ୭ମ ଅଧ୍ୟାୟ ଶ୍ଳୋକ ୮୦ରୁ ୮୪ରେ ଏବ ୧୧ଶ ଅଧ୍ୟାୟ ୭ମ ବିଭାଗରେ ବର୍ଣ୍ଣିତ ହୋଇଅଛି ।

୬୩ । ସେହି ସମ୍ବନ୍ଧରେ—ଧ୍ୱଂସଜନକ ଶାସ୍ତି ପ୍ରଦାନ ବିଷୟରେ ।
ସେମାନେ—ତୁମ୍ଭ ସହିତରେ ରହିଥିବା ପାପୀ ବାସିନ୍ଦାମାନେ

"ଅତଏବ ତୁମ୍ଭେ ରାତ୍ରିର ଏକ ଅଂଶରେ ତୁମ୍ଭର ପରିବାରମାନଙ୍କୁ ସ୍ଥାନାନ୍ତରିତ କର ଏବଂ ତୁମ୍ଭେ ମଧ୍ୟ ସେମାନଙ୍କର ପଶ୍ଚାତ୍ ଗମନ କର ଏବଂ ତୁମ୍ଭମାନଙ୍କ ମଧ୍ୟରୁ କେହି ଯେପରି ପଛଆଡ଼କୁ ନଦେଖେ ଏବଂ ତୁମ୍ଭେ ଯେଉଁଆଡ଼କୁ ଯିବାପାଇଁ ଆଦିଷ୍ଟ ହୋଇଅଛ ପ୍ରସ୍ଥାନ କର" । ୬୫ ।

ଏବଂ ଆମ୍ଭେ ତାଙ୍କ ପ୍ରତି ଏହି ଆଦେଶ ପ୍ରକାଶିତ କରିଥିଲୁଁ ଯେ ପ୍ରଭାତ ହେବା ସଙ୍ଗେ ଅପରାଧୀମାନଙ୍କର ମୂଳୋଚ୍ଛେଦ କରାହେବ । ୬୬ ।

ଏବଂ ନଗରର ଅଧିବାସୀମାନେ କେତେକ ନୂଆଲୋକ ଆସିବା ଶୁଣି ଆନନ୍ଦ ସହିତ ଲୁତ୍‌ଙ୍କ ପାଖକୁ ଆସିଥିଲେ । ୬୭ ।

ଲୁତ କହିଥିଲେ, "ନିଶ୍ଚୟ ଏମାନେ ଆମ୍ଭର ଅତିଥି, ଅତଏବ ତୁମ୍ଭେମାନେ ଆମ୍ଭଙ୍କୁ ଅପଦସ୍ଥ କରନା । ୬୮ ।

"ଏବଂ ପରମେଶ୍ୱରଙ୍କୁ ଭୟ କର ଏବଂ ଆମ୍ଭଙ୍କୁ ଲାଞ୍ଛିତ କରନା ।" ୬୯ ।

ସେମାନେ କହିଥିଲେ, "ଆମ୍ଭେମାନେ କଅଣ ତୁମ୍ଭଙ୍କୁ (ଅନ୍ୟ) ଲୋକମାନଙ୍କ ସମ୍ବନ୍ଧରେ ନିଷେଧ କରିନାହୁଁ" ? ୭୦ ।

ସେ କହିଥିଲେ, "ଯଦି ତୁମ୍ଭେମାନେ କିଛି କରିବାକୁ ଗୃହୀ ତେବେ ଏହି ଆମ୍ଭର କନ୍ୟାମାନେ (ବିବାହ ପାଇଁ) ରହି ଅଛନ୍ତି" । ୭୧ ।

ହେ ମୋହମ୍ମଦ, ତୁମ୍ଭର ଜୀବନର ରାଣ । ସେମାନେ ନିଜ କାମ ଲାଳସାରେ ଅନ୍ଧ ହୋଇଥିଲେ ତାପରେ ପୂର୍ବ ଦିଗରେ ସୂର୍ଯ୍ୟ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ସେମାନଙ୍କୁ ଭୀଷଣ ଧ୍ୱନି ଆକ୍ରମଣ କରିଥିଲା ୭୩ ।

ତାପରେ ଆମ୍ଭେ ତାହାର ଊର୍ଦ୍ଧ୍ୱ ଭାଗକୁ ତାହାର ନିମ୍ନଭାଗ କରି ଦେଇଥିଲୁଁ ଏବଂ ସେମାନଙ୍କ ଉପରେ କଙ୍କର ପରି ପ୍ରସ୍ତରମାନ ବର୍ଷଣ କରିଥିଲୁଁ । ୭୪ ।

ନିଶ୍ଚୟ ଏଥିରେ ଅନୁସନ୍ଧାନକାରୀମାନଙ୍କ ପାଇଁ ନିଦର୍ଶନମାନ ରହିଅଛି । ୭୫ ।

ଏବଂ ନିଶ୍ଚୟ ଏହା ଯିବାଆସିବା ପଥ ନିକଟରେ ରହିଅଛି । ୭୬ ।

ଏବଂ ନିଶ୍ଚୟ ବିଶ୍ୱାସକାରୀମାନଙ୍କ ପାଇଁ ଏଥିରେ ନିଦର୍ଶନମାନ ରହିଅଛି । ୭୭ ।

ଏବଂ ବନବାସୀମାନେ ମଧ୍ୟ ଅତ୍ୟାଚାରୀ ଥିଲେ । ୭୮ ।

ଅତଏବ ଆମ୍ଭେ ସେମାନଙ୍କଠାରୁ ପ୍ରତିଶୋଧ ଗ୍ରହଣ କରିଥିଲୁଁ ଏବଂ ଏହି ଉଭୟ ସ୍ଥାନ ପ୍ରକାଶ୍ୟ ପଥ ନିକଟରେ ରହିଅଛି । ୭୯ ।

---

୭୧ । ପ୍ରତ୍ୟେକ ପ୍ରେରିତ ପୁରୁଷ ନିଜ ନିଜ ମଣ୍ଡଳର ପିତା ସ୍ୱରୂପ । ଏଥିପାଇଁ ମହାପୁରୁଷ ଲୁତ ନିଜ ସମ୍ପ୍ରଦାୟର କନ୍ୟାମାନଙ୍କୁ ଲକ୍ଷ୍ୟ କରି ଆମ୍ଭର କନ୍ୟାମାନେ ବୋଲି କହି ଅଛନ୍ତି ।

୭୪ । ତାହାର—ନଗରର । (ସଦୋମ ଏବଂ ଗମରା) । ଊର୍ଦ୍ଧ୍ୱଭାଗ ନିମ୍ନଭାଗ ସହରକୁ ଓଲଟପାଲଟ କରିଦେଇଥିଲୁଁ ।

୭୬ । କୋରେଶମାନେ ବାଣିଜ୍ୟ ଉପଲକ୍ଷରେ ବିଦେଶ ଗଲାବେଳେ ରାସ୍ତା ନିକଟରେ ଏହି ବିଧ୍ୱସ୍ତ ନଗରର ଭଗ୍ନାବଶେଷ ଦେଖୁଥିଲେ ।

୭୮ । ବନବାସୀ ସମ୍ବନ୍ଧରେ ୩୮ ଅଧ୍ୟାୟ ୧୩ ଶ୍ଳୋକ ଓ ୫୦ ଅଧ୍ୟାୟ ୧୪ ଶ୍ଳୋକ ଦେଖ ।

୭୯ । ଉଭୟ ସ୍ଥାନ—ଲୁତ୍ ସମ୍ପ୍ରଦାୟର ବାସସ୍ଥାନ ସଦୋମନଗରର ଧ୍ୱଂସାବଶେଷ (ବର୍ତ୍ତମାନ ମରୁହ୍ରଦ) ଏବଂ ଶୋୟେବ ସମ୍ପ୍ରଦାୟର ବାସସ୍ଥାନର ଧ୍ୱଂସାବଶେଷ ।

ପ୍ରକାଶ୍ୟପଥ—ମକ୍କାରୁ ସିରିଆ ପ୍ରଦେଶକୁ ଯିବାର ପ୍ରଧାନ ରାସ୍ତା ।

ଶୋୟେବ ସମ୍ପ୍ରଦାୟ ସମ୍ବନ୍ଧରେ ୭ମ ଅଧ୍ୟାୟ ଶ୍ଳୋ ୮୫ରୁ ଶ୍ଳୋ ୯୩ରେ ଏବଂ ୧୧ଶ ଅଧ୍ୟାୟ ଶ୍ଳୋ ୮୪ରୁ ୯୫ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ।

## ୬ଷ୍ଠ ବିଭାଗ

ଏବଂ ନିଶ୍ଚୟ ପର୍ବତବାସୀମାନେ ପ୍ରେରିତ ପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ । ୮୦ ।

ଏବଂ ଆମ୍ଭେ ସେମାନଙ୍କୁ ନିଦର୍ଶନମାନ ପ୍ରଦାନ କରିଥିଲୁଁ, କିନ୍ତୁ ସେମାନେ ତତ୍ପ୍ରତି ବିମୁଖ ହୋଇଥିଲେ । ୮୧ ।

ଏବଂ ସେମାନେ ନିରାପଦରେ ରହିବା ପାଇଁ ପର୍ବତ ମଧ୍ୟରେ ଗୃହମାନ ଖୋଦିତ କରିଥିଲେ ।୮୨।

ତାପରେ ଏକ ପ୍ରଭାତରେ ଭୀଷଣ ଧ୍ୱନି ସେମାନଙ୍କୁ ଆକ୍ରମଣ କରିଥିଲା । ୮୩ ।

ବାସ୍ତବରେ ସେମାନେ ଯାହା ଅର୍ଜନ କରିଥିଲେ ତଦ୍ୱାରା ସେମାନେ ଉପକୃତ ହୋଇ ନଥିଲେ ।୮୪

ଏବଂ ଆମ୍ଭେ ଆକାଶମଣ୍ଡଳ ଓ ଭୂମଣ୍ଡଳ ଏବଂ ସେ ଦୁହିଁଙ୍କ ମଧ୍ୟରେ ଯାହା କିଛି ଅଛି ସତ୍ୟ ସହିତ ସୃଷ୍ଟି କରି ଅଛୁଁ; ଏବଂ ନିଶ୍ଚୟ ସେହି ସମୟ ଉପସ୍ଥିତ ହେବ, ଅତଏବ ତୁମ୍ଭେ ଅନୁଗ୍ରହପୂର୍ଣ୍ଣ କ୍ଷମା ସହିତ (ସେମାନଙ୍କ ତ୍ରୁଟି ସବୁ) ମାର୍ଜନା କରିଦିଅ ।୮୫।

ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାଜ୍ଞାନୀ ସୃଜନକାରୀ ।୮୬।

ଏବଂ ନିଶ୍ଚୟ ଆମ୍ଭେ ତୁମ୍ଭଙ୍କୁ ପୁନଃ ପୁନଃ ଆବୃତ୍ତ କରାଯାଉଥିବା ସାତ ଗୋଟି ଶ୍ଳୋକ ଏବଂ ମହା କୋରାନଗ୍ରନ୍ଥ ଦାନ କରିଅଛୁଁ ।୮୭।

ଆମ୍ଭେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଯେଉଁସବୁ ସମ୍ପଦ ଦେଇଅଛୁଁ ତୁମ୍ଭେ ସେଥିପ୍ରତି ନିଜ ଚକ୍ଷୁଦ୍ୱୟ ପ୍ରସାରିତ କରନା ଏବଂ ସେଥିପାଇଁ ଦୁଃଖିତ ହୁଅନା ଏବଂ ବିଶ୍ୱାସକାରୀମାନଙ୍କ ପାଇଁ ନିଜର ବାହୁ ଅବନତ କର ।୮୮।

ଏବଂ ତୁମ୍ଭେ କୁହ, "ନିଶ୍ଚୟ ଆମ୍ଭେ ପ୍ରକାଶ୍ୟ ଭୟ ପ୍ରଦର୍ଶନକାରୀ" ।୮୯।

(ଯଦି ସେମାନେ ଅବିଶ୍ୱାସ କରନ୍ତି ତେବେ) ଆମ୍ଭେ ବିଭକ୍ତକାରୀମାନଙ୍କ ପ୍ରତି ଯେପରି (ଶାସ୍ତି) ଅବତୀର୍ଣ୍ଣ କରିଥିଲୁଁ ।୯୦।

---

୮୦।୮୪ । ଏହି ଶ୍ଳୋକ ମାନଙ୍କରେ ସମୁଦ ସମ୍ପ୍ରଦାୟର ବିଷୟ ଉଲ୍ଲେଖ କରାଯାଇ ଅଛି । ଏମାନଙ୍କର ବିଷୟ ୭ମ ଅଧ୍ୟାୟ ଶ୍ଳୋ୭୩ରୁ ୭୯ କ ଏବଂ ୧୧ଶ ଅଧ୍ୟାୟ ଶ୍ଳୋ୬୧ରୁ ୬୮ କରେ ବର୍ଣ୍ଣିତ ହୋଇଅଛି ।

୮୫ । ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ଦେଇ କହୁ ଅଛନ୍ତି, "ଆମ୍ଭେ ଆକାଶ ଓ ପୃଥିବୀ ଏବଂ ତହିଁ ମଧ୍ୟରେ ଥିବା ଜୀବଜନ୍ତୁ ଇତ୍ୟାଦି ବୃଥାରେ ସୃଷ୍ଟି କରିନାହୁଁ । ସୁତରାଂ ମନୁଷ୍ୟମାନଙ୍କର କର୍ମଫଳ ଭୋଗ ନିମନ୍ତେ ଶେଷ ବିଚାର ଦିନ ନିଶ୍ଚୟ ଉପସ୍ଥିତ ହେବ, ଯେଉଁଦିନ ଅତ୍ୟାଚାରୀମାନଙ୍କୁ ଶାସ୍ତି ଦିଆଯିବ । ସୁତରାଂ ତୁମ୍ଭେ ବିଧର୍ମୀମାନଙ୍କ ଅତ୍ୟାଚାର ହେତୁ ଦୁଃଖିତ ଓ ସେମାନଙ୍କ ପ୍ରତି ଅସନ୍ତୁଷ୍ଟ ନ ହୋଇ, ସେମାନଙ୍କୁ କ୍ଷମା ପ୍ରଦାନକର ଏବଂ ସେମାନଙ୍କୁ ସଦୁପଦେଶ ପ୍ରଦାନ କରିବାରୁ କ୍ଷାନ୍ତ ହୁଅନା ।"

୮୭ । କୋରାନ ଗ୍ରନ୍ଥର ୧ମ ଅଧ୍ୟାୟରେ ଥିବା ଗୋ୭ଟି ଶ୍ଳୋକ । ଏହାହିଁ କୋରାନ ଗ୍ରନ୍ଥର ସାରାଂଶ କହିଲେ ଚଳେ । ପ୍ରତି ଆରାଧନା (ନମାଜ୍) ରେ ଏହି ଅଧ୍ୟାୟଟି ପାଠ କରାଯାଏ ।

୮୮ । ବାହୁ ଅବନତ କରିବା—ନମ୍ର ବ୍ୟବହାର କରିବା ।

ଅବିଶ୍ୱାସକାରୀମାନେ ପାର୍ଥିବ ସମ୍ପଦ ଲାଭ କରି ଅଛନ୍ତି ବୋଲି ସେଥିପାଇଁ ବିସ୍ମିତ କିମ୍ବା ଦୁଃଖିତ ହେବାର କାରଣ ନାହିଁ । ଦେ ଟୀକା ୯ମ ଅଧ୍ୟାୟ ଶ୍ଳୋ୫୫।

ଯେଉଁମାନେ କୋରାନକୁ ବିଭକ୍ତ କରିଥିଲେ (ସେମାନଙ୍କ ପ୍ରତି ସେହିପରି ଶାସ୍ତି ପଠାଇଛୁ); ।୯୧।

ତାପରେ, ତୁମ୍ଭ ପାଳନକର୍ତ୍ତାଙ୍କର ରାଣ । ନିଶ୍ଚୟ ଅମ୍ଭେ ସେମାନଙ୍କ ମଧ୍ୟରୁ ସମସ୍ତଙ୍କୁ ପ୍ରଶ୍ନ କରିବୁଁ; ।୯୨।

ଯାହା ସେମାନେ କରିଥିଲେ ସେ ବିଷୟରେ ।୯୩।

ତାପରେ ତୁମ୍ଭେ ଯେଉଁ ବିଷୟରେ ଆଦିଷ୍ଟ ହୋଇଅଛ ତାହା ଘୋଷଣାକର ଏବଂ ଅଂଶୀବାଦୀମାନଙ୍କ ଠାରୁ ବିମୁଖ ହୁଅ ।୯୪।

ନିଶ୍ଚୟ ଅମ୍ଭେ ଉପହାସକାରୀମାନଙ୍କ ବିରୁଦ୍ଧରେ ତୁମ୍ଭପାଇଁ ଯଥେଷ୍ଟ ଅଛୁଁ ।୯୫।

ଯେଉଁମାନେ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ସ୍ଥିର କରନ୍ତି; ପରେ ଶୀଘ୍ର ସେମାନେ (ନିଜର ଭ୍ରମ) ଜାଣି ପାରିବେ ।୯୬।

ଏବଂ ନିଶ୍ଚୟ ଅମ୍ଭେ ଅବଗତ ଅଛୁଁ ଯେ ସେମାନେ ଯାହା କହନ୍ତି ସେଥିରେ ତୁମ୍ଭର ଅନ୍ତର ସଙ୍କୁଚିତ ହୁଏ ।୯୭।

ତାପରେ ତୁମ୍ଭେ ତୁମ୍ଭର ପାଳନକର୍ତ୍ତାଙ୍କର ପ୍ରଶଂସା କୀର୍ତ୍ତନକର ଏବଂ ସାଷ୍ଟାଙ୍ଗ ପ୍ରଣିପାତକାରୀ ମାନଙ୍କର ଅନ୍ତର୍ଗତ ହୁଅ ।୯୮।

ଏବଂ ତୁମ୍ଭ ନିକଟ ନିର୍ଦ୍ଧାରିତ ସମୟ ଆସିବା ପର୍ଯ୍ୟନ୍ତ ତୁମ୍ଭେ ତୁମ୍ଭର ପାଳନକର୍ତ୍ତାଙ୍କର ଉପାସନା କରୁଥାଅ ।୯୯।

---

୮୯।୯୦।୯୧।୯୨।୯୩—ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥଧାରୀ ଅର୍ଥାତ୍ ଇହୁଦୀ ଓ ଖ୍ରୀଷ୍ଟାନ ଓ ଅନ୍ୟାନ୍ୟମାନଙ୍କମଧ୍ୟରୁ ଅନେକେ କୋରାନ ଗ୍ରନ୍ଥକୁ ଭାଗ ଭାଗ କରି ଯେଉଁ ଅଂଶ ସେମାନଙ୍କ ମନ ଅନୁଯାୟୀ ହେଲା ତାକୁ ସତ୍ୟ ମନେ କରୁଥିଲେ ଏବଂ ଯେଉଁ ଅଂଶ ସେମାନଙ୍କ ମନ ଅନୁଯାୟୀ ନ ହେଲା ତାକୁ ମିଥ୍ୟା କହୁଥିଲେ । ପରମେଶ୍ୱର କହୁ ଅଛନ୍ତି ସେମାନେ ସମସ୍ତେ ଶାସ୍ତି ଭୋଗ କରିବେ, କାରଣ ସେମାନେ ଧର୍ମଗ୍ରନ୍ଥର ବିକୃତ ଅର୍ଥ କରିଅଛନ୍ତି ।

୯୯ । ନିର୍ଦ୍ଧାରିତ ସମୟ ଆସିବା ପର୍ଯ୍ୟନ୍ତ—ଅର୍ଥାତ୍ ମୃତ୍ୟୁ ପର୍ଯ୍ୟନ୍ତ ।

## ୧୬ଶ ଅଧ୍ୟାୟ

ନାମ—ଅନ୍ ନହଲ୍ (ମହୁମାଛି) ।
ମକ୍କାରେ ଅବତୀର୍ଣ୍ଣ । ଏଥିରେ ୧୬ ଗୋଟି ବିଭାଗ ଏବଂ ୧୨୮ ଗୋଟି ଶ୍ଳୋକ ଅଛି ।
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ପରମେଶ୍ୱରଙ୍କ ଆଦେଶ ଉପସ୍ଥିତ ହୋଇଅଛି, ଅତଏବ ତାହାକୁ ଶୀଘ୍ର ଘଟାଇବାର ଇଚ୍ଛା କରନା ସେ ଅତି ପବିତ୍ର ଏବଂ ସେମାନେ ତାଙ୍କ ସହିତ ଯେଉଁ ଅଂଶୀଦାର ସ୍ଥିର କରୁଅଛନ୍ତି । ସେଥିରୁ ସେ ଅତି ଉଚ୍ଚରେ ଅଛନ୍ତି ।୧।

ସେ ତାଙ୍କ ସେବକମାନଙ୍କ ମଧ୍ୟରୁ ଯାହା ପ୍ରତି ଇଚ୍ଛା ନିଜ ଆଦେଶରେ ତାଙ୍କର ପ୍ରତ୍ୟାଦେଶବାଣୀ ସହିତ ସ୍ୱର୍ଗଦୂତମାନଙ୍କୁ ଅବତୀର୍ଣ୍ଣ କରିଥାନ୍ତି ଏହା ଜଣାଇବା ପାଇଁ, "ଲୋକମାନଙ୍କୁ ସାବଧାନ କରାଇଦିଅ ଯେ ନିଶ୍ଚୟ ଆମ୍ଭ ଛଡ଼ା ଅନ୍ୟ ଉପାସ୍ୟ କେହି ନାହିଁ, ଅତଏବ ଆମ୍ଭଙ୍କୁହିଁ ଭୟକର" ।୨।

ସେ ଆକାଶମଣ୍ଡଳ ଓ ଭୂମଣ୍ଡଳକୁ ସତ୍ୟ ସହିତ ସୃଷ୍ଟି କରିଅଛନ୍ତି; ସେମାନେ ତାଙ୍କ ସହିତ ଯେଉଁ ଅଂଶୀ ସ୍ଥାପନ କରିଅଛନ୍ତି ସେଥିରୁ ସେ ଅତି ଉଚ୍ଚରେ ।୩।

ସେ ମନୁଷ୍ୟକୁ ସାମାନ୍ୟ ଶୁକ୍ର ବିନ୍ଦୁରୁ ସୃଷ୍ଟି କରିଅଛନ୍ତି, ତଥାପି ସେ (ପରମେଶ୍ୱରଙ୍କ ଅସ୍ତିତ୍ୱ ଓ ଏକତ୍ୱ ସମ୍ବନ୍ଧରେ) ବାକବିତଣ୍ଡା କରୁଅଛି ।୪।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋ।୬୮;୬୯ କରେ ମହୁ ମାଛି ପରମେଶ୍ୱରଙ୍କ ଆଦେଶରେ ମଧୁଚକ୍ର ନିର୍ମାଣ କରୁଥିବାର ପ୍ରସଙ୍ଗ ଉଲ୍ଲେଖ ଥିବାରୁ ଏହି ଅଧ୍ୟାୟର ଏପରି ନାମ କରଣ ହୋଇଅଛି ।

୧ । ଅବାଧ୍ୟ ଲୋକମାନଙ୍କୁ ଶାସ୍ତି ଦେବାର ସମୟ ନିକଟ ହୋଇଅଛି, ସୁତରାଂ ତାହାକୁ ଶୀଘ୍ର ଘଟାଇବାର ଇଚ୍ଛା କରିବାର ଆବଶ୍ୟକ ନାହିଁ । ଏହା ନିଶ୍ଚୟ ଘଟିବ ।

୨ । ଅବିଶ୍ୱାସକାରୀ ଲୋକମାନେ କହୁଥିଲେ, "ଆମ୍ଭମାନଙ୍କ ମଧ୍ୟରୁ ଜଣକୁ ପ୍ରେରିତ ପୁରୁଷ ମନୋନୀତ କରିବାର ଆବଶ୍ୟକ କଅଣ ? ପରମେଶ୍ୱର ଇଚ୍ଛାକଲେ ସ୍ୱର୍ଗଦୂତ ପଠାଇ ସର୍ବସାଧାରଣଙ୍କୁ ଉପଦେଶ ଦେଇପାରନ୍ତେ ।" ଏହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, "ସର୍ବସାଧାରଣଙ୍କର ସ୍ୱର୍ଗଦୂତମାନଙ୍କଠାରୁ ଉପଦେଶ ଗ୍ରହଣ କରିବାର ଶକ୍ତି ନାହିଁ । ସେଥିପାଇଁ ପରମେଶ୍ୱର ମନୁଷ୍ୟମାନଙ୍କ ମଧ୍ୟରୁ ଜଣକୁ ଶକ୍ତିଶାଳୀ କରି ଦେଇ ତାଙ୍କ ନିକଟ ସ୍ୱର୍ଗଦୂତ ଜିବରେଇଲଙ୍କୁ ପ୍ରତ୍ୟାଦେଶ ସହିତ ପ୍ରେରଣ କରନ୍ତି । ସେ ସ୍ୱର୍ଗଦୂତଙ୍କଠାରୁ ଉପଦେଶ ଗ୍ରହଣକରି ଲୋକ ସାଧାରଣଙ୍କୁ ଉପଦେଶ ପ୍ରଦାନ କରନ୍ତି ଯେ ସତ୍ ପଥ ଅବଲମ୍ବନ କର ଏବଂ ଅସତ୍ ପଥ ପରିତ୍ୟାଗ କର ।"

୩—୮ । ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ଏବଂ ମନୁଷ୍ୟମାନଙ୍କ ପ୍ରତି ତାଙ୍କର ଅପାର କରୁଣା ବିଷୟ ଚିନ୍ତା କରି ଏକମାତ୍ର ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କୁ ଉପାସନା କରିବା ମନୁଷ୍ୟମାନଙ୍କର କର୍ତ୍ତବ୍ୟ ।

ଏବଂ ସେ ତୁମ୍ଭମାନଙ୍କ ପାଇଁ ଚତୁଷ୍ପଦ ପଶୁ ସୃଷ୍ଟି କରିଅଛନ୍ତି, ସେମାନଙ୍କ ମଧ୍ୟରେ ଗରମ ଆବରଣ, ଏବଂ ଅନ୍ୟ ଅନେକ ଉପକାର ହୋଇଅଛି ଏବଂ ସେମାନଙ୍କ ମଧ୍ୟରୁ ତୁମ୍ଭେମାନେ ମାଂସ ମଧ୍ୟ ଖାଇ ଥାଅ ।୫।

ଏବଂ ତୁମ୍ଭେମାନେ ଯେତେବେଳେ ସେମାନଙ୍କୁ ସନ୍ଧ୍ୟାବେଳେ ଘରକୁ ଫେରାଇ ଆଣ ଏବଂ ଯେତେବେଳେ ସେମାନଙ୍କୁ ସକାଳେ ଚରାଇବା ପାଇଁ ବାହାରକୁ ନିଅ ସେଥିରେ ତୁମ୍ଭମାନଙ୍କ ପାଇଁ ସୌନ୍ଦର୍ଯ୍ୟ ରହିଅଛି ।୬।

ଏବଂ ସେମାନେ ତୁମ୍ଭମାନଙ୍କର ଭାରି ବୋଝମାନ ସହରକୁ ନେଇଯାନ୍ତି ଯେଉଁଠାକୁ ତୁମ୍ଭେମାନେ ଜୀବନମୂର୍ଚ୍ଛା କଷ୍ଟ ଛଡ଼ା ଯାଇପାରନ୍ତ ନାହିଁ; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ସ୍ନେହଶୀଳ କରୁଣାମୟ ।୭।

(ପରମେଶ୍ୱର) ଘୋଡ଼ା, ଖଚର ଏବଂ ଗଧମାନଙ୍କୁ ସୃଷ୍ଟି କରିଅଛନ୍ତି ସେମାନଙ୍କ ଉପରେ ଚଢ଼ିବା ଏବଂ ଭୂଷଣସ୍ୱରୂପ ଏବଂ ତୁମ୍ଭେମାନେ ଯାହା ଜାଣନା ସେ ତାହା ସୃଷ୍ଟି କରିଥାନ୍ତି ।୮।

ଏବଂ ପରମେଶ୍ୱରଙ୍କ ପର୍ଯ୍ୟନ୍ତ ସରଳ ସୁପଥ ରହିଅଛି ଏବଂ ତନ୍ମଧ୍ୟରେ ବକ୍ର କୁପଥ ମଧ୍ୟ ଅଛି, ଏବଂ ସେ ଇଚ୍ଛାକଲେ ତୁମ୍ଭମାନଙ୍କର ସମସ୍ତଙ୍କୁ ସୁପଥ ଦେଖାଇଥାନ୍ତେ ।୯।

## ୨ୟ ବିଭାଗ

ସେହି ତୁମ୍ଭମାନଙ୍କ ପାଇଁ ଆକାଶରୁ ଜଳ ବର୍ଷଣ କରନ୍ତି, ତୁମ୍ଭେମାନେ ତାହା ପାନକର ଏବଂ ସେଥିରୁ ଗଛ ଲତା ଜନ୍ମେ ଯାହାଦ୍ୱାରା ତୁମ୍ଭେମାନେ ପଶୁ ସବୁକୁ ଚରାଅ ।୧୦।

ସେ ଏହାଦ୍ୱାରା ତୁମ୍ଭମାନଙ୍କ ପାଇଁ ଶସ୍ୟ ଏବଂ ଜଇତୁନ ଏବଂ ଖଜୁରି ଏବଂ ନାନା ପ୍ରକାର ଫଳ ଜାତ କରନ୍ତି; ନିଶ୍ଚୟ ଏଥିରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ନିଦର୍ଶନ ରହିଅଛି ।୧୧।

ଏବଂ ସେ ତୁମ୍ଭମାନଙ୍କ ପାଇଁ ରାତ୍ରି ଓ ଦିନକୁ ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଆୟତ୍ତାଧୀନ କରିଅଛନ୍ତି; ଏବଂ ତାଙ୍କର ଆଦେଶରେ ନକ୍ଷତ୍ରମାନେ ନିୟମାଧୀନ ରହିଅଛନ୍ତି, ନିଶ୍ଚୟ ଜ୍ଞାନବାନ ସମ୍ପ୍ରଦାୟ ପାଇଁ ଏଥିରେ ନିଦର୍ଶନମାନ ରହିଅଛି ।୧୨।

---

୮ । ଏହି ପଶୁମାନେ ଯେ କେବଳ ବୋଝ ବୁହନ୍ତି ତାହା ନୁହେ । ଏମାନେ ଶୋଭାଯାତ୍ରାରେ ବାହାର ଯାହାର ସୌନ୍ଦର୍ଯ୍ୟ ବଢ଼ାଇ ଥାନ୍ତି । ତୁମ୍ଭେମାନେ ଯାହା ଜାଣନା=ଯେପରି ରେଲ, ଷ୍ଟିମର, ଉଡ଼ାଜାହାଜ ପ୍ରଭୃତି କେତେ ବସ୍ତୁଯୁକ୍ତ ଯାନ-ବାହାନ ସବୁ ଯାହା କୋରାନ ଅବତୀର୍ଣ୍ଣ ହେବା ସମୟରେ ଲୋକେ ଜାଣି ନ ଥିଲେ ଏବଂ ଯାହାପରେ ଅବିଷ୍କୃତ ହୋଇଅଛି ।

୯ । ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋକ ।

୧୦।୧୨ । ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟିକୌଶଳ ଓ ତାଙ୍କର ଅପାର କରୁଣା ସମ୍ବନ୍ଧରେ ଆଉ କେତେକ ଉଦାହରଣ ଏହି ଶ୍ଳୋକମାନଙ୍କରେ ଦିଆଯାଇଅଛି । ପାର୍ଥିବ ଜୀବନରେ ଯେପରି ମନୁଷ୍ୟମାନେ ପରମେଶ୍ୱରଙ୍କ ସୃଷ୍ଟ ନଦୀ, ପର୍ବତ, ରାସ୍ତା ପ୍ରଭୃତି ପ୍ରାକୃତିକ ଚିହ୍ନ ମାନ ଏବଂ ଆକାଶରେ ନକ୍ଷତ୍ର ଇତ୍ୟାଦି ଦେଖି ନିଜର ଲକ୍ଷ୍ୟସ୍ଥାନ ଠିକ କରନ୍ତି, ସେହିପରି ଆଧ୍ୟାତ୍ମିକ ଜୀବନରେ ସାଧୁସନ୍ନ୍ୟାସୀମାନଙ୍କ ସହବାସ ଓ ଆଦର୍ଶ ଦ୍ୱାରା ନିଜ ଜୀବନକୁ ନିୟନ୍ତ୍ରିତ କରି ଏବଂ ବଡ଼ ବଡ଼ ଧର୍ମୋପଦେଷ୍ଟା ମହାପୁରୁଷମାନଙ୍କ ଉପଦେଶ ଅନୁଯାୟୀ ନିଜ ଜୀବନରେ ଆଧ୍ୟାତ୍ମିକ ଉନ୍ନତିର ସାଧନା କଲେ ଆଧ୍ୟାତ୍ମିକ ଉନ୍ନତିର ଚରମ ଲକ୍ଷ୍ୟ ଅର୍ଥାତ ପରମେଶ୍ୱରଙ୍କ ନିକଟରେ ଶୀଘ୍ର ଦ୍ୱାରରେ ଉପସ୍ଥିତ ହୋଇପାରିବେ ।

ଏବଂ ସେ ପୃଥିବୀରେ ତୁମ୍ଭମାନଙ୍କ ପାଇଁ ଯେଉଁ ଭିନ୍ନ ଭିନ୍ନ ବର୍ଣ୍ଣ ବିଶିଷ୍ଟ ପଦାର୍ଥମାନ ବହୁ ପରିମାଣରେ ସୃଷ୍ଟି କରିଅଛନ୍ତି, ନିଶ୍ଚୟ ସେଥିରେ ପରମେଶ୍ୱରଙ୍କ ସ୍ତୁତିଗାନକାରୀ କୃତଜ୍ଞ ସମ୍ପ୍ରଦାୟ ପାଇଁ ନିଦର୍ଶନ ରହିଅଛି ।୧୩।

ଏବଂ ସେ ସମୁଦ୍ରକୁ ତୁମ୍ଭମାନଙ୍କର ଆୟତ୍ତାଧୀନ କରିଅଛନ୍ତି ଯେପରି ତୁମ୍ଭେମାନେ ସେଥିରୁ ସଦ୍ୟ ଭକ୍ଷଣ କର ଏବଂ ସେଥିରୁ ଅଳଙ୍କାର ସବୁ ସଂଗ୍ରହ କରି ତୁମ୍ଭେମାନେ ତାହା ପିନ୍ଧ; ଏବଂ ତୁମ୍ଭେମାନେ ତନ୍ମଧ୍ୟରେ ଜଳବିଦାରଣକାରୀ ନୌକାମାନ ଦେଖୁଅଛ, ଯେପରି ତୁମ୍ଭେମାନେ ତଦ୍ଦ୍ୱାରା ଅନୁଗ୍ରହ ଅନୁସନ୍ଧାନ କର ଏବଂ ଯେପରି ତୁମ୍ଭେମାନେ କୃତଜ୍ଞ ହୁଅ ।୧୪।

ଏବଂ ସେ ପୃଥିବୀରେ ପର୍ବତମାଳା ଦୃଢ଼ଭାବରେ ସ୍ଥାପନ କରିଅଛନ୍ତି ଯେପରି ଏହା ତୁମ୍ଭମାନଙ୍କ ସହିତ ଆନ୍ଦୋଳିତ ନ ହେବ ଏବଂ ନଦୀ ସବୁ ଓ ପଥ ସବୁ (କରିଅଛନ୍ତି) ଯେପରି ତୁମ୍ଭେମାନେ ସୁପଥଗାମୀ ହୁଅ ।୧୫।

ଏବଂ ଚିହ୍ନମାନ (ସ୍ଥାପନ କରିଅଛନ୍ତି) ଏବଂ ନକ୍ଷତ୍ରମାନଙ୍କ ଦ୍ୱାରା ସେମାନେ ପଥ ପ୍ରାପ୍ତ ହୋଇଥାନ୍ତି ।୧୬।

ତେବେ କଅଣ ଯେ ସୃଷ୍ଟି କରନ୍ତି ସେ କଅଣ ତାଙ୍କର ପରି ଯେ ସୃଷ୍ଟି କରି ପାରନ୍ତି ନାହିଁ ? ତେବେ ମଧ୍ୟ କଅଣ ତୁମ୍ଭେମାନେ ଉପଦେଶ ଗ୍ରହଣ କରିବ ନାହିଁ ? ।୧୭।

ଏବଂ ଯଦି ତୁମ୍ଭେମାନେ ପରମେଶ୍ୱରଙ୍କ ଅନୁଗ୍ରହମାନଙ୍କ ଗଣନା କର, ତାହାର ସଂଖ୍ୟା ନିର୍ଣ୍ଣୟ କରି ପାରିବ ନାହିଁ, ନିଶ୍ଚୟ ପରମେଶ୍ୱର କ୍ଷମାଶୀଳ କରୁଣାମୟ ।୧୮।

ତୁମ୍ଭେମାନେ ଯାହା ଗୋପନ କର ଏବଂ ତୁମ୍ଭେମାନେ ଯାହା ପ୍ରକାଶ କର ପରମେଶ୍ୱର ତାହା ଜାଣନ୍ତି ।୧୯।

---

୧୩ । ସୂର୍ଯ୍ୟୋଦୟ ସମୟରେ ପୂର୍ବ ଆକାଶରେ ଏବଂ ସୂର୍ଯ୍ୟାସ୍ତ ସମୟରେ ପଶ୍ଚିମ ଆକାଶରେ ଏବଂ କେତେକ ଗଛର ପତ୍ରରେ, କେତେକ ପକ୍ଷୀର ପରରେ ଓ କେତେକ ପଶୁର ଚର୍ମ ଉପରେ ଭିନ୍ନ ଭିନ୍ନ ବର୍ଣ୍ଣର ଯେଉଁ ବିଚିତ୍ର ସମାବେଶ ଦେଖାଯାଏ ସେ ବିଷୟରେ ଚିନ୍ତା କଲେ ଜ୍ଞାନୀଲୋକର ହୃଦୟ ବିସ୍ମୟରେ ଅଭିଭୂତ ହୁଏ ଏବଂ ପରମେଶ୍ୱରଙ୍କ ଅଲୌକିକ ସୌନ୍ଦର୍ଯ୍ୟ ଜ୍ଞାନ ଉପଲବ୍ଧି କରି ତାଙ୍କଠାରେ କୃତଜ୍ଞତା ପ୍ରକାଶ କରି ତାଙ୍କର ପ୍ରଶଂସା ଗାନ ନ କରି ରହିପାରେନା ।

୧୪ । ସଦ୍ୟ ମାଂସ=ତଟକା ମାଛ ।

ଅନୁଗ୍ରହ ଅନୁସନ୍ଧାନ କର=ସମୁଦ୍ରରେ ଭ୍ରମଣ କରି ବାଣିଜ୍ୟ ଦ୍ୱାରା ନିଜର ପ୍ରଚୁର ଖାଦ୍ୟ ଓ ଧନ ସଂଗ୍ରହ କର ।

୧୫ । ଟୀକାକାର ମାନଙ୍କ ମତରେ, ପରମେଶ୍ୱର ପ୍ରଥମେ ଯେତେବେଳେ ପୃଥିବୀକୁ ସୃଷ୍ଟି କଲେ ତାହା ଟଳମଳ ହେବାକୁ ଲାଗିଲା । ସେଥିପାଇଁ ତାହାକୁ ସ୍ଥିର ଭାବରେ ରଖିବା ପାଇଁ ପରମେଶ୍ୱର ତାହାର ପୃଷ୍ଠ ଦେଶରେ ବୃହତ୍ ପର୍ବତମାନ ସ୍ଥାପନ କରିଥିଲେ ।

୧୬ । ଚିହ୍ନମାନ—ପ୍ରାକୃତିକ ଚିହ୍ନମାନ ଯଥା ନଦୀ, ପର୍ବତ ଇତ୍ୟାଦି ।

୧୭—୨୧ । ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ଏବଂ ତାଙ୍କର ଅପାର କରୁଣା ଓ ତାଙ୍କର ସର୍ବବ୍ୟାପୀ ଅନ୍ତର୍ଯ୍ୟାମୀ ଶକ୍ତି ବିଷୟରେ ଚିନ୍ତା କଲେ ଏହା ସ୍ପଷ୍ଟ ପ୍ରମାଣିତ ହେବ ଯେ ଯେଉଁମାନେ ତାଙ୍କସହିତ ଅଂଶୀ ଉପାସ୍ୟ ସ୍ଥିର କରୁଅଛନ୍ତି ସେମାନେ ନିର୍ବୁଦ୍ଧିତାର କାର୍ଯ୍ୟ କରୁଅଛନ୍ତି, କାରଣ ଅଂଶୀ ଉପାସ୍ୟମାନଙ୍କର କୌଣସି ବସ୍ତୁ

ଏବଂ ପରମେଶ୍ୱରଙ୍କ ବ୍ୟତୀତ ସେମାନେ ଅନ୍ୟ ଯେଉଁମାନଙ୍କୁ ଆହ୍ୱାନ କରନ୍ତି ସେମାନେ କିଛି ସୃଷ୍ଟି କରି ପାରନ୍ତି ନାହିଁ ଏବଂ ସେମାନେ ନିଜେ ସୃଷ୍ଟ ହୋଇଅଛନ୍ତି ।୨୦।

ସେମାନେ ମୃତ, ଜୀବିତ ନୁହନ୍ତି; ଏବଂ ସେମାନେ ଜାଣନ୍ତି ନାହିଁ ଯେ କେବେ ସେମାନେ ପୁନରୁତ୍‌ଥିତ ହେବେ ।୨୧।

## ୩ୟ ବିଭାଗ

ତୁମ୍ଭମାନଙ୍କର ପରମେଶ୍ୱର ଏକମାତ୍ର ଉପାସ୍ୟ; ଯୁତରାଂ ଯେଉଁମାନେ ପରଲୋକ ସମ୍ବନ୍ଧରେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କର ହୃଦୟ ସତ୍ୟକୁ ଅଗ୍ରାହ୍ୟ କରେ ଏବଂ ସେହିମାନେହିଁ ଅହଂକାରୀ ।୨୨।

ଏଥିରେ ସନ୍ଦେହ ନାହିଁ ଯେ ସେମାନେ ଯାହା ଗୋପନ କରନ୍ତି ଏବଂ ସେମାନେ ଯାହା ପ୍ରକାଶ କରନ୍ତି, ପରମେଶ୍ୱର ତାହା ଅବଗତ ଅଛନ୍ତି; ନିଶ୍ଚୟ ପରମେଶ୍ୱର ଅହଂକାରୀମାନଙ୍କୁ ଭଲ ପାଅନ୍ତି ନାହିଁ ।୨୩।

ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ, "ତୁମ୍ଭମାନଙ୍କ ପାଳନକର୍ତ୍ତା (ମୋହମ୍ମଦଙ୍କ ପ୍ରତି) କଅଣ ଅବତୀର୍ଣ୍ଣ କରିଅଛନ୍ତି" ? ସେମାନେ କହନ୍ତି, "ପୂର୍ବବର୍ତ୍ତୀମାନଙ୍କର ଗଳ୍ପସମୂହ;" ।୨୪।

ନିଶ୍ଚୟ ପୁନରୁତ୍‌ଥାନ ଦିବସରେ ସେମାନେ ସେମାନଙ୍କର ପୂର୍ଣ୍ଣ ବୋଝ ଏବଂ ସେମାନେ ଅଜ୍ଞତା ହେତୁ ଯେଉଁମାନଙ୍କୁ ବିପଥଗାମୀ କରିଅଛନ୍ତି ସେମାନଙ୍କର ବୋଝର କେତେକ ଅଂଶ ମଧ୍ୟ ବହନ କରିବେ; ସାବଧାନ ! ସେମାନେ ଯାହା ବହନ କରୁଅଛନ୍ତି ତାହା ନିକୃଷ୍ଟତର ।୨୫।

## ୪ର୍ଥ ବିଭାଗ

ନିଶ୍ଚୟ ସେମାନଙ୍କର ପୂର୍ବେ ଯେଉଁମାନେ ଚକ୍ରାନ୍ତ କରିଥିଲେ ପରମେଶ୍ୱର ସେମାନଙ୍କର ପକ୍କା କୋଠାକୁ ସମୂଳେ ନଷ୍ଟ କରି ଦେଇଥିଲେ, ତାପରେ କୋଠା ଉପରୁ ସେମାନଙ୍କ ଉପରେ ଛାତ ପଡ଼ିଯାଇଥିଲା ଏବଂ ସେମାନଙ୍କ ପ୍ରତି ଯେଉଁ ସ୍ଥାନରୁ ଶାସ୍ତି ଉପସ୍ଥିତ ହୋଇଥିଲା ତାହା ସେମାନେ ଜାଣି ପାରି ନଥିଲେ ।୨୬।

ତାପରେ ପୁନରୁତ୍‌ଥାନ ଦିବସରେ ମଧ୍ୟ ସେ ସେମାନଙ୍କୁ ଲାଂଛିତ କରିବେ ଏବଂ କହିବେ, "ଆମ୍ଭର ଅଂଶୀମାନେ କାହାନ୍ତି ଯେଉଁମାନଙ୍କ ସମ୍ବନ୍ଧରେ ତୁମ୍ଭେମାନେ ତର୍କ କରୁଥିଲ" ? ଯେଉଁମାନଙ୍କୁ ଜ୍ଞାନ ଦିଆଯାଇ ଥିଲା ସେମାନେ କହିବେ, "ନିଶ୍ଚୟ ଆଜି ଅବିଶ୍ୱାସକାରୀମାନଙ୍କ ପ୍ରତି ଲାଞ୍ଛନା ଓ ଅମଙ୍ଗଳ ।୨୭।

---

ସୃଷ୍ଟି କରିବାର ଶକ୍ତିନାହିଁ କିମ୍ବା ମନୁଷ୍ୟମାନଙ୍କର କୌଣସି ଉପକାର କିମ୍ବା ଅପକାର କରିବାର ଶକ୍ତି ନାହିଁ କିମ୍ବା ସେମାନେ ସର୍ବଜ୍ଞ ନୁହନ୍ତି ।

୨୫ । ବୋଝ—ଦାୟିତ୍ୱ ।

୨୬—୨୯ । ଏହି ଶ୍ଳୋକମାନଙ୍କରେ ପୂର୍ବବର୍ତ୍ତୀ ଅବିଶ୍ୱାସକାରୀମାନଙ୍କ ଇହଲୋକ ଓ ପରଲୋକର ଶାସ୍ତିର ବିଷୟ ବର୍ଣ୍ଣିତ ହୋଇଅଛି ।

୨୭ । ଆମ୍ଭର ଅଂଶୀମାନେ=ପରମେଶ୍ୱରଙ୍କ ଅଂଶୀମାନେ ।

"ନିଜ ଜୀବନ ପ୍ରତି ଅତ୍ୟାଚାର କରୁଥିବା ଅବସ୍ଥାରେ ସ୍ୱର୍ଗ ଦୂତମାନେ ଯେଉଁମାନଙ୍କର ପ୍ରାଣହରଣ କରିଥିଲେ;" ପରେ ସେମାନେ ମଧ୍ୟ ନତଶିର ହୋଇ (କହିବେ) "ଆମ୍ଭେମାନେ ତ (ଜାଣିଶୁଣି) କୌଣସି ଅନ୍ୟାୟ କରିନାହୁଁ" ସ୍ୱର୍ଗ ଦୂତମାନେ କହିବେ "ହଁ ତୁମ୍ଭେମାନେ ଯାହା କରୁଥିଲ ନିଶ୍ଚୟ ପରମେଶ୍ୱର ତାହା ଜାଣନ୍ତି ।" ।୨୮।

"ଅତଏବ ତୁମ୍ଭେମାନେ ନରକର ଦ୍ୱାରମାନଙ୍କରେ ପ୍ରବେଶ କରି ତନ୍ମଧ୍ୟରେ ସର୍ବଦା ବାସକର; ବାସ୍ତବରେ ଅହଙ୍କାରୀମାନଙ୍କର ବାସସ୍ଥାନ ଅତି ନିକୃଷ୍ଟ ସ୍ଥାନ" ।୨୯।

ଏବଂ ଯେତେବେଳେ ସଂଯମୀମାନଙ୍କୁ କୁହାଯାଏ, "ତୁମ୍ଭମାନଙ୍କର ପାଳନକର୍ତ୍ତା କଅଣ ଅବତୀର୍ଣ୍ଣ କରି ଅଛନ୍ତି ?" ସେମାନେ କହନ୍ତି "ମଙ୍ଗଳ !" ଯେଉଁମାନେ ସତ୍‌କାର୍ଯ୍ୟ କରନ୍ତି ସେହିମାନଙ୍କ ପାଇଁ ଇହ-ଲୋକରେ ମଙ୍ଗଳ; ନିଶ୍ଚୟ ସେମାନଙ୍କର ପରଲୋକର ଘର ଉତ୍କୃଷ୍ଟତର; ଏବଂ ନିଶ୍ଚୟ ସଂଯମୀମାନଙ୍କର ଘର ସୁଖମୟ ।୩୦।

ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ, ସେଥିରେ ସେମାନେ ପ୍ରବେଶ କରିବେ, ତାହାର ନିମ୍ନରେ ନଦୀ ସବୁ ପ୍ରବାହିତ ସେମାନେ ଯାହା ଇଚ୍ଛା କରିବେ ସେଥିରେ ସେମାନଙ୍କ ପାଇଁ ତାହାହିଁ ରହିଅଛି, ଏହିପରି ପରମେଶ୍ୱର ସଂଯମୀମାନଙ୍କୁ ପୁରସ୍କାର ଦେଇ ଥାଆନ୍ତି ।୩୧।

ବିଶୁଦ୍ଧ ଅବସ୍ଥାରେ ସ୍ୱର୍ଗ ଦୂତମାନେ ଯେଉଁମାନଙ୍କର ପ୍ରାଣହରଣ କରନ୍ତି ଏବଂ କହନ୍ତି, "ତୁମ୍ଭ-ମାନଙ୍କ ଉପରେ ଶାନ୍ତି ହେଉ । ତୁମ୍ଭେମାନେ ଯାହା କରିଥିଲ ସେଥିପାଇଁ ସ୍ୱର୍ଗୋଦ୍ୟାନରେ ପ୍ରବେଶ କର" ।୩୨।

ଅବିଶ୍ୱାସକାରୀମାନେ ଏହାଛଡ଼ା ଅପେକ୍ଷା କରୁ ନାହାନ୍ତି ଯେ ସେମାନଙ୍କ ନିକଟ ସ୍ୱର୍ଗ ଦୂତମାନେ (ପ୍ରାଣ ହରଣ ପାଇଁ) ଆସିବେ ଅଥବା ପରମେଶ୍ୱରଙ୍କ (ଦଣ୍ଡ) ଆଦେଶ ଉପସ୍ଥାପିତ ହେବ; ସେମାନଙ୍କର ପୂର୍ବବର୍ତ୍ତୀମାନେ ମଧ୍ୟ ଏହିପରି କରିଥିଲେ; ଏବଂ ପରମେଶ୍ୱର ସେମାନଙ୍କ ପ୍ରତି ଅତ୍ୟାଚାର କରି ନାହାନ୍ତି, ବରଂ ସେମାନେ ନିଜ ଜୀବନ ପ୍ରତି ଅତ୍ୟାଚାର କରିଥିଲେ ।୩୩।

ସେଥିପାଇଁ ସେମାନଙ୍କ ପାପକାର୍ଯ୍ୟର ପରିଣାମ ସ୍ୱରୂପ ସେମାନଙ୍କ ଉପରେ ଅମଙ୍ଗଳ ଉପସ୍ଥିତ ହୋଇଥିଲା ଏବଂ ସେମାନେ ଯେଉଁ ଶାସ୍ତି ବିଷୟରେ ପରିହାସ କରୁଥିଲେ ତାହାହିଁ ସେମାନଙ୍କୁ ଘେରି ପକାଇ ଥିଲା ।୩୪।

---

୨୮ । ନିଜ ଜୀବନରେ ଅତ୍ୟାଚାର କରୁଥିବା ଅବସ୍ଥାରେ = ଅବିଶ୍ୱାସକାରୀ ହୋଇ ରହିଥିବା ଅବସ୍ଥାରେ । 'ସେମାନେ = ସେହି ଅବିଶ୍ୱାସକାରୀମାନେ ।

୩୦—୩୨ । ଏହି ଶ୍ଳୋକମାନଙ୍କରେ ବିଶ୍ୱାସକାରୀମାନଙ୍କର ଇହଲୋକ ଓ ପରଲୋକର ମଙ୍ଗଳ ବିଷୟ ବର୍ଣ୍ଣିତ ହୋଇଅଛି ।

୩୨ । ବିଶୁଦ୍ଧ ଅବସ୍ଥାରେ = ବିଶ୍ୱାସକାରୀ ହୋଇ ରହିଥିବା ଅବସ୍ଥାରେ । ବିଶ୍ୱାସକାରୀମାନଙ୍କ ମନ ଓ ହୃଦୟ ସର୍ବଦା ବିଶୁଦ୍ଧ ଥାଏ;

୩୩।୩୪ । ଏହି ଶ୍ଳୋକମାନଙ୍କରେ ପୂର୍ବବର୍ତ୍ତୀ ଅବିଶ୍ୱାସକାରୀମାନଙ୍କର ଶୋଚନୀୟ ପରିଣାମ ବିଷୟ ସୂଚାଇଦେଇ ମକ୍କାବାସୀ ଅବିଶ୍ୱାସକାରୀମାନଙ୍କୁ ସେମାନଙ୍କ ଶୋଚନୀୟ ପରିଣାମ ବିଷୟରେ ସାବଧାନ କରାଇଦିଆଯାଇଅଛି ।

## ୫ମ ବିଭାଗ

ଏବଂ ଅଂଶୀ ସ୍ଥାପନକାରୀମାନେ କହନ୍ତି, "ଯଦି ପରମେଶ୍ୱର ଇଚ୍ଛା କରିଥାନ୍ତେ ତେବେ ଅମ୍ଭେମାନେ ତାଙ୍କ ପରିବର୍ତ୍ତିରେ ଅନ୍ୟ କୌଣସି ବିଷୟର ଉପାସନା କରି ନ ଥାନ୍ତୁ, ଅମ୍ଭେମାନେ ଅଥବା ଅମ୍ଭମାନଙ୍କର ପୂର୍ବପୁରୁଷମାନେ ଏବଂ ତାଙ୍କ (ଆଦେଶ) ବ୍ୟତୀତ କୌଣସି ବସ୍ତୁକୁ ଅବୈଧ କରି ନ ଥାନ୍ତୁ"; ସେମାନଙ୍କର ପୂର୍ବବର୍ତ୍ତୀମାନେ ମଧ୍ୟ ଏହିପରି କହିଥିଲେ; ସୁତରାଂ ପ୍ରକାଶ୍ୟ ପ୍ରଚାର ବ୍ୟତୀତ ପ୍ରେରିତ ପୁରୁଷମାନଙ୍କ ଉପରେ ଅଉ କଅଣ (ଦାୟିତ୍ୱ) ଅଛି ? ୩୫।

ଏବଂ ନିଶ୍ଚୟ ଅମ୍ଭେ ପ୍ରତ୍ୟେକ ସଂପ୍ରଦାୟ ମଧ୍ୟରେ ପ୍ରେରିତ ପୁରୁଷ ଆବିର୍ଭାବ କରିଥିଲୁ ଯେ "ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର ଏବଂ ସଏତାନକୁ ପରିତ୍ୟାଗ କର;" ତା ପରେ ପରମେଶ୍ୱର ସେମାନଙ୍କ ମଧ୍ୟରୁ କେତେକଙ୍କୁ ପଥ ପ୍ରଦର୍ଶନ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକେ ବିପଥଗାମୀ ହୋଇଥିଲେ; ସୁତରାଂ ପୃଥିବୀରେ ପରିଭ୍ରମଣ କର ଏବଂ ଦେଖ ଯେ ମିଥ୍ୟାରୋପକାରୀମାନଙ୍କର ପରିଣାମ କିପରି (ଶୋଚନୀୟ) ହୋଇଅଛି ।୩୬।

ଯଦି ତୁମ୍ଭେ ସେମାନଙ୍କ ପାଇଁ ସୁପଥ କାମନା କର, ତେବେ ଯେ ପଥଭ୍ରାନ୍ତ ନିଶ୍ଚୟ ପରମେଶ୍ୱର ତାହାକୁ ପଥ ପ୍ରଦର୍ଶନ କରନ୍ତି ନାହିଁ ଏବଂ ସେମାନଙ୍କ ପାଇଁ କେହି ସାହାଯ୍ୟକାରୀ ନାହିଁ ।୩୭।

ଏବଂ ସେମାନେ ପରମେଶ୍ୱରଙ୍କ ନାମରେ ସୁଦୃଢ ଶପଥ କରି କହନ୍ତି ଯେ ତାହାକୁ ପରମେଶ୍ୱର ପୁଣି ଜୀବିତ କରିବେ ନାହିଁ; ହଁ, (ନିଶ୍ଚୟ କରିବେ) ଏହା ତାଙ୍କର ସତ୍ୟ ପ୍ରତିଶ୍ରୁତି, କିନ୍ତୁ ଅଧିକାଂଶ ଲୋକେ ଏହା ଜାଣନ୍ତି ନାହିଁ ।୩୮।

ସେମାନେ ଯେଉଁ ବିଷୟରେ ବିରୋଧ କରୁ ଅଛନ୍ତି ସେ ସେମାନଙ୍କ ପାଇଁ ତାହା ପ୍ରକାଶ କରିବେ ଏବଂ ଅବିଶ୍ୱାସକାରୀମାନେ ଜାଣି ପାରିବେ ଯେ ସେମାନେ ନିଜେ ମିଥ୍ୟାବାଦୀ ଥିଲେ ।୩୯।

ଯେତେବେଳେ ଅମ୍ଭେ କୌଣସି ବିଷୟ କରିବାର ଇଚ୍ଛା କରୁଁ ସେତେବେଳେ କେବଳ ମାତ୍ର ଅମ୍ଭେ ତାହାକୁ କହୁଁ, "ହୋଇ ଯାଅ" ଏବଂ ତାହା ହୋଇଯାଏ ।୪୦।

## ୬ଷ୍ଠ ବିଭାଗ

ଏବଂ ଯେଉଁମାନେ ଉତ୍ପୀଡିତ ହେବା ପରେ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ଦେଶତ୍ୟାଗ କରିଅଛନ୍ତି, ନିଶ୍ଚୟ ଅମ୍ଭେ ସେମାନଙ୍କୁ ପୃଥିବୀରେ ଉତ୍ତମ ସ୍ଥାନ ଦାନ କରିବୁଁ; ଏବଂ ସେମାନଙ୍କର ପରଲୋକର ପୁରସ୍କାର ଅବଶ୍ୟ ବୃହତ୍ତର; ଯଦ୍ୟପି ସେମାନେ ଏହା ଜାଣି ପାରନ୍ତେ ।୪୧।

---

୩୫।୩୬ । ଅବିଶ୍ୱାସକାରୀମାନେ ସେମାନଙ୍କ କାର୍ଯ୍ୟର ଦାୟିତ୍ୱ ପରମେଶ୍ୱର ଏବଂ ପ୍ରେରିତ ପୁରୁଷଙ୍କ ଉପରେ ସ୍ଥାପନ କରିଥାନ୍ତି । ତାହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି ଯେ ସେମାନଙ୍କ କାର୍ଯ୍ୟର ଦାୟିତ୍ୱ ସେମାନଙ୍କ ନିଜ ଉପରେ । ଦେଖ ଟୀକା ୬ଷ୍ଠ ଅଧ୍ୟାୟ ୭ଶ୍ଳୋକ ।

୩୮।୩୯ । ଯେଉଁ ଅବିଶ୍ୱାସକାରୀମାନେ ପରଲୋକର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ ଏବଂ ପାର୍ଥିବ ଜୀବନକୁ ସେମାନଙ୍କ ଚରମ ଲକ୍ଷ୍ୟ ମନେକରନ୍ତି, ସେମାନଙ୍କୁ ପରମେଶ୍ୱର କହୁଅଛନ୍ତି ଯେ ତାଙ୍କର ଅଙ୍ଗୀକାର ସତ୍ୟ ଏବଂ ସେମାନଙ୍କ ମୃତ୍ୟୁ ପରେ ସେମାନେ ନିଶ୍ଚୟ ପରଲୋକର ଅସ୍ତିତ୍ୱ ଜାଣିପାରିବେ ।

ସେମାନେ ଧୈର୍ଯ୍ୟଶୀଳ ଏବଂ ନିଜ ପାଳନ କର୍ତ୍ତାଙ୍କ ଉପରେ ନିର୍ଭର କରନ୍ତି ।୪୨।

ଏବଂ ତୁମ୍ଭ ପୂର୍ବେ ମଧ୍ୟ ଆମ୍ଭେ ମନୁଷ୍ୟ ବ୍ୟତୀତ ଅନ୍ୟ କାହାକୁ ପ୍ରେରିତପୁରୁଷ ରୂପେ ପ୍ରେରଣ କରିନାହୁଁ, ଯେଉଁମାନଙ୍କ ପ୍ରତି ଆମ୍ଭେ ପ୍ରତ୍ୟାଦେଶ କରିଥିଲୁ; ତେବେ ଗ୍ରନ୍ଥ ପାଠକାରୀମାନଙ୍କୁ ପ୍ରଶ୍ନକର (ଯଦି ତୁମ୍ଭେମାନେ ଏ ବିଷୟ ନ ଜାଣ); ।୪୩।

ଆମ୍ଭେ ସେମାନଙ୍କୁ ନିଦର୍ଶନମାନ ଏବଂ ଧର୍ମ ପୁସ୍ତକ ସହିତ ପଠାଇଥିଲୁଁ; ଏବଂ ଆମ୍ଭେ ତୁମ୍ଭ ପ୍ରତି ସ୍ମାରକ ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁଁ, ଯେପରି ତୁମ୍ଭେ ମାନବ ମଣ୍ଡଳୀ ପ୍ରତି ତାହା ପ୍ରଗ୍ଟ କର ଯାହା ସେମାନଙ୍କ ପାଇଁ ଅବତୀର୍ଣ୍ଣ ହୋଇଅଛି ଏବଂ ଯେପରି ସେମାନେ ଏ ବିଷୟରେ ଚିନ୍ତା କରିବେ ।୪୪।

ତେବେ କଅଣ ହୀନ ଚକ୍ରାନ୍ତକାରୀମାନେ ଭୟ କରୁନାହାନ୍ତି ଯେ ପରମେଶ୍ୱର ସେମାନଙ୍କୁ ଭୂଗର୍ଭରେ ଲୀନ କରି ଦେବେ ଅଥବା ଏପରି ସ୍ଥାନରୁ ସେମାନଙ୍କ ପ୍ରତି ଶାସ୍ତି ଉପସ୍ଥିତ କରାଇବେ ଯେ ସେମାନେ ତାହା ଜାଣି ମଧ୍ୟ ପାରିବେ ନାହିଁ ? ୪୫।

ଅଥବା ସେ ସେମାନଙ୍କୁ ଯିବା ଆସିବା ସମୟରେ ଧରିବେ ଯେ ସେମାନେ (ସେଥିର) ପ୍ରତି-ରୋଧ କରି ପାରିବେ ନାହିଁ ? ୪୬।

ଅଥବା ସେ ସେମାନଙ୍କୁ ଧୀରେ ଧୀରେ କ୍ଷତଗ୍ରସ୍ତ କରି ଶାସ୍ତିଦେବେ ? ଯେହେତୁ ତୁମ୍ଭମାନଙ୍କ ପାଳନକର୍ତ୍ତା ନିଶ୍ଚୟ କ୍ଷମାଶୀଳ କରୁଣାମୟ । ୪୭।

ତେବେ କଅଣ ସେମାନେ ପରମେଶ୍ୱରଙ୍କ ସୃଷ୍ଟ ପ୍ରତ୍ୟେକ (ଅଚେତନ) ପଦାର୍ଥ ପ୍ରତି ଲକ୍ଷ୍ୟ କରୁନାହାନ୍ତି ଯେ ସେମାନଙ୍କର ଛାୟା ସବୁ କେବେ ଦକ୍ଷିଣ ଅଡ଼କୁ କେବେ ବାମ ଅଡ଼କୁ ଅବନତ ହୋଇ ବିନୀତ ଭାବରେ ପରମେଶ୍ୱରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରୁଅଛନ୍ତି ?୪୮।

ଏବଂ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ମଧ୍ୟରେ ଥିବା ଜୀବଜନ୍ତୁମାନେ ଏବଂ ସ୍ୱର୍ଗଦୂତମାନେ ମଧ୍ୟ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରୁଅଛନ୍ତି ଏବଂ ସେମାନେ ଅହଙ୍କାରୀ ନୁହନ୍ତି ।୪୯

---

୪୩ । ପୃଥିବୀର ସୃଷ୍ଟିଠାରୁ ଆରମ୍ଭ କରି ମହାପୁରୁଷ ମୋହମ୍ମଦଙ୍କ ପର୍ଯ୍ୟନ୍ତ ଯେତେ ଧର୍ମ ପ୍ରବର୍ତ୍ତକ ପ୍ରେରିତପୁରୁଷ ଆସିଥିଲେ ସେମାନେ ସମସ୍ତେହିଁ ମନୁଷ୍ୟ ଥିଲେ; ସ୍ୱର୍ଗଦୂତ ନ ଥିଲେ । ୭ମ ଅଧ୍ୟାୟ ୬୩ ଶ୍ଳୋକ, ୧୭ଅଧ୍ୟାୟ ୯୫ ଶ୍ଳୋକ ଦ୍ରଷ୍ଟବ୍ୟ ।

୪୧।୪୨ । ସେମାନେ—ଅର୍ଥାତ୍ ଦେଶତ୍ୟାଗୀମାନେ । ସେମାନେ ଏବିଷୟ ଜାଣିପାରିଲେ ଧୈର୍ଯ୍ୟ ଅବଲମ୍ବନ କରି ସାନ୍ତ୍ୱନା ଲାଭ କରିବେ ।

୪୪ । ସ୍ମାରକଗ୍ରନ୍ଥ—ଯେଉଁଗ୍ରନ୍ଥ ପରମେଶ୍ୱରଙ୍କ ସମ୍ବନ୍ଧରେ ମନେ ପକାଇ ଦିଏ; ଅର୍ଥାତ୍ ପବିତ୍ର କୋରାନ । ଏହା ସମଗ୍ର ମାନବମଣ୍ଡଳୀର ଉପଦେଶ ପାଇଁ ଅବତୀର୍ଣ୍ଣ ହୋଇଅଛି; କୌଣସି ବିଶିଷ୍ଟ ସମ୍ପ୍ରଦାୟ ପାଇଁ ନୁହେଁ ।

୪୫।୪୭ । ମକ୍କାବାସୀ ବିଧର୍ମୀମାନଙ୍କର ଇହଲୋକର ଶାସ୍ତି ବିଷୟ ଏହି ଶ୍ଳୋକମାନଙ୍କରେ ବର୍ଣ୍ଣିତ ହୋଇଅଛି ।

୪୭ । କରୁଣାମୟ=ସେ ଶାସ୍ତିରେ ବିଳମ୍ବକରି ଅବିଶ୍ୱାସକାରୀମାନଙ୍କୁ ଅବକାଶ ଦେଇଥାନ୍ତି । ସେମାନେ ବିଶ୍ୱାସ ସ୍ଥାପନ କଲେ ପରମେଶ୍ୱର ସେମାନଙ୍କ ପୂର୍ବ ପାପ ମାନ କ୍ଷମା କରନ୍ତି ।

ଏବଂ ସେମାନେ ସେମାନଙ୍କର ମହାମହିମ ପାଳନକର୍ତ୍ତାଙ୍କୁ ଭୟ ଭକ୍ତି କରନ୍ତି ଏବଂ ଯାହା ଆଦେଶ ହୁଅନ୍ତି ତାହାକରନ୍ତି ।୫୦।

## ୭ମ ବିଭାଗ

ଏବଂ ପରମେଶ୍ୱର କହି ଅଛନ୍ତି, "ତୁମ୍ଭେମାନେ ଦୁଇ ଉପାସ୍ୟ ଗ୍ରହଣ କରନା; ସେହି ଏକମାତ୍ର ଉପାସ୍ୟ; ଅତଏବ ଆମ୍ଭଙ୍କୁହିଁ ଭୟକର" ।୫୧।

ଏବଂ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ମଧ୍ୟରେ ଯାହା କିଛି ଅଛି ତାହା ତାଙ୍କର ଏବଂ ସର୍ବଦାବେଳେ ତାଙ୍କର ଆଜ୍ଞା ପାଳନ କର୍ତ୍ତବ୍ୟ ଅଟେ; ତେବେ କଅଣ ତୁମ୍ଭେମାନେ ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟଙ୍କୁ ଭୟ କରୁଅଛ ? ୫୨।

ଏବଂ ତୁମ୍ଭମାନଙ୍କ ନିକଟରେ ଯାହା କିଛି ମଙ୍ଗଳମୟ ପଦାର୍ଥ ଅଛି ବାସ୍ତବରେ ତାହା ପରମେଶ୍ୱରଙ୍କ ଠାରୁ ପ୍ରାପ୍ତ; ତା ପରେ ଯେତେବେଳେ ତୁମ୍ଭମାନଙ୍କୁ ଦୁଃଖ ସ୍ପର୍ଶ କରେ ସେତେବେଳେ ତାଙ୍କର ଉଦ୍ଦେଶ୍ୟରେ ତୁମ୍ଭେମାନେ କାନ୍ଦ ।୫୩।

ତା ପରେ ଯେତେବେଳେ ସେ ତୁମ୍ଭମାନଙ୍କଠାରୁ ଦୁଃଖ ଦୂର କରି ଦିଅନ୍ତି, ସେତେବେଳେ ତୁମ୍ଭମାନଙ୍କ ମଧ୍ୟରୁ ଏକଦଳ ସେମାନଙ୍କ ପାଳନକର୍ତ୍ତାଙ୍କ ସହିତ ଅଂଶୀ ସ୍ଥାପନ କରନ୍ତି ।୫୪।

ଏତଦ୍ଦ୍ୱାରା ଆମ୍ଭେ ସେମାନଙ୍କୁ ଯାହା ଦେଇ ଅଛୁଁ ତାହା ସେମାନେ ଅସ୍ୱୀକାର କରି ଥାଆନ୍ତି; ଅତଏବ ତୁମ୍ଭେମାନେ କ୍ଷଣସ୍ଥାୟୀ ସୁଖ ଉପଭୋଗ କର, ପରେ ଶୀଘ୍ର ତୁମ୍ଭମାନଙ୍କ ଭ୍ରମ ବୁଝି ପାରିବ ।୫୫।

ଆମ୍ଭେ ସେମାନଙ୍କୁ ଯାହା ଦେଇଅଛୁଁ ତାହାର ଏକଭାଗ ସେମାନେ ସେହିମାନଙ୍କପାଇଁ ନିର୍ଦ୍ଦିଷ୍ଟ କରି ରଖନ୍ତି ଯେଉଁମାନଙ୍କୁ ସେମାନେ ଜାଣନ୍ତି ନାହିଁ; ପରମେଶ୍ୱରଙ୍କ ରାଣ, ତୁମ୍ଭେମାନେ ଯାହା ମିଥ୍ୟା ରଚନା କରୁଅଛ ସେ ବିଷୟରେ ନିଶ୍ଚୟ ତୁମ୍ଭମାନଙ୍କୁ ପ୍ରଶ୍ନ କରାହେବ ।୫୬।

---

୪୮।୪୯ । ଏହି ଶ୍ଳୋକ ପାଠ ଓ ଶ୍ରବଣପରେ ସଙ୍ଗେ ସଙ୍ଗେ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ (ସିଜଦା) କରିବା ବିଧେୟ ।

ଏହି ଶ୍ଳୋକ ଦ୍ୱୟରେ ପରମେଶ୍ୱରଙ୍କ ସୃଷ୍ଟ ପଦାର୍ଥକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଅଛି; ଜଡ଼ ବା ଅଚେତନ ପଦାର୍ଥ; ସାଧାରଣ ଜୀବଜନ୍ତୁ ଏବଂ ସ୍ୱର୍ଗଦୂତ ।

ସେମାନେ ଅହଙ୍କାର କରନ୍ତି=ସ୍ୱର୍ଗଦୂତମାନେ ସାଷ୍ଟାଙ୍ଗ ପ୍ରଣିପାତ କରିଥାଆନ୍ତି । ପରମେଶ୍ୱରଙ୍କ ଆଗରେ ସେମାନେ ନିଜକୁ ତୁଚ୍ଛ ମନେ କରନ୍ତି ।

୫୧।୫୬ । ଏହି ଶ୍ଳୋକମାନଙ୍କରେ ଏକମାତ୍ର ଅଦ୍ୱିତୀୟ ପରମେଶ୍ୱରଙ୍କୁ ଉପାସନା କରିବା ପାଇଁ ଆଦେଶ ଦିଆଯାଇ-ଅଛି—ଏବଂ ପରମେଶ୍ୱରଙ୍କ ସଙ୍ଗେ ଅଂଶୀ ସ୍ଥାପନ କରିବା ପାଇଁ ନିଷେଧ କରାଯାଇଅଛି । ଯେଉଁମାନେ ଏକମାତ୍ର ଅଦ୍ୱିତୀୟ ପରମେଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସକରନ୍ତି ସେମାନଙ୍କ ପକ୍ଷରେ ତାଙ୍କୁ ପରିତ୍ୟାଗ କରି ପାର୍ଥିବମଙ୍ଗଳ ଆଶାରେ ଅନ୍ୟ ଅଂଶୀ ଉପାସ୍ୟ ଗ୍ରହଣ କରିବା ଅକୃତଜ୍ଞତାର ଚିହ୍ନ ଅଟେ । ଦୁଇ ଉପାସ୍ୟ—ପାରସି ବା ଫରୁସୀ ଧର୍ମାବଲମ୍ବୀମାନେ ଦୁଇ ଉପାସ୍ୟରେ ବିଶ୍ୱାସ କରନ୍ତି । ସେମାନଙ୍କ ମତରେ ମଙ୍ଗଳର ସୃଷ୍ଟିକର୍ତ୍ତା 'ଇଜଦ' ଏବଂ ଅମଙ୍ଗଳର ସୃଷ୍ଟିକର୍ତ୍ତା 'ଅହରମନ୍' । ଏହି ଶ୍ଳୋକମାନଙ୍କରେ ଦୁଇ ଉପାସ୍ୟରେ ବିଶ୍ୱାସ ନ କରି ଏକ ଅଦ୍ୱିତୀୟ ପରମେଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ପାଇଁ ଆଦେଶ କରାଯାଇଅଛି ।

୫୬ । ଯେଉଁମାନଙ୍କୁ ସେମାନେ ଜାଣନ୍ତି ନାହିଁ=କଳ୍ପିତଦେବ-ଦେବୀ ଏବଂ ଉପାସ୍ୟମାନଙ୍କୁ । ସେମାନେ ଅଜ୍ଞତା ବଶତଃ ମନେ କରନ୍ତି ଯେ ପରମେଶ୍ୱରଙ୍କ ପରି ଏମାନଙ୍କର ମଧ୍ୟ ସବୁ ଶକ୍ତି ଅଛି ଏବଂ ଫଳ, ଶସ୍ୟ ଓ

ଏବଂ ସେମାନେ ପରମେଶ୍ୱରଙ୍କ ପାଇଁ କନ୍ୟାମାନଙ୍କୁ ସ୍ଥିର କରିଥାନ୍ତି; ସେ ପରମ ପବିତ୍ର, ଏବଂ ସେମାନେ ନିଜ ପାଇଁ (ପୁତ୍ର) ଇଚ୍ଛା କରନ୍ତି ୫୭।

ଏବଂ ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରିକୁ କନ୍ୟା (ପ୍ରସବର)ସମ୍ବାଦ ଦିଆହୁଏ ସେତେ-ବେଳେ ସେମାନଙ୍କ ମୁଖମଣ୍ଡଳ କଳା ପଡ଼ିଯାଏ ଏବଂ ସେ ଅତ୍ୟନ୍ତ ଦୁଃଖିତ ହୁଏ ।୫୮।

ତାହାକୁ ଯେଉଁ ସମ୍ବାଦ ଦିଆଯାଇଥିଲା ତାହାର ନିକୃଷ୍ଟତା ପାଇଁ ସେ ନିଜ ସମ୍ପ୍ରଦାୟରୁ ଅସ୍ୱ ଗୋପନ କରେ; ଅପମାନ ସହ୍ୟକରି ସେ ତାହାକୁ ରକ୍ଷା କରିବ କିମ୍ବା ମାଟି ମଧ୍ୟରେ (ଜୀବିତ) ପୋତି ପକାଇବ (ଏହା ଚିନ୍ତାକରି) ସାବଧାନ । ସେମାନେ ଯାହା ମୀମାଂସା କରୁଅଛନ୍ତି ତାହା ନିକୃଷ୍ଟତର ।୫୯।

ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ପାଇଁ ନିକୃଷ୍ଟତମ ଉପମା ଏବଂ ଉତ୍କୃଷ୍ଟତମ ଉପମା ପରମେଶ୍ୱରଙ୍କ ପାଇଁ ଅଟେ; ଏବଂ ସେ ମହା ପରାକ୍ରାନ୍ତ ଓ ବିଜ୍ଞାନୀ ।୬୦।

## ୮ମ ବିଭାଗ

ଏବଂ ଯଦି ପରମେଶ୍ୱର ମାନବ ମଣ୍ଡଳୀକୁ ସେମାନଙ୍କର ଅତ୍ୟାଚାର ପାଇଁ ଧରନ୍ତେ ତେବେ ସେ ଏହା ଉପରେ ଥିବା କୌଣସି ଜୀବକୁ ଛାଡନ୍ତେ ନାହିଁ; କିନ୍ତୁ ସେ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ସେମାନଙ୍କୁ ଅବସର ଦେଇ ଥାଆନ୍ତି; ତାପରେ ଯେତେବେଳେ ସେମାନଙ୍କର କାଳ ଉପସ୍ଥିତ ହେବ ସେତେବେଳେ ସେମାନେ ଏକ ମୁହୂର୍ତ୍ତ ବିଳମ୍ବ କରିପାରିବେ ନାହିଁ ଅଥବା ଶୀଘ୍ର କରିପାରିବେ ନାହିଁ ।୬୧।

---

ପଶୁ ଅଦିକୁ ସେମାନଙ୍କ ନାମରେ ଉତ୍ସର୍ଗ କରିବା ପାଇଁ ମାନସିକକରି ରଖନ୍ତି । ୬ଷ୍ଠ ଅଧ୍ୟାୟର ୧୩୭—୧୪୦ ଶ୍ଳୋକମାନ ଦେଖ ।

୫୭ । ଅଂଶୀବାଦୀ ଅରବମାନେ ଦୁର୍ଗଦୂତମାନଙ୍କୁ ପରମେଶ୍ୱରଙ୍କ କନ୍ୟା ବୋଲି ବିଶ୍ୱାସ କରୁଥିଲେ, ମାତ୍ର ଏହା ଭ୍ରମାତ୍ମକ ।

୫୮।୫୯ । ଅଥଚ ସେମାନେ ନିଜର କନ୍ୟାମାନଙ୍କୁ ଘୃଣା କରୁଥିଲେ ଏବଂ କନ୍ୟା ଜନ୍ମ ହେବାର ସମ୍ବାଦ ପାଇଲେ ଅତ୍ୟନ୍ତ ଦୁଃଖିତ ଓ ଲଜ୍ଜିତ ହେଉଥିଲେ ଏବଂ ତାକୁ ମାରି ପକାଇ କିମ୍ବା ଜୀବିତ ଅବସ୍ଥାରେ ପୋତି ପକାଇବାର ଚେଷ୍ଟା କରୁଥିଲେ । ଏପରି କରିବା ନିତାନ୍ତ ଅନ୍ୟାୟ ।

୬୦ । ମକ୍କାବାସୀ ଅବିଶ୍ୱାସକାରୀମାନେ ନିଜକୁ ପରମେଶ୍ୱରଙ୍କ ସହିତ ତୁଳନା କରି ପରମେଶ୍ୱରଙ୍କ କନ୍ୟାମାନେ ଅଛନ୍ତି ବୋଲି ବିଶ୍ୱାସ କରୁଥିଲେ, ଅଥଚ ସେମାନେ ନିଜେ କନ୍ୟାମାନଙ୍କୁ ଘୃଣା କରୁଥିଲେ ଏବଂ ସେମାନଙ୍କୁ ମାରି ପକାଉଥିଲେ କିମ୍ବା ଜୀବନ୍ତ ସମାଧି ଦେଉ ଥିଲେ । ମାତ୍ର ପରମେଶ୍ୱରଙ୍କ ସହିତ ଅବିଶ୍ୱାସକାରୀମାନଙ୍କର କୌଣସିମତେ ତୁଳନା ହୋଇ ନ ପାରେ । ଯଦି ଅମ୍ଭେମାନେ ତୁଳନା କରିବାକୁ ଇଚ୍ଛା କରୁଁ ତେବେ ଅବିଶ୍ୱାସୀକାରୀମାନେ ନିକୃଷ୍ଟତମ ଗୁଣ ବିଶିଷ୍ଟ ବିବେଚିତ ହେବେ ଏବଂ ପରମେଶ୍ୱର ଉତ୍କୃଷ୍ଟତମ ଗୁଣ ବିଶିଷ୍ଟ ବିବେଚିତ ହେବେ, କାରଣ ପରମେଶ୍ୱର ଅତି ପବିତ୍ର, ମହା ପରାକ୍ରାନ୍ତ ଓ ବିଜ୍ଞାନୀ ।

୬୧ । ଏହାଉପରେ—ପୃଥିବୀ ଉପରେ

୬୨ । ନିଜେ ଯାହା ଘୃଣା କରନ୍ତି—ଅର୍ଥାତ୍ କନ୍ୟାମାନଙ୍କୁ । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋକ୫୭—୫୯କ । ମଙ୍ଗଳ—ସ୍ୱର୍ଗ ।

ଏବଂ ସେମାନେ ନିଜେ ଯାହା ଘୃଣା କରନ୍ତି ତାହାହିଁ ପରମେଶ୍ୱରଙ୍କ ପାଇଁ ସ୍ଥିର କରିଥାନ୍ତି ଏବଂ ସେମାନଙ୍କର ଜିହ୍ୱା ମିଥ୍ୟା ବର୍ଣ୍ଣନା କରେ ଯେ ସେମାନଙ୍କ ପାଇଁ ମଙ୍ଗଳ ରହିଅଛି; ଏହା ନିଃସନ୍ଦେହ ଯେ ସେମାନଙ୍କ ପାଇଁ ନରକର ଅଗ୍ନି ରହିଅଛି ଏବଂ ସେମାନେ ସର୍ବପ୍ରଥମେ ସେଠାକୁ ପଠାହେବେ ।୬୨।

ପରମେଶ୍ୱରଙ୍କ ଶପଥ, ଆମ୍ଭେ ତୁମ୍ଭର ପୂର୍ବେ ମଧ୍ୟ ମାନବ ସମ୍ପ୍ରଦାୟମାନଙ୍କ ପାଇଁ (ପ୍ରେରିତ ପୁରୁଷମାନଙ୍କୁ) ପଠାଇଥିଲୁଁ, କିନ୍ତୁ ସଇତାନ ସେମାନଙ୍କର କୃତକର୍ମମାନ ସେମାନଙ୍କ ପାଇଁ ସୁଶୋଭିତ କରିଥିଲା, ସୁତରାଂ ଆଜି ମଧ୍ୟ ସେହି ସଇତାନ ସେମାନଙ୍କର ଅଭିଭାବକ ହୋଇଅଛି ଏବଂ ସେମାନଙ୍କ ପାଇଁ କଠିନ ଶାସ୍ତି ରହିଅଛି ।୬୩।

ଏବଂ ଆମ୍ଭେ ଏଥିପାଇଁ ତୁମ୍ଭ ପ୍ରତି ଏହି ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁଁ ଯେ ତୁମ୍ଭେ ସେମାନଙ୍କ ନିକଟରେ ସେହି ବିଷୟ ପ୍ରଚାର କରିବ ଯେଉଁ ବିଷୟରେ ସେମାନେ ମତ ବିରୋଧ କରୁଅଛନ୍ତି ଏବଂ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ଏହା ସୁପଥ ଓ କରୁଣା ।୬୪।

ଏବଂ ପରମେଶ୍ୱର ଆକାଶରୁ ଜଳ ବର୍ଷଣ କରୁଅଛନ୍ତି, ତାପରେ ତଦ୍ଦ୍ୱାରା ପୃଥିବୀକୁ ତାହାର ମୃତ୍ୟୁ ପରେ ଜୀବିତ କରୁଅଛନ୍ତି; ନିଶ୍ଚୟ ଏଥିରେ ଶ୍ରବଣକାରୀ ସମ୍ପ୍ରଦାୟ ପାଇଁ ନିଦର୍ଶନ ରହିଅଛି ।୬୫।

## ୯ମ ବିଭାଗ

ଏବଂ ନିଶ୍ଚୟ ତୁମ୍ଭମାନଙ୍କ ପାଇଁ ପଶୁମାନଙ୍କ ମଧ୍ୟରେ ଶିକ୍ଷାପ୍ରଦ ବିଷୟ ରହିଅଛି; ଆମ୍ଭେ ତୁମ୍ଭମାନଙ୍କୁ ସେମାନଙ୍କ ଉଦର ମଧ୍ୟରେ ଥିବା ଗୋମୟ ଓ ରକ୍ତ ମଧ୍ୟରୁ ବିଶୁଦ୍ଧ ଦୁଗ୍ଧ ପାନ କରାଉଁ, ଯାହା ପାନକାରୀମାନଙ୍କ ପାଇଁ ତୃପ୍ତିକର ।୬୬।

ଏବଂ ଖଜୁରୀ ଓ ଅଙ୍ଗୁର ଫଳ ସବୁରୁ ତୁମ୍ଭେମାନେ ମାଦକ ଦ୍ରବ୍ୟ ଏବଂ ଉତ୍ତମ ଖାଦ୍ୟ ପାଇଥାଅ; ନିଶ୍ଚୟ ଏଥିରେ ଜ୍ଞାନବାନ ସମ୍ପ୍ରଦାୟ ପାଇଁ ନିଦର୍ଶନ ରହିଅଛି ।୬୭।

---

୬୪ । ଗ୍ରନ୍ଥ—କୋରାନ । କୋରାନ ଗ୍ରନ୍ଥ ଏକେଶ୍ୱରବାଦ ପ୍ରଚାର ଦ୍ୱାରା ସମଗ୍ର ମାନବଜାତି ମଧ୍ୟରେ ଏକତା ଓ ସାର୍ବଜନୀନ ଭ୍ରାତୃଭାବ ସ୍ଥାପନ କରି ମାନବ ସମାଜରୁ ବିଦ୍ୱେଷ ଓ ବିରୋଧ ଦୂର କରିବାର ଉପାୟ ଉଦ୍ଭାବନ କରୁଅଛି ।

୬୫ । ଗ୍ରୀଷ୍ମ ଋତୁରେ ପୃଥିବୀ ଉପରେ ଥିବା ଘାସ ଓ ଗଛ ପତ୍ର ସବୁ ଶୁଖି ଯିବାରୁ ପୃଥିବୀ ମଲାପରି ଦେଖାଯାଏ, ମାତ୍ର ବର୍ଷା ଋତୁରେ ବର୍ଷା ହେଲା ପରେ ଘାସପତ୍ର ସବୁ ପୁଣି ସବୁଜବର୍ଣ୍ଣ ଧାରଣ କରିବାରୁ ପୃଥିବୀ ପୁଣି ଜୀଇ ଉଠିଲା ପରି ଜଣାଯାଏ । ଏହିପରି ଭାବରେ ମୃତ ଲୋକେ ପୁନର୍ଜୀବିତ ହେବେ ।

୬୬ । ଯେଉଁ ପଶୁର ଉଦର ମଧ୍ୟରେ ଗୋମୟ ଓ ରକ୍ତ ରହିଅଛି ତାହାର ଉଦର ମଧ୍ୟରୁ ସୁମିଷ୍ଟ ପୁଷ୍ଟିକର ଦୁଗ୍ଧ ବାହାରୁଅଛି । ଏହା ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ।

୬୭ । ଖଜୁରୀ ଏବଂ ଅଙ୍ଗୁରଫଳ ଆମ୍ଭମାନଙ୍କର ଉତ୍ତମ ଖାଦ୍ୟସ୍ୱରୂପ ବ୍ୟବହୃତ ହୁଏ, ଅଥଚ କେତେକଲୋକ ଏଥିରୁ ଅନିଷ୍ଟକର ମାଦକ ଦ୍ରବ୍ୟ ମଧ୍ୟ ପ୍ରସ୍ତୁତ କରନ୍ତି । ଏହା ମଧ୍ୟ ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ । ମନୁଷ୍ୟ ସୃଷ୍ଟ ପଦାର୍ଥକୁ ଇଚ୍ଛା କଲେ ନିଜର ଉପକାର ପାଇଁ ବ୍ୟବହାର କରିପାରେ କିମ୍ବା ନିଜର ଅପକାର ପାଇଁ ବ୍ୟବହାର କରିପାରେ ।

ଏବଂ ତୁମ୍ଭର ପାଳନକର୍ତ୍ତା ମହୁମାଛିଙ୍କୁ ଆଦେଶ କରିଅଛନ୍ତି "ପର୍ବତ ମାନଙ୍କରେ ଓ ବୃକ୍ଷମାନଙ୍କରେ ଏବଂ ଲୋକେ (ଘର ଇତ୍ୟାଦି) ଯାହା ନିର୍ମାଣ କରିଥାନ୍ତି ତାହା ମଧ୍ୟରେ ମଧୁଚକ୍ର ନିର୍ମାଣ କର;— ।୬୮।

ତାପରେ ସର୍ବପ୍ରକାର ଫଳ ମଧ୍ୟରୁ ଭକ୍ଷଣ କର ଏବଂ ତାପରେ ନିଜ ପାଳନକର୍ତ୍ତାଙ୍କର ପଥମାନଙ୍କରେ ସହଜରେ ଭ୍ରମଣ କର"; ତାହାର ଉଦର ମଧ୍ୟରୁ ବିବିଧ ବର୍ଣ୍ଣ ବିଶିଷ୍ଟ ଏକପ୍ରକାର ପାନୀୟ ନିର୍ଗତ ହୁଏ, ସେଥିରେ ମନୁଷ୍ୟମାନଙ୍କ ପାଇଁ ଉପଶାନ୍ତି ରହିଅଛି; ନିଶ୍ଚୟ ଏଥିରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ନିଦର୍ଶନ ରହିଅଛି ।୬୯।

ଏବଂ ପରମେଶ୍ୱର ତୁମ୍ଭମାନଙ୍କୁ ସୃଷ୍ଟି କରିଅଛନ୍ତି, ତାପରେ ସେହି ତୁମ୍ଭମାନଙ୍କୁ ମୃତ୍ୟୁଦାନ କରିବେ; ଏବଂ ତୁମ୍ଭମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ବାର୍ଦ୍ଧକ୍ୟ ହେତୁ ଜରାଜୀର୍ଣ୍ଣ ଅବସ୍ଥାକୁ ଲାଭ କରନ୍ତି ଯେ ସେମାନେ ଜ୍ଞାନଲାଭ ପରେ ମଧ୍ୟ ସବୁ ଭୁଲି ଯାଆନ୍ତି; ନିଶ୍ଚୟ ପରମେଶ୍ୱର ମହାଜ୍ଞାନୀ କ୍ଷମତାଶାଳୀ ।୭୦।

## ୧୦ମ ବିଭାଗ

ଏବଂ ପରମେଶ୍ୱର ଜୀବିକା ସମ୍ବନ୍ଧରେ ତୁମ୍ଭମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ଶ୍ରେଷ୍ଠତ୍ୱ ଦେଇ ଅଛନ୍ତି; ତାପରେ ଯେଉଁମାନଙ୍କୁ ଶ୍ରେଷ୍ଠତ୍ୱ ଦିଆ ଯାଇଅଛି ସେମାନେ ନିଜ ଜୀବିକାକୁ, ସେମାନଙ୍କର ଦକ୍ଷିଣ ହସ୍ତ ଯେଉଁମାନଙ୍କ ଅଧିକାରୀ ସେମାନଙ୍କୁ ଦିଅନ୍ତି ନାହିଁ ଯେପରି ସେ ବିଷୟରେ ସେମାନେ ସମାନ ହୋଇଯିବେ; ତେବେ କଅଣ ସେମାନେ ପରମେଶ୍ୱରଙ୍କ ଅନୁଗ୍ରହକୁ ଅସ୍ୱୀକାର କରୁଅଛନ୍ତି ? ।୭୧।

---

୬୯ । ଉପଶାନ୍ତି—ରୋଗ ଉପଶମକାରୀ ଶକ୍ତି । ମହୁମାଛି ପରମେଶ୍ୱରଙ୍କ ଆଦେଶରେ ବିଭିନ୍ନ ପୁଷ୍ପରୁ ରସ ସଂଗ୍ରହ କରି ମଧୁଚକ୍ର ନିର୍ମାଣକରେ ଏବଂ ସେଥିରୁ ସୁମିଷ୍ଟ ରୋଗ ଉପଶମକାରୀ ମଧୁ ବହିର୍ଗତ ହୁଏ, ଯାହା ମାନବର ସାଧ୍ୟାତୀତ । ଏହା ମଧ୍ୟ ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ।

୭୦ । ମନୁଷ୍ୟର ସୃଷ୍ଟି ମଧ୍ୟ ପରମେଶ୍ୱରଙ୍କ ଏକ ବିଚିତ୍ର ସୃଷ୍ଟି କୌଶଳ । କାରଣ ମନୁଷ୍ୟ ପରମେଶ୍ୱରଙ୍କ ସୃଷ୍ଟ ପଦାର୍ଥ ମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ଜୀବ । ମାତ୍ର ଦୁଃଖର ବିଷୟ ମନୁଷ୍ୟକୁ ଜ୍ଞାନ ଓ ବିବେକ ଦିଆଯାଇଥିଲେ ମଧ, ତାକୁ ନିଜର ଉପକାର ପାଇଁ ବ୍ୟବହାର ନ କରି ଅର୍ଥାତ୍ ପରମେଶ୍ୱରଙ୍କୁ ଲାଭ କରିବାର ଚେଷ୍ଟା ନ କରି ପାର୍ଥିବ ସମ୍ପଦ ଲାଭ ଆଶାରେ ଅଂଶୀ ଉପାସ୍ୟମାନଙ୍କୁ ଉପାସନାକରି ନିଜର ଜୀବନକୁ ବୃଥାରେ କଟାଇଦିଏ ଏବଂ ଇହଲୋକର କ୍ଷଣିକ ସୁଖ ଲୋଭରେ ପଡ଼ି ପରଲୋକର ଚିରସ୍ଥାୟୀ ସୁଖରୁ ବଞ୍ଚିତ ହୁଏ ।

୭୧ । ଦକ୍ଷିଣହସ୍ତ ଯେଉଁମାନଙ୍କର ଅଧିକାରୀ—ଅର୍ଥାତ୍ ଦାସଦାସୀମାନଙ୍କୁ । ମାନବ ସମାଜରେ ପରମେଶ୍ୱର ନିଜ ଅନୁଗ୍ରହରୁ କେତେକ ଲୋକଙ୍କୁ ଧନଶାଳୀ କରିଅଛନ୍ତି ଏବଂ କେତେକ ଲୋକଙ୍କୁ ଦରିଦ୍ର କରି ସେମାନଙ୍କ ଅଧୀନରେ ଦାସଦାସୀ ରୂପେ ରଖି ଅଛନ୍ତି । ଏହା ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟିକୌଶଳ, କାରଣ ସମସ୍ତେ ସମାନ ହେଲେ ମାନବ ସମାଜ ଚଳିପାରିବ ନାହିଁ । ଧନୀ ଲୋକମାନେ ଦାସଦାସୀମାନଙ୍କୁ ନିଜର ସମାନ ମନେ କରନ୍ତି ନାହିଁ କିମ୍ବା ନିଜର ଧନ ସେମାନଙ୍କୁ ସମାନ ଅଂଶରେ ଦିଅନ୍ତି ନାହିଁ । ସେହିପରି ଆଧ୍ୟାତ୍ମିକ ଜଗତରେ ପରମେଶ୍ୱର ସମସ୍ତ ମନୁଷ୍ୟମାନଙ୍କୁ ସମାନ ଶକ୍ତି ଦେଇ ନାହାନ୍ତି । କାହାକୁ ଅଧିକ ଶକ୍ତି ଦେଇ ଉପଦେଷ୍ଟା-ରୂପେ ସୃଷ୍ଟି କରି ଅଛନ୍ତି ଏବଂ ଅନ୍ୟମାନଙ୍କୁ ସାଧାରଣ ଶକ୍ତି ଦେଇ ଉପଦେଶ ଗ୍ରହଣ କରିବା ପାଇଁ ସୃଷ୍ଟି

ଏବଂ ପରମେଶ୍ୱର ତୁମ୍ଭମାନଙ୍କ ନିଜ ମଧ୍ୟରୁ ତୁମ୍ଭମାନଙ୍କ ପାଇଁ ତୁମ୍ଭମାନଙ୍କ ପତ୍ନୀମାନଙ୍କୁ ସୃଷ୍ଟି କରିଅଛନ୍ତି ଏବଂ ତୁମ୍ଭମାନଙ୍କର ପତ୍ନୀମାନଙ୍କରୁ ତୁମ୍ଭମାନଙ୍କ ପାଇଁ ପୁତ୍ର ଓ ପୌତ୍ରମାନଙ୍କୁ ସୃଷ୍ଟି କରିଅଛନ୍ତି ଏବଂ ତୁମ୍ଭମାନଙ୍କୁ ବିଶୁଦ୍ଧ ବସ୍ତୁର ଜୀବିକା ଦେଇ ଅଛନ୍ତି; ତେବେ କଅଣ ସେମାନେ ଅସତ୍ୟ ପ୍ରତି ବିଶ୍ୱାସ ସ୍ଥାପନ କରୁଅଛନ୍ତି ଏବଂ ପରମେଶ୍ୱରଙ୍କ ଅନୁଗ୍ରହକୁ ଅସ୍ୱୀକାର କରୁଅଛନ୍ତି ? ।୭୨।

ଏବଂ ସେମାନେ ପରମେଶ୍ୱରଙ୍କ ବ୍ୟତୀତ ସେହିମାନଙ୍କର ଉପାସନା କରୁଅଛନ୍ତି ଯେଉଁମାନେ ଆକାଶ ମଣ୍ଡଳ ଓ ଭୂମଣ୍ଡଳରୁ ସେମାନଙ୍କ ପାଇଁ କୌଣସି ଜୀବିକାର ଅଧିକାରୀ ନୁହନ୍ତି ଏବଂ ସେମାନଙ୍କର କୌଣସି କ୍ଷମତା ନାହିଁ ।୭୩।

ସୁତରାଂ ତୁମ୍ଭେମାନେ (କାହାରିକି) ପରମେଶ୍ୱରଙ୍କ ସଙ୍ଗେ ସମାନ ମନେ କରନା; ନିଶ୍ଚୟ ପରମେଶ୍ୱର ସବୁ ଜାଣନ୍ତି ମାତ୍ର ତୁମ୍ଭେମାନେ ଜାଣନା— ।୭୪।

ଏବଂ ପରମେଶ୍ୱର ଗୋଟିଏ ଉପମା ବର୍ଣ୍ଣନା କରୁଅଛନ୍ତି—ଜଣେ ପରାଧୀନ ଦାସର କୌଣସି ବିଷୟ ଉପରେ ଅଧିକାର ନାହିଁ; ଆଉ ଜଣକୁ ଆମ୍ଭେ ନିଜ କୃପାରୁ ଉତ୍ତମ ଜୀବିକା ଦାନ କରିଅଛୁଁ ଯେ ସେ ସେଥିରୁ ଗୁପ୍ତ ଓ ପ୍ରକାଶ୍ୟ ଭାବରେ (ସତ୍‌କାର୍ଯ୍ୟରେ) ବ୍ୟୟ କରୁଅଛି; ସେ ଦୁହେଁ କଅଣ ପରସ୍ପର ସମାନ ? ସମସ୍ତ ପ୍ରଶଂସା ପରମେଶ୍ୱରଙ୍କ ପାଇଁ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।୭୫।

ଏବଂ ପରମେଶ୍ୱର ଦୁଇ ବ୍ୟକ୍ତିଙ୍କର ଉପମା ବର୍ଣ୍ଣନା କରୁଅଛନ୍ତି—ସେମାନଙ୍କ ମଧ୍ୟରୁ ଜଣେ ମୂକ, ଯାହାର କୌଣସି ବିଷୟ ଉପରେ ଅଧିକାର ନାହିଁ ଏବଂ ସେ ନିଜ ମୁନିବ ଉପରେ ଭାରସ୍ୱରୂପ, ସେ ଯେଉଁଠାକୁ ପ୍ରେରିତ ହୁଏ କୌଣସି ମଙ୍ଗଳ ଆଣି ପାରେନା, ତେବେ କଅଣ ସେ ଲୋକ ତାହାର ସମାନ ହେବ ଯେ (ବାକ୍‌ଶକ୍ତି ଯୋଗୁଁ) ନ୍ୟାୟ ଭାବରେ ଆଦେଶ କରେ ଏବଂ ଯେ ସରଳ ପଥରେ ରହିଅଛି ? ।୭୬।

---

କରି ଅଛନ୍ତି । ସୁତରାଂ ଉପଦେଷ୍ଟାମାନଙ୍କର ଉପଦେଶ ଅଗ୍ରାହ୍ୟ କରିବା ଅର୍ଥ ପରମେଶ୍ୱରଙ୍କ ଅନୁଗ୍ରହକୁ ଅସ୍ୱୀକାର କରିବା ।

୭୨ । ମାନବ ସମାଜର ସୃଷ୍ଟି ଓ ସ୍ଥିତି ମଧ୍ୟ ପରମେଶ୍ୱରଙ୍କର ଏକ ବଡ଼ ସୃଷ୍ଟିକୌଶଳ । ଏବିଷୟ ବୁଝିପାରି ପରମେଶ୍ୱରଙ୍କ ପ୍ରତି ଅବିଶ୍ୱାସ କରିବା ଅଥ ପରମେଶ୍ୱରଙ୍କ ଅନୁଗ୍ରହକୁ ଅସ୍ୱୀକାର କରିବା ।

୭୩।୭୪ । ଉପରୋକ୍ତ ଉଦାହରଣମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ପରମେଶ୍ୱରଙ୍କ ସହିତ ଅଂଶୀଦାର ସ୍ଥିର କରିବା ଅନ୍ୟାୟ । ଦେଖ ଟୀକା ଏହି ଅଧ୍ୟାୟ ୬୦ଶ୍ଳୋକ ।

୭୫।୭୬ । ଏହି ଶ୍ଳୋକମାନଙ୍କରେ ଦୁଇଗୋଟି ଉଦାହରଣ ଦେଇ ଅଂଶୀବାଦିତାର ଅଯୌକ୍ତିକତା ପ୍ରମାଣ କରାଯାଇଅଛି । ଜଣେ ପରାଧୀନ ଦାସ ଜଣେ ସ୍ୱାଧୀନ ଧନୀ ଲୋକ ସଙ୍ଗେ ସମାନ ହୋଇ ନ ପାରେ । ଜଣେ ମୂକ ଅକ୍ଷମ ଦାସ ଜଣେ ସ୍ୱାଧୀନ ସକ୍ଷମଲୋକ ସଙ୍ଗେ ସମାନ ହୋଇ ନ ପାରେ । ସେହିପରି ଶକ୍ତିହୀନ ସୃଷ୍ଟ ବସ୍ତୁ ଅଂଶୀଉପାସ୍ୟମାନେ ଶକ୍ତିଶାଳୀ ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ସଙ୍ଗେ ସମାନ ହୋଇ ନ ପାରନ୍ତି ।

## ୧୧ଶ ବିଭାଗ

ଏବଂ ପରମେଶ୍ୱରଙ୍କ ପାଇଁ ଆକାଶମଣ୍ଡଳ ଓ ଭୂମଣ୍ଡଳର ନିଗୂଢ଼ ତଥ୍ୟ; ଏବଂ ସେହି ସମୟର ଆଗମନ ଚକ୍ଷୁର ପଲକ ଛଡ଼ା ଆଉ କିଛି ନୁହେ, ଅଥବା ତାହାଠାରୁ ଅଧିକ ଶୀଘ୍ର, ନିଶ୍ଚୟ ପରମେଶ୍ୱର ସର୍ବ ବିଷୟ ଉପରେ ଶକ୍ତିଶାଳୀ ।୭୭।

ଏବଂ ପରମେଶ୍ୱର ତୁମ୍ଭମାନଙ୍କୁ ତୁମ୍ଭମାନଙ୍କର ମାତୃଗର୍ଭରୁ ବାହାର କରି ଅଛନ୍ତି (ସେତେବେଳେ) ତୁମ୍ଭେମାନେ କିଛି ଜାଣି ନଥିଲ; ଏବଂ ସେହି ତୁମ୍ଭମାନଙ୍କ ପାଇଁ କର୍ଣ୍ଣ ଓ ଚକ୍ଷୁ ଓ ଅନ୍ତଃକରଣ ଦେଇ ଅଛନ୍ତି, ଯେପରି ତୁମ୍ଭେମାନେ କୃତଜ୍ଞ ହେବ ।୭୮।

ସେମାନେ କଅଣ ପକ୍ଷୀମାନଙ୍କୁ ଲକ୍ଷ୍ୟ କରୁ ନାହାନ୍ତି ଯେ ସେମାନେ ଆକାଶ ମାର୍ଗର ଅଧୀନ ରହିଅଛନ୍ତି ? ପରମେଶ୍ୱରଙ୍କ ବ୍ୟତୀତ ଆଉ କେହି ସେମାନଙ୍କୁ ଏପରି ଅଟକାଇ ରଖିପାରେନା; ନିଶ୍ଚୟ ଏଥିରେ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି ।୭୯।

ଏବଂ ପରମେଶ୍ୱର ତୁମ୍ଭମାନଙ୍କର ଗୃହମାନଙ୍କୁ ତୁମ୍ଭମାନଙ୍କ ପାଇଁ ଆବାସ ସ୍ଥଳ କରିଅଛନ୍ତି ଏବଂ ସେ ତୁମ୍ଭମାନଙ୍କ ପାଇଁ ପଶୁଚର୍ମରୁ ତମ୍ବୁଗୃହମାନ କରିଅଛନ୍ତି, ଯାହାକୁ ତୁମ୍ଭେମାନେ ଭ୍ରମଣ ସମୟରେ ଏବଂ ଅବସ୍ଥାନ ସମୟରେ ହାଲୁକା ମନେକର ଏବଂ ସେମାନଙ୍କର ଲୋମ ଓ ସେମାନଙ୍କର କେଶର ଓ ସେମାନଙ୍କର ପଶମରୁ ଗୃହସାମଗ୍ରୀ ଏବଂ ଅସ୍ଥାବର ସମ୍ପତ୍ତି କରିଅଛନ୍ତି ।୮୦।

ଏବଂ ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ସୃଷ୍ଟ ପଦାର୍ଥମାନଙ୍କରୁ ଆଶ୍ରୟସ୍ଥଳ କରିଅଛନ୍ତି ଏବଂ ତୁମ୍ଭମାନଙ୍କ ପାଇଁ ପର୍ବତମାନଙ୍କରେ ନିର୍ଜନସ୍ଥାନ କରିଅଛନ୍ତି ଏବଂ ତୁମ୍ଭମାନଙ୍କୁ ଉତ୍ତାପରୁ ରକ୍ଷା କରିବାପାଇଁ ପିନ୍ଧିବା ଲୁଗା ସବୁ ଏବଂ ତୁମ୍ଭମାନଙ୍କୁ ଯୁଦ୍ଧରୁ ରକ୍ଷାକରିବାପାଇଁ ବର୍ମ ସବୁ କରିଅଛନ୍ତି; ଏହିପରି ସେ ତୁମ୍ଭମାନଙ୍କ ପ୍ରତି ନିଜ ଅନୁଗ୍ରହ ପୂର୍ଣ୍ଣ କରିଥାନ୍ତି ଯେପରି ତୁମ୍ଭେମାନେ ଆତ୍ମ ସମର୍ପଣ କରିବ ।୮୧।

ତାପରେ ଯଦି ସେମାନେ (ସତ୍‌ପଥରୁ) ଫେରିଯାଆନ୍ତି, ତେବେ ତୁମ୍ଭର କର୍ତ୍ତବ୍ୟ ପ୍ରକାଶ୍ୟ ପ୍ରଚାର ଛଡ଼ା ଆଉ କିଛି ନାହିଁ ।୮୨।

ସେମାନେ ପରମେଶ୍ୱରଙ୍କ ଅନୁଗ୍ରହ ବିଷୟ ଅବଗତ ଅଛନ୍ତି, ତାପରେ ମଧ୍ୟ ସେମାନେ ତାହା ଅସ୍ୱୀକାର କରୁ ଅଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅବିଶ୍ୱାସକାରୀ ।୮୩।

## ୧୨ଶ ବିଭାଗ

ଏବଂ ଯେଉଁଦିନ ଆମ୍ଭେ ପ୍ରତ୍ୟେକ ସମ୍ପ୍ରଦାୟରୁ ସାକ୍ଷୀ ଆଣିବୁ, ସେତେବେଳେ ଅବିଶ୍ୱାସକାରୀମାନଙ୍କୁ ଅନୁମତି ଦିଆଯିବ ନାହିଁ ଏବଂ ସେମାନଙ୍କର ଓଜର ଆପତ୍ତି ଗ୍ରହଣ କରାହେବ ନାହିଁ ।୮୪।

---

୭୭ । ସେହି ସମୟର ଆଗମନ—ଶେଷ ବିଚାର ଦିନର ଅଥବା ଅବିଶ୍ୱାସକାରୀମାନଙ୍କର ଶାସ୍ତିର ଉପସ୍ଥିତି ।

୭୭-୮୩ । ସର୍ବଜ୍ଞ ଓ ସର୍ବଶକ୍ତିମାନ ପରମେଶ୍ୱରଙ୍କ ବିଚିତ୍ର ସୃଷ୍ଟି କୌଶଳ ଓ ମାନବ ଜାତି ପ୍ରତି ତାଙ୍କର ଅଗଣିତ ଅନୁଗ୍ରହର ବିଷୟ ଚିନ୍ତା କରି ମନୁଷ୍ୟମାନଙ୍କର ପରମେଶ୍ୱରଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ଆବଶ୍ୟକ । ମାତ୍ର କେତେକ ଲୋକ ଜାଣିଶୁଣି ଅକୃତଜ୍ଞ ହୋଇଅଛନ୍ତି ଏହା ବଡ଼ ଅନ୍ୟାୟ ।

୮୧ । ଆଶ୍ରୟ ସ୍ଥଳ—ଗୃହ, ତମ୍ବୁ, ପର୍ବତ ଓ ଗଛମାନଙ୍କ ଛାୟା ।
ନିର୍ଜନ ସ୍ଥାନ—ପ୍ରାକୃତିକ ଗୁହା ଓ କୁଞ୍ଜ ।

୮୪ । ସାକ୍ଷୀ ଅର୍ଥ ଉପଦେଷ୍ଟା । ଶେଷ ବିଚାର ଦିନ ସେ ପ୍ରକାଶ କରିବେ ଯେ ତାଙ୍କ ସମ୍ପ୍ରଦାୟକୁ ସତ୍‌ପଥ ପ୍ରତି ଆହ୍ୱାନ କରିଥିଲେ । ମାତ୍ର ସେମାନେ ତାଙ୍କ ଉପଦେଶ ଗ୍ରହଣ କରିନଥିଲେ । ଅବିଶ୍ୱାସକାରୀମାନେ ସେମାନଙ୍କୁ

ଏବଂ ଯେତେବେଳେ ଅତ୍ୟାଚାରକାରୀମାନେ ଶାସ୍ତି ଦର୍ଶନ କରିବେ ସେତେବେଳେ ସେମାନଙ୍କ-ଠାରୁ ତାହା କମକରାହେବ ନାହିଁ ଏବଂ ସେମାନଙ୍କୁ ଅବକାଶ ଦିଆଯିବ ନାହିଁ । ୮୫ ।

ଏବଂ ଯେତେବେଳେ ଅଂଶୀ ସ୍ଥାପନକାରୀମାନେ ନିଜ ଅଂଶୀ ଉପାସ୍ୟମାନଙ୍କୁ ଦେଖିବେ ସେମାନେ କହିବେ, "ହେ ଅମ୍ଭମାନଙ୍କର ପାଳନକର୍ତ୍ତା, ଏହିମାନେହିଁ ଅମ୍ଭମାନଙ୍କର ଅଂଶୀଉପାସ୍ୟ, ଅମ୍ଭେମାନେ ତୁମ୍ଭଙ୍କୁ ଛାଡ଼ି ଏହିମାନଙ୍କୁ ଆହ୍ୱାନ କରୁଥିଲୁଁ;" ତାପରେ ସେମାନେ ସେମାନଙ୍କୁ ଉତ୍ତର ଦେବେ, "ନିଶ୍ଚୟ ତୁମ୍ଭେମାନେ ମିଥ୍ୟାବାଦୀ" ।୮୬।

ଏବଂ ସେହିଦିନ ସେମାନେ ପରମେଶ୍ୱରଙ୍କ ନିକଟ ଆତ୍ମସମର୍ପଣ କରିବେ ଏବଂ ସେମାନେ ଯେଉଁ ସବୁ ଅସତ୍ୟର ରଚନା କରିଥିଲେ, ସେ ସବୁ ସେମାନଙ୍କୁ ଛାଡ଼ି ଚାଲିଯିବେ । ୮୭ ।

ଯେଉଁମାନେ ଅବିଶ୍ୱାସ କରନ୍ତି ଏବଂ ଲୋକମାନଙ୍କୁ ପରମେଶ୍ୱରଙ୍କ ପଥରୁ ପ୍ରତିରୋଧ କରନ୍ତି, ଅମ୍ଭେ ସେମାନଙ୍କୁ ଶାସ୍ତି ଉପରେ ଶାସ୍ତି ବର୍ଦ୍ଧିତ କରିବୁଁ ଯେହେତୁ ସେମାନେ ଅନିଷ୍ଟ କରୁଥିଲେ । ୮୮ ।

ଏବଂ ସେ ଦିନ ଅମ୍ଭେ ପ୍ରତ୍ୟେକ ସମ୍ପ୍ରଦାୟରୁ ସେମାନଙ୍କ ପ୍ରତି ସେମାନଙ୍କ ମଧ୍ୟରୁ ଜଣକୁ ସାକ୍ଷୀ ଆଣିବୁଁ ଏବଂ ତୁମ୍ଭଙ୍କୁ ମଧ୍ୟ ଏମାନଙ୍କ ବିରୁଦ୍ଧରେ ସାକ୍ଷୀ ସ୍ୱରୂପ ଆଣିବୁଁ; ଏବଂ ଅମ୍ଭେ ପ୍ରତ୍ୟେକ ବିଷୟ ବର୍ଣ୍ଣନା କରିବା ପାଇଁ ଏବଂ ଆତ୍ମସମର୍ପଣକାରୀମାନଙ୍କ ପାଇଁ ସୁପଥ ଓ କରୁଣା ଓ ସୁସମ୍ବାଦ ସ୍ୱରୂପ ତୁମ୍ଭ ପ୍ରତି ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁଁ । ୮୯ ।

## ୧୩ଶ ବିଭାଗ

ନିଶ୍ଚୟ ପରମେଶ୍ୱର ସୁବିଚାର ଓ ସତ୍‌କର୍ମ କରିବାକୁ ଏବଂ ଆତ୍ମୀୟ ସ୍ୱଜନମାନଙ୍କୁ ଦାନ କରିବାକୁ ଆଦେଶ କରୁଅଛନ୍ତି ଏବଂ ଅଶ୍ଳୀଳତା ଓ ଦୁଷ୍କାର୍ଯ୍ୟ ଓ ବିରୁଦ୍ଧାଚରଣ କରିବାକୁ ନିଷେଧ କରୁଅଛନ୍ତି, ସେ ଉପଦେଶ ପ୍ରଦାନ କରୁଅଛନ୍ତି ଯେପରି ତୁମ୍ଭେମାନେ ତାହା ଗ୍ରହଣକର । ୯୦ ।

---

ପୁନରାୟ ପାର୍ଥିବ ଜୀବନ ପ୍ରଦାନ କରାଗଲେ ସେମାନେ ସତ୍‌ପଥ ଅବଲମ୍ବନ କରିବେ ବୋଲି ଆପତ୍ତି କରିବେ । ମାତ୍ର ସେମାନଙ୍କର ଆପତ୍ତି ଗ୍ରହଣ କରାଯିବ ନାହିଁ କିମ୍ବା ସେମାନଙ୍କୁ ଏପରି ଅନୁମତି ଦିଆଯିବ ନାହିଁ । ପ୍ରତ୍ୟେକ ସମ୍ପ୍ରଦାୟ ପ୍ରତି ଧର୍ମୋପଦେଷ୍ଟା ବା ପ୍ରେରିତ ପୁରୁଷ ପଠାଯାଇଥିଲେ କୋରାନର ୧୦ ଅଧ୍ୟାୟର ୪୭ ଶ୍ଳୋକ ଓ ୩୫ ଅଧ୍ୟାୟର ୨୨ ଶ୍ଳୋକରେ ଲେଖାଅଛି ।

୮୭-୮୮ । ପରଲୋକର ଶାସ୍ତି ଅବଲୋକନ କରି ଅବିଶ୍ୱାସକାରୀ ଓ ଅଂଶୀବାଦୀମାନଙ୍କର ଭ୍ରମ ଛୁଟିଯିବ ଏବଂ ସେମାନେ ପରମେଶ୍ୱରଙ୍କଠାରେ ଆତ୍ମସମର୍ପଣ କରିବେ । ମାତ୍ର ସେ ସମୟରେ ଆତ୍ମସମର୍ପଣ ଦ୍ୱାରା ସେମାନଙ୍କର କୌଣସି ଉପକାର ହେବ ନାହିଁ । ସେମାନଙ୍କୁ ଶାସ୍ତି ଭୋଗ କରିବାକୁ ହେବ ।

୮୯ । ତୁମ୍ଭଙ୍କୁ—ପ୍ରେରିତ ପୁରୁଷ ମୋହମ୍ମଦଙ୍କୁ । ଏହି ଶ୍ଳୋକରୁ ଜଣାଯାଉଅଛି ମହାପୁରୁଷ ମୋହମ୍ମଦ ସମଗ୍ର ଜଗତ ପାଇଁ ଉପଦେଷ୍ଟା ଏବଂ ସେ ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବେ ।

୯୦ । ଏହି ପବିତ୍ର ଶ୍ଳୋକଟି ଇସଲାମଧର୍ମର ଶିକ୍ଷା ଓ ସଦୁପଦେଶର ସାରସଂଗ୍ରହ କହିଲେ ଚଳେ । ଏହି ପବିତ୍ର ଶ୍ଳୋକଟି ଅବତୀର୍ଣ୍ଣ ହେଲା ପରେ କେବଳ ଏହାର ବ୍ୟାଖ୍ୟା ଶ୍ରବଣ କରି ବହୁସଂଖ୍ୟକ ଲୋକ ଇସଲାମ ଧର୍ମ ଗ୍ରହଣ କରିଥିଲେ । ସୁବିଚାର ଅର୍ଥ ଆଧ୍ୟାତ୍ମିକ, ରାଜନୈତିକ, ସାମାଜିକ, ପାରିବାରିକ ଓ ବ୍ୟକ୍ତିଗତ ଜୀବନ ସମସ୍ତ କ୍ଷେତ୍ରରେ ନ୍ୟାୟପରାୟଣତା ଦେଖାଇବା । ସତ୍‌କାର୍ଯ୍ୟ ଅର୍ଥ ନିଷ୍କାମ ପରୋପକାର । ଦରିଦ୍ର ଓ ଅଭାବଗ୍ରସ୍ତ ଆତ୍ମୀୟ ସ୍ୱଜନଙ୍କୁ ଦାନ କରିବା ପ୍ରଧାନ କର୍ତ୍ତବ୍ୟ ଏବଂ ଅତି ଉଚ୍ଚସ୍ତରର ସତ୍‌କାର୍ଯ୍ୟ ଅଟେ । ଅଶ୍ଳୀଳତା ଅର୍ଥ ସମସ୍ତପ୍ରକାର

ଏବଂ ଯେତେବେଳେ ତୁମ୍ଭେମାନେ ଅଙ୍ଗୀକାରବଦ୍ଧ ହୁଅ ତେବେ ପରମେଶ୍ୱରଙ୍କ ଅଙ୍ଗୀକାର ପୂର୍ଣ୍ଣକର ଏବଂ ତାହାକୁ ସୁଦୃଢ଼ କରିବାପରେ ଶପଥ ଭଙ୍ଗ କରନା, ଏବଂ ନିଶ୍ଚୟ ତୁମ୍ଭେମାନେ ପରମେଶ୍ୱରଙ୍କୁ ତୁମ୍ଭମାନଙ୍କ ଉପରେ ଜାମିନ କରିଥିଲ; ତୁମ୍ଭେମାନେ ଯାହା କରୁଅଛ ନିଶ୍ଚୟ ପରମେଶ୍ୱର ତାହା ଜାଣନ୍ତି ।୯୧।

ଏବଂ ତୁମ୍ଭେମାନେ ସେହି ନାରୀ ପରି ହୁଅନା ଯେ ନିଜ ସୂତା କାଟିବାପରେ ତାକୁ ଛିନ୍ନବିଛିନ୍ନ କରେ; ତୁମ୍ଭେମାନେ ତୁମ୍ଭମାନଙ୍କର ଶପଥମାନଙ୍କୁ ପରସ୍ପର ମଧ୍ୟରେ ଅନିଷ୍ଟର କାରଣ କରୁଅଛ, ଯେ ହେତୁ ଏକ ସମ୍ପ୍ରଦାୟ ଅନ୍ୟ ସମ୍ପ୍ରଦାୟଠାରୁ ସଂଖ୍ୟାରେ ଅଧିକ; ଏତଦ୍ୱାରା ପରମେଶ୍ୱର କେବଳ ତୁମ୍ଭମାନଙ୍କୁ ପରୀକ୍ଷା କରୁଅଛନ୍ତି; ଏବଂ ତୁମ୍ଭେମାନେ ଯେଉଁ ବିଷୟରେ ମତଭେଦ କରୁଅଛ ପରମେଶ୍ୱର ଅବଶ୍ୟ ପୁନରୁତ୍‌ଥାନ ଦିବସରେ ତୁମ୍ଭମାନଙ୍କ ପାଇଁ ତାହା ପ୍ରକାଶ କରିବେ । ୯୨ ।

ଏବଂ ଯଦି ପରମେଶ୍ୱର ଇଚ୍ଛା କରିଥାନ୍ତେ ତେବେ ନିଶ୍ଚୟ ସେ ତୁମ୍ଭମାନଙ୍କୁ ଏକ ସମ୍ପ୍ରଦାୟ କରିଥାନ୍ତେ, କିନ୍ତୁ ସେ ଯାହାକୁ ଇଚ୍ଛା ବିଭ୍ରାନ୍ତ କରନ୍ତି ଏବଂ ଯାହାକୁ ଇଚ୍ଛା ପଥପ୍ରଦର୍ଶନ କରନ୍ତି; ଏବଂ ତୁମ୍ଭେମାନେ ଯାହା କରିଅଛ ସେ ବିଷୟରେ ଅବଶ୍ୟ ତୁମ୍ଭମାନଙ୍କୁ ପ୍ରଶ୍ନ କରାଯିବ । ୯୩ ।

ଏବଂ ତୁମ୍ଭେମାନେ ନିଜ ଶପଥମାନଙ୍କୁ ପରସ୍ପର ମଧ୍ୟରେ ଅନିଷ୍ଟର କାରଣ କରନା, ନଚେତ ତୁମ୍ଭମାନଙ୍କର ପାଦ ସୁପ୍ରତିଷ୍ଠିତ ହେବାପରେ ସ୍ଖଳିତ ହୋଇଯିବ ଏବଂ ତୁମ୍ଭମାନଙ୍କୁ (ଏହାର) ମନ୍ଦଫଳ ଭୋଗିବାକୁ ପଡ଼ିବ, ଯେହେତୁ ତୁମ୍ଭେମାନେ ପରମେଶ୍ୱରଙ୍କ ପଥରୁ (ଲୋକମାନଙ୍କୁ) ପ୍ରତିରୋଧ କରୁଥିଲ; ଏବଂ ତୁମ୍ଭମାନଙ୍କ ପାଇଁ ମହାଶାସ୍ତି ରହିଅଛି । ୯୪ ।

---

ଲଜ୍ଜାଜନକ କାର୍ଯ୍ୟ, ଲଜ୍ଜା ପରିତ୍ୟାଗକଲେ ମନୁଷ୍ୟ ସମସ୍ତ ପ୍ରକାର ପାପ କାର୍ଯ୍ୟ କରିପାରେ ଦୁଷ୍କାର୍ଯ୍ୟ ଅର୍ଥ ଅନ୍ୟର ଅନିଷ୍ଟସାଧନର ଚେଷ୍ଟା । ଉଦ୍ଧତାଚରଣ ଅର୍ଥ ଧର୍ମନୀତି, ସମାଜନୀତି, ରାଜନୀତି ପ୍ରଭୃତି ସମସ୍ତ ପ୍ରତିଷ୍ଠିତ ନିୟମର ବିପକ୍ଷରେ ସ୍ୱେଚ୍ଛାଚାରିତା ଅବଲମ୍ବନ କରିବା ।

୯୧ । ଜାମିନ ଯେ ଅନ୍ୟର କାର୍ଯ୍ୟ ସକାଶେ ଦାୟିତ୍ୱ ଗ୍ରହଣ କରେ । କୌଣସି କାର୍ଯ୍ୟ କରିବା ପାଇଁ ପରମେଶ୍ୱରଙ୍କ ଶପଥଗ୍ରହଣ କରିବା ଅର୍ଥ ପରମେଶ୍ୱରଙ୍କୁ ସେଥିପାଇଁ ଦାୟୀ କରିବା । ସୁତରାଂ ଶପଥ ଗ୍ରହଣ କରି ଅଙ୍ଗୀକାରବଦ୍ଧ ହୋଇ ତାହା ଭଗ୍ନ କରିବା ମହାପାପ । ପରମେଶ୍ୱରଙ୍କ ଅଙ୍ଗୀକାର ଅର୍ଥ ଯେଉଁ ଅଙ୍ଗୀକାର ପୂରଣ କରିବା ପାଇଁ ପରମେଶ୍ୱର ଆଦେଶ କରିଅଛନ୍ତି । ସୁତରାଂ ଅଙ୍ଗୀକାର କରିବା ପୂର୍ବରୁ ଦେଖିବା ଉଚିତ ଯେ ଏହା ବୈଧ କି ଅବୈଧ । ବାଧ୍ୟରେ ପଡ଼ି ଯଦି କେହି ଅବୈଧ କାର୍ଯ୍ୟ ବିଷୟରେ ଅଙ୍ଗୀକାର କରେ ତେବେ ତାହା ପାଳନ କରିବାର ଆବଶ୍ୟକ ନାହିଁ ।

୯୨ । ସୂତାକାଟି ପରେ ତାକୁ ଛିନ୍ନବିଛିନ୍ନ କରିବାଦ୍ୱାରା ଯେପରି ସେହି ନାରୀର ପରିଶ୍ରମ ବୃଥା ହୁଏ, ସେହିପରି ଅଙ୍ଗୀକାର କରି ତାହା ପାଳନ ନକଲେ ମାନବ ସମାଜରେ ବିଶୃଙ୍ଖଳା ଓ ଅଶାନ୍ତି ବର୍ଦ୍ଧିତ ହୁଏ ।
ଚଞ୍ଚଳ ପ୍ରକୃତି ଲୋକମାନେ ପରମେଶ୍ୱରଙ୍କ ନାମରେ ରାଣକରି ଗୋଟାଏ ଦଳ ସଙ୍ଗେ ମିଳିଥାନ୍ତି, ମାତ୍ର କୌଣସି ପ୍ରବଳ ଓ ସଂଖ୍ୟାଗୁରୁ ଦଳ ପାଇଲେ ରାଣ ଓ ଅଙ୍ଗୀକାର ଭଙ୍ଗକରି ନିଜ ଦଳ ଛାଡ଼ିଦେଇ ପ୍ରବଳ ଦଳ ସଙ୍ଗେ ମିଳିତ ହୁଅନ୍ତି । ଏହାଦ୍ୱାରା ସମାଜରେ ଅନିଷ୍ଟ ଘଟେ । ଏପରି କରିବାକୁ ମନା କରାଯାଇଅଛି ।

୯୩ । ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋ ୭ କ ।

୯୪ । ବିପକ୍ଷ ଲୋକମାନଙ୍କୁ ଠକିବା ଉଦ୍ଦେଶ୍ୟରେ ଶପଥ କରିବାକୁ ନିଷେଧ କରାଯାଇଅଛି, କାରଣ ତଦ୍ୱାରା ଇହକାଳରେ କଳଙ୍କ ଓ ଏବଂ ପରକାଳରେ ଶାସ୍ତିଭୋଗର ଆଶଙ୍କା ଅଛି ।

ଏବଂ ତୁମ୍ଭେମାନେ ଅଳ୍ପମୂଲ୍ୟରେ ପରମେଶ୍ୱରଙ୍କ ଅଙ୍ଗୀକାରକୁ ବିକ୍ରୟ କରନା; ନିଶ୍ଚୟ ଯାହା ପରମେଶ୍ୱରଙ୍କ ନିକଟରେ ଅଛି ତୁମ୍ଭମାନଙ୍କ ପାଇଁ ତାହା ମଙ୍ଗଳଜନକ, ଯଦି ତୁମ୍ଭେମାନେ ଜାଣିପାର ।୯୫।

ତୁମ୍ଭମାନଙ୍କ ନିକଟରେ ଯାହାଅଛି ତାହା ଶେଷ ହୋଇଯିବ ଏବଂ ପରମେଶ୍ୱରଙ୍କ ନିକଟରେ ଯାହା ଅଛି ତାହା ସ୍ଥାୟୀ ହେବ ଏବଂ ଧୈର୍ଯ୍ୟଶୀଳମାନେ ଯେଉଁ ସତ୍‌କାର୍ଯ୍ୟ କରିଥିଲେ ତାହାର ପରିବର୍ତ୍ତିରେ ନିଶ୍ଚୟ ଅମ୍ଭେ ସେମାନଙ୍କୁ ଉତ୍ତମ ପୁରସ୍କାର ପ୍ରଦାନ କରିବୁଁ ।୯୬।

ପୁରୁଷ ହେଉ ବା ନାରୀ ହେଉ ଯେ ସତ୍‌କାର୍ଯ୍ୟକରେ ଏବଂ ସେ ବିଶ୍ୱାସକାରୀ ମଧ୍ୟ ହୁଏ, ତେବେ ନିଶ୍ଚୟ ଅମ୍ଭେ ତାହାକୁ ଏକ ନୂତନ ପବିତ୍ର ଜୀବନରେ ଜୀବିତ ରଖିବୁଁ; ଏବଂ ସେମାନେ ଯେ ସତ୍ କାର୍ଯ୍ୟ କରିଥିଲେ ତାହାର ପରିବର୍ତ୍ତିରେ ନିଶ୍ଚୟ ଅମ୍ଭେ ସେମାନଙ୍କୁ ଉତ୍ତମ ପୁରସ୍କାର ପ୍ରଦାନ କରିବୁଁ ।୯୭।

ସୁତରାଂ ଯେତେବେଳେ ତୁମ୍ଭେ କୋରାନ ପାଠକର ସେତେବେଳେ ଅଭିଶପ୍ତ ସଏତାନଠାରୁ ପରମେଶ୍ୱରଙ୍କଠାରେ ଆଶ୍ରୟ ପ୍ରାର୍ଥନା କର ।୯୮।

ଯେଉଁମାନେ ବିଶ୍ୱାସସ୍ଥାପନକାରୀ ଏବଂ ନିଜ ପାଳନକର୍ତ୍ତାଙ୍କ ଉପରେ ନିର୍ଭରଶୀଳ, ନିଶ୍ଚୟ ସେମାନଙ୍କ ଉପରେ ତାହାର କୌଣସି ଅଧିପତ୍ୟ ନାହିଁ ।୯୯।

ଯେଉଁମାନେ ତାହା ସହିତ ବନ୍ଧୁତା ସ୍ଥାପନ କରନ୍ତି ଏବଂ ଯେଉଁମାନେ ତାଙ୍କ ସହିତ ଅଂଶୀସ୍ଥାପନ କରନ୍ତି, କେବଳ ସେହିମାନଙ୍କ ଉପରେ ତାହାର ଅଧିପତ୍ୟ ।୧୦୦।

## ୧୪ଶ ବିଭାଗ

ଏବଂ ଯେତେବେଳେ ଅମ୍ଭେ କୌଣସି ପୂର୍ବବର୍ତ୍ତୀ ପ୍ରତ୍ୟାଦେଶ ସ୍ଥଳରେ ଅନ୍ୟ ନୂତନ ପ୍ରତ୍ୟାଦେଶ ପରିବର୍ତ୍ତିନ କରୁଁ – ଏବଂ ପରମେଶ୍ୱର ଅବଗତ ଅଛନ୍ତି ଯାହା ସେ ଅବତୀର୍ଣ୍ଣ କରନ୍ତି,—ସେତେବେଳେ ସେମାନେ କହନ୍ତି, "ତୁମ୍ଭେ କେବଳ ମିଥ୍ୟା ରଚନାକାରୀ"; ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣନ୍ତି ନାହିଁ ।୧୦୧।

---

୯୫ । ପାର୍ଥିବ ଉପକାର ଲୋଭରେ ମଧ୍ୟ ଅଙ୍ଗୀକାର କରି ତାହା ଭଙ୍ଗ କରିବା ପାଇଁ ନିଷେଧ କରାଯାଇଅଛି, କାରଣ ପରଲୋକର ମଙ୍ଗଳ ପାର୍ଥିବ ଉପକାର ଅପେକ୍ଷା ଉତ୍କୃଷ୍ଟତର ।

୯୬ । ଇହଲୋକର ସୁଖ କ୍ଷଣସ୍ଥାୟୀ, ପରଲୋକର ସୁଖ ଚିରସ୍ଥାୟୀ ।

୯୭ । ନୂତନ ପବିତ୍ରଜୀବନ ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ସ୍ଥାପନ ସହିତ ସତ୍‌କାର୍ଯ୍ୟ ସାଧନ କଲେ ମନୁଷ୍ୟ ଏକ ନୂତନ ପବିତ୍ର ଜୀବନ ଲାଭକରେ ।

୯୯ । ତାହାର ଅଧିପତ୍ୟ—ସଏତାନର ଅଧିପତ୍ୟ ।

୧୦୦ । ତାଙ୍କ ସହିତ—ପରମେଶ୍ୱରଙ୍କ ସହିତ ।
ତାହା ସହିତ - ସଏତାନ ସହିତ

୧୦୧ । ଯେତେବେଳେ ପରମେଶ୍ୱର ପ୍ରଥମେ ପଠାଇଥିବା କୌଣସି ଆଦେଶକୁ ପରିବର୍ତ୍ତିନ କରି ତାହା ପରିବର୍ତ୍ତିରେ ଅନ୍ୟ ଆଦେଶ ପ୍ରେରଣ କରନ୍ତି ଅବିଶ୍ୱାସକାରୀମାନେ କହନ୍ତି, ପ୍ରେରିତ ପୁରୁଷ ନିଜ ଇଚ୍ଛା ଅନୁସାରେ ନିଜର ସୁବିଧା ପାଇଁ ଏହାକୁ ପରିବର୍ତ୍ତିନ କରୁଅଛନ୍ତି । ମାତ୍ର ଏପରି କହିବା ଅନ୍ୟାୟ । କାରଣ ଆଦେଶ ପରିବର୍ତ୍ତନ କରିବାର ଆବଶ୍ୟକତା ପରମେଶ୍ୱରଙ୍କୁ ଭଲରୂପେ ଜଣାଅଛି । ଏ ସମ୍ବନ୍ଧରେ ୨ୟ ଅଧ୍ୟାୟର ୧୦୬ ଶ୍ଳୋକ ଓ ତହିଁର ଟୀକା ଦେଖ ।

ତୁମ୍ଭେ କୁହ, "ପବିତ୍ର ଆତ୍ମା ତୁମ୍ଭର ପାଳନକର୍ତ୍ତାଙ୍କଠାରୁ ସତ୍ୟ ସହିତ ଏହାକୁ ଅବତୀର୍ଣ୍ଣ କରିଅଛନ୍ତି ଯେପରି ଏହା ବିଶ୍ୱାସସ୍ଥାପନକାରୀମାନଙ୍କୁ ସୁପ୍ରତିଷ୍ଠିତ କରିବ ଏବଂ ଆତ୍ମସମର୍ପଣକାରୀମାନଙ୍କ ପାଇଁ ଏହା ସୁପଥ ପ୍ରଦର୍ଶକ ଓ ସୁସମ୍ବାଦଦାତା" ।୧୦୨।

ଏବଂ ନିଶ୍ଚୟ ଆମ୍ଭେ ଜାଣୁ ଯେ ସେମାନେ କହି ଥାଆନ୍ତି, "ଏହାକୁ କେବଳ ଜଣେ ମନୁଷ୍ୟ ଶିକ୍ଷା ଦେଉଅଛି"; ସେମାନେ ଯାହାପ୍ରତି ଏହାକୁ ଆରୋପ କରୁଅଛନ୍ତି ତାହାର ଭାଷା ବିଦେଶୀ ଏବଂ ଏହାର ଭାଷା ସ୍ପଷ୍ଟ ଆରବୀ ।୧୦୩।

ନିଶ୍ଚୟ ଯେଉଁମାନେ ପରମେଶ୍ୱରଙ୍କ ନିଦର୍ଶନମାନଙ୍କରେ ବିଶ୍ୱାସ କରନ୍ତି ନାହିଁ, ପରମେଶ୍ୱର ସେମାନଙ୍କୁ ପଥ ପ୍ରଦର୍ଶନ କରିବେ ନାହିଁ ଏବଂ ସେମାନଙ୍କ ପାଇଁ କଠିନ ଶାସ୍ତି ରହିଅଛି ।୧୦୪।

ଯେଉଁମାନେ ପରମେଶ୍ୱରଙ୍କ ନିଦର୍ଶନମାନଙ୍କରେ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ ସେହିମାନେହିଁ ମିଥ୍ୟା ରଚନାକାରୀ ଏବଂ ସେହିମାନେହିଁ ମିଥ୍ୟାବାଦୀ ।୧୦୫।

ଯେ ବିଶ୍ୱାସ ସ୍ଥାପନ ପରେ ପରମେଶ୍ୱରଙ୍କ ପ୍ରତି ଅବିଶ୍ୱାସ କରିଅଛି ଏବଂ ଯାହାର ଅନ୍ତର ଅବିଶ୍ୱାସ ପ୍ରତି ଉନ୍ମୁକ୍ତ ରହିଅଛି, ବାସ୍ତବରେ ସେହିମାନଙ୍କ ଉପରେ ପରମେଶ୍ୱରଙ୍କ ଅଭିଶାପ ଏବଂ ସେହିମାନଙ୍କ ପାଇଁ ମହାଶାସ୍ତି ରହିଅଛି; ମାତ୍ର ଯାହାର ଅନ୍ତର ବିଶ୍ୱାସରେ ପରିତୃପ୍ତ ଥିବା ସ୍ଥଳେ ତାହାକୁ ବଳପ୍ରୟୋଗ କରି ଯାଇଅଛି ସେ ଶାସ୍ତିରୁ ରକ୍ଷା ପାଇବ ।୧୦୬।

ଏହା ଏଥିପାଇଁ ଯେ ସେମାନେ ପରଲୋକ ଅପେକ୍ଷା ପାର୍ଥିବ ଜୀବନକୁ ପ୍ରିୟତର ମନେ କରନ୍ତି; ଏବଂ ଏଥିପାଇଁ ପରମେଶ୍ୱର ଅବିଶ୍ୱାସକାରୀମାନଙ୍କୁ ପଥପ୍ରଦର୍ଶନ କରନ୍ତି ନାହିଁ ।୧୦୭।

ଏହିମାନଙ୍କ ହୃଦୟମାନଙ୍କରେ ଓ ଏମାନଙ୍କର କର୍ଣ୍ଣମାନଙ୍କରେ ଏବଂ ଏମାନଙ୍କର ଚକ୍ଷୁମାନଙ୍କରେ ପରମେଶ୍ୱର ମୋହର ମାରି ଦେଇଅଛନ୍ତି ଏବଂ ଏହିମାନେହିଁ ଅମନଯୋଗୀ ।୧୦୮।

ଏଥିରେ ସନ୍ଦେହ ନାହିଁ ଯେ ନିଶ୍ଚୟ ସେମାନେ ପରଲୋକରେ କ୍ଷତିଗ୍ରସ୍ତ ହେବେ ।୧୦୯।

---

୧୦୨ । ପବିତ୍ର ଆତ୍ମା—ସ୍ୱର୍ଗଦୂତ ଜିବ୍ରାଇଲ ଯେକି ପରମେଶ୍ୱରଙ୍କ ପ୍ରତ୍ୟାଦେଶ ପ୍ରେରିତପୁରୁଷମାନଙ୍କ ନିକଟରେ ପ୍ରକାଶ କରନ୍ତି ।

୧୦୩-୧୦୫ । ଅବିଶ୍ୱାସକାରୀମାନେ ଏହାମଧ୍ୟ କହୁଥିଲେ ଯେ ଜଣେ ବିଦେଶୀ କ୍ରୀତଦାସ ଯେକି ପ୍ରେରିତପୁରୁଷଙ୍କ ନିକଟରେ ରହୁଥିଲା ସେ ପ୍ରେରିତପୁରୁଷଙ୍କୁ କୋରାନ ଶିକ୍ଷା ଦେଉଥିଲା । ମାତ୍ର ଏପରି କହିବା ଆଦୌ ଯୁକ୍ତିସଙ୍ଗତ ନୁହେ । କାରଣ ସେ କ୍ରୀତଦାସର ଭାଷା ବିଦେଶୀ, ମାତ୍ର କୋରାନ ବିଶୁଦ୍ଧ ଆରବୀ ଭାଷାରେ ଅବତୀର୍ଣ୍ଣ ହୋଇଅଛି ଯାହା ସେ କ୍ରୀତଦାସ ଜାଣେନା । ସୁତରାଂ ଅବିଶ୍ୱାସକାରୀମାନେହିଁ ମିଥ୍ୟାବାଦୀ ।

୧୦୬ । ଯେଉଁମାନେ ପ୍ରଥମେ ଇସଲାମ ଧର୍ମ ଗ୍ରହଣ କରି ପରେ ଅବିଶ୍ୱାସ ହେତୁ ସେହି ଧର୍ମତ୍ୟାଗ କରିଅଛନ୍ତି ଏବଂ ଅବିଶ୍ୱାସରେ ଦୃଢ଼ ରହିଛନ୍ତି ସେମାନେ ପରଲୋକରେ ମହାଶାସ୍ତି ଭୋଗ କରିବେ । ମାତ୍ର ଯେ ହୃଦୟରେ ବିଶ୍ୱାସ ରଖି ବଳପ୍ରୟୋଗ ହେତୁ ମୌଖିକ ଧର୍ମତ୍ୟାଗ କରିଥିବାର ପ୍ରକାଶ କରେ ପରମେଶ୍ୱର ତାକୁ କ୍ଷମା କରିବେ ।

୧୦୭ । ୧୦୮ । ଧର୍ମତ୍ୟାଗୀମାନେ ଇହଲୋକର ସୁଖ ଆଶାରେ ପରଲୋକର ସୁଖକୁ ତ୍ୟାଗ କରିଅଛନ୍ତି, ସୁତରାଂ ସେମାନେ ସୁପଥପ୍ରାପ୍ତ ହୋଇପାରିବେ ନାହିଁ । ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋ ୭ କ ।

ତାପରେ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ସେମାନଙ୍କ ପାଇଁ, ଯେଉଁମାନେ ନିର୍ଯାତିତ ହେବାପରେ ଦେଶତ୍ୟାଗ କରିଅଛନ୍ତି, ତାପରେ ଧର୍ମଯୁଦ୍ଧ କରିଅଛନ୍ତି ଏବଂ ଧୈର୍ଯ୍ୟ ଧାରଣ କରିଅଛନ୍ତି, ଅବଶ୍ୟ ଏହାପରେ ତୁମ୍ଭର ପାଳନକର୍ତ୍ତା କ୍ଷମାଶୀଳ କରୁଣାମୟ ଅଟନ୍ତି ।୧୧୦।

## ୧୬ଶ ବିଭାଗ

ସେଦିନ ପ୍ରତ୍ୟେକ ବ୍ୟକ୍ତି ନିଜ ପାଇଁ ଗୁହାରି ନେଇ ଉପସ୍ଥିତ ହେବେ ଏବଂ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସେମାନଙ୍କର କୃତକର୍ମର ପୂର୍ଣ୍ଣ ପ୍ରତିଦାନ ପ୍ରଦାନ କରାହେବ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରା ହେବ ନାହିଁ ।୧୧୧।

ଏବଂ ପରମେଶ୍ୱର ଗୋଟିଏ ନଗରର ଉପମା ବର୍ଣ୍ଣନା କରୁଅଛନ୍ତି, ଏହା ଶାନ୍ତି ଓ ନିରାପଦରେ ଥିଲା ଏବଂ ପ୍ରତ୍ୟେକ ସ୍ଥାନରୁ ପ୍ରଚୁର ପରିମାଣରେ ତାହାର ଜୀବିକା ଆସୁଥିଲା; ତାପରେ ଏହା ପରମେଶ୍ୱରଙ୍କ ଅନୁଗ୍ରହ ଅସ୍ୱୀକାର କରିଥିଲା; ତାପରେ ସେମାନେ ଯାହା କରିଥିଲେ ସେଥିପାଇଁ ପରମେଶ୍ୱର ତାହାକୁ କ୍ଷୁଧା ଓ ଭୟ ଦ୍ୱାରା ଶାସ୍ତି ଦେଇଥିଲେ ।୧୧୨।

ନିଶ୍ଚୟ ସେମାନଙ୍କ ମଧ୍ୟରୁ ସେମାନଙ୍କ ନିକଟ ପ୍ରେରିତପୁରୁଷ ଆସିଥିଲେ, କିନ୍ତୁ ସେମାନେ ତାଙ୍କ ପ୍ରତି ମିଥ୍ୟାରୋପ କରିଥିଲେ; ତାପରେ ଶାସ୍ତି ସେମାନଙ୍କୁ ଆକ୍ରମଣ କରିଥିଲା ଏବଂ ସେମାନେ ଅତ୍ୟାଚାରୀ ଥିଲେ ।୧୧୩।

ଅତଏବ ପରମେଶ୍ୱର ତୁମ୍ଭମାନଙ୍କୁ ଯେଉଁ ବୈଧ ବିଶୁଦ୍ଧ ଜୀବିକା ଦେଇଅଛନ୍ତି ତାହା ଭକ୍ଷଣ କର ଏବଂ ପରମେଶ୍ୱରଙ୍କ ଅନୁଗ୍ରହ ପାଇଁ କୃତଜ୍ଞତା ପ୍ରକାଶକର, ଯଦି ତୁମ୍ଭେମାନେ ତାଙ୍କର ଆଜ୍ଞା ପାଳନ କରୁଥାଅ ।୧୧୪।

ସେ ତୁମ୍ଭମାନଙ୍କ ପାଇଁ ମୃତଜୀବ ଓ ଶୋଣିତ ଓ ଶୁକର ମାଂସ ଏବଂ ଯାହା ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟର ଉଦ୍ଦେଶ୍ୟରେ ନିବେଦିତ କେବଳ ଏତିକି ଅବୈଧ କରି ଅଛନ୍ତି; କିନ୍ତୁ ଯେ ଉଚ୍ଛୃଙ୍ଖଳ ବା ସୀମା ଲଙ୍ଘନକାରୀ ନହୋଇ ଜୀବନ ରକ୍ଷା ପାଇଁ ଏହା ଖାଇବାକୁ ବାଧ୍ୟ ହୁଏ, ତେବେ ନିଶ୍ଚୟ ପରମେଶ୍ୱର ତାହାପାଇଁ କ୍ଷମାଶୀଳ କରୁଣାମୟ ।୧୧୫।

---

୧୧୧ । ସେଦିନ—ଶେଷ ବିଚାର ଦିନ । ନିଜ ପାଇଁ ଗୁହାରି—ସେଦିନ ସମସ୍ତେ ନିଜ ଦୁଃଖରେ ଦୁଃଖୀ ହେବେ ।

୧୧୨ । ୧୧୩ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ସାଧାରଣଭାବରେ ଗୋଟିଏ ନଗରର ଉଦାହରଣ ଦେଇ ମକ୍କାବାସୀ ବିଧର୍ମୀମାନଙ୍କୁ ସାବଧାନ କରାଇ ଦେଇଅଛନ୍ତି । ସେହି ନଗରବାସୀମାନେ ପରମେଶ୍ୱରଙ୍କ ଅନୁଗ୍ରହରୁ ସୁଖସ୍ୱଚ୍ଛନ୍ଦରେ ବାସ କରୁଥିଲେ । ମାତ୍ର ସେମାନେ ପରମେଶ୍ୱରଙ୍କ ପ୍ରତି ଅକୃତଜ୍ଞ ଏବଂ ତାଙ୍କର ପ୍ରେରିତ ପୁରୁଷଙ୍କୁ ମିଥ୍ୟାମନେ କରିଥିଲେ । ସୁତରାଂ ପରମେଶ୍ୱର ସେମାନଙ୍କୁ ପାର୍ଥିବ ଜୀବନରେ ଶାସ୍ତି ଦେଇଥିଲେ । ସେହିପରି ମକ୍କାବାସୀମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ବିରୁଦ୍ଧାଚରଣ କରିବା ହେତୁ ସେମାନଙ୍କୁ ଦୁର୍ଭିକ୍ଷ ଦ୍ୱାରା ଏବଂ ମୁସଲମାନମାନଙ୍କ ଦ୍ୱାରା ପରାସ୍ତ କରିବା ଦ୍ୱାରା ଶାସ୍ତି ଦେଇଥିଲେ ।

୧୧୫ । ଦେଖ ୬ଷ୍ଠ ଅଧ୍ୟାୟ ୩୯ ଶ୍ଳୋକ ।

ତୁମ୍ଭେମାନେ ନିଜ ଜିହ୍ୱାର ମିଥ୍ୟା ଭାଷଣଦ୍ୱାରା ପରମେଶ୍ୱରଙ୍କ ପ୍ରତି ମିଥ୍ୟାରୋପ କରିବା ପାଇଁ କୁହ ନା ଯେ ଏହା ବୈଧ ଏବଂ ଏହା ଅବୈଧ; ନିଶ୍ଚୟ ଯେଉଁମାନେ ପରମେଶ୍ୱରଙ୍କ ପ୍ରତି ମିଥ୍ୟାରୋପ କରନ୍ତି ସେମାନେ ସୁଫଳ ପ୍ରାପ୍ତ ହେବେ ନାହିଁ । ୧୧୬ ।

(ସେମାନେ ଇହ ଜଗତରେ) ଅତି ଅଳ୍ପ ଉପଭୋଗ (କରିବେ) ଏବଂ ସେମାନଙ୍କ ପାଇଁ ପରଲୋକରେ) ଶାସ୍ତି ରହିଅଛି । ୧୧୭।

ଏବଂ ଆମ୍ଭେ ଇହୁଦୀମାନଙ୍କ ପାଇଁ ତାହାହିଁ ଅବୈଧ କରି ଥିଲୁଁ ଯାହା ଆମ୍ଭେ ଏଥିପୂର୍ବେ ତୁମ୍ଭ ପ୍ରତି ବର୍ଣ୍ଣନା କରିଅଛୁଁ; ଏବଂ ଆମ୍ଭେ ସେମାନଙ୍କ ପ୍ରତି ଅତ୍ୟାଚାର କରିନାହୁଁ, ବରଂ ସେମାନେ ନିଜ ପ୍ରତି ଅତ୍ୟାଚାର କରିଥିଲେ ।୧୧୮।

ତାପରେ ନିଶ୍ଚୟ ଯେଉଁମାନେ ଅଜ୍ଞତାବଶତଃ ଅନ୍ୟାୟ କରିଥିଲେ, ପୁନରାୟ ତାହାପରେ ଅନୁତାପ କରିଥିଲେ ଏବଂ ସଂଶୋଧିତ ହୋଇଥିଲେ ନିଶ୍ଚୟ ଏହାପରେ ତୁମ୍ଭର ପାଳନକର୍ତ୍ତା ସେମାନଙ୍କ ପାଇଁ କ୍ଷମାଶୀଳ କରୁଣାମୟ ଅଟନ୍ତି ।୧୧୯।

## ୧୬ଶ ବିଭାଗ

ନିଶ୍ଚୟ ଇବ୍ରାହିମ ଆଦର୍ଶ ପୁରୁଷ, ପରମେଶ୍ୱରଙ୍କ ଅନୁଗତ ଖାଣ୍ଟି ଭକ୍ତ ଥିଲେ ଏବଂ ସେ ଅଂଶୀବାଦୀମାନଙ୍କର ଅନ୍ତର୍ଗତ ନ ଥିଲେ ।୧୨୦।

ସେ ତାଙ୍କର ଅନୁଗ୍ରହ ପାଇଁ କୃତଜ୍ଞ ଥିଲେ; ସେ ତାଙ୍କୁ ମନୋନୀତ କରିଥିଲେ ଏବଂ ତାଙ୍କୁ ସୁଦୃଢ଼ ସରଳ ପଥରେ ଚାଳିତ କରିଥିଲେ ।୧୨୧।

ଏବଂ ଆମ୍ଭେ ତାହାଙ୍କୁ ଇହଜଗତରେ କଲ୍ୟାଣ ଦାନ କରିଥିଲୁଁ ଏବଂ ନିଶ୍ଚୟ ପରଲୋକରେ ମଧ୍ୟ ସେ ସଜ୍ଜନମାନଙ୍କର ଅନ୍ତର୍ଗତ ହେବେ ।୧୨୨।

ହେ ମୋହମ୍ମଦ ! ତାପରେ ଆମ୍ଭେ ତୁମ୍ଭ ପ୍ରତି ପ୍ରତ୍ୟାଦେଶ କରିଅଛୁଁ ଯେ ତୁମ୍ଭେ ଇବ୍ରାହିମଙ୍କର ସୁଦୃଢ଼ ଧର୍ମର ଅନୁସରଣ କର ଏବଂ ସେ ଅଂଶୀବାଦୀମାନଙ୍କର ଅନ୍ତର୍ଗତ ନ ଥିଲେ ।୧୨୩।

ଶନିବାର କେବଳ ମାତ୍ର ସେହିମାନଙ୍କ ଉପରେ ନିର୍ଦ୍ଧାରିତ ହୋଇଥିଲା ଯେଉଁମାନେ ସେ ବିଷୟରେ ବିରୋଧ କରିଥିଲେ; ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ପୁନରୁତ୍ଥାନ ଦିବସରେ ତାହା ମୀମାଂସା କରିଦେବେ ଯେଉଁ ବିଷୟରେ ସେମାନେ ମତବିରୋଧ କରିଥିଲେ ।୧୨୪।

---

୧୧୬ । ପରମେଶ୍ୱର ଯେଉଁସବୁ ଜିନିଷକୁ ବୈଧ ବା ଅବୈଧ କରି ନାହାନ୍ତି ତୁମ୍ଭେମାନେ ମିଛରେ ତାକୁ ବୈଧ । ଅବୈଧ ବୋଲି କୁହନା ।

୧୧୮ । ଦେଖ ୬ ଷ୍ଠ ଅଧ୍ୟାୟ ୧୪୭ ଶ୍ଳୋକ ।

୧୨୧ । ସେ ତାଙ୍କର ଅନୁଗ୍ରହ ପାଇଁ—ଇବ୍ରାହିମ ପରମେଶ୍ୱରଙ୍କ ଅନୁଗ୍ରହ ପାଇଁ । ସେ ତାଙ୍କୁ ମନୋନୀତ—ପରମେଶ୍ୱର ଇବ୍ରାହିମଙ୍କୁ ମନୋନୀତ ।

୧୨୩ । ତୁମ୍ଭପ୍ରତି—ମହାପୁରୁଷ ମୋହମ୍ମଦଙ୍କ ପ୍ରତି ।

୧୨୪ । ମହାପୁରୁଷ ଇବ୍ରାହିମଙ୍କ ସମୟରେ ଶନିବାର ବିଶ୍ରାମ ଦିବସ ଥିଲା ମାତ୍ର ମହାପୁରୁଷ ମୋହମ୍ମଦଙ୍କ ସମୟରେ ଶୁକ୍ରବାର ବିଶ୍ରାମ ଦିବସ ସ୍ଥିର କରାଗଲା । ସେଥିପାଇଁ ଇହୁଦୀମାନେ ତାଙ୍କୁ ଉପହାସ କରି କହିଲେ, "ଆପଣ

ତୁମ୍ଭେ ସଜ୍ଜ୍ଞାନ ଏବଂ ସଦୁପଦେଶ ଦ୍ୱାରା ତୁମ୍ଭର ପାଳନକର୍ତ୍ତାଙ୍କ ପଥରେ (ଲୋକମାନଙ୍କୁ) ଆହ୍ୱାନକର ଏବଂ ସେମାନଙ୍କ ସହିତ ସଦ୍‌ଭାବରେ ଆଲୋଚନାକର; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ତାହାଙ୍କୁ ଜାଣନ୍ତି ଯେ ତାଙ୍କ ପଥରୁ ବିଭ୍ରାନ୍ତ ହୋଇଅଛି ଏବଂ ସେ ସୁପଥଗାମୀମାନଙ୍କୁ ମଧ୍ୟ ଜାଣନ୍ତି ।୧୨୫।

ଏବଂ ଯଦି ତୁମ୍ଭେମାନେ (କାହାର ଠାରୁ) ପ୍ରତିଶୋଧ ଗ୍ରହଣ କର, ତେବେ ତଦ୍ୱାରା ତୁମ୍ଭେମାନେ ଯେପରି କଷ୍ଟ ପ୍ରାପ୍ତ ହୋଇଅଛ ତାହାର ଅନୁରୂପ ପ୍ରତିଶୋଧ ଗ୍ରହଣକର; ଏବଂ ଯଦି ତୁମ୍ଭେମାନେ ଧୈର୍ଯ୍ୟ ଧାରଣକର ତେବେ ନିଶ୍ଚୟ ତାହା ଧୈର୍ଯ୍ୟଶୀଳମାନଙ୍କ ପାଇଁ ମଙ୍ଗଳଜନକ ।୧୨୬।

ଏବଂ ତୁମ୍ଭେ ଧୈର୍ଯ୍ୟ ଧାରଣକର ଏବଂ ତୁମ୍ଭର ଧୈର୍ଯ୍ୟଧାରଣ ପରମେଶ୍ୱରଙ୍କ (ସାହାଯ୍ୟ) ବ୍ୟତୀତ ନୁହେ ଏବଂ ସେମାନଙ୍କ ପ୍ରତି ଦୁଃଖିତ ହୁଅନା ଏବଂ ସେମାନେ ଯେଉଁ ଚକ୍ରାନ୍ତ କରୁଅଛନ୍ତି ସେ ସମ୍ବନ୍ଧରେ ସଙ୍କୁଚିତ ହୁଅନା ।୧୨୭।

ଏବଂ ଯେଉଁମାନେ ସଂଯମ ପାଳନ କରନ୍ତି ଏବଂ ଯେଉଁମାନେ ସତ୍କର୍ମ କରନ୍ତି ନିଶ୍ଚୟ ପରମେଶ୍ୱର ସେହିମାନଙ୍କ ସଙ୍ଗରେ ଅଛନ୍ତି ।୧୨୮।

— —

---

ଇବ୍ରାହିମଙ୍କ ଧର୍ମ ଅନୁସରଣ କରିବାର ଦାବୀ କରୁ ଅଛନ୍ତି, ଅଥଚ ତାଙ୍କ ସମୟରେ ପ୍ରଚଳିତ ବିଶ୍ରାମ ଦିବସକୁ ପରିବର୍ତ୍ତନ କରି ଦେଇ ଅଛନ୍ତି ।" ତାହାର ଉତ୍ତରରେ ପରମେଶ୍ୱର କହୁ ଅଛନ୍ତି, ଇହୁଦୀମାନେ ପ୍ରଥମେ ଏହି ବିଶ୍ରାମ ଦିବସକୁ ଅମାନ୍ୟ କଲେ । ଦେଖ ୭ଅଧ୍ୟାୟ—୧୬୩ରୁ ୧୬୬ ଶ୍ଳୋକ, ତାପରେ ଖ୍ରୀଷ୍ଟାନମାନେ ଶନିବାର ପରିବର୍ତ୍ତିରେ ରବିବାରକୁ ବିଶ୍ରାମ ଦିବସ କଲେ । ସୁତରାଂ ପରମେଶ୍ୱର ତାହାକୁ ପରିବର୍ତ୍ତନ କରି ଶୁକ୍ରବାର ସ୍ଥିର କଲେ । ଏବଂ ପୂର୍ବବର୍ତ୍ତୀ ମତ ବିରୋଧ କାରୀମାନଙ୍କର ଶେଷ ବିଚାର ଦିନ ମୀମାଂସା ହେବ । ୨ୟ ଅଧ୍ୟାୟ ୧୩୦ ଶ୍ଳୋକ ଦେଖ ।

୧୨୫ । ଏହି ଶ୍ଳୋକରେ ଧର୍ମ ପ୍ରଚାରର ନୀତି ବର୍ଣ୍ଣିତ ହୋଇଅଛି । ବଳପ୍ରୟୋଗ ନ କରି ସଦ୍‌ଜ୍ଞାନ, ସଦୁପଦେଶ ଏବଂ ସଦ୍‌ଭାବରେ ଆଲୋଚନା ଦ୍ୱାରା ଧର୍ମ ପ୍ରଚାର କରିବାମାନିଁ ଆଦେଶ କରାଯାଇ ଅଛି ।

୧୨୬ । ଏହି ଶ୍ଳୋକରେ ଅନ୍ୟାୟକାରୀଠାରୁ ପ୍ରତିଶୋଧ ଗ୍ରହଣ କରିବାର ନୀତି ବର୍ଣ୍ଣିତ ହୋଇଅଛି । ମାତ୍ର ପ୍ରତିଶୋଧ ଗ୍ରହଣ ନ କରି ଧୈର୍ଯ୍ୟ ଅବଲମ୍ବନ ପୂର୍ବକ କ୍ଷମା ପ୍ରଦାନ କଲେ ତାହା ମଙ୍ଗଳ ଜନକ ଏବଂ ପରମେଶ୍ୱରଙ୍କ ନିକଟରେ ପ୍ରିୟତର ବୋଲି କୁହାଯାଇଅଛି ।

# ପଞ୍ଚଦଶ ଭାଗ

## ୧୭ଶ ଅଧ୍ୟାୟ

ନାମ—ବନୀ ଇସରାଇଲ (ଇସରାଇଲ ବଂଶଧର ଗଣ)
ମକ୍କାରେ ଅବତୀର୍ଣ୍ଣ । ଏଥିରେ ୧୨ ଗୋଟି ବିଭାଗ ଏବଂ ୧୧୧ ଗୋଟି ଶ୍ଳୋକ ଅଛି ।
ଦୟାମୟ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ସେ ପବିତ୍ରତମ, ଯେ ଅରେ ରାତିରେ ତାଙ୍କର ସେବକଙ୍କୁ ପବିତ୍ର ମସଜିଦଠାରୁ ଦୂରବର୍ତ୍ତୀ ମସଜିଦ୍ ପର୍ଯ୍ୟନ୍ତ ଭ୍ରମଣ କରାଇଥିଲେ, ଯାହାର ସୀମାକୁ ଆମ୍ଭେ ସୌଭାଗ୍ୟଯୁକ୍ତ କରିଅଛୁଁ, ଯେପରି ଆମ୍ଭେ ତାଙ୍କୁ ଆମ୍ଭର କେତେକ ନିଦର୍ଶନମାନ ଦେଖାଇବୁଁ; ନିଶ୍ଚୟ ସେ ଶ୍ରବଣକାରୀ ଓ ଦର୍ଶନକାରୀ । ୧ ।

ଏବଂ ଆମ୍ଭେ ମୂସାଙ୍କୁ ଗ୍ରନ୍ଥ ଦେଇଥିଲୁଁ ଏବଂ ଆମ୍ଭେ ତାହାଙ୍କୁ ଇସରାଇଲ ବଂଶ ପାଇଁ ପଥ ପ୍ରଦର୍ଶକ କରିଥିଲୁ ଯେ ସେମାନେ ଆମ୍ଭବ୍ୟତୀତ ଅନ୍ୟ କାହାକୁ ଅଭିଭାବକ ଗ୍ରହଣ କରିବେ ନାହିଁ ।୨।

---

ନାମକରଣ—ଏହି ଅଧ୍ୟାୟର ୧ମ ବିଭାଗ ଏବଂ ୧୨ଶ ବିଭାଗମାନଙ୍କରେ ଇସରାଇଲ ବଂଶଧରମାନଙ୍କ ବିଷୟ ବର୍ଣ୍ଣିତ ହୋଇ ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି । ମାତ୍ର ଅନ୍ୟ ବିଭାଗମାନଙ୍କରେ ଇସଲାମ ଧର୍ମର ଉତ୍କୃଷ୍ଟ ନୈତିକ ଉପଦେଶମାନ ବର୍ଣ୍ଣିତ ହୋଇଅଛି ।

ଇବ୍ରାହିମଙ୍କ ପୁତ୍ର ଇସହାକ ଓ ଇସହାକଙ୍କ ପୁତ୍ର ୟାକୁବ । ୟାକୁବ 'ଇସରାଇଲ' ନାମରେ ଓ ତାଙ୍କ ବଂଶଧରମାନେ "ବନୀଇସରାଇଲ" ନାମରେ ଖ୍ୟାତ । ଏହି ବଂଶରେ ୟୁସୁଫ, ମୂସା, ଦାଉଦ, ସୋଲେମାନ ଓ ଇସା ପ୍ରମୁଖ ଖ୍ୟାତ ନାମା ପ୍ରେରିତ ପୁରୁଷମାନେ ଜନ୍ମ ଗ୍ରହଣ କରିଥିଲେ ।

୧ । ପବିତ୍ର ମସଜିଦ—ମକ୍କାନଗରୀରେ ଥିବା ପ୍ରସିଦ୍ଧ ଉପାସନା ମନ୍ଦିର ବା କାବା ମନ୍ଦିର ।

ଦୂରବର୍ତ୍ତୀ ମସଜିଦ—ସିରିଆ ପ୍ରଦେଶ ଅନ୍ତର୍ଗତ ଜେରୁଜାଲେମ ନଗରରେ ଥିବା ପ୍ରସିଦ୍ଧ ଉପାସନା ମନ୍ଦିର । ଏହା ଖ୍ରୀଷ୍ଟ ଧର୍ମାବଲମ୍ବୀମାନଙ୍କ ପ୍ରଧାନ ଧର୍ମକ୍ଷେତ୍ର । ଏହାକୁ 'ବୈତୁଲ ମୋକଦସ' କହନ୍ତି ।

ସେ—ପରମେଶ୍ୱର ।

ତାଙ୍କର ସେବକଙ୍କୁ—ମହାପୁରୁଷ ମୋହମ୍ମଦଙ୍କୁ । ସୌଭାଗ୍ୟଯୁକ୍ତ କରିଅଛୁଁ—ଶସ୍ୟଶ୍ୟାମଳା ଉର୍ବର ଶସ୍ୟ କ୍ଷେତ୍ର ଓ ସୁମିଷ୍ଟ ଫଳ ପରିପୂର୍ଣ୍ଣ ଉଦ୍ୟାନମାନଙ୍କରେ ସୁଶୋଭିତ ହେବା ହେତୁ ଏବଂ ବିଖ୍ୟାତ ଧର୍ମପ୍ରବର୍ତ୍ତକମାନଙ୍କର ଲୀଳାଭୂମି ହେତୁ ଜେରୁଜାଲେମ ନଗର ସୌଭାଗ୍ୟଯୁକ୍ତ ଅଟେ ।

ଏହି ଶ୍ଳୋକରେ ମହାପୁରୁଷ ମୋହମ୍ମଦଙ୍କର ମେରାଜ ବା ଅଲୌକିକ ରାତ୍ରିଭ୍ରମଣ ବିଷୟ ଉଲ୍ଲେଖ କରାଯାଇଅଛି । ଅଧିକାଂଶ ଟୀକାକାରମାନଙ୍କ ମତରେ ମହାପୁରୁଷ ମୋହମ୍ମଦ ଜାଗ୍ରତ ଅବସ୍ଥାରେ ସଶରୀରରେ ମକ୍କାନଗରୀସ୍ଥ କାବା ମନ୍ଦିରଠାରୁ ଜେରୁଜାଲେମ ମନ୍ଦିର ପର୍ଯ୍ୟନ୍ତ ଯାଇ ସେଠାରୁ ଆକାଶମାର୍ଗରେ ସପ୍ତଆକାଶ ଭ୍ରମଣ କରି ସ୍ୱର୍ଗନର୍କ ପ୍ରଭୃତି ଦର୍ଶନ କରି ପରମେଶ୍ୱରଙ୍କ ସିଂହାସନ ପର୍ଯ୍ୟନ୍ତ ଯାଇଥିଲେ ଏବଂ ସେଠାରୁ ଫେରି ଆସିଥିଲେ । ଅନ୍ୟ କେତେକ ଟୀକାକାରମାନଙ୍କ ମତରେ ଏହି ଭ୍ରମଣ ସଶରୀରରେ ନହୋଇ ଆଧ୍ୟାତ୍ମିକ ଭାବରେ ହୋଇଥିଲା ।

ହେ ସେମାନଙ୍କ ବଂଶଧରମାନେ, ଯେଉଁମାନଙ୍କୁ ଅମ୍ଭେ ନୂହଙ୍କ ସହିତ ନୌକାରେ ଆରୋହଣ କରାଇଥିଲୁ; ଶୁଣ ନିଶ୍ଚୟ ସେ ନୂହ କୃତଜ୍ଞ ସେବକ ଥିଲେ ।୩।

ଏବଂ ଅମ୍ଭେ ଗ୍ରନ୍ଥ ମଧ୍ୟରେ ଇସରାଇଲ ବଂଶଧରମାନଙ୍କ ପ୍ରତି ମୀମାଂସା କରିଥିଲୁଁ ଯେ, ନିଶ୍ଚୟ ତୁମ୍ଭେମାନେ ପୃଥିବୀରେ ଦୁଇଥର ଅଶାନ୍ତି ଉତ୍ପାଦନ କରିବ ଏବଂ ନିଶ୍ଚୟ ତୁମ୍ଭେମାନେ ଅତ୍ୟନ୍ତ ଅହଙ୍କାର ପୂର୍ଣ୍ଣ ଔଦ୍ଧତ୍ୟ ପ୍ରକାଶ କରିବ ।୪।

ସୁତରାଂ ଯେତେବେଳେ ଏ ଦୁଇ ମଧ୍ୟରୁ ପ୍ରଥମ ଅଙ୍ଗୀକାର ଉପସ୍ଥିତ ହୋଇଥିଲା, ସେତେବେଳେ ଅମ୍ଭେ ତୁମ୍ଭମାନଙ୍କ ପ୍ରତି ଅମ୍ଭର ପ୍ରବଳ ପରାକ୍ରାନ୍ତ ସେବକଦଳ ପ୍ରେରଣ କରିଥିଲୁଁ; ତାପରେ ସେମାନେ ଗୃହମାନଙ୍କ ମଧ୍ୟରେ ପ୍ରବେଶ କରିଥିଲେ ଏବଂ ଏହିପରି [ପରମେଶ୍ୱରଙ୍କର] ଅଙ୍ଗୀକାର ପୂର୍ଣ୍ଣ ହୋଇଥିଲା ।୫। ତାପରେ ଅମ୍ଭେ ସେମାନଙ୍କ ଉପରେ ପୁନରାୟ ତୁମ୍ଭମାନଙ୍କୁ ପରାକ୍ରାନ୍ତ କରିଥିଲୁ ଏବଂ ଅମ୍ଭେ ଧନସମ୍ପଦ ସନ୍ତାନସନ୍ତତି ଦ୍ୱାରା ତୁମ୍ଭମାନଙ୍କୁ ସାହାଯ୍ୟ କରିଥିଲୁ ଏବଂ ତୁମ୍ଭମାନଙ୍କୁ ସଂଖ୍ୟାଧିକ ଦଳ କରିଥିଲୁ ।୬।

ଯଦି ତୁମ୍ଭେମାନେ ଉପକାର କର ତେବେ ନିଜପାଇଁ ଉପକାର କରିବ ଏବଂ ଯଦି ଅପକାର କର ତେବେ ନିଜପାଇଁ; ସୁତରାଂ ଯେତେବେଳେ ଶେଷ ଅଙ୍ଗୀକାର ଉପସ୍ଥିତ ହୋଇଥିଲା [ଅମ୍ଭେ ଅନ୍ୟ ଏକଦଳ ପ୍ରେରଣ କରିଥିଲୁଁ] ଯେ ସେମାନେ ତୁମ୍ଭମାନଙ୍କର ମୁଖମଣ୍ଡଳ ମଳିନ କରିଦେବେ, ଏବଂ ସେମାନେ ମସଜିଦରେ ପ୍ରବିଷ୍ଟ ହେବେ ଯେପରି ସେମାନେ ପ୍ରଥମଥର ପ୍ରବିଷ୍ଟ ହୋଇଥିଲେ; ଏବଂ ଯାହାଉପରେ ଧ୍ୱଂସ କରିବାର ଶକ୍ତିଲାଭ କରିବେ ତାକୁ ସମ୍ପୂର୍ଣ୍ଣ ବିନଷ୍ଟ କରିଦେବେ ।୭।

ତୁମ୍ଭମାନଙ୍କର ପାଳନକର୍ତ୍ତା ତୁମ୍ଭମାନଙ୍କ ଉପରେ ଅନୁଗ୍ରହ କରି ପାରନ୍ତି, ଏବଂ ଯଦି ତୁମ୍ଭେମାନେ ପ୍ରତ୍ୟାବର୍ତ୍ତନ କର ତେବେ ଅମ୍ଭେ ମଧ୍ୟ ପ୍ରତ୍ୟାବର୍ତ୍ତନ କରିବୁଁ ଏବଂ ଅମ୍ଭେ ଅବିଶ୍ୱାସକାରୀମାନଙ୍କ ପାଇଁ ନରକକୁ କାରାଗାର କରିଅଛୁଁ ।୮।

---

୪ । ମହାପୁରୁଷ ନୂହଙ୍କ ପରେ ଇସରାଇଲ ବଂଶଧର ଇହୁଦୀମାନେ ଦୁଇଥର ପରମେଶ୍ୱରଙ୍କ ଅବାଧ୍ୟତା କରି ସେଥିପାଇଁ ଶାସ୍ତି ଭୋଗ କରିଥିଲେ ।

୫ । ପ୍ରଥମଥର ଖ୍ରୀଷ୍ଟପୂର୍ବ ୫୮୮ ସାଲରେ ବାବିଲୋନିଅର ଅଧିବାସୀମାନେ ଜେରୁଜାଲେମ ନଗର ଆକ୍ରମଣ କରି ସେ ସ୍ଥାନର ଇହୁଦୀମାନଙ୍କ ଗୃହରେ ପ୍ରବେଶ କରି ସ୍ତ୍ରୀ ବାଳକ ସମେତ ସମସ୍ତଙ୍କୁ ହତ୍ୟା କରିଥିଲେ ।

୬ । ଏହାପରେ ପରମେଶ୍ୱର ଇହୁଦୀମାନଙ୍କ ପ୍ରତି ଅନୁଗ୍ରହ କରିବାରୁ ସେମାନେ ପୁନରାୟ ଧନଜନ ସମୃଦ୍ଧିରେ ପରାକ୍ରାନ୍ତ ହୋଇ ବାବିଲୋନିଅନମାନଙ୍କୁ ତଡ଼ି ଦେଇଥିଲେ ।

୭ । ମାତ୍ର ଇହୁଦୀମାନେ ପୁନରାୟ ପରମେଶ୍ୱରଙ୍କୁ ଭୁଲିଯାଇ ଅବାଧ୍ୟ ହେବାରୁ ପରମେଶ୍ୱରଙ୍କ ଶାସ୍ତିସ୍ୱରୂପ ରୋମାନ ଜାତି ଜେରୁଜାଲେମ ଆକ୍ରମଣ କରି ଇହୁଦୀ ଜାତିର ଧ୍ୱଂସ ସାଧନ ଏବଂ ଧର୍ମମନ୍ଦିରକୁ ଭୂମିସାତ୍ କରିଥିଲେ ।

୮ । ଇହୁଦୀମାନଙ୍କ ପରିଣାମ ବର୍ଣ୍ଣନା କରି ଏହି ଶ୍ଳୋକରେ ପରମେଶ୍ୱର ମକ୍‌କାବାସୀ ବିଧର୍ମୀମାନଙ୍କୁ ସତର୍କ କରାଇ ଦେଇ ଅଛନ୍ତି ଯେ ଯଦି ସେମାନେ ଅବାଧ୍ୟ ହୁଅନ୍ତି ସେମାନେ ମଧ୍ୟ ସେହିପରି ଶାସ୍ତି ଭୋଗ କରିବେ ।
ପ୍ରତ୍ୟାବର୍ତ୍ତନ କରିବୁ—ତୁମ୍ଭେମାନେ ଯଦି ପାପ ଆଡ଼କୁ ଫେରିଯାଅ, ତେବେ ଅମ୍ଭେ ମଧ୍ୟ ତୁମ୍ଭମାନଙ୍କ ପାଇଁ ଶାସ୍ତି ଆଡ଼କୁ ଫେରିଯିବୁଁ ।

ନିଶ୍ଚୟ ଏହି କୋରାନ ସୁପ୍ରତିଷ୍ଠିତ ପଥ ପ୍ରତି [ଲୋକମାନଙ୍କୁ] ପଥ ଦେଖାଏ ଏବଂ ସତକର୍ମଶୀଳ ବିଶ୍ୱାସକାରୀମାନଙ୍କ ପାଇଁ ସୁସମ୍ବାଦ ପ୍ରଦାନକରେ ଯେ ନିଶ୍ଚୟ ସେମାନଙ୍କ ପାଇଁ ମହାନ ପୁରସ୍କାର ରହିଅଛି ।୯।

ଏବଂ ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ପାଇଁ ଅମ୍ଭେ କଠୋର ଶାସ୍ତି ପ୍ରସ୍ତୁତ କରି ରଖିଅଛୁଁ ।୧୦।

## ୨ୟ ବିଭାଗ

ଏବଂ ମନୁଷ୍ୟ ଅମଙ୍ଗଳ ପାଇଁ ପ୍ରାଥନା କରେ ଯେପରି ସେ ମଙ୍ଗଳ ପାଇଁ ପ୍ରାର୍ଥନା କରିଥାଏ ଏବଂ ମନୁଷ୍ୟ ସଦା ଅଧୀର ।୧୧।

ଏବଂ ଅମ୍ଭେ ରାତି ଓ ଦିନକୁ ଦୁଇଗୋଟି ନିଦର୍ଶନକରି ଅଛୁଁ, ତା ପରେ ଅମ୍ଭେ ରାତିର ନିଦର୍ଶନ ଅପସାରିତ କରୁଁ ଏବଂ ଦିନର ନିଦର୍ଶନ ପ୍ରତିଷ୍ଠିତ କରୁଁ ଯେପରି ତୁମ୍ଭେମାନେ ( ପରିଶ୍ରମକରି ) ନିଜ ପାଳନ କର୍ତ୍ତାଙ୍କର ଅନୁଗ୍ରହ ଅନୁସନ୍ଧାନ କର ଏବଂ ଯେପରି ତୁମ୍ଭେମାନେ ବର୍ଷର ଗଣନା ଓ ସଂଖ୍ୟା ଅବଗତ ହେବ; ଏବଂ ଅମ୍ଭେ ପ୍ରତ୍ୟେକ ବିଷୟକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରିଅଛୁଁ । ୧୨ ।

ଏବଂ ଅମ୍ଭେ ପ୍ରତ୍ୟେକ ମନୁଷ୍ୟର ସ୍କନ୍ଧରେ ତାହାର କୃତକର୍ମମାନ ସଂଯୁକ୍ତ କରି ଦେଇଅଛୁଁ, ଏବଂ ଅମ୍ଭେ ପୁନରୁତ୍ଥାନ ଦିବସରେ ତାହା ପାଇଁ ଗୋଟିଏ ପୁସ୍ତକ ପ୍ରକାଶ କରିବୁଁ ଯାହାକୁ ସେ ଖୋଲା ହୋଇ-ଥିବାର ଦେଖିବ । ୧୩ ।

( ତାହାକୁ କୁହାଯିବ ) ତୁମ୍ଭେ ତୁମ୍ଭର ପୁସ୍ତକ ପାଠକର, ତୁମ୍ଭର ହିସାବ ନେବାପାଇଁ ଅଜ ତୁମ୍ଭେହିଁ ଯଥେଷ୍ଟ । ୧୪ ।

ଯେ ସୁପଥଗାମୀହୁଏ ବାସ୍ତବରେ ସେ ନିଜ ପାଇଁ ସୁପଥଗାମୀହୁଏ, ଏବଂ ଯେ ବିପଥଗାମୀହୁଏ ବାସ୍ତବରେ ସେ କେବଳ ନିଜପାଇଁ ବିପଥଗାମୀ ହୋଇଥାଏ; ଏବଂ କୌଣସି ବହନକାରୀ ଅନ୍ୟଲୋକର ଭାର ବହନ କରିବନାହିଁ, ଏବଂ ଅମ୍ଭେ ପ୍ରେରିତ ପୁରୁଷ ପ୍ରେରଣ ନ କରିବା ପର୍ଯ୍ୟନ୍ତ କାହାରିକୁ ଶାସ୍ତି ପ୍ରଦାନ କରୁନା । ୧୫ ।

---

୧୧ । ମନୁଷ୍ୟ ଅଜ୍ଞତାବଶତଃ ଅମଙ୍ଗଳକୁ ମଙ୍ଗଳ ମନେ କରି ତରବରରେ ପ୍ରାର୍ଥନା କରିଥାଏ । ଉଦାହରଣସ୍ୱରୂପ, ମନୁଷ୍ୟ ଯେବେ ରୋଗାକ୍ରାନ୍ତ କିମ୍ବା ଶୋକସନ୍ତପ୍ତ ହୁଏ ସେ ତରବରରେ ମୃତ୍ୟୁକୁ ଡାକଥାଏ । ଅଉ ଅନେକ ସମୟରେ ଅନ୍ୟ ଉପରେ ବିରକ୍ତ ହୋଇ ତାହାର ଅନିଷ୍ଟ ପାଇଁ ପ୍ରାର୍ଥନା କରିଥାଏ । ଏ ଶ୍ଲୋକର ମର୍ମାନୁସାରେ ଏପରି ଅକଲ୍ୟାଣ ପ୍ରାର୍ଥନା କରିବା ନିଷିଦ୍ଧ ଅଟେ ।

୧୩.୧୪ । ପ୍ରତ୍ୟେକ ଲୋକର ଭଲମନ୍ଦ କାର୍ଯ୍ୟ ପୁସ୍ତକରେ ଲେଖା ହେଲପରି ତାହାର ସ୍କନ୍ଧରେ ସଂଯୁକ୍ତ ହେଉଅଛି ଏବଂ ଶେଷ ବିଚାର ଦିନ ତାହା ପୁସ୍ତକ ଆକାରରେ ତାହାର ସମ୍ମୁଖରେ ପ୍ରକାଶିତ ହେବ । ସୁତରାଂ ସାକ୍ଷୀ ପ୍ରମାଣ ନେବାର ଆବଶ୍ୟକ ହେବ ନାହିଁ । ସେ ନିଜେ ତାହା ବୁଝିପାରିବ ଏବଂ ସ୍ୱୀକାର କରିବାକୁ ବାଧ୍ୟ ହେବ ।

୧୫ ପ୍ରତ୍ୟେକ ଲୋକକୁ ତାହାର ନିଜ ନିଜ କର୍ମଫଳ ଭୋଗ କରିବାକୁ ହେବ । କୌଣସି ଲୋକ ଅନ୍ୟ ଲୋକର ଦାୟିତ୍ୱ ଗ୍ରହଣ କରିବ ନାହିଁ କିମ୍ବା ଏପରି କରିବାକୁ ଅନୁମତି ଦିଆଯିବ ନାହିଁ ।

୧୫ ପରମେଶ୍ୱର ପ୍ରଥମେ ପ୍ରେରିତ ପୁରୁଷଙ୍କ ଜରିଆରେ ଲୋକମାନଙ୍କୁ ଉପଦେଶ ପ୍ରଦାନ କରନ୍ତି; ଯେଉଁମାନେ ତାଙ୍କର ଉପଦେଶ ଗ୍ରହଣ ନ କରନ୍ତି ସେମାନେ ଶାସ୍ତି ଭୋଗର ପାତ୍ର ହୁଅନ୍ତି । ଦେଖ ଟୀକା ୨୧ଅଧ୍ୟାୟ ୧୦୭ ଶ୍ଲୋକ ଓ ୨୨ ଅଧ୍ୟାୟ ଶ୍ଲୋ ୨-୩ କ ।

ଏବଂ ଅମ୍ଭେ ଯେତେବେଳେ କୌଣସି ନଗରକୁ ଧ୍ୱଂସ କରିବାର ଇଚ୍ଛାକରୁଁ ସେତେବେଳେ ଅମ୍ଭେ ତାହାର ଧନୀଲୋକମାନଙ୍କୁ ( ପ୍ରଥମେ ) ଆଦେଶ କରିଥାଉଁ; କାରଣ ସେହି ମାନେହିଁ ସେଠାରେ ଦୁଷ୍କର୍ମ କରି ଥାଆନ୍ତି; ତା ପରେ ତାହାପ୍ରତି ଶାସ୍ତିର ବାକ୍ୟ ସିଦ୍ଧାନ୍ତ ହୁଏ; ସେତେବେଳେ ଅମ୍ଭେ ତାହାକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିଦେଉଁ । ୧୬ ।

ଏବଂ ନୂହଙ୍କ ପରେ ଅମ୍ଭେ କେତେ ସମ୍ପ୍ରଦାୟକୁ ଧ୍ୱଂସ କରିଅଛୁଁ, ଏବଂ ତୁମ୍ଭର ପାଳନ କର୍ତ୍ତା ନିଜ ସେବକମାନଙ୍କର ଅପରାଧମାନଙ୍କୁ ଜାଣିବା ଓ ଦେଖିବା ବିଷୟରେ ଯଥେଷ୍ଟ । ୧୭ ।

ଏବଂ ଯେ ଇହଜୀବନ କାମନାକରେ, ଅମ୍ଭେ ତାହାକୁ ନିଜ ଇଚ୍ଛା ଅନୁଯାୟୀ ଏହିଠାରେ ଅମ୍ଭର ଯାହାଇଚ୍ଛା ଶୀଘ୍ର ପ୍ରଦାନ କରିଥାଉଁ; ତା ପରେ ଅମ୍ଭେ ତାହା ପାଇଁ ନରକ ନିର୍ଦ୍ଦିଷ୍ଟ କରି ରଖିଅଛୁଁ; ସେଥିରେ ସେ ବିତାଡ଼ିତ ଓ ଘୃଣିତ ଭାବେ ନିକ୍ଷିପ୍ତ ହେବ । ୧୮ ।

ଏବଂ ଯେ ପରଲୋକ କାମନା କରେ ଏବଂ ସେଥିପାଇଁ ସେ ନିଜ ସାଧ୍ୟଅନୁଯାୟୀ ସାଧନା କରେ ଏବଂ ସେ ବିଶ୍ୱାସ କାରୀ ମଧ୍ୟ ଥାଏ, ତେବେ ସେମାନଙ୍କର ସାଧନା ଗୃହୀତ ହେବ । ୧୯ ।

ଅମ୍ଭେ ତୁମ୍ଭର ପାଳନକର୍ତ୍ତାଙ୍କର ଦାନରୁ ଏମାନଙ୍କୁ ଓ ସେମାନଙ୍କୁ, ସମସ୍ତଙ୍କୁ ସାହାଯ୍ୟ କରିଥାଉଁ ଏବଂ ତୁମ୍ଭର ପାଳନକର୍ତ୍ତାଙ୍କର ଦାନ ସୀମାବଦ୍ଧ ନୁହେ । ୨୦ ।

ଦେଖ କିପରି ଅମ୍ଭେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ଶ୍ରେଷ୍ଠତ୍ୱ ପ୍ରଦାନ କରିଅଛୁଁ; ଏବଂ ନିଶ୍ଚୟ ପରଲୋକର ଜୀବନ ମର୍ଯ୍ୟାଦାରେ ମହତ୍ତର ଓ ଶ୍ରେଷ୍ଠତ୍ୱରେ ବୃହତ୍ତର ଅଟେ । ୨୧ ।

( ହେ ମାନବ ) ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ସ୍ଥିର କରନା, ନଚେତ୍ ତୁମ୍ଭେ ଅପମାନିତ ଓ ଉପେକ୍ଷିତ ହୋଇ ବସି ରହିବ । ୨୨ ।

## ୩ୟ ବିଭାଗ

ଏବଂ ତୁମ୍ଭର ପାଳନକର୍ତ୍ତା ଆଦେଶ କରି ଅଛନ୍ତି ଯେ ତୁମ୍ଭେମାନେ ତାଙ୍କ ବ୍ୟତୀତ ଅନ୍ୟ କାହାକୁ ଉପାସନା କରନା ଏବଂ ପିତାମାତାଙ୍କ ସହିତ ସଦ୍‌ବ୍ୟବହାର କର, ଯଦି ସେମାନଙ୍କ ମଧ୍ୟରୁ କେହି କିମ୍ବା

---

୧୬ । ନଗର ଧ୍ୱଂସର କାରଣ—୧୫ଶ ଶ୍ଳୋକରେ ବର୍ଣ୍ଣିତ ପ୍ରେରିତ ପୁରୁଷଙ୍କ ଉପଦେଶ ପ୍ରତି ଅବିଶ୍ୱାସ ଓ ଅବାଧ୍ୟତା ।
ତାହା ପ୍ରତି—ସେହି ନଗର ପ୍ରତି ।
ତାହାକୁ—ସେହି ନଗରକୁ ।
ମହାପୁରୁଷ ମୋହମ୍ମଦଙ୍କ ପରେ ଆଉ ଧର୍ମ ପ୍ରବର୍ତ୍ତକ ଅବତୀର୍ଣ୍ଣ ହେବେ ନାହିଁ, ମାତ୍ର ତାଙ୍କ ଶିଷ୍ୟମାନେ ପୃଥିବୀର ଶେଷକାଳ ପର୍ଯ୍ୟନ୍ତ ଇସଲାମ ଧର୍ମ ଓ କୋରାନର ଆଦେଶ ସନ୍ଦେଶ ପ୍ରଚାର କରୁଥିବେ ।

୧୭ । ମହାପୁରୁଷ ନୂହଙ୍କ ଜଳପ୍ଳାବନ ଘଟଣା ସୃଷ୍ଟିର ଇତିହାସରେ ଗୋଟିଏ ନୂତନ ଅଧ୍ୟାୟ ଅଟେ । ମାତ୍ର ତଥାପି ମହାତ୍ମା ନୂହଙ୍କ ପରେ ଅନେକ ସମ୍ପ୍ରଦାୟ ସେମାନଙ୍କ ପାପାଚାର ଯୋଗୁ ନିପାତ ହୋଇ ଯାଇଅଛନ୍ତି ।

୧୮।୧୯ ଦେଖ ୧୧ ଅଧ୍ୟାୟ ଶ୍ଳୋ୧୫,୧୬ କ ।

୨୦ । ଯେଉଁ ଲୋକ ପାର୍ଥିବ ସୁଖ କାମନା କରି ସେଥିପାଇଁ ଯତ୍ନ କରେ ପରମେଶ୍ୱର ତାକୁ ସାହାଯ୍ୟ କରନ୍ତି ଏବଂ ଯେ ପରଲୋକର ସୁଖ କାମନା କରି ସେଥିପାଇଁ ପରିଶ୍ରମ କରେ ତାକୁ ମଧ୍ୟ ପରମେଶ୍ୱର ସାହାଯ୍ୟ କରନ୍ତି । କାହାର ପରିଶ୍ରମ ବିଫଳ ହୁଏ ନାହିଁ ।
ଏମାନଙ୍କୁ—ପରମେଶ୍ୱରଙ୍କଠାରେ ବିଶ୍ୱାସକାରୀମାନଙ୍କୁ ।
ସେମାନଙ୍କୁ—ପରମେଶ୍ୱରଙ୍କ ପ୍ରତି ଅବିଶ୍ୱାସକାରୀମାନଙ୍କୁ ।

୨୩।୨୪-ଏହି ଶ୍ଳୋକମାନଙ୍କରେ ପିତା ମାତାଙ୍କ ପ୍ରତି କର୍ତ୍ତବ୍ୟ ବର୍ଣ୍ଣିତ ହୋଇଅଛି ।

ଉଭୟେ ତୁମ୍ଭମାନଙ୍କ ସମ୍ମୁଖରେ ବୃଦ୍ଧାବସ୍ଥାରେ ଉପସ୍ଥିତ ହୁଅନ୍ତି ତେବେ ସେମାନଙ୍କୁ 'ଉଃ' ବୋଲି କୁହନା କିମ୍ବା ସେମାନଙ୍କୁ ତିରସ୍କାର କରନା ଏବଂ ସେମାନଙ୍କ ପ୍ରତି ସମ୍ମାନ ସୂଚକ କଥା କୁହ । ୨୩ ।

ଏବଂ ସେମାନଙ୍କ ଉଭୟଙ୍କ ପ୍ରତି ସଦୟ ବିନୀତ ବ୍ୟବହାର କର ଏବଂ କୁହ, "ହେ ଆମ୍ଭର ପାଳନ-କର୍ତ୍ତା, ସେମାନେ ଯେପରି ଶୈଶବରେ ଆମ୍ଭଙ୍କୁ ପାଳନ କରିଥିଲେ ସେହିପରି ତୁମ୍ଭେ ସେମାନଙ୍କ ପ୍ରତି କରୁଣା କର" । ୨୪ ।

ତୁମ୍ଭମାନଙ୍କର ଅନ୍ତରରେ ଯାହା ଅଛି ତୁମ୍ଭମାନଙ୍କର ପାଳନକର୍ତ୍ତା ତାହା ଅବଗତ ଅଛନ୍ତି, ଯଦି ତୁମ୍ଭେମାନେ ସତ୍‌କର୍ମଶୀଳ ହୁଅ ତେବେ ନିଶ୍ଚୟ ସେ ଅନୁତାପକାରୀମାନଙ୍କ ପ୍ରତି କ୍ଷମାଶୀଳ । ୨୫ ।

ଏବଂ ଆତ୍ମୀୟ ସ୍ୱଜନଙ୍କୁ ସେମାନଙ୍କର ପ୍ରାପ୍ୟ ପ୍ରଦାନ କର ଏବଂ ଦୀନଦରିଦ୍ର ଓ ପଥିକମାନଙ୍କୁ ମଧ୍ୟ, ଏବଂ ଅଯଥା ଅପବ୍ୟୟ କରନା । ୨୬ ।

ନିଶ୍ଚୟ ଅପବ୍ୟୟୀମାନେ ସଇତାନ ମାନଙ୍କର ଭାଇ ଅଟନ୍ତି ଏବଂ ସଇତାନ ତାହାର ପାଳନ-କର୍ତ୍ତାଙ୍କର ଅକୃତଜ୍ଞ ଅଟେ । ୨୭ ।

ଏବଂ ଯଦି ତୁମ୍ଭେ ତୁମ୍ଭର ଆଶା ଅନୁରୂପ ତୁମ୍ଭର ପାଳନକର୍ତ୍ତାଙ୍କ କରୁଣା ଲାଭ ନହେବା ଯୋଗୁଁ ସେମାନଙ୍କ ପ୍ରତି ବିମୁଖ ହୁଅ, ତେବେ ସେମାନଙ୍କ ସହିତ ଭଦ୍ର ଭାବରେ କଥା କୁହ । ୨୮ ।

ଏବଂ ତୁମ୍ଭେ ନିଜହସ୍ତ ତୁମ୍ଭ ସ୍କନ୍ଧ ସହିତ ସଂଲଗ୍ନ କରନା, ଅଥବା ତାହାକୁ ଉନ୍ମୁକ୍ତ ଭାବରେ ପ୍ରସାରିତ କରନା, ନଚେତ୍ ତୁମ୍ଭେ ଅନୁତପ୍ତ ଓ ତିରସ୍କୃତ ହୋଇ ବସି ରହିବ । ୨୯ ।

ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ଯାହାପାଇଁ ଇଚ୍ଛା ଜୀବିକା ପ୍ରଶସ୍ତ କରନ୍ତି ଏବଂ ସଙ୍କୁଚିତ ମଧ୍ୟ କରନ୍ତି, ନିଶ୍ଚୟ ସେ ତାଙ୍କର ସେବକମାନଙ୍କ ପ୍ରତି ସତର୍କ ଓ ଲକ୍ଷ୍ୟକାରୀ । ୩୦ ।

## ୪ର୍ଥ ବିଭାଗ

ଏବଂ ତୁମ୍ଭେମାନେ ଅଭାବ ଆଶଙ୍କାରେ ନିଜ ସନ୍ତାନମାନଙ୍କୁ ହତ୍ୟାକରନା; ଆମ୍ଭେହିଁ ସେମାନଙ୍କୁ ଓ ତୁମ୍ଭମାନଙ୍କୁ ଜୀବିକା ଦାନ କରୁଁ, ନିଶ୍ଚୟ ସେମାନଙ୍କୁ ହତ୍ୟା କରିବା ଗୁରୁତର ଅପରାଧ । ୩୧ ।

ଏବଂ ତୁମ୍ଭେମାନେ ବ୍ୟଭିଚାରର ନିକଟବର୍ତ୍ତୀ ହୁଅନା, ନିଶ୍ଚୟ ଏହା ଅଶ୍ଳୀଳତା ଓ କୁପଥ । ୩୨ ।

ଏବଂ ତୁମ୍ଭେମାନେ ନ୍ୟାୟସଙ୍ଗତ କାରଣ ବ୍ୟତୀତ କାହାରିକୁ ହତ୍ୟା କରନା, ( କାରଣ ) ପରମେଶ୍ୱର ଏହାକୁ ଅବୈଧ କରି ଅଛନ୍ତି; ଏବଂ ଯେ ଅନ୍ୟାୟ ଭାବରେ ନିହତ ହୁଏ ତେବେ ନିଶ୍ଚୟ ଆମ୍ଭେ ତାହାର ଉତ୍ତରାଧିକାରୀକୁ ( ହତ୍ୟାକାରୀଠାରୁ ପ୍ରତିଶୋଧ ଦାବୀର ) ଅଧିକାର ଦେଇଅଛୁ, ମାତ୍ର

---

୨୮ । ଯଦି ନିଜର ଅଭାବ ହେତୁ ଆତ୍ମୀୟସ୍ୱଜନ, ଦୀନଦରିଦ୍ର ଓ ପଥିକମାନଙ୍କୁ ସାହାଯ୍ୟ କରିବାକୁ ଅକ୍ଷମ ହୁଅ, ତେବେ ଭଦ୍ର ବାକ୍ୟ ଦ୍ୱାରା ସେମାନଙ୍କୁ ସନ୍ତୁଷ୍ଟ କରିବା ଆବଶ୍ୟକ ।

୨୯ । ପୁଣ୍ୟ କାର୍ଯ୍ୟରେ ଦାନ କରିବା ବିଷୟରେ ମଧ୍ୟ ମଧ୍ୟମ ପନ୍ଥା ଅବଲମ୍ବନ କରିବା ବିଧେୟ । କୃପଣତା ହେତୁ ଶକ୍ତି ଥାଉଁ ଥାଉଁ ପୁଣ୍ୟ କାର୍ଯ୍ୟରେ ଦାନରୁ ବିରତ ହେବା ଯେପରି ଅନୁଚିତ ସେହିପରି ଶକ୍ତିର ବହିର୍ଭୂତ ଅଯଥା ଦାନ ଦ୍ୱାରା ସର୍ବସ୍ୱାନ୍ତ ହେବା ଅନୁଚିତ । ଶେଷୋକ୍ତ କାର୍ଯ୍ୟଦ୍ୱାରା ମନସ୍ତାପ କରିବାକୁ ପଡେ ଏବଂ କୃପଣତା ଦ୍ୱାରା ଲୋକମାନଙ୍କ ତିରସ୍କାର ସହିବାକୁ ହୁଏ ।

ଯେପରି ସେ ନରହତ୍ୟାର [ ପ୍ରତିଶୋଧ ] ସମ୍ବନ୍ଧରେ ସୀମାଲଙ୍ଘନ ନକରେ, କାରଣ ସେ ( ଏହି ବ୍ୟବସ୍ଥା-ଦ୍ୱାରା ) ସାହାଯ୍ୟ ପ୍ରାପ୍ତ ହୋଇଅଛି । ୩୩ ।

ଏବଂ ସଦ୍ ଉଦ୍ଦେଶ୍ୟ ବ୍ୟତୀତ ତୁମ୍ଭେମାନେ ଅନାଥର ଧନ ସମ୍ପଦର ନିକଟବର୍ତ୍ତୀ ହୁଅନା ଯେ ପର୍ଯ୍ୟନ୍ତ ସେ ବୟଃପ୍ରାପ୍ତ ନହୁଏ; ଏବଂ ଅଙ୍ଗୀକାର ପୂର୍ଣ୍ଣକର, ନିଶ୍ଚୟ ତୁମ୍ଭମାନଙ୍କ ଅଙ୍ଗୀକାର ସମ୍ବନ୍ଧରେ ପ୍ରଶ୍ନ କରାହେବ । ୩୪ ।

ଏବଂ ଯେତେବେଳେ ତୁମ୍ଭେମାନେ ମାପକର ସେତେବେଳେ ପୂର୍ଣ୍ଣ ମାତ୍ରାରେ ଦିଅ, ଏବଂ ଖାଣ୍ଟି ତୁଳାଦଣ୍ଡରେ ଓଜନ କର, ଏହାହିଁ ପରିଣାମରେ ଉତ୍ତମ ଓ କଲ୍ୟାଣ କର । ୩୫ ।

ଏବଂ ଯେଉଁ ବିଷୟରେ ତୁମ୍ଭମାନଙ୍କର ଜ୍ଞାନ ନାହିଁ, ତାହାର ଅନୁସରଣ କରନା, ନିଶ୍ଚୟ କର୍ଣ୍ଣ ଓ ଚକ୍ଷୁ ଏବଂ ଅନ୍ତଃକରଣ, ଏ ସବୁଙ୍କୁ ସେ ବିଷୟରେ ପ୍ରଶ୍ନ କରା ହେବ । ୩୬ ।

ଏବଂ ତୁମ୍ଭେମାନେ ପୃଥିବୀରେ ଗର୍ବସହିତ ପଦଚାରଣ କରନା, ଯେହେତୁ ତୁମ୍ଭେ ଭୂଖଣ୍ଡ ଭେଦ କରି ପାରିବ ନାହିଁ, ଅଥବା ପର୍ବତର ଉଚ୍ଚତାରେ ଉପସ୍ଥିତ ହୋଇ ପାରିବନାହିଁ । ୩୭ ।

ଏ ସମସ୍ତ ଅନ୍ୟାୟ ବିଷୟ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରେ ଘୃଣା ଜନକ । ୩୮ ।

ତୁମ୍ଭର ପାଳନକର୍ତ୍ତା ଜ୍ଞାନରୁ ତୁମ୍ଭ ପ୍ରତି ଏହା ଅବତୀର୍ଣ୍ଣ କରିଅଛନ୍ତି; ଏବଂ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ସ୍ଥିର କରନା, ନଚେତ୍ ତୁମ୍ଭେ ବିତାଡ଼ିତ ଓ ଘୃଣିତ ଭାବରେ ନରକରେ ନିକ୍ଷିପ୍ତ ହେବ । ୩୯ ।

ତେବେ କଅଣ ତୁମ୍ଭମାନଙ୍କର ପାଳନକର୍ତ୍ତା ତୁମ୍ଭମାନଙ୍କ ପାଇଁ ପୁତ୍ରମାନଙ୍କୁ ନିର୍ବାଚିତ କରିଅଛନ୍ତି ଏବଂ ନିଜପାଇଁ ସ୍ୱର୍ଗଦୂତମାନଙ୍କ ମଧ୍ୟରୁ କନ୍ୟାମାନଙ୍କୁ ଗ୍ରହଣ କରିଅଛନ୍ତି ? ନିଶ୍ଚୟ ତୁମ୍ଭେମାନେ ଅତି ଗୁରୁତର ବିଷୟ କହୁଅଛ । ୪୦ ।

## ୫ମ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ଏହି କୋରାନରେ ( ଉପଦେଶମାନ ) ବାରମ୍ବାର ବର୍ଣ୍ଣନା କରୁଅଛୁଁ ଯେପରି ସେମାନେ ହୃଦୟଙ୍ଗମ କରିବେ, କିନ୍ତୁ ଏହାଦ୍ୱାରା ସେମାନଙ୍କର ଅଶ୍ରଦ୍ଧା ବର୍ଦ୍ଧିତ ହେବା ବ୍ୟତୀତ ଅନ୍ୟ କିଛି ହେଉନାହିଁ । ୪୧ ।

ତୁମ୍ଭେକୁହ, "ଯଦି ତାଙ୍କ ସହିତ ଅନ୍ୟ ଉପାସ୍ୟମାନେ ଥାନ୍ତେ ଯେପରି ସେମାନେ କହୁଅଛନ୍ତି, ତେବେ ନିଶ୍ଚୟ ସେମାନେ ସିଂହାସନର ଅଧିକାରୀଙ୍କ ବିରୁଦ୍ଧରେ ପଥ ଅନ୍ୱେଷଣ କରିବାରେ ସକ୍ଷମ ହୋଇଥାନ୍ତେ ।" ୪୨ ।

---

୩୩ । ନ୍ୟାୟସଙ୍ଗତ କାରଣ—ହତ୍ୟାକାରୀକୁ ଫାଶି ଦଣ୍ଡ ଦେବା, ଯୁଦ୍ଧରେ ଶତ୍ରୁମାନଙ୍କୁ ହତ୍ୟା କରିବା ଏବଂ ଅନ୍ୟାୟ ଭାବରେ ଆକ୍ରମଣକାରୀର କବଳରୁ ଆତ୍ମରକ୍ଷା ନିମନ୍ତେ ବାଧ୍ୟ ହୋଇ ତାହାର ପ୍ରାଣ ନାଶ କରିବା । ପ୍ରତିଶୋଧ ସମ୍ବନ୍ଧରେ ୨ୟ ଅଧ୍ୟାୟର ୧୭୮ ଶ୍ଳୋକ ଓ ତହିଁର ଟୀକା ଦେଖ ।

୩୯ । ଏହା—୨୩ରୁ ୩୯ଶ୍ଳୋକରେ ଥିବା ଉପଦେଶମାନ ।

୪୦ । ଦେଖ ଟୀକା ୧୬ଶ ଅଧ୍ୟାୟ ଶ୍ଳୋ୫୭ କ ।

୪୧ । ଉପଦେଶ ହୃଦୟଙ୍ଗମ କରିବା କଥା ତେଣିକି ଥାଉ ସେମାନେ କୋରାନ ଶୁଣି ସତ୍ୟ ଓ ନ୍ୟାୟ କଥାରୁ ଦୂରକୁ ଚାଲି ଯାଉଅଛନ୍ତି ।

୪୨-୪୪-ଗୋଟିଏ ରାଜ୍ୟ ମଧ୍ୟରେ ଏକାଧିକ ରାଜା ରହିଲେ ରାଜ୍ୟଶାସନ ଶୃଙ୍ଖଳାର ସହିତ ଚାଲି ନପାରି ଅରାଜକତା ବିରାଜମାନ କରେ । ସେହିପରି ଯଦି ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ସ୍ଥିତି ଲୟର ଅଧିକାରୀ ଏକ ନହୋଇ ଏକାଧିକ

ସେ ପବିତ୍ରତମ ଏବଂ ସେମାନେ ଯାହା କହନ୍ତି ସେ ତାହାଠାରୁ ଅତି ଉଚ୍ଚ ଓ ଅତି ମହାନ ।୪୩।

ସପ୍ତ ଆକାଶ ଓ ପୃଥିବୀ ଏବଂ ସେମାନଙ୍କ ମଧ୍ୟରେ ଯାହା କିଛି ଅଛି ତାଙ୍କର ମହିମା କୀର୍ତ୍ତନ କରୁଅଛି; ଏବଂ ଏପରି କୌଣସି ପଦାର୍ଥ ନାହିଁ ଯେକି ତାଙ୍କର ପ୍ରଶଂସା ସହିତ ତାଙ୍କର ମହିମା କୀର୍ତ୍ତନ କରୁନାହିଁ, କିନ୍ତୁ ତୁମ୍ଭେମାନେ ସେମାନଙ୍କର ମହିମା କୀର୍ତ୍ତନକୁ ହୃଦୟଙ୍ଗମ କରିପାରୁନାହଁ; ନିଶ୍ଚୟ ସେ ଧୈର୍ଯ୍ୟଶୀଳ କରୁଣାମୟ । ୪୪ ।

ଏବଂ ଯେତେବେଳେ ତୁମ୍ଭେ କୋରାନ ପାଠ କର ସେତେବେଳେ ଆମ୍ଭେ ତୁମ୍ଭ ମଧ୍ୟରେ ଏବଂ ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ମଧ୍ୟରେ ଏକ ସଂଗୋପନକାରୀ ଆବରଣ ସ୍ଥାପନ କରୁଁ । ୪୫ ।

ଏବଂ ଆମ୍ଭେ ସେମାନଙ୍କର ହୃଦୟମାନଙ୍କରେ ଆଚ୍ଛାଦନ ଏବଂ କର୍ଣ୍ଣମାନଙ୍କରେ ଗୁରୁଭାର ସ୍ଥାପନ କରୁଁ ଯେପରି ସେମାନେ ତାହା ହୃଦୟଙ୍ଗମ କରିପାରିବେ ନାହିଁ; ଏବଂ ଯେତେବେଳେ ତୁମ୍ଭେ କୋରାନରେ ତୁମ୍ଭର ଏକମାତ୍ର ପାଳନକର୍ତ୍ତାଙ୍କ ବର୍ଣ୍ଣନା କର ସେତେବେଳେ ସେମାନେ ଅବଜ୍ଞାରେ ପଛକୁ ପଳାୟନ କରନ୍ତି । ୪୬ ।

ଯେତେବେଳେ ସେମାନେ ତୁମ୍ଭପ୍ରତି କର୍ଣ୍ଣପାତ କରନ୍ତି, ସେମାନେ ଯେଉଁ ସକାଶେ ତାହା ଶ୍ରବଣ କରନ୍ତି ତାହା ଆମ୍ଭେ ଜାଣୁଁ, ଏବଂ ଯେତେବେଳେ ସେମାନେ ଗୁପ୍ତ ମନ୍ତ୍ରଣା କରନ୍ତି ସେତେବେଳେ ଅତ୍ୟାଚାରୀମାନେ କହନ୍ତି, "ତୁମ୍ଭେମାନେ ଜଣେ ଯାଦୁଗ୍ରସ୍ତ ବ୍ୟକ୍ତି ଛଡ଼ା ଅନ୍ୟ କାହାର ଅନୁସରଣ କରୁନାହଁ" । ୪୭ ।

ଦେଖ, ସେମାନେ ତୁମ୍ଭପାଇଁ କିପରି ଉପମାମାନ ପ୍ରୟୋଗ କରୁଅଛନ୍ତି ! ଯେହେତୁ ସେମାନେ ବିଭ୍ରାନ୍ତ ହୋଇ ଅଛନ୍ତି, ତାପରେ ସେମାନେ ପଥପ୍ରାପ୍ତ ହେବେ ନାହିଁ । ୪୮ ।

ଏବଂ ସେମାନେ କହନ୍ତି, "କଅଣ, ଯେତେବେଳେ ଆମ୍ଭେମାନେ ହାଡ଼ ଓ ମାଟିରେ ପରିଣତ ହୋଇଯାଇଥିବୁଁ ସେତେବେଳେ କଅଣ ବାସ୍ତବରେ ଆମ୍ଭେମାନେ ନୂତନ ସୃଷ୍ଟିରୂପେ ଜୀବିତ ହେବୁଁ" ।୪୯।

---

ହୋଇଥାନ୍ତେ ତେବେ ନିଜ ନିଜ ପ୍ରଭୁତ୍ୱ ପ୍ରତିଷ୍ଠିତ କରିବା ପାଇଁ ସେମାନଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗନ୍ତା, ଫଳରେ ବିଶ୍ୱବ୍ରହ୍ମାଣ୍ଡର କାର୍ଯ୍ୟମାନ ନିର୍ଦ୍ଦିଷ୍ଟ ନିୟମ ଓ ଶୃଙ୍ଖଳାର ସହିତ ଚାଲିପାରନ୍ତା ନାହିଁ । ମାତ୍ର ଏହି ବିଶ୍ୱବ୍ରହ୍ମାଣ୍ଡର କାର୍ଯ୍ୟମାନ ଯେପରି ନିର୍ଦ୍ଦିଷ୍ଟ ନିୟମ ଓ ଶୃଙ୍ଖଳାର ସହିତ ଚାଲି ଆସୁଥିବାର ଆମ୍ଭେମାନେ ଦେଖୁଅଛୁଁ ସେଥିରୁ ଜଣାଯାଉ ଅଛି ଯେ ଏହି ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିସ୍ଥିତି ଲୟର ଅଧିକାରୀ ଏକ ଓ ଅଦ୍ୱିତୀୟ । ସେହି ଅମ୍ଭମାନଙ୍କର ପରମାତ୍ମା ପରମେଶ୍ୱର, ତାଙ୍କର ସମକକ୍ଷ ଅନ୍ୟ ପରମେଶ୍ୱର କେହି ନାହିଁ ।

୨୧ ଅଧ୍ୟାୟର ୨୨ଶ୍ଳୋକ ଦେଖ ।

୪୫ । ଅବିଶ୍ୱାସକାରୀମାନେ ଅବିଶ୍ୱାସରେ ଦୃଢ଼ ହେବାରୁ ସତ୍ୟ ହୃଦୟଙ୍ଗମ କରିବାର ଶକ୍ତି ସେମାନଙ୍କର ଲୋପ ପାଇଯାଏ । ସୁତରାଂ ପବିତ୍ର କୋରାନର ସଦୁପଦେଶ ହୃଦୟଙ୍ଗମ ଓ ଗ୍ରହଣ କରିବା ବିଷୟରେ ଏହା ଆବରଣ ସ୍ୱରୂପ କାର୍ଯ୍ୟ କରେ ।

୪୬ । ଏକମାତ୍ର ପାଳନକର୍ତ୍ତାଙ୍କୁ ବର୍ଣ୍ଣନା କର—ଏକମାତ୍ର ଅଦ୍ୱିତୀୟ ପରମେଶ୍ୱରଙ୍କ ଗୁଣକୀର୍ତ୍ତନ କର ଏବଂ ଅଂଶୀ ଉପାସ୍ୟ ସ୍ଥିର କରିବାକୁ ନିଷେଧ କର ।

୪୯–୫୧ ଯେଉଁମାନେ ପରଲୋକରେ ପୁନର୍ଜୀବନ ଲାଭ ଓ ପୁନରୁତ୍‌ଥାନକୁ ଅସ୍ୱୀକାର କରନ୍ତି ସେମାନଙ୍କୁ କୁହାଯାଉଅଛି ଯେ ଏହା ଅସମ୍ଭବ ନୁହେ । ଯେଉଁ ପରମେଶ୍ୱର ମାନବକୁ ପ୍ରଥମବାର ସୃଷ୍ଟିକରିଅଛନ୍ତି ସେ ତାହାର ମୃତ୍ୟୁ ପରେ ତାକୁ ପୁନର୍ଜୀବନ ଦାନ କରିବାକୁ ସକ୍ଷମ ଅଟନ୍ତି ।

ପଥର କିମ୍ବା ଲୁହା ପରି କଠିନ ହୋଇଗଲେ ମଧ୍ୟ ପୁନର୍ଜୀବନ ନିଶ୍ଚୟ ଘଟିବ ।

ତୁମ୍ଭେ କୁହ, "ତୁମ୍ଭେମାନେ ପ୍ରସ୍ତର ଅଥବା ଲୌହ ହୋଇଯାଅ,—୫୦ ।

"ଅଥବା ଅନ୍ୟ କୌଣସି ସୃଷ୍ଟ ପଦାର୍ଥ ହୋଇଯାଅ, ଯାହା ତୁମ୍ଭମାନଙ୍କ ବିବେଚନାରେ ପୁନର୍ଜୀବନ ଲାଭ ପାଇଁ କଠିନତର"; ସେତେବେଳେ ସେମାନେ କହିବେ, "କିଏ ଆମ୍ଭମାନଙ୍କୁ ଫେରାଇ ଆଣିବ ?" ତୁମ୍ଭେ କହିଦିଅ, "ଯେ ତୁମ୍ଭମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲେ;" ତଥାପି ସେମାନେ ତୁମ୍ଭଆଡ଼କୁ ମୁଣ୍ଡ ହଲାଇବେ ଏବଂ କହିବେ, "ଏହା କେବେ ହେବ ?" ତୁମ୍ଭେ କୁହ, "ସମ୍ଭବତଃ ଏହା ନିକଟ ଭବିଷ୍ୟତରେ ଶୀଘ୍ର ସଂଘଟିତ ହେବ ।" ୫୧ ।

"ଯେଉଁଦିନ ସେ ତୁମ୍ଭମାନଙ୍କୁ ଆହ୍ୱାନ କରିବେ, ତାପରେ ତୁମ୍ଭେମାନେ ତାଙ୍କର ପ୍ରଶଂସା ସହିତ ତାଙ୍କର ଆଜ୍ଞା ପାଳନ କରିବ ଏବଂ ତୁମ୍ଭେମାନେ ଅନୁଭବ କରିବ ଯେ ସଂସାରରେ କେବଳ ଅତ୍ୟଳ୍ପ ସମୟ ତୁମ୍ଭେମାନେ ଅବସ୍ଥାନ କରିଅଛ ।" ୫୨ ।

## ଷଷ୍ଠ ବିଭାଗ

ଏବଂ ତୁମ୍ଭେ ଆମ୍ଭର ସେବକମାନଙ୍କୁ କହିଦିଅ, ଯେପରି ସେମାନେ ଏପରି ବାକ୍ୟ ବ୍ୟବହାର କରିବେ ଯାହା ଉତ୍କୃଷ୍ଟତର; ନିଶ୍ଚୟ ସଇତାନ ସେମାନଙ୍କ ମଧ୍ୟରେ ବିରୋଧ ସୃଷ୍ଟି କରେ; ନିଶ୍ଚୟ ସଇତାନ ମନୁଷ୍ୟର ପ୍ରକାଶ୍ୟ ଶତ୍ରୁ । ୫୩ ।

ତୁମ୍ଭମାନଙ୍କର ପାଳନକର୍ତ୍ତା ତୁମ୍ଭମାନଙ୍କୁ ଭଲରୂପେ ଜାଣନ୍ତି; ଯଦି ସେ ଇଚ୍ଛା କରନ୍ତି ତେବେ ସେ ତୁମ୍ଭମାନଙ୍କୁ ଅନୁଗୃହୀତ କରିବେ, ଅଥବା ଯଦି ସେ ଇଚ୍ଛା କରନ୍ତି ତେବେ ତୁମ୍ଭମାନଙ୍କୁ ଶାସ୍ତି ଦେବେ; ଏବଂ ଆମ୍ଭେ ତୁମ୍ଭକୁ ସେମାନଙ୍କର ଜାମିନରୂପେ ପଠାଇ ନାହୁଁ । ୫୪ ।

ଏବଂ ଆକାଶମଣ୍ଡଳ ଓ ଭୂମଣ୍ଡଳ ମଧ୍ୟରେ ଯାହା କିଛି ଅଛି ତୁମ୍ଭର ପାଳନକର୍ତ୍ତା ତାହା ଜାଣନ୍ତି; ଏବଂ ନିଶ୍ଚୟ ଆମ୍ଭେ ଧର୍ମପ୍ରବର୍ତ୍ତକମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କ ଉପରେ ଶ୍ରେଷ୍ଠତ୍ୱ ଦାନ କରିଅଛୁଁ ଏବଂ ଆମ୍ଭେ ଦାଉଦଙ୍କୁ ଜବୁର ଦାନ କରିଅଛୁଁ ୫୫ ।

ତୁମ୍ଭେ କୁହ, "ତାଙ୍କ ବ୍ୟତୀତ ତୁମ୍ଭେମାନେ ଯେଉଁମାନଙ୍କୁ ଉପାସ୍ୟ ବୋଲି ଅନୁମାନ କରିଥାଅ, ସେମାନଙ୍କୁ ଆହ୍ୱାନ କର; ବାସ୍ତବରେ ତୁମ୍ଭମାନଙ୍କର କଷ୍ଟ ନିବାରଣ ଅଥବା ପରିବର୍ତ୍ତନ କରିବାର ଶକ୍ତି ସେମାନଙ୍କର ନାହିଁ ।" ୫୬ ।

ସେମାନେ ଯେଉଁମାନଙ୍କୁ ଆହ୍ୱାନ କରନ୍ତି ସେହିମାନେ ତ ସେମାନଙ୍କର ପାଳନକର୍ତ୍ତାଙ୍କର ନିକଟବର୍ତ୍ତୀ ହେବାର ଉପାୟ ଖୋଜିଥାନ୍ତି, ଯେପରି ସେମାନଙ୍କ ମଧ୍ୟରେ କିଏ ତାଙ୍କର ନିକଟତମ ହେବ ଏବଂ ସେମାନେ ତାଙ୍କର କରୁଣା କାମନା କରନ୍ତି ଏବଂ ତାଙ୍କର ଶାସ୍ତିର ଆଶଙ୍କା କରିଥାନ୍ତି; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତାଙ୍କର ଶାସ୍ତି ଭୟଙ୍କର । ୫୭ ।

---

୫୨ । ଅବସ୍ଥାନ କରିଅଛ—ରହିଅଛ, ୭୯ ଅଧ୍ୟାୟ ୪୬ଶ୍ଳୋକର ଟୀକା ଦେଖ ।

୫୪ । ଆମ୍ଭେ—ପରମେଶ୍ୱର, ତୁମ୍ଭକୁ—ମହାପୁରୁଷ ମୋହମ୍ମଦଙ୍କୁ, ପ୍ରତିଭୂ—ଦାୟିତ୍ୱ ଗ୍ରହଣକାରୀ ।

୫୫ । 'ଜବୁର' ମହାପୁରୁଷ ଦାଉଦଙ୍କ ପ୍ରତି ଅବତୀର୍ଣ୍ଣ ଧର୍ମଗ୍ରନ୍ଥର ନାମ ।

୫୬ । ତାଙ୍କ ବ୍ୟତୀତ—ପରମେଶ୍ୱରଙ୍କ ବ୍ୟତୀତ ।

୫୭ । ଯେଉଁମାନଙ୍କୁ ଆହ୍ୱାନ କରନ୍ତି ଅର୍ଥାତ୍ ଅଂଶୀ ଉପାସ୍ୟମାନଙ୍କୁ ଯଥା ସ୍ୱର୍ଗଦୂତ, ଦେବଦେବୀ, ସାଧୁସନ୍ନ୍ୟାସୀ ଇତ୍ୟାଦି ।
ଏମାନେ ନିଜେ ପରମେଶ୍ୱରଙ୍କ କରୁଣା ଲାଭପାଇଁ ଲାଳାୟିତ ଏବଂ ସେଥିପାଇଁ ତାଙ୍କୁ ଉପାସନା କରନ୍ତି, ସୁତରାଂ ସେମାନେ ଉପାସ୍ୟ ହେବାର ଉପଯୁକ୍ତ ନୁହନ୍ତି ।

ଏବଂ ଏପରି କୌଣସି ନଗର ନାହିଁ ଯାହାକୁ ଆମ୍ଭେ ପୁନରୁତ୍ଥାନ ଦିବସ ପୂର୍ବରୁ ଧ୍ୱଂସ ଅଥବା କଠୋର ଶାସ୍ତି ନଦେବୁଁ; ଏହା ଲିଖିତ ଗ୍ରନ୍ଥ ମଧ୍ୟରେ ରହିଅଛି । ୫୮ ।

ଏବଂ ଅମ୍ଭେ ନିଦର୍ଶନମାନ ଏଥିପାଇଁ ପଠାଉନା ଯେ ପୂର୍ବବର୍ତ୍ତୀ ଲୋକମାନେ ଏଥିପ୍ରତି ମିଥ୍ୟାରୋପ କରିଥିଲେ; ଏବଂ ଅମ୍ଭେ ସମୁଦ୍ ସମ୍ପ୍ରଦାୟକୁ ନିଦର୍ଶନ ସ୍ୱରୂପ ଉଷ୍ଟ୍ରୀ ପଠାଇଥିଲୁଁ, କିନ୍ତୁ ସେମାନେ ତାହାପ୍ରତି ଅତ୍ୟାଚାର କରିଥିଲେ; ଏବଂ ଅମ୍ଭେ କେବଳ ଭୟ ପ୍ରଦର୍ଶନ ପାଇଁ ନିଦର୍ଶନମାନ ପଠାଉଁ ।୫୯।

ଏବଂ ଯେତେବେଳେ ଅମ୍ଭେ ତୁମ୍ଭକୁ କହିଥିଲୁଁ ଯେ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମାନବମଣ୍ଡଳୀକୁ ଘେରି ରହିଅଛନ୍ତି; ଏବଂ କେବଳମାତ୍ର ମାନବ ମଣ୍ଡଳୀର ପରୀକ୍ଷା ପାଇଁ ଅମ୍ଭେ ତୁମ୍ଭକୁ ସେହି ଦୃଶ୍ୟ ଦେଖାଇଥିଲୁଁ ଏବଂ କୋରାନର ଅନ୍ତର୍ଗତ ଅଭିଶପ୍ତ ବୃକ୍ଷ ମଧ୍ୟ; ଏବଂ ଅମ୍ଭେ ସେମାନଙ୍କୁ ଭୟ ପ୍ରଦର୍ଶନ କରୁଁ, କିନ୍ତୁ ଏହାଦ୍ୱାରା ସେମାନଙ୍କର ବିଷମ ବିଦ୍ରୋହ ବଢ଼ିବା ଛଡ଼ା ଅନ୍ୟ କିଛି ହୁଏନାହିଁ । ୬୦ ।

## ୭ମ ବିଭାଗ

ଏବଂ ଯେତେବେଳେ ଅମ୍ଭେ ସ୍ୱର୍ଗଦୂତମାନଙ୍କୁ କହିଥିଲୁଁ "ତୁମ୍ଭେମାନେ ଆଦମଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କର", କିନ୍ତୁ ସଏତାନ ବ୍ୟତୀତ ସେମାନେ ସମସ୍ତେ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ; ସେ କହିଥିଲା, "ତୁମ୍ଭେ ଯାହାକୁ ମୃତ୍ତିକାରୁ ସୃଷ୍ଟି କରିଅଛ ଅମ୍ଭେ କଅଣ ତାକୁ ସାଷ୍ଟାଙ୍ଗ ପ୍ରଣିପାତ କରିବୁଁ" ? ୬୧ ।

ସେ କହିଥିଲା, "ଦେଖତ ଏ କଅଣ ସେହି ଯାହାକୁ ତୁମ୍ଭେ ଅମ୍ଭଉପରେ ସମ୍ମାନିତ କରିଅଛ ? ଯଦି ତୁମ୍ଭେ ଅମ୍ଭକୁ ପୁନରୁତ୍ଥାନ ଦିବସ ପର୍ଯ୍ୟନ୍ତ ଅବକାଶ ଦିଅ, ତେବେ ନିଶ୍ଚୟ ଅମ୍ଭେ ଅଳ୍ପ ସଂଖ୍ୟକ ବ୍ୟତୀତ ତାହାର ବଂଶଧରମାନଙ୍କ ଉପରେ କର୍ତ୍ତୃତ୍ୱ ଚଳାଇବୁ ।" ୬୨ ।

---

୫୮ । ଯେଉଁ ନଗରର ଅଧିବାସୀମାନେ ଅବିଶ୍ୱାସୀ, ଅବାଧ୍ୟ ଓ ଅତ୍ୟାଚାରୀ ହୋଇଅଛନ୍ତି, ବର୍ତ୍ତମାନ ସେମାନଙ୍କୁ ଅବସର ଦିଆଗଲେ ମଧ୍ୟ, ଶେଷ ବିଚାର ଦିବସ ପୂର୍ବରୁ ସେମାନେ ନିଶ୍ଚୟ ଶାସ୍ତି ଭୋଗ କରିବେ । ଯଦି କେହି ଦୈବାତ୍ ରହି ଯାଇଥିବେ ସେମାନେ ଶେଷ ବିଚାର ଦିନ ଶାସ୍ତି ଭୋଗ କରିବେ ।

୫୯ । ବିଧର୍ମୀମାନଙ୍କ ପ୍ରାର୍ଥନା ଅନୁଯାୟୀ ଅଲୌକିକ ନିଦର୍ଶନ ପ୍ରକାଶ ନକରିବାର କାରଣ ଏହି କି ଅଲୌକିକ ନିଦର୍ଶନ ପ୍ରକାଶ ହେବା ପରେ ମଧ୍ୟ ସେମାନେ ବିଶ୍ୱାସ କରିବେ ନାହିଁ, ବରଂ ମିଥ୍ୟାରୋପ କରିବେ । ଏଥିପୂର୍ବେ ଏପରି ଘଟି ଯାଇଅଛି, ଉଦାହରଣ ସ୍ୱରୂପ ସମୁଦ୍ ସମ୍ପ୍ରଦାୟ ।

୬୦ । ମାନବ ମଣ୍ଡଳୀକୁ ପରିବେଷ୍ଟନ କରିଅଛନ୍ତି—ମାନବମାନେ ଭୂତ ଭବିଷ୍ୟ ଓ ବର୍ତ୍ତମାନ ତ୍ରିକାଳରେ ଯାହା ଯାହା କାର୍ଯ୍ୟ କରନ୍ତି ତାହା ପରମେଶ୍ୱର ଅବଗତ ଅଛନ୍ତି । ସୁତରାଂ ଭବିଷ୍ୟତରେ କେଉଁ ଲୋକ କି କାର୍ଯ୍ୟ କରିବ ତାହା ପରମେଶ୍ୱର ପୂର୍ବରୁ ଅବଗତ ଅଛନ୍ତି । ଅଲୌକିକ ନିଦର୍ଶନ ଉପସ୍ଥିତ ହେଲେ ମଧ୍ୟ ମକ୍କାବାସୀ ବିଧର୍ମୀମାନେ ଯେ ବିଶ୍ୱାସ ସ୍ଥାପନ କରିବେ ନାହିଁ ଏକଥା ପରମେଶ୍ୱର ପୂର୍ବରୁ ଅବଗତ ଅଛନ୍ତି । ଏବଂ ଏହାମଧ୍ୟ ପରୀକ୍ଷା ହୋଇଅଛି । ଯେତେବେଳେ ମହାପୁରୁଷ ମୋହମ୍ମଦ 'ମେରାଜ' ବା ଅଲୌକିକ ରାତ୍ରି ଭ୍ରମଣର ବିଷୟ ପ୍ରକାଶ କରିଥିଲେ ବିଧର୍ମୀମାନେ ତାଙ୍କୁ ଅବିଶ୍ୱାସ କରିଥିଲେ ଏବଂ ମିଥ୍ୟା ମନେ କରିଥିଲେ । (ଦେଖ ଏହି ଅଧ୍ୟାୟ ୧ମଶ୍ଳୋକ) ଏବଂ ନରକରେ ଥିବା ଅଭିଶପ୍ତ ଜକ୍‌କୁମ୍ ବୃକ୍ଷର ବିଷୟ ଯେତେବେଳେ କୋରାନରେ ଅବତୀର୍ଣ୍ଣ ହେଲା ବିଧର୍ମୀମାନେ ତାହାକୁ ବିଶ୍ୱାସ ନକରି ଉପହାସ କରିବାକୁ ଲାଗିଲେ । (ଦେଖ ୩୭ଶ ଅଧ୍ୟାୟ ଶ୍ଳୋ୬୨ ରୁ ୬୬ କ) । ଲୋକମାନଙ୍କୁ ଭୟପ୍ରଦର୍ଶନ କରିବା ପାଇଁ ଅଲୌକିକ ନିଦର୍ଶନ ପ୍ରକାଶିତ ହୁଏ, ମାତ୍ର ତଦ୍ୱାରା ସେମାନେ ଶିକ୍ଷା ଲାଭ ନକରି ଅଧିକ ବିଦ୍ରୋହୀ ହୋଇପଡ଼ନ୍ତି ।

୬୧-୬୫ । ଦେଖ ୭ମ ଅଧ୍ୟାୟ ଶ୍ଳୋ ୧୧ରୁ ୨୫କ ।

୬୨ । ସମ୍ମାନିତ କରିଅଛ—ସଏତାନ ଆଦମ ଆଡ଼କୁ ଘୃଣାରେ ଅନାଇ ପରମେଶ୍ୱରଙ୍କୁ ଏହିପରି କହିଥିଲା ।

ସେ କହିଥିଲେ, "ଯାଅ ଅମ୍ଭେ ଅବକାଶ ଦେଲୁଁ; ଏହାପରେ ସେମାନଙ୍କ ମଧ୍ୟରୁ ଯେ ତୁମ୍ଭର ଅନୁସରଣ କରିବେ, ତେବେ ନିଶ୍ଚୟ ତୁମ୍ଭମାନଙ୍କର ଶାସ୍ତି ନରକ, ଏହାହିଁ ପୂର୍ଣ୍ଣ ପ୍ରତିଫଳ । ୬୩ ।

"ଏବଂ ତୁମ୍ଭେ ସେମାନଙ୍କ ମଧ୍ୟରୁ ଯାହାକୁ ପାର ତୁମ୍ଭର ଧ୍ୱନିଦ୍ୱାରା ବିଭ୍ରାନ୍ତ କର ଏବଂ ସେମାନଙ୍କ ଉପରେ ତୁମ୍ଭର ଅଶ୍ୱାରୋହୀ ଓ ପଦାତିକମାନଙ୍କୁ ପରିଚାଳନ କର ଏବଂ ସେମାନଙ୍କର ଧନ ସମ୍ପଦ ଓ ସେମାନଙ୍କ ସନ୍ତାନ ସନ୍ତତି ମଧ୍ୟରେ ଅଂଶସ୍ଥାପନ କର ଏବଂ ସେମାନଙ୍କୁ ଅଙ୍ଗୀକାର ପ୍ରଦାନ କର;"—ଏବଂ ସଏତାନ ସେମାନଙ୍କୁ ପ୍ରବଞ୍ଚନା ଛଡ଼ା ଅଙ୍ଗୀକାର ପ୍ରଦାନ କରେନା—। ୬୪ ।

"ନିଶ୍ଚୟ ଅମ୍ଭର ସେବକମାନଙ୍କ ଉପରେ ତୁମ୍ଭର କୌଣସି ଆଧିପତ୍ୟ ନାହିଁ;" ଏବଂ ହେ ମୋହମ୍ମଦ ତୁମ୍ଭର ପାଳନକର୍ତ୍ତା ଅଭିଭାବକରୂପେ ଯଥେଷ୍ଟ । ୬୫ ।

ସେହି ତୁମ୍ଭମାନଙ୍କର ପାଳନକର୍ତ୍ତା ଯେ ତୁମ୍ଭମାନଙ୍କ ପାଇଁ ସମୁଦ୍ରରେ ଜାହାଜ ସବୁ ଚଳାନ୍ତି, ଯେପରି ତୁମ୍ଭେମାନେ ତାଙ୍କର ଅନୁଗ୍ରହ ଅନୁସନ୍ଧାନ କର; ନିଶ୍ଚୟ ସେ ତୁମ୍ଭମାନଙ୍କ ପାଇଁ ଦୟାଶୀଳ । ୬୬ ।

ଏବଂ ଯେତେବେଳେ ସମୁଦ୍ର ମଧ୍ୟରେ ତୁମ୍ଭମାନଙ୍କୁ ଦୁର୍ଘଟଣା ସ୍ପର୍ଶକରେ ସେତେବେଳେ ତୁମ୍ଭେ-ମାନେ ତାଙ୍କ ବ୍ୟତୀତ ଯେଉଁମାନଙ୍କୁ ଆହ୍ୱାନ କରୁଥିଲ ସେମାନେ ଅଦୃଶ୍ୟ ହୋଇଯାଆନ୍ତି; ତା'ପରେ ଯେତେବେଳେ ସେ ତୁମ୍ଭମାନଙ୍କୁ ନିରାପଦରେ ସ୍ଥଳ ଭାଗକୁ ଆଣନ୍ତି, ସେତେବେଳେ ତୁମ୍ଭେମାନେ ତାଙ୍କ-ଠାରୁ ବିମୁଖ ହୋଇଯାଅ ଏବଂ ମନୁଷ୍ୟ ଅକୃତଜ୍ଞ ହୋଇଥାଏ । ୬୭ ।

ତେବେ କଅଣ ତୁମ୍ଭେମାନେ ନିଶ୍ଚିନ୍ତ ହୋଇଅଛ ଯେ ସେ ତୁମ୍ଭମାନଙ୍କୁ ଭୂଗର୍ଭରେ ଲୀନ କରିପାରିବେ ନାହିଁ ଅଥବା ତୁମ୍ଭମାନଙ୍କ ଉପରେ ଶିଳାବୃଷ୍ଟି କରିପାରିବେ ନାହିଁ ? ତାପରେ ତୁମ୍ଭେମାନେ ନିଜ ପାଇଁ କୌଣସି ଅଭିଭାବକ ପାଇବ ନାହିଁ ।୬୮।

ତେବେ କଅଣ ତୁମ୍ଭେମାନେ ନିଶ୍ଚିନ୍ତ ରହିଅଛ ଯେ ସେ ପୁନରାୟ ତୁମ୍ଭମାନଙ୍କୁ ସେଥି ମଧ୍ୟକୁ ନେଇ ଯାଇ ତାପରେ ତୁମ୍ଭମାନଙ୍କ ପ୍ରତି ଭୟଙ୍କର ଝଡ ପଠାଇ ତୁମ୍ଭମାନଙ୍କର ଅକୃତଜ୍ଞତା ହେତୁ ତୁମ୍ଭମାନଙ୍କୁ ଜଳମଗ୍ନ କରି ପାରିବେ ନାହିଁ ? ତାପରେ ତୁମ୍ଭେମାନେ ଏହି ଦୈବ ଦୁର୍ଘଟଣା ଏଡ଼ିବା ପାଇଁ ତୁମ୍ଭମାନଙ୍କର କୌଣସି ସାହାଯ୍ୟକାରୀ ପାଇବ ନାହିଁ ।୬୯।

---

୬୪ । ଟୀକାକାରମାନଙ୍କ ମତରେ ସଏତାନ ଆଦମ ବଂଶଧରମାନଙ୍କୁ ବିପଥଗାମୀ କରିବାର ଅନୁମତି ପାଇବା ପରେ ପରମେଶ୍ୱରଙ୍କଠାରୁ ନିମ୍ନଲିଖିତ ଶକ୍ତିମାନ ପ୍ରାର୍ଥନା କରି ନେଇଥିଲା—ପୁନରୁତ୍‌ଥାନ ଦିବସ ପର୍ଯ୍ୟନ୍ତ ଅବକାଶ, ମୂର୍ତ୍ତି ମାନରେ ବିଶ୍ୱପରିଭ୍ରମଣ, ମାନବର ଅନ୍ତର ମଧ୍ୟରେ ପ୍ରବେଶ, ସେମାନଙ୍କ ଧନ ଜନ ଉପରେ ଆଧିପତ୍ୟ, ଆକର୍ଷଣକାରୀ ସ୍ୱର ଲହରୀ, ସାହାଯ୍ୟକାରୀ, ସୈନ୍ୟଦଳ, ପ୍ରବଞ୍ଚନାପୂର୍ଣ୍ଣ ଅଙ୍ଗୀକାର ପ୍ରଦାନର କୌଶଳ ଇତ୍ୟାଦି । 'ଧ୍ୱନି' ଅର୍ଥ ଆକର୍ଷଣକାରୀ ସ୍ୱରଲହରୀ ଯଥା ରାଗ ରାଗିଣୀ ଯୁକ୍ତ ବାଦ୍ୟଯନ୍ତ୍ର ସଙ୍ଗୀତ, ହାସ୍ୟ ଉପହାସ ଯୁକ୍ତ ଅଯଥା ଓ ଅନର୍ଥକ ବାକ୍ୟ, ମନ ମୁଗ୍ଧକାରୀ ସ୍ୱର, ସ୍ତ୍ରୀଲୋକମାନଙ୍କ ପ୍ରଲୋଭନ ବାକ୍ୟ ଇତ୍ୟାଦି । 'ଅଶ୍ୱାରୋହୀ ଓ ପଦାତିକ' ଅର୍ଥ ସଏତାନର ସାହାଯ୍ୟକାରୀ ଅନୁରକ୍ତ ଭକ୍ତବୃନ୍ଦ । ସେମାନଙ୍କର ଧନ ସମ୍ପଦ ଓ ସନ୍ତାନ ସନ୍ତତିରେ ଅଂଶ ସ୍ଥାପନ ଅର୍ଥ ସଏତାନ ନିଜର ଅଂଶ ସ୍ଥାପନ କରିବା ଅର୍ଥାତ୍ ଧନ ସମ୍ପଦ ଓ ସନ୍ତାନସନ୍ତତି ସାହାଯ୍ୟରେ ମନୁଷ୍ୟମାନଙ୍କୁ ପଥଭ୍ରଷ୍ଟ କରିବା । 'ଅଙ୍ଗୀକାର'—ମିଥ୍ୟା ପ୍ରବଞ୍ଚନା-ପୂର୍ଣ୍ଣ ଅଙ୍ଗୀକାର ।

୬୬ । ଅନୁଗ୍ରହ ଅନୁସନ୍ଧାନ—ବାଣିଜ୍ୟ ବ୍ୟବସାୟ ଦ୍ୱାରା ଜୀବିକା ଅର୍ଜନ ।

୬୭ । ବିମୁଖ ହୋଇଯାଅ—ପରମେଶ୍ୱରଙ୍କୁ ଭୁଲିଯାଇ ଦେବ ଦେବୀଙ୍କ ପୂଜା କରିଥାଅ ।

୬୮ । ସମୁଦ୍ରର ବିପଦରୁ ରକ୍ଷା ପାଇ ସ୍ଥଳଭାଗକୁ ଆସିଲେ ମଧ୍ୟ ସ୍ଥଳଭାଗ ନିରାପଦ ନୁହେ ।

୬୯ । ସେଥି ମଧ୍ୟକୁ ନେଇଯିବେ—ସମୁଦ୍ର ମଧ୍ୟକୁ ନେଇଯିବେ ।

ଏବଂ ନିଶ୍ଚୟ ଅମ୍ଭେ ଆଦମ ବଂଶଧରମାନଙ୍କୁ ସମ୍ମାନିତ କରିଅଛୁଁ ଏବଂ ଭୂପୃଷ୍ଠରେ ଓ ସମୁଦ୍ରରେ ସେମାନଙ୍କୁ ବହନ କରୁଅଛୁଁ ଏବଂ ବିଶୁଦ୍ଧ ବସ୍ତୁମାନଙ୍କରୁ ସେମାନଙ୍କୁ ଜୀବିକା ଦେଇଅଛୁଁ ଏବଂ ସେମାନଙ୍କୁ ଅମ୍ଭର ଅଧିକାଂଶ ସୃଷ୍ଟ ପଦାର୍ଥ ଉପରେ ଗୌରବମୟ ପ୍ରାଧାନ୍ୟ ଦେଇଅଛୁଁ ।୭୦।

## ୮ମ ବିଭାଗ

ଯେଉଁଦିନ ଅମ୍ଭେ ମନୁଷ୍ୟମାନଙ୍କୁ ସେମାନଙ୍କ ନେତାମାନଙ୍କ ସହିତ ଡାକିବୁଁ, ତାପରେ ଯାହାଙ୍କୁ ଦକ୍ଷିଣ ହସ୍ତରେ ତାଙ୍କର ପୁସ୍ତକ ଦିଆଯିବ, ସେତେବେଳେ ସେମାନେ ଆନନ୍ଦରେ ସେମାନଙ୍କର ପୁସ୍ତକ ପାଠ କରିବେ; ଏବଂ ସେମାନେ ସୂତା ପରିମାଣରେ ମଧ୍ୟ ଅତ୍ୟାଚାରିତ ହେବେ ନାହିଁ ।୭୧।

ଏବଂ ଯେ କେହି ଏଠାରେ ଅନ୍ଧ, ବାସ୍ତବରେ ସେ ପରଲୋକରେ ମଧ୍ୟ ଅନ୍ଧ ହେବ ଏବଂ ସେ ନିତାନ୍ତ ପଥଭ୍ରାନ୍ତ ।୭୨।

ଅମ୍ଭେ ତୁମ୍ଭପ୍ରତି ଯେଉଁ ପ୍ରତ୍ୟାଦେଶ କରିଅଛୁଁ ତାହା ବ୍ୟତୀତ ଅମ୍ଭ ନାମରେ ମିଥ୍ୟା ରଚନା କରିବା ଦିଗରେ ତୁମ୍ଭଙ୍କୁ ପ୍ରବର୍ତ୍ତାଇବା ପାଇଁ ସେମାନେ ତୁମ୍ଭଙ୍କୁ ପ୍ରଲୋଭନ ଦେଖାଇ ଥିଲେ ଏବଂ ତାହା ହେଲେ ସେମାନେ ନିଶ୍ଚୟ ତୁମ୍ଭଙ୍କୁ ବନ୍ଧୁରୂପେ ଗ୍ରହଣ କରିଥାନ୍ତେ ।୭୩।

---

୭୦ । ପରମେଶ୍ୱର ନିଜ ଅନୁଗ୍ରହରୁ ମାନବ ଜାତିକୁ ବିଶ୍ୱଜଗତରେ ଅଧିକାଂଶ ସୃଷ୍ଟ ପଦାର୍ଥ ଉପରେ ଆଧିପତ୍ୟ ଦେଇ ଅଛନ୍ତି । ସୁତରାଂ ମନୁଷ୍ୟମାନେ ପରମେଶ୍ୱରଙ୍କ ପ୍ରତି କୃତଜ୍ଞ ହେବା ଆବଶ୍ୟକ । ତାହା ନକରି ଯଦି ସେମାନେ ସଏତାନର ପ୍ରରୋଚନାରେ ପରମେଶ୍ୱରଙ୍କ ପ୍ରତି ଅକୃତଜ୍ଞ ଓ ଅବାଧ୍ୟ ହୁଅନ୍ତି ତେବେ ନିଶ୍ଚୟ ସେମାନେ ପରଲୋକରେ ନରକ ଯନ୍ତ୍ରଣା ଭୋଗ କରିବେ ।

୭୧ । ଶେଷ ବିଚାର ଦିନ ପ୍ରତ୍ୟେକ ସମ୍ପ୍ରଦାୟ ସେମାନଙ୍କ ନେତାମାନଙ୍କ ସହିତ ପରମେଶ୍ୱରଙ୍କ ନିକଟ ଡକା ହେବେ ଏବଂ ସେମାନଙ୍କ କର୍ମଫଳ ପ୍ରାପ୍ତ ହେବେ । ପୁଣ୍ୟବାନ ଲୋକମାନଙ୍କ କର୍ମଗ୍ରନ୍ଥ ସେମାନଙ୍କ ଦକ୍ଷିଣ ହସ୍ତରେ ଦିଆଯିବ ଏବଂ ସେମାନେ ତାହା ପାଠ କରି ଆନନ୍ଦିତ ହେବେ । ପାପୀ ଲୋକମାନଙ୍କ କର୍ମଗ୍ରନ୍ଥ ସେମାନଙ୍କ ବାମ ହସ୍ତରେ ଦିଆଯିବ ଏବଂ ସେମାନେ ତାହା ପାଠ କରି ଦୁଃଖିତ ହେବେ । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋ ୧୩, ୧୪କ ।

୭୨ । ପରଲୋକ ଇହଲୋକର ପରିଣାମ ମାତ୍ର । ଇହଲୋକ କର୍ମକ୍ଷେତ୍ର ଏବଂ ପରଲୋକ ଫଳ ଭୋଗର ସ୍ଥାନ । ସୁତରାଂ ଯେଉଁମାନେ ଇହଲୋକରେ ଜ୍ଞାନ ଓ ସତ୍ୟରୁ ଚକ୍ଷୁ ବନ୍ଦ କରି ଅନ୍ଧ ପରି କାର୍ଯ୍ୟ କରୁଅଛନ୍ତି, ପରଲୋକରେ ସେମାନେ ଆଲୋକ ପାଇପାରିବେ ନାହିଁ ।

୭୩ । ବିଧର୍ମୀ ମକ୍କାବାସୀମାନେ ନାନାପ୍ରକାର ଅତ୍ୟାଚାର କରି ଯେତେବେଳେ ମହାପୁରୁଷ ମୋହମ୍ମଦଙ୍କୁ ସତ୍ୟ ଧର୍ମ ପ୍ରଚାରରୁ କ୍ଷାନ୍ତ କରି ପାରିଲେ ନାହିଁ ସେତେବେଳେ ସେମାନେ ତାଙ୍କୁ ପ୍ରଲୋଭନ ଦ୍ୱାରା ବଶୀଭୂତ କରିବାର ଚେଷ୍ଟା କରି ତାଙ୍କ ନିକଟ ପ୍ରସ୍ତାବ କଲେ କି ଯଦି ସେ ସେମାନଙ୍କର ପୈତୃକ ଧର୍ମ ବିରୁଦ୍ଧରେ ପ୍ରଚାର ନ କରନ୍ତି ଏବଂ ସେମାନଙ୍କର ଉପାସ୍ୟ ଦେବ ଦେବୀମାନଙ୍କର ନିନ୍ଦା କରିବାରୁ କ୍ଷାନ୍ତ ହୁଅନ୍ତି ତେବେ ସେମାନେ ତାଙ୍କୁ ଅପରିମିତ ଧନ ସମ୍ପଦର ଅଧିକାରୀ କରିଦେବେ ଏବଂ ତାଙ୍କୁ ସର୍ବାପେକ୍ଷା ଅଧିକ ସୁନ୍ଦରୀ ସ୍ତ୍ରୀ ସହିତ ବିବାହ କରିଦେବେ ଏବଂ ତାଙ୍କୁ ସେମାନଙ୍କର ସମ୍ରାଟ ବୋଲି ସ୍ୱୀକାର କରିବେ । ମାତ୍ର ମହାପୁରୁଷ ମୋହମ୍ମଦ ଲେଶ ମାତ୍ର ବିଚଳିତ ନ ହୋଇ ଉତ୍ତର କଲେ କି ସେ ପାର୍ଥିବ ସୁଖ ସମ୍ପଦର ପ୍ରତ୍ୟାଶୀ ନୁହନ୍ତି । ତାଙ୍କର ଏକ ହସ୍ତରେ ସୂର୍ଯ୍ୟ ଏବଂ ଅନ୍ୟ ହସ୍ତରେ ଚନ୍ଦ୍ର ଆଣି ସ୍ଥାପନ କଲେ ମଧ୍ୟ ପରମେଶ୍ୱରଙ୍କ ଆଦେଶରେ ସେ ଯେଉଁ ସତ୍ୟଧର୍ମ ପ୍ରଚାର କରୁଅଛନ୍ତି ସେଥିରୁ ତିଳେମାତ୍ର ବିଚଳିତ ହେବେ ନାହିଁ ।

ଏବଂ ଯଦି ଆମ୍ଭେ ତୁମ୍ଭଙ୍କୁ ଅବିଚଳିତ ନ ରଖି ଥାନ୍ତୁ ତେବେ ନିଶ୍ଚୟ ତୁମ୍ଭେ ସେମାନଙ୍କ ଆଡ଼କୁ କିଞ୍ଚିତ ଆକୃଷ୍ଟ ହେବାର ନିକଟବର୍ତ୍ତୀ ହୋଇଥାନ୍ତ ।୭୪।

ତାହାହେଲେ ନିଶ୍ଚୟ ଆମ୍ଭେ ତୁମ୍ଭଙ୍କୁ ଇହଜୀବନରେ ଦୁଇଗୁଣ ଏବଂ ମୃତ୍ୟୁ ପରେ ଦୁଇଗୁଣ ଶାସ୍ତି ଆସ୍ୱାଦନ କରାଇ ଥାନ୍ତୁ, ତାପରେ ତୁମ୍ଭେ ଆମ୍ଭ ଶାସ୍ତିକୁ ଏଡ଼ାଇବା ପାଇଁ କୌଣସି ସାହାଯ୍ୟକାରୀ ପାଇନଥାନ୍ତ ।୭୫।

ଏବଂ ନିଶ୍ଚୟ ସେମାନେ ତୁମ୍ଭଙ୍କୁ ଦେଶରୁ ତଡ଼ି ଦେବାର ନିକଟବର୍ତ୍ତୀ ହୋଇଥିଲେ ଯେପରି ସେମାନେ ତୁମ୍ଭଙ୍କୁ ସେଥିରୁ ବାହାର କରି ଦେବେ ଏବଂ ତାହା ହୋଇଥିଲେ ସେମାନେ ଅଳ୍ପ ସମୟ ବ୍ୟତୀତ ତୁମ୍ଭର ପଶ୍ଚାତରେ ରହି ନଥାନ୍ତେ ।୭୬।

ନିଶ୍ଚୟ ଆମ୍ଭର ପ୍ରେରିତ ପୁରୁଷମାନଙ୍କ ମଧ୍ୟରୁ ତୁମ୍ଭ ପୂର୍ବେ ଆମ୍ଭେ ଯେଉଁମାନଙ୍କୁ ପଠାଇ ଥିଲୁଁ ସେମାନଙ୍କ ସମ୍ବନ୍ଧରେ ଏହାହିଁ ଆମ୍ଭର ବିଧାନ ଥିଲା, ଏବଂ ତୁମ୍ଭେ ଆମ୍ଭର ବିଧାନର ବ୍ୟତିକ୍ରମ ପାଇବ ନାହିଁ ।୭୭।

## ୯ମ ବିଭାଗ

ସୂର୍ଯ୍ୟ ଢଳିବା ପରେ ରାତ୍ରିର ଅନ୍ଧକାର ପର୍ଯ୍ୟନ୍ତ ଆରାଧନା ପ୍ରତିଷ୍ଠିତକର ଏବଂ ପ୍ରଭାତରେ କୋରାନ ପାଠକର ଏବଂ ପ୍ରଭାତର କୋରାନ ପାଠ ସାକ୍ଷୀ ସ୍ୱରୂପ ଅଟେ ।୭୮।

ଏବଂ ରାତ୍ରିର ଏକ ଅଂଶରେ ନିଦ୍ରା ତ୍ୟାଗ କରି ଆରାଧନା କର, ଏହା ତୁମ୍ଭପାଇଁ ଅତିରିକ୍ତ, ଶୀଘ୍ର ତୁମ୍ଭର ପାଳନକର୍ତ୍ତା ତୁମ୍ଭଙ୍କୁ ପ୍ରଶଂସିତ ଧାମରେ ଉନ୍ନୀତ କରିବେ ।୭୯ ।

---

୭୪ । ୭୫ । ଏହି ଶ୍ଳୋକମାନଙ୍କରୁ ସ୍ପଷ୍ଟ ପ୍ରକାଶ ପାଉଅଛି ଯେ ମହାପୁରୁଷ ମୋହମ୍ମଦ ଏହି ପ୍ରଲୋଭନ ଦ୍ୱାରା ସତ୍ୟ ପଥରୁ ତିଳେମାତ୍ର ବିଚଳିତ ହୋଇନଥିଲେ ।

୭୬ । ୭୭ । ଅତ୍ୟାଚାର କିମ୍ବା ପ୍ରଲୋଭନ ଦ୍ୱାରା ମହାପୁରୁଷ ମୋହମ୍ମଦଙ୍କୁ ବଶୀଭୂତ କରିବାକୁ ଅକ୍ଷମ ହୋଇ ବିଧର୍ମୀ ମକକାବାସୀମାନେ ତାଙ୍କୁ ବଳପୂର୍ବକ ସ୍ୱଦେଶରୁ ବାହାର କରିବାର ଚେଷ୍ଟା କରିଥିଲେ । ମାତ୍ର ପରମେଶ୍ୱରଙ୍କ ଇଚ୍ଛା ବ୍ୟତୀତ ଏପରି କରିଥିଲେ ସେମାନେ ସମସ୍ତେ ଧ୍ୱଂସ ପ୍ରାପ୍ତ ହୋଇଥାନ୍ତେ । ଏହାହିଁ ପରମେଶ୍ୱରଙ୍କ ନିର୍ଦ୍ଦିଷ୍ଟ ନିୟମ । ସୁତରାଂ ପରମେଶ୍ୱର କୌଶଳରେ ଦେଶ ତ୍ୟାଗ କରି ମଦିନା ନଗରକୁ ଚାଲିଯିବା ପାଇଁ ମହାପୁରୁଷ ମୋହମ୍ମଦଙ୍କୁ ଆଦେଶ କରିଥିଲେ ଯେପରିକି ବିଧର୍ମୀମାନେ ତାଙ୍କର କ୍ଷତି କରି ପରମେଶ୍ୱରଙ୍କ ଦ୍ୱାରା ଅଭିଶପ୍ତ ନ ହୁଅନ୍ତି ।

'ଅଳ୍ପ ସମୟ ବ୍ୟତୀତ ତୁମ୍ଭର ପଶ୍ଚାତରେ ରହି ନଥାନ୍ତେ—ଅର୍ଥାତ୍ ଅବିଳମ୍ବେ ଧ୍ୱଂସପ୍ରାପ୍ତ ହୋଇଥାନ୍ତେ ।

୭୭ । ବିଧାନ=ଅବିଶ୍ୱାସକାରୀମାନେ ପ୍ରେରିତ ପୁରୁଷମାନଙ୍କୁ ବାହାର କରି ଦେଇ ଧ୍ୱଂସ ପାଇଥିଲେ । ପରମେଶ୍ୱରଙ୍କ ଏ ବିଧାନ ବଳବତ୍ତର ରହିଅଛି । ଏହା ମହାପୁରୁଷ ମୋହମ୍ମଦଙ୍କ ସମ୍ବନ୍ଧରେ ମକ୍କାବାସୀମାନଙ୍କ ପ୍ରତି ମଧ୍ୟ ଖାଟିବ ।

୭୮ । ଏହି ଶ୍ଳୋକରେ ଦିନରେ ପାଞ୍ଚ ଥର ଆରାଧନା 'ନମାଜ) ପ୍ରତିଷ୍ଠିତ କରିବାର ଆଦେଶ କରାଯାଇଅଛି । ପ୍ରଭାତ ଆରାଧନା ପରେ କୋରାନ ପାଠଦ୍ୱାରା ବିଶେଷ ପୁଣ୍ୟ ଲାଭ ହୁଏ । ଦେଖ ଟୀକା ୨ୟ ଅଧ୍ୟାୟ ୨୩୮ ଶ୍ଳୋକ ।

୭୯ । ଏହି ଶ୍ଳୋକରେ ରାତ୍ରିର ତୃତୀୟ ପ୍ରହରରେ ନିଦ୍ରା ତ୍ୟାଗ କରି 'ତହଜୁଦ'ର ନମାଜ ପାଠ କରିବା ପାଇଁ ମହାପୁରୁଷ ମୋହମ୍ମଦଙ୍କୁ ତଥା ତାଙ୍କର ଅନୁଚରମାନଙ୍କୁ ଆଦେଶ କରାଯାଇଅଛି । ଏହା ବାଧ୍ୟତା ମୂଳକ (ଫରଜ) ନୁହେଁ ବରଂ ଏହା ଅତିରିକ୍ତ (ନଫଲ) ଅଟେ । ଏହାଦ୍ୱାରା ବିଶେଷ ପୁଣ୍ୟଲାଭ ହୁଏ ଏବଂ ଏହା ପାଳନ କରିବା ଦ୍ୱାରା ମହାପୁରୁଷ ମୋହମ୍ମଦଙ୍କୁ ପ୍ରଶଂସିତ ଧାମ (ମକାମେ ମହମୁଦା)ରେ ଉନ୍ନୀତ କରିବାର ପ୍ରତିଶ୍ରୁତି ଦିଆଯାଇଅଛି ।

ଏବଂ ତୁମ୍ଭେ କୁହ, "ହେ ଅମ୍ଭର ପାଳନକର୍ତ୍ତା, ତୁମ୍ଭେ ଅମ୍ଭକୁ ସମ୍ମାନର ସହିତ ପ୍ରବେଶ କରାଅ ଏବଂ ସମ୍ମାନର ସହିତ ଅମ୍ଭକୁ ବାହାର କର ଏବଂ ଅମ୍ଭ ପାଇଁ ତୁମ୍ଭ ନିକଟରୁ ସାହାଯ୍ୟକାରୀ ଶକ୍ତି ଦିଅ" ।୮୦।

ଏବଂ ତୁମ୍ଭେ କୁହ, "ସତ୍ୟ ଆସିଅଛି ଏବଂ ଅସତ୍ୟ ଅନ୍ତର୍ହିତ ହୋଇଅଛି; ନିଶ୍ଚୟ ଅସତ୍ୟ ଅନ୍ତର୍ହିତ ହେବାର ଯୋଗ୍ୟ" ।୮୧।

ଏବଂ ଅମ୍ଭେ କୋରାନରୁ ଯାହା ଅବତୀର୍ଣ୍ଣ କରୁଅଛୁଁ ତାହା ବିଶ୍ୱାସକାରୀମାନଙ୍କ ପାଇଁ (ଆଧ୍ୟାତ୍ମିକ ରୋଗର) ଆରୋଗ୍ୟକାରୀ ଓ ଦୟା ସ୍ୱରୂପ; ଏବଂ ଏହା ଅତ୍ୟାଚାରୀମାନଙ୍କର କ୍ଷତିପରେ କ୍ଷତି ଘଟାଇବା ଛଡା ଆଉ କିଛି କରେ ନାହିଁ ।୮୨।

ଏବଂ ଯେତେବେଳେ ଅମ୍ଭେ ମନୁଷ୍ୟକୁ ଅନୁଗ୍ରହ ଦାନକରୁଁ ସେ ବିମୁଖ ହୁଏ ଏବଂ ନିଜ ପାର୍ଶ୍ୱ-ପରିବର୍ତ୍ତନ କରେ; ଏବଂ ଯେତେବେଳେ ତାହାକୁ ଦୁଃଖ ସ୍ପର୍ଶ କରେ ସେତେବେଳେ ସେ ନିରାଶ ହୋଇଯାଏ ।୮୩।

ତୁମ୍ଭେ କୁହ "ପ୍ରତ୍ୟେକେ ନିଜ ପନ୍ଥା ଅନୁଯାୟୀ କାର୍ଯ୍ୟ କରିଥାନ୍ତି, କାରଣ ଯେ ବ୍ୟକ୍ତି ସୁପଥରେ ପରିଚାଳିତ ତୁମ୍ଭମାନଙ୍କର ପାଳନକର୍ତ୍ତା ତାହାକୁ ଭଲରୂପେ ଜାଣନ୍ତି ।" ।୮୪।

## ୧୦ମ ବିଭାଗ

ଏବଂ ସେମାନେ ତୁମ୍ଭକୁ ଆତ୍ମା ସମ୍ବନ୍ଧରେ ପ୍ରଶ୍ନ କରୁ ଅଛନ୍ତି, ତୁମ୍ଭେ କୁହ,"ଆତ୍ମା ଅମ୍ଭର ପାଳନ-କର୍ତ୍ତାଙ୍କର ଆଦେଶରୁ (ଉତ୍ପନ୍ନ) ହୋଇଅଛି ଏବଂ ତୁମ୍ଭକୁ ଅତ୍ୟଳ୍ପ ମାତ୍ର ଜ୍ଞାନ ଦିଆ ଯାଇଅଛି" ।୮୫।

---

୮୦ । କେତେକ ଟୀକାକାରଙ୍କ ମତରେ ଏହି ଶ୍ଳୋକରେ ହଜରତ୍ତ ଅର୍ଥାତ୍ ମକ୍କା ତ୍ୟାଗ କରି ମଦିନାକୁ ପଳାୟନ ପ୍ରତି ଲକ୍ଷ୍ୟ କରାଯାଇଅଛି । ପ୍ରବେଶ କରାଅ ଅର୍ଥାତ୍ ମଦିନାରେ ପ୍ରବେଶ କରାଅ ଏବଂ ବାହାର କର ଅର୍ଥାତ୍ ମକ୍କାରୁ ବାହାର କର । ଶକ୍ତି ଦିଅ ଅର୍ଥ ମଦିନାକୁ ଯାଇ ସେଠାରେ ଅମ୍ଭର ଲକ୍ଷ୍ୟ ସାଧନ କରିବା ପାଇଁ ତୁମ୍ଭର ସାହାଯ୍ୟ ଦ୍ୱାରା ଅମ୍ଭକୁ ଶକ୍ତି ଦିଅ । ଆଉ କେତେକ ଟୀକାକାରଙ୍କ ମତରେ ପ୍ରବେଶ କରିବା ଅର୍ଥ ଇହଜୀବନ ପରେ ମୃତ୍ୟୁରେ ପ୍ରବେଶ କରିବା ଏବଂ ବାହାର କରିବା ଅର୍ଥ ପୁନରୁତ୍ଥାନ ଦିବସରେ କବରରୁ ବାହାର କରିବା ।

୮୨ । ଅତ୍ୟାଚାରୀମାନେ କୋରାନରେ ବିଶ୍ୱାସ କରନ୍ତି ନାହିଁ । ସେଥିପାଇଁ କୋରାନର ଉପଦେଶମାନ ସେମାନଙ୍କୁ ଅସନ୍ତୁଷ୍ଟ କରେ ଏବଂ ସେମାନେ କ୍ରୋଧ, ଦ୍ୱେଷ ଓ ହିଂସାର ବଶବର୍ତ୍ତୀ ହୋଇ ନାନାପ୍ରକାର କ୍ଷତିକର କାର୍ଯ୍ୟ କରିଥାନ୍ତି ।

୮୩ । ପାର୍ଶ୍ୱ ପରିବର୍ତ୍ତନ କରେ—ଅହଂକାରୀ ହୋଇଯାଏ ।
ବିମୁଖ ହୁଏ—କୃତଜ୍ଞତା ସ୍ୱୀକାର କରେ ନାହିଁ, ପରମେଶ୍ୱରଙ୍କୁ ଭୁଲିଯାଏ ।
ନିରାଶ ହୋଇଯାଏ=ପରମେଶ୍ୱରଙ୍କ ପ୍ରତି ନିର୍ଭର କରେ ନାହିଁ ।

୮୫ । ବିଧର୍ମୀମାନେ ମହାପୁରୁଷ ମୋହମ୍ମଦଙ୍କୁ ଜୀବ ଆତ୍ମାର ସ୍ୱରୂପ ସମ୍ବନ୍ଧରେ ପ୍ରଶ୍ନ କରିବାରୁ ସେ କହିଅଛନ୍ତି କି ଆତ୍ମା ପରମେଶ୍ୱରଙ୍କ ଆଦେଶ ମାତ୍ର । ଏହାର ସ୍ୱରୂପ ହୃଦୟଙ୍ଗମ କରିବା ସେମାନଙ୍କ ପକ୍ଷରେ ଅତି କଷ୍ଟକର । ପରମେଶ୍ୱର ଆତ୍ମାକୁ ସୃଷ୍ଟି କରିଅଛନ୍ତି; ମାତ୍ର ତାହାକୁ ଅମର କରିଅଛନ୍ତି ।

ଏବଂ ଯଦି ଅମ୍ଭେ ଇଚ୍ଛା କରୁଁ ତେବେ ତୁମ୍ଭପ୍ରତି ଯାହା ପ୍ରତ୍ୟାଦେଶ କରା ହୋଇଅଛି ନିଶ୍ଚୟ ଅମ୍ଭେ ତାହା ନେଇ ଯିବୁଁ; ତାପରେ ତୁମ୍ଭେ ସେ ବିଷୟରେ ଅମ୍ଭ ବିପକ୍ଷରେ କୌଣସି ସୁପାରିସକାରୀ ପାଇବ ନାହିଁ । ୮୬ ।

କେବଳ ତୁମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହ ଛଡ଼ା; ନିଶ୍ଚୟ ତୁମ୍ଭ ପ୍ରତି ତାଙ୍କର କରୁଣା ଅପାର ।୮୭।

ତୁମ୍ଭେ କୁହ,"ଯଦି ମାନବ ଓ ଦାନବମାନେ ଏହି କୋରାନର ସଦୃଶ ଆଣିବାକୁ ଏକତ୍ରିତ ହୁଅନ୍ତି, ତେବେ ସେମାନେ ଏହାର ସଦୃଶ ଆଣି ପାରିବେ ନାହିଁ, ଯଦିଚ ସେମାନେ ପରସ୍ପରକୁ ସାହାଯ୍ୟ କରନ୍ତି" ।୮୮।

ଏବଂ ନିଶ୍ଚୟ ଅମ୍ଭେ ଏହି କୋରାନରେ ମାନବମଣ୍ଡଳୀ ପାଇଁ ସର୍ବବିଧ ଉପମା ସ୍ପଷ୍ଟରୂପେ ବର୍ଣ୍ଣନା କରିଅଛୁଁ, କିନ୍ତୁ ଅଧିକାଂଶଲୋକେ ଅବିଶ୍ୱାସ ଛଡ଼ା ସ୍ୱୀକାର କରନ୍ତି ନାହିଁ ।୮୯।

ଏବଂ ସେମାନେ କହନ୍ତି; "ଅମ୍ଭେମାନେ ତୁମ୍ଭକୁ କୌଣସିମତେ ବିଶ୍ୱାସ କରିବୁଁ ନାହିଁ, ଯେପର୍ଯ୍ୟନ୍ତ ତୁମ୍ଭେ ଅମ୍ଭମାନଙ୍କ ପାଇଁ ଭୂମିରୁ ଗୋଟାଏ ଝରଣା ବାହାର ନ କର; ।୯୦।

"ଅଥବା ତୁମ୍ଭେ ନିଜ ପାଇଁ ଖଜୁରୀ ଓ ଅଙ୍ଗୁରର ଉଦ୍ୟାନ ପ୍ରସ୍ତୁତକରି ପରେ ସେଥିରେ ସ୍ରୋତଯୁକ୍ତ ନଦୀମାନ ପ୍ରବାହିତ ନକର ।୯୧।

"ଅଥବା ଅମ୍ଭମାନଙ୍କ ବିରୁଦ୍ଧରେ ତୁମ୍ଭେ କହିଥିବା ମୁତାବକ୍; ତୁମ୍ଭେ ଆକାଶକୁ ଅମ୍ଭମାନଙ୍କ ଉପରେ ଖଣ୍ଡ ଖଣ୍ଡ କରି ନିକ୍ଷେପ ନକର, କିମ୍ବା ପରମେଶ୍ୱର ଓ ସ୍ୱର୍ଗଦୂତମାନଙ୍କୁ ଅମ୍ଭମାନଙ୍କ ସମ୍ମୁଖରେ ଉପସ୍ଥିତ ନ କର । ୯୨ ।

"ଅଥବା ତୁମ୍ଭ ପାଇଁ ସ୍ୱର୍ଣ୍ଣ ନିର୍ମ୍ମିତ ଗୃହ ନହେବ ଅଥବା ତୁମ୍ଭେ ଶିଢ଼ିଦ୍ୱାରା ଆକାଶରେ ଆରୋହଣ ନ କରିବ, ଏବଂ ଅମ୍ଭେମାନେ ତୁମ୍ଭର ଆରୋହଣ କଦାପି ବିଶ୍ୱାସ କରିବୁ ନାହିଁ ଯେ ପର୍ଯ୍ୟନ୍ତ ତୁମ୍ଭେ ଅମ୍ଭମାନଙ୍କ ପ୍ରତି ଏପରି ଗ୍ରନ୍ଥ ଅବତୀର୍ଣ୍ଣ ନକର ଯାହା ଅମ୍ଭେମାନେ ପାଠ କରି ପାରିବୁଁ; ତୁମ୍ଭେ କୁହ,"ଅମ୍ଭର ପାଳନକର୍ତ୍ତାହିଁ ପବିତ୍ରତମ ଏବଂ ଅମ୍ଭେ ପ୍ରେରିତ ମାନବ ଛଡ଼ା ଅନ୍ୟ କିଛି ନୋହୁଁ" । ୯୩ ।

---

୮୬ । ୮୭ । ପରମେଶ୍ୱର ଇଚ୍ଛା କଲେ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ଯେଉଁ ପ୍ରତ୍ୟାଦେଶ ବାଣୀ ଅବତୀର୍ଣ୍ଣ ହୋଇଅଛି ତାକୁ ସେ ହରଣ କରି ନେଇପାରନ୍ତି । ମାତ୍ର ତାଙ୍କ ପ୍ରତି ତାଙ୍କର ଅପାର କରୁଣା ହେତୁ ସେ ତାହା କରିବେ ନାହିଁ ।

୯୦-୯୩ । ଏହିସବୁ ଆଶ୍ଚର୍ଯ୍ୟଜନକ ଘଟନାମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଘଟଣା ନ ଦେଖିଲେ ଅବିଶ୍ୱାସକାରୀମାନେ କୋରାନ ପ୍ରତି ବିଶ୍ୱାସ କରିବେ ନାହିଁ ବୋଲି କହିଥିଲେ ।

୯୨ । ଆକାଶ ଖଣ୍ଡ ଖଣ୍ଡ ହୋଇ ପଡ଼ିଯିବା ସମ୍ବନ୍ଧରେ ୨୬ ଅଧ୍ୟାୟ ୨୮ ଶ୍ଳୋକ ଓ ୮୨ ଅଧ୍ୟାୟର ୧ମ ଶ୍ଳୋକ ଦେଖ । ଅବିଶ୍ୱାସକାରୀମାନେ ଦାବୀ କରିଥିଲେ ଯେ ତୁମ୍ଭେ ଆକାଶକୁ ଖଣ୍ଡ ଖଣ୍ଡ କରି ଖଙ୍ଗି ଅମ୍ଭମାନଙ୍କ ଉପରେ ନିକ୍ଷେପ କର ଯେପରି ତୁମ୍ଭେ ପ୍ରଚାର କରିଥାଅ ।

୯୩ । ଅବିଶ୍ୱାସକାରୀମାନେ ଯେଉଁ ଅପତ୍ତିମାନ ଉଠାଇଥିଲେ ପରମେଶ୍ୱର ସେ ସବୁର ଉତ୍ତରରେ କହୁଅଛନ୍ତି କି ଧର୍ମୋପଦେଷ୍ଟା ମୋହମ୍ମଦ ତାଙ୍କଦ୍ୱାରା ପ୍ରେରିତ ମାନବ ଛଡ଼ା ଅନ୍ୟ କିଛି ନୁହନ୍ତି । ସୁତରାଂ ଅବିଶ୍ୱାସକାରୀମାନଙ୍କର କାଳ୍ପନିକ ଖାମଖିଆଲି ଦାବୀମାନ ପୂରଣ କରି ନପାରନ୍ତି । ସେମାନଙ୍କର କାଳ୍ପନିକ ଦାବୀ ଅପେକ୍ଷା ଅଧିକ ଶକ୍ତିଶାଳୀ ଅଲୌକିକ କର୍ମ୍ମ ସେମାନଙ୍କ ସମ୍ମୁଖରେ ରହିଅଛି । ଏହି କୋରାନ ଗ୍ରନ୍ଥ ଗୋଟିଏ ଜ୍ୱଳନ୍ତ ଚିରସ୍ଥାୟୀ ଅଲୌକିକ କର୍ମ ଅଟେ; ମାତ୍ର ସେମାନେ ଏହାକୁ ବିଶ୍ୱାସ କରୁନାହାନ୍ତି । ଏହାର ପ୍ରକୃତ କାରଣ କୁପ୍ରବୃତ୍ତିଜନିତ ଈର୍ଷା ଓ ବିଦ୍ୱେଷ ।

## ୧୧ଶ ବିଭାଗ

ଏବଂ ଯେତେବେଳେ ସେମାନଙ୍କ ନିକଟ ସଦୁପଦେଶ ଉପସ୍ଥିତ ହୋଇଥିଲା, ସେତେବେଳେ ମନୁଷ୍ୟମାନଙ୍କୁ ବିଶ୍ୱାସ ସ୍ଥାପନ ବିଷୟରେ ଏହା ଛଡ଼ା ଅଭିକିଛି ନିଷେଧ କରି ନଥିଲା ଯେ ସେମାନେ କହୁଥିଲେ "ପରମେଶ୍ୱର କିଅଣ ମନୁଷ୍ୟକୁ ପ୍ରେରିତ ପୁରୁଷ ରୂପେ ଅବତୀର୍ଣ୍ଣ କରିଅଛନ୍ତି ?" ୯୪ ।

ତୁମ୍ଭେ କୁହ, "ଯଦି ସ୍ୱର୍ଗଦୂତମାନେ ପୃଥିବୀରେ ନିରାପଦରେ ବିଚରଣ କରୁଥାନ୍ତେ, ତେବେ ନିଶ୍ଚୟ ଅମ୍ଭେ ସେମାନଙ୍କ ପ୍ରତି ଆକାଶରୁ ସ୍ୱର୍ଗଦୂତଙ୍କୁ ପ୍ରେରିତ ପୁରୁଷ ରୂପେ ଅବତୀର୍ଣ୍ଣ କରିଥାନ୍ତୁ" ।୯୫।

ତୁମ୍ଭେ କୁହ, "ଅମ୍ଭମଧ୍ୟରେ ଓ ତୁମ୍ଭମାନଙ୍କ ମଧ୍ୟରେ ପରମେଶ୍ୱରଙ୍କ ସାକ୍ଷହିଁ ଯଥେଷ୍ଟ; ନିଶ୍ଚୟ ସେ ତାଙ୍କର ସେବକମାନଙ୍କ ସମ୍ବନ୍ଧରେ ସବୁ ବିଷୟ ଜାଣନ୍ତି ଓ ସବୁ ବିଷୟ ଦେଖନ୍ତି" ।୯୬।

ଏବଂ ପରମେଶ୍ୱର ଯାହାକୁ ପଥପ୍ରଦର୍ଶନ କରନ୍ତି, ବାସ୍ତବରେ ସେହି ସୁପଥ ପ୍ରାପ୍ତ ହୁଏ, ଏବଂ ଯାହାକୁ ବିଭ୍ରାନ୍ତ କରନ୍ତି ବାସ୍ତବରେ ତାହାପାଇଁ ତୁମ୍ଭେ ତାଙ୍କ ଛଡ଼ା ଅନ୍ୟ କାହାକୁ ଅଭିଭାବକ ପାଇବ ନାହିଁ (ଯେ ସେମାନଙ୍କୁ ସୁପଥ ଦେଖାଇବ) ଏବଂ ପୁନରୁତ୍ଥାନ ଦିବସରେ ଅମ୍ଭେ ସେମାନଙ୍କୁ ଅଧୋମୁଖରେ ଅନ୍ଧ, ମୂକ ଓ ବଧିର ରୂପେ ଏକତ୍ରିତ କରିବୁଁ; ସେମାନଙ୍କର ବାସସ୍ଥାନ ନରକ; ଯେତେବେଳେ ଏହା ଲିଭିଯିବାର ଉପକ୍ରମ ହେବ ସେତେବେଳେ ଅମ୍ଭେ ତାହାର ଅଗ୍ନିଶିଖାକୁ ତେଜେଇ ଦେବୁଁ ।୯୭।

ଏହାହିଁ ସେମାନଙ୍କର ପ୍ରତିଫଳ, ଯେହେତୁ ସେମାନେ ଅମ୍ଭର ନିଦର୍ଶନମାନଙ୍କ ସମ୍ବନ୍ଧରେ ଅବିଶ୍ୱାସ କରିଥିଲେ ଏବଂ କହିଥିଲେ, "କିଅଣ ! ଯେତେବେଳେ ଅମ୍ଭେମାନେ ହାଡ ଓ ମାଟିରେ ପରିଣତ ହୋଇଯିବୁଁ ସେତେବେଳେ କିଅଣ ପ୍ରକୃତରେ ଅମ୍ଭେମାନେ ନୂତନ ସୃଷ୍ଟିରୂପେ ଉତ୍ଥିତ ହେବୁଁ ?" ।୯୮।

ତେବେ କିଅଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଯେଉଁ ପରମେଶ୍ୱର ଆକାଶମଣ୍ଡଳ ଓ ଭୂମଣ୍ଡଳକୁ ସୃଷ୍ଟି କରିଅଛନ୍ତି, ସେ ସେମାନଙ୍କର ସଦୃଶ ନୂତନ ସୃଷ୍ଟି କରିବାକୁ ସକ୍ଷମ ଏବଂ ସେ ସେମାନଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର କରି ରଖିଅଛନ୍ତି ଯେଉଁଥିରେ କୌଣସି ସନ୍ଦେହ ନାହିଁ; କିନ୍ତୁ ଅତ୍ୟାଗ୍ରହୀମାନେ ଅସ୍ୱୀକାର ନକରି ଛାଡ଼ୁ ନାହାନ୍ତି ।୯୯।

---

ଯାହା ଅମ୍ଭେମାନେ ପାଠ କରିପାରିବୁଁ—ଅର୍ଥାତ୍ କାଗଜ ଉପରେ କାଳି କଲମରେ ଲେଖା ଯାଇଥିବା ବହି ଅମ୍ଭମାନଙ୍କ ଆଗରେ ଉପସ୍ଥିତ ହେବା ଆବଶ୍ୟକ ଯାହାକୁ ଅମ୍ଭେମାନେ ଆଖିରେ ଦେଖି ପଢ଼ି ପାରିବୁଁ । ମାତ୍ର ପରମେଶ୍ୱରଙ୍କ ଆଧ୍ୟାତ୍ମିକ ଆଦେଶ ବାଣୀ ଜଡ଼ ବସ୍ତୁରୂପେ ଉପସ୍ଥିତ ହେବା ସମ୍ଭବ ନୁହେ ।

୧୪ । ୯୫ । ମନୁଷ୍ୟହିଁ ମନୁଷ୍ୟମାନଙ୍କ ପାଇଁ ଉପଦେଷ୍ଟା ସ୍ୱରୂପ ପ୍ରେରିତ ହେବାର ଉପଯୁକ୍ତ । ସ୍ୱର୍ଗଦୂତମାନେ ମନୁଷ୍ୟମାନଙ୍କର ଉପଦେଷ୍ଟା ହୋଇ ନପାରନ୍ତି । ୭ମ ଅଧ୍ୟାୟ ୬୩ ଶ୍ଳୋକ ଓ ୧୨ ଅଧ୍ୟାୟ ୪୩ ଶ୍ଳୋକ ଦେଖ ।

୯୭ । ଏହି ଶ୍ଳୋକର ପ୍ରଥମ ଅଂଶ ପାଇଁ ଦେଖ ଟୀକା ୬ଷ୍ଠ ଅଧ୍ୟାୟ ଶ୍ଳୋ୨୯ । ଶେଷ ଅଂଶର ଭାବାର୍ଥ—ପରଲୋକରେ ପୁନରୁତ୍ଥାନ ଦିବସରେ ଅବିଶ୍ୱାସକାରୀମାନଙ୍କ ମୁଖରେ ଅହଙ୍କାରର ଚିହ୍ନ ପରିବର୍ତ୍ତିରେ ଲଜ୍ଜା ଓ ଯାତନାର ଦୁଃଖମୟ ଚିହ୍ନ ପ୍ରକାଶ ପାଇବ ଏବଂ ସେମାନେ ତଳକୁ ମୁହଁ କରି ଅନ୍ଧ, ମୂକ ଓ ବଧିର ରୂପରେ ଏକତ୍ରିତ ହେବେ । ସେମାନେ ନରକରେ ନିକ୍ଷିପ୍ତ ହେବେ ଏବଂ ନରକର ଅଗ୍ନି ଲିଭିଯିବାର ଉପକ୍ରମ ହେଲେ ସେମାନଙ୍କୁ ଅଧିକ ଶାସ୍ତି ଦେବା ପାଇଁ ନରକର ଅଗ୍ନି ଶିଖାକୁ ଦୁଇଗୁଣ ବଢ଼ାଇ ଦିଆଯିବ ।

୯୮ । ସେମାନେ ସେହି କଥା କହିଥିଲେ ଯାହା ୪୯ ଶ୍ଳୋକରେ ଅଛି ।

୯୯ । ନିର୍ଦ୍ଦିଷ୍ଟ ସମୟ—ପରଲୋକରେ ଶେଷ ବିଚାର ଦିନ ।

ତୁମ୍ଭେ କୁହ, "ଯଦି ତୁମ୍ଭେମାନେ ଆମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହ ଭଣ୍ଡାରର ଅଧିକାରୀ ହୋଇ ଥାନ୍ତ, ତେବେ ବ୍ୟୟ ହୋଇଯିବା ଆଶଙ୍କାରେ ନିଶ୍ଚୟ ତାହାକୁ ବନ୍ଦ କରି ରଖନ୍ତ; ଏବଂ ମନୁଷ୍ୟ କୃପଣ ଅଟେ" ।୧୦୦।

## ୧୨ଶ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ମୂସାଙ୍କୁ ନଅଗୋଟି ଉଜ୍ଜ୍ୱଳ ନିଦର୍ଶନ ଦେଇଥିଲୁଁ, ସୁତରାଂ ତୁମ୍ଭେ ଇସ୍‌ରାଇଲ ବଂଶଧରମାନଙ୍କୁ ପଚାର, ଯେତେବେଳେ ସେ ସେମାନଙ୍କ ନିକଟ ଉପସ୍ଥିତ ହୋଇଥିଲେ ସେତେବେଳେ ଫେରଅଉନ୍ ତାହାଙ୍କୁ କହିଥିଲା, "ହେ ମୂସା, ନିଶ୍ଚୟ ଅମ୍ଭେ ତୁମ୍ଭଙ୍କୁ ଯାଦୁଗ୍ରସ୍ତ ବୋଲି ମନେ କରୁଁ" ।୧୦୧।

ସେ କହିଥିଲେ, "ନିଶ୍ଚୟ ତୁମ୍ଭେ ଜାଣ ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳର ପାଳନକର୍ତ୍ତାଙ୍କ ବ୍ୟତୀତ ଆଉ କେହି, ଏମାନଙ୍କୁ ପ୍ରକାଶ୍ୟ ପ୍ରମାଣ ସ୍ୱରୂପ ଅବତୀର୍ଣ୍ଣ କରି ନାହାନ୍ତି; ଏବଂ ହେ ଫେର୍ ଅଉନ, ନିଶ୍ଚୟ ଅମ୍ଭେ ତୁମ୍ଭଙ୍କୁ ନିଜର ଧ୍ୱଂସ ଆଡ଼କୁ ଯାଉଥିବାର ମନେ କରୁଁ" ।୧୦୨।

ତାପରେ ସେ ସେମାନଙ୍କୁ ସେ ଦେଶରୁ ଦୂରୀଭୂତ କରିବା ପାଇଁ ଇଚ୍ଛା କରିଥିଲା, କିନ୍ତୁ ଅମ୍ଭେ ତାକୁ ଓ ତାହାର ସଙ୍ଗୀମାନଙ୍କୁ ଜଳମଗ୍ନ କରିଥିଲୁଁ ।୧୦୩।

ଏବଂ ତାପରେ ଅମ୍ଭେ ଇସ୍‌ରାଇଲ ବଂଶଧରମାନଙ୍କୁ କହିଥିଲୁଁ, "ତୁମ୍ଭେମାନେ ଏହି ଦେଶରେ ବାସ କର"; ତାପରେ ଯେତେବେଳେ ପରବର୍ତ୍ତୀ ଅଙ୍ଗୀକାର ଉପସ୍ଥିତ ହେଲା ସେତେବେଳେ ଅମ୍ଭେ ତୁମ୍ଭମାନଙ୍କୁ ଆଣି ଏକତ୍ରିତ କରିଥିଲୁ ।୧୦୪।

---

୧୦୦ । ମନୁଷ୍ୟ ସାଧାରଣତଃ କୃପଣ ସ୍ୱଭାବର ଅଟେ ଏବଂ ଦାନ ଧ୍ୟାନ ଆଦି ପୁଣ୍ୟ କାର୍ଯ୍ୟଦ୍ୱାରା ତାହାର ଧନ ସମ୍ପତ୍ତି ଶେଷ ହୋଇଯିବ ବୋଲି ସେ ତାହା ପୁଣ୍ୟ କାର୍ଯ୍ୟରେ ବ୍ୟୟ କରିବାକୁ କୁଣ୍ଠିତ ହୁଏ । ମାତ୍ର ପରମେଶ୍ୱର ଦୟାମୟ ଓ କରୁଣା ସାଗର । ସେ ତାଙ୍କର ଅସରନ୍ତି ଅନୁଗ୍ରହ ଭଣ୍ଡାରରୁ ତାଙ୍କର ବିଶ୍ୱସ୍ତ ସେବକମାନଙ୍କୁ ଇହକାଳ ଓ ପରକାଳରେ ପ୍ରଚୁର ଦାନ କରନ୍ତି ।

୧୦୧ । ନଅଗୋଟି ନିଦର୍ଶନ– ପରମେଶ୍ୱର ମହାପୁରୁଷ ମୂସାଙ୍କୁ ତାଙ୍କର ପ୍ରେରିତତ୍ୱର ପ୍ରମାଣ ସ୍ୱରୂପ ନିମ୍ନଲିଖିତ ୯ଗୋଟି ନିଦର୍ଶନମାନ ଦେଇଥିଲେ—(୧) ତାଙ୍କର ଯଷ୍ଟି ସର୍ପର ଆକାର ଧାରଣ କରିବା (୨) ତାଙ୍କର ହାତ ଉଜ୍ଜ୍ୱଳ ଆଲୋକମୟ ଦେଖାଯିବା (୩) ମଡ଼କ (୪ ଅନାବୃଷ୍ଟି ଓ ଶସ୍ୟହାନି (୫) ଝଡ଼ିକା (୬) ଝିଣ୍ଟିକା (୭) ଜୋକ (୮) ବେଙ୍ଗ (୯) ଶୋଣିତ । ଦେଖ ୭ମ ଅଧ୍ୟାୟ ଶ୍ଳୋ ୧୦୭, ୧୦୮, ୧୩୦, ୧୩୩, ୧୩୪କ ଓ ଓ ୨୭ ଅଧ୍ୟାୟର ୧୨ ଶ୍ଳୋକ ।

୧୦୨ । ଏମାନଙ୍କୁ—ଗୋ୯ଟି ନିଦର୍ଶନମାନଙ୍କୁ ।

୧୦୩ । ସେ—ଫେରଅଉନ୍ । ସେମାନଙ୍କୁ—ଇସ୍‌ରାଇଲ ବଂଶଧରମାନଙ୍କୁ । ମହାପୁରୁଷ ମୂସାଙ୍କ ବିସ୍ତୃତ ବିବରଣୀ ୭ମ ଅଧ୍ୟାୟ ଶ୍ଳୋ୧୦୩ରୁ ୧୭୦କରେ ଦିଆଯାଇଅଛି ।

୧୦୪ । ଏହି ଦେଶରେ—ସେମାନଙ୍କର ମାତୃଭୂମି ସିରିଆ ଦେଶ । ୧ମ ଅଙ୍ଗୀକାର ୫ମ ଶ୍ଳୋକରେ ଏବଂ ୨ୟ ଅଙ୍ଗୀକାର ୭ମ ଶ୍ଳୋକରେ ମଧ୍ୟ ସ୍ପଷ୍ଟରେ ବର୍ଣ୍ଣିତ ଅଛି ।

କେତେକ ଟୀକାକାରଙ୍କ ମତରେ ପରବର୍ତ୍ତୀ ଅଙ୍ଗୀକାର—ଅର୍ଥାତ୍ ଶେଷ ବିଚାର ଦିନ ଅଟେ । ଯାହା ଭବିଷ୍ୟତରେ ପୂରଣ ହେବ ।

ଏବଂ ଆମ୍ଭେ ଏହାକୁ ସତ୍ୟରୂପେ ଅବତୀର୍ଣ୍ଣ କରିଅଛୁଁ ଏବଂ ଏହା ସତ୍ୟରୂପେ ଅବତୀର୍ଣ୍ଣ ହୋଇଅଛି; ଏବଂ ଆମ୍ଭେ ତୁମ୍ଭକୁ ସୁସମ୍ବାଦ ଦାତା ଓ ଭୟ ପ୍ରଦର୍ଶନକାରୀ ବ୍ୟତୀତ ଅନ୍ୟ କୌଣସି ଭାବରେ ପ୍ରେରଣ କରିନାହୁଁ ।୧୦୫।

ଏବଂ ଆମ୍ଭେ କୋରାନକୁ ଏଥିପାଇଁ ବିଭିନ୍ନ ଅଂଶରେ ବିଭକ୍ତ କରିଅଛୁଁ; ଯେପରି ତୁମ୍ଭେ ଲୋକମାନଙ୍କ ନିକଟରେ ଏହାକୁ କ୍ରମଶଃ ଆବୃତ୍ତି କରିବ, ଏବଂ ଆମ୍ଭେ ଏହାକୁ କ୍ରମେ କ୍ରମେ ଅବତୀର୍ଣ୍ଣ କରିଅଛୁଁ ।୧୦୬।

ତୁମ୍ଭେ କୁହ, "ତୁମ୍ଭେମାନେ ଏଥିରେ ବିଶ୍ୱାସ ସ୍ଥାପନ କର ଅଥବା ବିଶ୍ୱାସ ସ୍ଥାପନ ନକର, ନିଶ୍ଚୟ ଏଥିପୂର୍ବେ ଯେଉଁମାନଙ୍କୁ ଜ୍ଞାନ ଦିଆ ଯାଇ ଅଛି, ଯେତେବେଳେ ସେମାନଙ୍କର ନିକଟ ଏହା ପାଠକରାହୁଏ ସେତେବେଳେ ସେମାନେ ଅବନତ ମୁଖରେ ସାଷ୍ଟାଙ୍ଗ ପ୍ରଣିପାତ କରି ଥାଆନ୍ତି ।୧୦୭।

ଏବଂ ସେମାନେ କହି ଥାଆନ୍ତି, "ଆମ୍ଭମାନଙ୍କର ପାଳନକର୍ତ୍ତାହିଁ ପବିତ୍ରତମ । ନିଶ୍ଚୟ ଆମ୍ଭମାନଙ୍କର ପାଳନ କର୍ତ୍ତାଙ୍କର ଅଙ୍ଗୀକାର ପୂର୍ଣ୍ଣହେବ" ।୧୦୮।

ଏବଂ ସେମାନେ ଅବନତ ମୁଖରେ କ୍ରନ୍ଦନ କରୁଥିବା ଅବସ୍ଥାରେ ପ୍ରଣିପାତ କରନ୍ତି ଏବଂ ଏହାଦ୍ୱାରା ସେମାନଙ୍କର ବିନୟ ବର୍ଦ୍ଧିତ ହୋଇଥାଏ ।୧୦୯।

ତୁମ୍ଭେ କୁହ, "ତୁମ୍ଭେମାନେ ପରମେଶ୍ୱରଙ୍କୁ ଆହ୍ୱାନ କର ଅଥବା ଦୟାମୟଙ୍କୁ ଆହ୍ୱାନ କର, ତୁମ୍ଭେମାନେ ଯେଉଁ ନାମରେ ଆହ୍ୱାନ କର, ତାଙ୍କ ପାଇଁ ସମସ୍ତ ନାମ ଉତ୍କୃଷ୍ଟତର, ଏବଂ ତୁମ୍ଭେ ଆରାଧନାରେ ଅତ୍ୟୁଚ୍ଚ ଶବ୍ଦ କରନା ଅଥବା ଏଥିରେ ଖୁବ୍ ଆସ୍ତେ ପଢ଼ନା ଏବଂ ଏହାର ମଧ୍ୟମପନ୍ଥା ଅବଲମ୍ବନ କର ।୧୧୦।

ତୁମ୍ଭେ କୁହ," ସମସ୍ତ ପ୍ରଶଂସା ପରମେଶ୍ୱରଙ୍କ ପାଇଁ ଯେ ପୁତ୍ର ଗ୍ରହଣ କରି ନାହାନ୍ତି ଏବଂ ଯାହାଙ୍କ ରାଜତ୍ୱରେ କୌଣସି ଅଂଶୀ ନାହିଁ ଏବଂ ସେ ଦୁର୍ବଳ ନୁହନ୍ତି ଯେ ତାଙ୍କର କେହି ସାହାଯ୍ୟକାରୀ ଦରକାର ହେବ, ଏବଂ ତାଙ୍କର ମହିମା ଘୋଷଣା କର ।୧୧୧।

———

୧୦୫ । ଏହାକୁ—ପବିତ୍ର କୋରାନକୁ ।

୧୦୭–୧୦୯ । ଏହି ଶ୍ଳୋକମାନଙ୍କରେ ଧର୍ମଗ୍ରନ୍ଥଧାରୀ ଇହୁଦୀ ଓ ଖ୍ରୀଷ୍ଟାନମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଇସଲାମ ଧର୍ମ ଗ୍ରହଣ କରିଅଛନ୍ତି ସେହିମାନଙ୍କୁ ଲକ୍ଷ୍ୟ କରାଯାଇଅଛି ।

୧୦୯ । ଏହି ଶ୍ଳୋକ ପାଠ ଓ ଶ୍ରବଣ ପରେ ସାଷ୍ଟାଙ୍ଗ ପ୍ରଣିପାତ (ସିଜ୍‌ଦା) କରିବା ବିଧେୟ ।

୧୧୦ । ପରମେଶ୍ୱରଙ୍କ ଭିନ୍ନ ଭିନ୍ନ ଗୁଣବାଚକ ନାମ ଅଛି । ତାଙ୍କୁ ଏହି ଉତ୍କୃଷ୍ଟ ନାମମାନଙ୍କ ମଧ୍ୟରୁ ଯେଉଁ ନାମରେ ଡାକ ସେଥିରେ କିଛି ଦୋଷ ନାହିଁ ।

୧୧୧ । ଏହି ଶ୍ଳୋକରେ ପରମେଶ୍ୱରଙ୍କ ସମ୍ବନ୍ଧରେ ନିମ୍ନଲିଖିତ ୩ ଗୋଟି ବିଷୟ ବର୍ଣ୍ଣିତ ହୋଇଅଛି:—

(୧) ତାଙ୍କର ପରିବାର କିମ୍ବା ସନ୍ତାନ ସନ୍ତତି ନାହାନ୍ତି; ସେ ଏକା ।

(୨) ବିଶ୍ୱଜଗତକୁ ନିୟନ୍ତ୍ରଣ କରିବା ପାଇଁ ତାଙ୍କର କେହି ଅଂଶୀଦାର ନାହାନ୍ତି; ସେ ଏକାକୀ ବିଶ୍ୱଜଗତର ସୃଷ୍ଟି ସ୍ଥିତି ଲୟର ଅଧିକାରୀ ।

(୩) ସେ ଏପରି ମହାଶକ୍ତିଶାଳୀ ଯେ କୌଣସି ବିଷୟରେ ସେ କ୍ଳାନ୍ତ କିମ୍ବା ଦୁର୍ବଳତା ଅନୁଭବ କରନ୍ତି ନାହିଁ; ସୁତରାଂ ତାଙ୍କର କେହି ସାହାଯ୍ୟକାରୀର ଆବଶ୍ୟକତା ନାହିଁ ।

—o—

# ୧୮ଶ ଅଧ୍ୟାୟ ।

## ନାମ—ଅଲ୍ କହେଫ୍ (ଗୁହା)

ମକ୍କାରେ ଅବତୀର୍ଣ୍ଣ । ଏଥିରେ ୧୨ ଟି ବିଭାଗ ଏବଂ ୧୧୦ଟି ଶ୍ଳୋକ ଅଛି ।

ଦୟାମୟ କରୁଣା ସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

## ୧ମ ବିଭାଗ

ସମସ୍ତ ପ୍ରଶଂସା ପରମେଶ୍ୱରଙ୍କ ପାଇଁ, ଯେ ତାଙ୍କ ସେବକ (ମୋହମ୍ମଦଙ୍କ) ପ୍ରତି କୋରାନ ଗ୍ରନ୍ଥ ଅବତୀର୍ଣ୍ଣ କରି ଅଛନ୍ତି ଏବଂ ଏଥିରେ କୌଣସି ବକ୍ରତା ନାହିଁ ।୧।

ଏହା ଅତି ସରଳ ଯେପରି ସେ ତାଙ୍କର କଠୋର ଶାସ୍ତି ସମ୍ବନ୍ଧରେ ଭୟ ପ୍ରଦର୍ଶନ କରିବେ ଏବଂ ଯେଉଁମାନେ ସତ୍‌କର୍ମ କରନ୍ତି ସେହି ବିଶ୍ୱାସକାରୀମାନଙ୍କୁ ସୁସମ୍ବାଦ ପ୍ରଦାନ କରିବେ ଯେ ସେମାନଙ୍କ ପାଇଁ ଉତ୍ତମ ପୁରସ୍କାର ରହିଅଛି ।୨।

ସେଥି ମଧ୍ୟରେ ସେମାନେ ଚିରକାଳ ବାସ କରିବେ ।୩।

ଏବଂ ସେ ସେମାନଙ୍କୁ ମଧ୍ୟ ଭୟ ପ୍ରଦର୍ଶନ କରିବେ, ଯେଉଁମାନେ କହନ୍ତି ଯେ ପରମେଶ୍ୱର ପୁତ୍ର ଗ୍ରହଣ କରି ଅଛନ୍ତି ।୪।

ଏ ସମ୍ବନ୍ଧରେ ସେମାନଙ୍କର ଏବଂ ସେମାନଙ୍କର ପୂର୍ବ ପୁରୁଷମାନଙ୍କର କୌଣସି ଜ୍ଞାନ ନାହିଁ, ଏହା ଅତି ଗୁରୁତର କଥା, ଯାହା ସେମାନଙ୍କର ମୁଖରୁ ବାହାରେ, ସେମାନେ ମିଥ୍ୟା ଛଡ଼ା ଆଉ କିଛି କହୁ ନାହାନ୍ତି । ୫ ।

---

ନାମକରଣ—ଏହି ଅଧ୍ୟାୟର ପ୍ରଥମ ଦ୍ୱିତୀୟ ବିଭାଗରେ ଗୁହାବାସୀ ସାଧୁପୁରୁଷମାନଙ୍କ ବିଷୟ ବର୍ଣ୍ଣିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଅଛି । ବିଧର୍ମୀ ମକ୍କାବାସୀମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରେରିତତ୍ୱର ସତ୍ୟତା ପରୀକ୍ଷା କରିବା ନିମନ୍ତେ ତାଙ୍କୁ ଗୁହାବାସୀ ସାଧୁ ପୁରୁଷମାନଙ୍କ ବିଷୟ ବର୍ଣ୍ଣନା କରିବା ନିମନ୍ତେ ପ୍ରଶ୍ନ କରିଥିଲେ । ସେଥିପାଇଁ ପରମେଶ୍ୱରଙ୍କ ପ୍ରତ୍ୟାଦେଶରୂପେ ସେମାନଙ୍କ ବିବରଣ ଅବତୀର୍ଣ୍ଣ ହୋଇଥିଲା । ଟୀକାକାରମାନଙ୍କ ମତରେ ବିଧର୍ମୀ ଅତ୍ୟାଚାରୀ ସମ୍ରାଟ ଦକସ୍ୟାନୁସଙ୍କ ରାଜତ୍ୱ ସମୟରେ ସମ୍ରାଟଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ସକାଶେ କେତେକ ଧର୍ମପ୍ରାଣ ଯୁବକ ରାଜଧାନୀ ପରିତ୍ୟାଗ କରି ନିକଟବର୍ତ୍ତୀ ପର୍ବତର ଗୁମ୍ଫାରେ ଯାଇ ବାସ କରିଥିଲେ । ସେହିମାନଙ୍କ ବିଷୟ ଏଥିରେ ବର୍ଣ୍ଣିତ ହୋଇଅଛି ।

୧ । ବକ୍ରତା ନାହିଁ—ସରଳତା ରହିଅଛି ।

୨ । ସେ=ପରମେଶ୍ୱର (ମହାପୁରୁଷ ମୋହମ୍ମଦଙ୍କ ଦ୍ୱାରାରେ)
ତାଙ୍କର—ପରମେଶ୍ୱରଙ୍କର । ଏହା—କୋରାନ ।

(ହେ ମୋହମ୍ମଦ) ତାପରେ ଯଦି ସେମାନେ ଏହି କଥାରେ ବିଶ୍ୱାସ ନକରନ୍ତି ତେବେ ତୁମ୍ଭେ ସେହି ଦୁଃଖରେ ସେମାନଙ୍କ ପାଇଁ ସମ୍ଭବତଃ ନିଜ ଜୀବନ ନଷ୍ଟ କରିବ ।୬।

ନିଶ୍ଚୟ ପୃଥିବୀ ଉପରେ ଯାହାକିଛି ଅଛି ଅମ୍ଭେ ସେ ସବୁକୁ ତହିଁର ଶୋଭା ପାଇଁ ସୃଷ୍ଟି କରିଅଛୁଁ, ଯେପରି ସେମାନଙ୍କୁ ପରୀକ୍ଷା କରିବୁଁ ଯେ ସେମାନଙ୍କ ମଧ୍ୟରୁ କର୍ମରେ କିଏ ଉତ୍କୃଷ୍ଟତର ।୭।

ଏବଂ ନିଶ୍ଚୟ ଦିନେ ଅମ୍ଭେ ଏହି ପୃଥିବୀ ଉପରେ ଯାହାକିଛି ଅଛି ତାହାକୁ ତରୁଲତା ହୀନ ଶୁଷ୍କ ସମତଳ କରିଦେବୁଁ ।୮।

ତେବେ କଅଣ ତୁମ୍ଭେ ଗୁହାବାସୀମାନଙ୍କୁ ଏବଂ ଖୋଦିତ ଲିପିକୁ ଅମ୍ଭର ନିଦର୍ଶନମାନଙ୍କ ମଧ୍ୟରେ ବିସ୍ମୟକର ବୋଲି ମନେକରୁଅଛ ? ୯ ।

ଯେତେବେଳେ ଯୁବକମାନେ ଗୁହାରେ ଆଶ୍ରୟ ଗ୍ରହଣ କରିଥିଲେ ସେତେବେଳେ ସେମାନେ କହିଥିଲେ, "ହେ ଅମ୍ଭମାନଙ୍କର ପାଳନକର୍ତ୍ତା, ତୁମ୍ଭେ ତୁମ୍ଭ ନିକଟରୁ ଅମ୍ଭମାନଙ୍କୁ ଅନୁଗ୍ରହ ଦାନକର ଏବଂ ଅମ୍ଭମାନଙ୍କ ପାଇଁ ଅମ୍ଭମାନଙ୍କ କାର୍ଯ୍ୟ ସୁପଥରେ ପରିଚାଳିତ କର"୧୦।

ତାପରେ ଅମ୍ଭେ ନିର୍ଦ୍ଧାରିତ ବର୍ଷମାନଙ୍କ ପାଇଁ ଗୁହାମଧ୍ୟରେ ସେମାନଙ୍କ କର୍ଣ୍ଣକୁ ଆବୃତ କରିଥିଲୁଁ ।୧୧।

ତାପରେ ଅମ୍ଭେ ସେମାନଙ୍କୁ ଉଠାଇଥିଲୁଁ ଯେପରି ଅମ୍ଭେ ଜାଣି ପାରୁ ଯେ ସେମାନଙ୍କର ଦୁଇଦଳ ମଧ୍ୟରେ କିଏ ସେମାନଙ୍କର ନିର୍ଦ୍ଧାରିତ ଅବସ୍ଥାନ କାଳ ଗଣନା କରିବାକୁ ସକ୍ଷମ ।୧୨।

## ୨ୟ ବିଭାଗ

ଅମ୍ଭେ ସତ୍ୟ ସହିତ ସେମାନଙ୍କର ସମ୍ବାଦ ତୁମ୍ଭପ୍ରତି ବର୍ଣ୍ଣନା କରୁଅଛୁଁ; ନିଶ୍ଚୟ ସେମାନେ କେତେକ ଯୁବକ ଥିଲେ, ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରିଥିଲେ ଏବଂ ଅମ୍ଭେ ସେମାନଙ୍କୁ ଅଧିକ ସୁପଥ ପ୍ରଦାନ କରିଥିଲୁଁ । ୧୩ ।

ଏବଂ ଅମ୍ଭେ ସେମାନଙ୍କ ହୃଦୟରେ ଶକ୍ତିଦାନ କରିଥିଲୁଁ ଏବଂ ଯେତେବେଳେ ସେମାନେ ଦଣ୍ଡାୟମାନ ହୋଇଥିଲେ ସେତେବେଳେ ସେମାନେ କହିଥିଲେ, "ଅମ୍ଭମାନଙ୍କର ପାଳନକର୍ତ୍ତା ହିଁ ଆକାଶମଣ୍ଡଳ ଓ

---

୬ । ଏହି କଥାରେ—କୋରାନରେ ।

୭ । ସତ୍‌କାର୍ଯ୍ୟର ତୁଳନାରେ କିଏ ଉତ୍କୃଷ୍ଟ ହୁଏ ତାହାହିଁ ପରମେଶ୍ୱର ପରୀକ୍ଷା କରିବେ ।
ସେମାନଙ୍କୁ—ଲୋକମାନଙ୍କୁ ।

୮ । ଏହି ସୁଶୋଭିତ ପୃଥିବୀ ଦିନେ ଧ୍ୱଂସ ମୁଖରେ ପତିତ ହେବ ।

୯-୧୨ । ଏହି ଶ୍ଳୋକମାନଙ୍କରେ ଗୁହାବାସୀମାନଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ।
ଖୋଦିତ ଲିପି—ସ୍ମୃତି ଚିହ୍ନ ସ୍ୱରୂପ ସେହି ଗୁହା ନିକଟରେ ଖୋଦିତ ହୋଇଥିବା ପ୍ରସ୍ତର ଫଳକ ।

୧୧ । କର୍ଣ୍ଣକୁ ଆବୃତ କରିଥିଲୁଁ—ସେମାନଙ୍କୁ ନିଦ୍ରାଭିଭୂତ କରିଥିଲୁଁ ଯେପରି ସେମାନେ କିଛି ଶୁଣିପାରୁନଥିଲେ ।

୧୨ । ଦୁଇଦଳ—ଚୈତନ୍ୟ ଲାଭପରେ ଗୁହାବାସୀମାନଙ୍କ ମଧ୍ୟରେ ଦୁଇଦଳ ହୋଇଥିଲେ । ଦଳେ କହିଲେ ଅମ୍ଭେମାନେ ଏଠାରେ ଦିନେ ବା ଦିନର କେତେକାଂଶ ଶୋଇଥିଲୁଁ । ଅନ୍ୟ ଦଳ କହିଥିଲେ ପ୍ରକୃତ ଅବସ୍ଥାନ କାଳ ପରମେଶ୍ୱରଙ୍କୁହିଁ ଜଣା । ୧୯ ଶ୍ଳୋକ ଦେଖ ।
୨ୟ ଓ ୩ୟ ବିଭାଗରେ ଗୁହାବାସୀମାନଙ୍କ ବିସ୍ତୃତ ବିବରଣ ଦିଆଯାଇଅଛି ।

ଭୂମଣ୍ଡଳର ପ୍ରଭୁ; ଅମ୍ଭେମାନେ ତାଙ୍କ ପରିବର୍ତ୍ତିରେ ଅନ୍ୟ ଉପାସ୍ୟଙ୍କୁ ଅହ୍ୱାନ କରୁଁ ନାହିଁ, କାରଣ ତାହା କଲେ ନିଶ୍ଚୟ ଅମ୍ଭେମାନେ ଅତିରଞ୍ଜିତ କଥା କହିବୁଁ । ୧୪ ।

"ଅମ୍ଭମାନଙ୍କର ଏହି ସମ୍ପ୍ରଦାୟ ତାଙ୍କ ପରିବର୍ତ୍ତିରେ ଅନ୍ୟ ଉପାସ୍ୟ ଗ୍ରହଣ କରିଅଛନ୍ତି; ସେମାନେ କାହିଁକି ଏ ସମ୍ବନ୍ଧରେ ପ୍ରକାଶ୍ୟ ପ୍ରମାଣ ଦର୍ଶାଉ ନାହାନ୍ତି ? ତାହାହେଲେ ଯେ ପରମେଶ୍ୱରଙ୍କ ସମ୍ବନ୍ଧରେ ମିଥ୍ୟାରୋପ କରେ ତାହା ଅପେକ୍ଷା କିଏ ଅଧିକତର ଅତ୍ୟାଗୃହୀ ?" ୧୫ ।

ସେମାନେ ପରସ୍ପର କହିଥିଲେ "ଏବଂ ଯେତେବେଳେ ତୁମ୍ଭେମାନେ ସେମାନଙ୍କୁ ଏବଂ ପରମେଶ୍ୱରଙ୍କ ବ୍ୟତୀତ ଯାହାଙ୍କୁ ସେମାନେ ଉପାସନା କରନ୍ତି ସେମାନଙ୍କୁ ପରିତ୍ୟାଗ କରିବ, ସେତେବେଳେ ତୁମ୍ଭେମାନେ ଗୁହା ମଧ୍ୟରେ ଆଶ୍ରୟ ଗ୍ରହଣ କର; ତୁମ୍ଭମାନଙ୍କର ପାଳନକର୍ତ୍ତା ତୁମ୍ଭମାନଙ୍କ ପ୍ରତି ତାଙ୍କର ଅନୁଗ୍ରହ ପ୍ରସାରିତ କରିବେ, ଏବଂ ତୁମ୍ଭମାନଙ୍କପାଇଁ ତୁମ୍ଭମାନଙ୍କର କାର୍ଯ୍ୟମାନଙ୍କୁ ସହଜସାଧ୍ୟ କରିଦେବେ" । ୧୬ ।

ହେ ମୋହମ୍ମଦ, ତୁମ୍ଭେ ଦେଖିବ ଯେ ସୂର୍ଯ୍ୟ ଯେତେବେଳେ ଉଦିତ ହୁଏ, ସେତେବେଳେ ସେମାନଙ୍କ ଗୁହାର ଦକ୍ଷିଣ ଦିଗକୁ ଅବରୋହଣ କରେ ଏବଂ ଯେତେବେଳେ ଅସ୍ତହୁଏ ସେତେବେଳେ ବାମ ଦିଗରେ ଅତିକ୍ରମ କରେ ଏବଂ ସେମାନେ ତାହାର ବିସ୍ତୃତ ପ୍ରାନ୍ତର ମଧ୍ୟରେ ଅବସ୍ଥାନ କରନ୍ତି; ଏହା ପରମେଶ୍ୱରଙ୍କ ନିଦର୍ଶନମାନଙ୍କର ଅନ୍ତର୍ଗତ; ପରମେଶ୍ୱର ଯାହାକୁ ପଥ ଦେଖାନ୍ତି ବାସ୍ତବରେ ସେହି ସୁପଥ ପ୍ରାପ୍ତ ହୁଏ ଏବଂ ଯାହାକୁ ବିଭ୍ରାନ୍ତ କରନ୍ତି ବାସ୍ତବରେ ତୁମ୍ଭେ ତାହାପାଇଁ କୌଣସି ପଥ ପ୍ରଦର୍ଶନକାରୀ ଅଭିଭାବକ ପାଇବ ନାହିଁ । ୧୭ ।

## ୩ୟ ବିଭାଗ

ଏବଂ ତୁମ୍ଭେ ସେମାନଙ୍କୁ ଜାଗ୍ରତ ମନେ କରୁଅଛ, କିନ୍ତୁ ସେମାନେ ନିଦ୍ରିତ ଥିଲେ ଏବଂ ଅମ୍ଭେ ସେମାନଙ୍କୁ ଡାହାଣ ଦିଗକୁ ଓ ବାମ ଦିଗକୁ ପାର୍ଶ୍ୱ ପରିବର୍ତ୍ତିନ କରାଉଥିଲୁଁ ଏବଂ ସେମାନଙ୍କର କୁକୁର ଦ୍ୱାର ଦେଶରେ ତାହାର ସମ୍ମୁଖ ପାଦଦ୍ୱୟ ପ୍ରସାରିତ କରି ରହିଥିଲା; ଯଦି ତୁମ୍ଭେ ସେମାନଙ୍କ ପ୍ରତି ଦୃଷ୍ଟିପାତ କରିଥାନ୍ତ, ତେବେ ନିଶ୍ଚୟ ତୁମ୍ଭେ ପଳାୟନ କରିବା ପାଇଁ ପୃଷ୍ଠ ପ୍ରଦର୍ଶନ କରିଥାନ୍ତ ଏବଂ ନିଶ୍ଚୟ ତୁମ୍ଭେ ସେମାନଙ୍କଠାରୁ ଭୟରେ ଅଭିଭୂତ ହୋଇଥାନ୍ତ । ୧୮ ।

ଏବଂ ଏହିପରି ଅମ୍ଭେ ସେମାନଙ୍କୁ ନିଦ୍ରାରୁ ଜାଗ୍ରତ କରାଇଥିଲୁଁ ଯେପରି ସେମାନେ ପରସ୍ପରକୁ ପ୍ରଶ୍ନ କରିବେ; ସେମାନଙ୍କ ମଧ୍ୟରୁ ଜଣେ ବକ୍ତା କହିଥିଲା, "ତୁମ୍ଭେମାନେ ଏଠାରେ କେତେ ସମୟ ଅବସ୍ଥାନ କରିଅଛ" ? ସେମାନେ କହିଥିଲେ, "ଅମ୍ଭେମାନେ ଏକ ଦିନ କିମ୍ବା ଏକ ଦିନର କେତେକ ଅଂଶ ଅବସ୍ଥାନ କରିଅଛୁଁ"; (ଅନ୍ୟମାନେ) କହିଥିଲେ, "ତୁମ୍ଭେମାନେ କେତେ ସମୟ ଅବସ୍ଥାନ କରିଅଛ ତାହା ତୁମ୍ଭମାନଙ୍କର ପାଳନକର୍ତ୍ତା ହିଁ ଅବଗତ ଅଛନ୍ତି; ସୁତରାଂ ତୁମ୍ଭମାନଙ୍କ ମଧ୍ୟରୁ ଏକ ଜଣଙ୍କୁ ତୁମ୍ଭମାନଙ୍କର ଏହି

---

୧୪ । ଦଣ୍ଡାୟମାନ ହୋଇଥିଲେ=ଅତ୍ୟାଗୃହୀ ରାଜା ଦକିୟାନୁସ ଓ ପୌତ୍ତଳିକତା ବିରୁଦ୍ଧରେ ଦଣ୍ଡାୟମାନ ହୋଇଥିଲେ ।

୧୬ । ତୁମ୍ଭେମାନେ—ଧର୍ମପ୍ରାଣ ଯୁବକମାନଙ୍କର ଶ୍ରୋତାମାନେ ।
ସେମାନଙ୍କୁ—ସମ୍ପ୍ରଦାୟର ବିଧର୍ମୀ ଲୋକମାନଙ୍କୁ ।

ରୌପ୍ୟ ମୁଦ୍ରା ସହିତ ନଗରକୁ ପ୍ରେରଣ କର, ତାପରେ ସେ ଦେଖିବ କାହା ନିକଟରେ ଉତ୍କୃଷ୍ଟ ଖାଦ୍ୟ ଅଛି, ପରେ ସେ ସେଥିରୁ ତୁମ୍ଭମାନଙ୍କ ପାଇଁ ଖାଦ୍ୟ ସାମଗ୍ରୀ ନେଇ ଆସିବ, ଏବଂ ସେ ଯେପରି ନମ୍ର ଭାବରେ ବ୍ୟବହାର କରିବ ଏବଂ ତୁମ୍ଭମାନଙ୍କ ସମ୍ବନ୍ଧରେ ଯେପରି କାହାରିକୁ କିଛି ଜଣାଇବ ନାହିଁ । ୧୯ ।

"ଯଦି ସେମାନେ ତୁମ୍ଭମାନଙ୍କ ଉପରେ ପରାକ୍ରାନ୍ତ ହୁଅନ୍ତି ତେବେ ନିଶ୍ଚୟ ସେମାନେ ତୁମ୍ଭମାନଙ୍କୁ ପ୍ରସ୍ତର-ଘାତରେ ବିଚୂର୍ଣ୍ଣ କରିଦେବେ ଅଥବା ତୁମ୍ଭମାନଙ୍କୁ ସେମାନଙ୍କ ଧର୍ମରେ ଫେରାଇ ଆଣିବେ ଏବଂ ସେତେବେଳେ ତୁମ୍ଭେମାନେ କୌଣସି ମତେ ସୁଫଳ ଲାଭ କରିପାରିବ ନାହିଁ ।" ୨୦ ।

ଏବଂ ଏହିପରି ଆମ୍ଭେ ସେମାନଙ୍କ ଘଟନା ଲୋକ ସମାଜରେ ପ୍ରକାଶିତ କରିଥିଲୁଁ, ଯେପରି ସେମାନେ ଅବଗତ ହେବେ ଯେ ପରମେଶ୍ୱରଙ୍କ ଅଙ୍ଗୀକାର ସତ୍ୟ ଏବଂ ନିଶ୍ଚୟ ସେହି ସମୟ ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ; ଯେତେବେଳେ ସେମାନେ ପରସ୍ପର ମଧ୍ୟରେ ସେମାନଙ୍କର କୃତକାର୍ଯ୍ୟ ସମ୍ବନ୍ଧରେ ତର୍କ କରୁଥିଲେ ସେତେବେଳେ ସେମାନେ କହୁଥିଲେ, "ସେମାନଙ୍କ ଗୁହା ଉପରେ ଗୋଟିଏ ପକ୍କା କୋଠା ତିଆରି କର।" ସେମାନଙ୍କର ପାଳନକର୍ତ୍ତା ସେମାନଙ୍କୁ ଭଲରୂପେ ଜାଣନ୍ତି; ଯେଉଁମାନେ ସେମାନଙ୍କ କୃତକାର୍ଯ୍ୟ ଉପରେ ପରାକ୍ରାନ୍ତ ଥିଲେ ସେମାନେ କହୁଥିଲେ, "ନିଶ୍ଚୟ ଆମ୍ଭେମାନେ ସେମାନଙ୍କ ଗୁହା ଉପରେ ଗୋଟାଏ ମସ୍‌ଜିଦ ନିର୍ମାଣ କରିବୁଁ ।" ୨୧ ।

କେହି କହିବେ ଯେ ସେମାନେ ତିନିଜଣ ଥିଲେ, ଚତୁର୍ଥ ସେମାନଙ୍କର କୁକୁର; ଆଉ କେହି ଅଜ୍ଞାତ ବିଷୟରେ ଅନୁମାନ କରି କହିବେ ଯେ ସେମାନେ ପାଞ୍ଚ ଜଣ ଥିଲେ, ଷଷ୍ଠ ସେମାନଙ୍କର କୁକୁର; ଏବଂ କେହି କେହି କହିବେ ଯେ ସାତଜଣ, ଅଷ୍ଟମ ସେମାନଙ୍କର କୁକୁର; ତୁମ୍ଭେ କୁହ, "ଆମ୍ଭର ପାଳନକର୍ତ୍ତାହିଁ ସେମାନଙ୍କର ସଂଖ୍ୟା ଅବଗତ ଅଛନ୍ତି; ଅଳ୍ପ ସଂଖ୍ୟକ ବ୍ୟତୀତ ଆଉ କେହି ଅବଗତ ନୁହନ୍ତି; ଏତଏବ ତୁମ୍ଭେମାନେ ସେମାନଙ୍କର ସମ୍ବନ୍ଧରେ ପ୍ରକାଶ୍ୟ ବିଷୟ ଛଡ଼ା ଅନ୍ୟ ବିଷୟରେ ତର୍କ କରନା, ଏବଂ ସେମାନଙ୍କର କାହାରିକୁ ସେମାନଙ୍କ ସମ୍ବନ୍ଧରେ ପ୍ରଶ୍ନ କରନା" ।୨୨।

---

୨୧ । ଗୁହାବାସୀମାନେ ଜାଗ୍ରତ ହେବା ପରେ ସେମାନଙ୍କ ମଧ୍ୟରୁ ଜଣେ ସେମାନଙ୍କ ନିକଟରେ ଥିବା ରୌପ୍ୟମୁଦ୍ରା ନେଇ ଖାଦ୍ୟ କିଣିବା ପାଇଁ ବଜାରକୁ ଯାଇଥିଲା । ସାଇ ଲୋକମାନେ ସେହି ପୁରାତନ ମୁଦ୍ରା ଦେଖି ସନ୍ଦେହରେ ତାକୁ ଚୋରୀର ଅପରାଧରେ ଧୃତ କରିଥିଲେ । ସୁତରାଂ ବାଧ୍ୟ ହୋଇ ସେ ଲୋକ ସମସ୍ତ ଘଟଣା ବର୍ଣ୍ଣନା କରିଥିଲା ଏବଂ ପୁରାତନ ଲୋକମାନେ ଏ ଘଟନା ସତ୍ୟ ଥିବାର ସାକ୍ଷ୍ୟ ଦେଇଥିଲେ । ଏହିପରି ଭାବରେ ଗୁହାବାସୀମାନଙ୍କର ଘଟନା ପ୍ରକାଶ ପାଇଥିଲା, ଯଦ୍ଦ୍ୱାରା ଲୋକମାନେ ପରମେଶ୍ୱରଙ୍କ ପ୍ରତିଶ୍ରୁତ ଶେଷ ବିଚାର ଦିନରେ ପୁନରୁତ୍ଥାନ ବିଷୟ ପ୍ରତି ବିଶ୍ୱାସ ସ୍ଥାପନ କରିଥିଲେ ଏବଂ ଏହି ଘଟନାର ସ୍ମୃତିଚିହ୍ନ ସ୍ୱରୂପ ଗୁହା ନିକଟରେ ଗୋଟିଏ ମସଜିଦ ନିର୍ମାଣ କରିବାର ସ୍ଥିର କରିଥିଲେ ।

୨୨ । ଗୁହାବାସୀମାନଙ୍କର ସଂଖ୍ୟା ସମ୍ବନ୍ଧରେ ଲୋକମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମତ ବିଦ୍ୟମାନ ଥିଲା । ଏହି ଶ୍ଳୋକରେ ସେମାନଙ୍କ ନିର୍ଦ୍ଦିଷ୍ଟ ସଂଖ୍ୟା ଦିଆଯାଇ ନାହିଁ ଏବଂ ସେ ସମ୍ବନ୍ଧରେ ଯୁକ୍ତିତର୍କ ଓ ପରସ୍ପରରେ ପ୍ରଶ୍ନ କରିବା ପାଇଁ ନିଷେଧ କରାଯାଇଅଛି । କାରଣ, ଏପରି ଅନାବଶ୍ୟକ ବିଷୟରେ ଯୁକ୍ତିତର୍କ କରିବା ଦ୍ୱାରା କିଛି ଲାଭ ନାହିଁ ।

ସେମାନଙ୍କ ସମ୍ବନ୍ଧରେ—ଗୁହାବାସୀମାନଙ୍କ ସମ୍ବନ୍ଧରେ

ସେମାନଙ୍କ କାହାରିକୁ—ସାଧାରଣ ଲୋକମାନଙ୍କୁ

## ୪ର୍ଥ ବିଭାଗ

ଏବଂ କୌଣସି ବିଷୟରେ ଏପରି କୁହନା ଯେ, 'ନିଶ୍ଚୟ ଆମ୍ଭେ ଏହା କାଲି କରିବୁ,' ।୨୩।

ଯଦି ପରମେଶ୍ୱର ଇଚ୍ଛା କରନ୍ତି, (ଯୋଗ ନକରି); ଏବଂ ଯେତେବେଳେ ତୁମ୍ଭେ ଏହା କହିବାକୁ ଭୁଲିଯାଅ, ସେତେବେଳେ ନିଜ ପାଳନକର୍ତ୍ତାଙ୍କୁ ସ୍ମରଣ କର ଏବଂ କୁହ, "ସମ୍ଭବତଃ ଶୀଘ୍ର ଆମ୍ଭର ପାଳନକର୍ତ୍ତା ଆମ୍ଭଙ୍କୁ ଏହା ଅପେକ୍ଷା ନିକଟତର ପୁଣ୍ୟ ପଥ ଦେଖାଇବେ ।୨୪।

(ଏବଂ ଲୋକେ କହନ୍ତି) "ସେମାନେ ସେମାନଙ୍କ ଗୁହାରେ ତିନି ଶତାଧିକ ନଅବର୍ଷ ଅବସ୍ଥାନ କରିଥିଲେ" ।୨୫।

ତୁମ୍ଭେ କୁହ, "ସେମାନେ କେତେକାଳ ଅବସ୍ଥାନ କରିଥିଲେ ତାହା ପରମେଶ୍ୱରହିଁ ଅବଗତ ଅଛନ୍ତି; ତାଙ୍କର ପାଇଁ ଆକାଶମଣ୍ଡଳ ଓ ଭୂମଣ୍ଡଳର ଗୁପ୍ତ ବିଷୟର ଜ୍ଞାନ; ତାଙ୍କର ଦର୍ଶନ ଶକ୍ତି ଓ ଶ୍ରବଣ ଶକ୍ତି କିପରି ପ୍ରଖର । ଏବଂ ତାଙ୍କ ବ୍ୟତୀତ ସେମାନଙ୍କ ପାଇଁ କୌଣସି ଅଭିଭାବକ ନାହିଁ ଏବଂ ସେ ତାଙ୍କ ଆଦେଶ ସମ୍ବନ୍ଧରେ କାହାକୁ ଅଂଶୀ କରନ୍ତି ନାହିଁ" ।୨୬।

ଏବଂ ତୁମ୍ଭର ପାଳନକର୍ତ୍ତାଙ୍କର ଗ୍ରନ୍ଥରୁ ତୁମ୍ଭ ପ୍ରତି ଯାହା ପ୍ରତ୍ୟାଦିଷ୍ଟ ହୋଇଅଛି, ତୁମ୍ଭେ ତାହା ଆବୃତ୍ତି କର; କେହି ତାଙ୍କର ବାକ୍ୟକୁ ପରିବର୍ତ୍ତନ କରିପାରିବେ ନାହିଁ; ଏବଂ ତୁମ୍ଭେ ତାଙ୍କ ବ୍ୟତୀତ କୌଣସି ଆଶ୍ରୟ ପାଇବ ନାହିଁ ।୨୭।

ଏବଂ ତୁମ୍ଭେ ସେହିମାନଙ୍କ ସହିତ ମିଳା ମିଶା କରିଥାଅ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ସନ୍ତୋଷ କାମନାରେ ପ୍ରଭାତ ଓ ସନ୍ଧ୍ୟାରେ ତାଙ୍କୁ ଆହ୍ୱାନ କରନ୍ତି ଏବଂ ପାର୍ଥିବ ଜୀବନର ସୁଖ ସୌନ୍ଦର୍ଯ୍ୟ କାମନାରେ ସେମାନଙ୍କଠାରୁ ତୁମ୍ଭର ଦୃଷ୍ଟି ଫେରାଇ ନଅନା; ଏବଂ ସେହି ଲୋକର ଅନୁସରଣ କରନା ଯାହାର ହୃଦୟ ଆମ୍ଭର ସ୍ମରଣରୁ ଅମନଯୋଗୀ ହୋଇଅଛି ଏବଂ ଯେ ନିଜ ପ୍ରବୃତ୍ତିର ଅନୁସରଣ କରିଥାଏ ଏବଂ ଯାହାର କାର୍ଯ୍ୟ ସୀମାଲଙ୍ଘନ କରିଅଛି ।୨୮।

---

୨୩ । ୨୪ । ବିଧର୍ମୀ ମକ୍କାବାସୀମାନେ ଇହୁଦୀମାନଙ୍କ ପରାମର୍ଶରେ ମହାପୁରୁଷ ମୋହମ୍ମଦଙ୍କ ପ୍ରେରିତତ୍ୱର ସତ୍ୟତା ପରୀକ୍ଷା କରିବା ନିମନ୍ତେ ତାଙ୍କୁ ୩ ଗୋଟି ପ୍ରଶ୍ନ କରିଥିଲେ—ଜୀବାତ୍ମାର ସ୍ୱରୂପ ସମ୍ବନ୍ଧରେ, ଗୁହାବାସୀମାନଙ୍କ ସମ୍ବନ୍ଧରେ ଏବଂ ଜୁଲକରନଏନ ସମ୍ବନ୍ଧରେ । ମହାପୁରୁଷ ମୋହମ୍ମଦ ସେମାନଙ୍କୁ କହିଲେ, 'ଆମ୍ଭେ ଏହାର ଉତ୍ତର କାଲି ଦେବୁ' ମାତ୍ର 'ଇନ୍‌ଶାଅ ଅଲ୍ଲାହ' (ଯଦି ପରମେଶ୍ୱର ଇଚ୍ଛା କରନ୍ତି) ଏ କଥା କହିବାକୁ ଭୁଲିଗଲେ । ସେଥିପାଇଁ ୧୫ ଦିନ ପର୍ଯ୍ୟନ୍ତ ତାଙ୍କପ୍ରତି ପରମେଶ୍ୱରଙ୍କ ଆଦେଶ ବାଣୀ ଅବତୀର୍ଣ୍ଣ ହେଲା ନାହିଁ ଏବଂ ବିଧର୍ମୀମାନେ ତାଙ୍କୁ ଉପହାସ କରିବାକୁ ଲାଗିଲେ । ମହାପୁରୁଷ ମୋହମ୍ମଦ ବିଶେଷ ଅନୁତପ୍ତ ହୋଇ କ୍ଷମା ପ୍ରାର୍ଥନା କଲେ । ଏ ବିଷୟରେ ତାଙ୍କୁ ସତର୍କ କରି ଦେଇ ଏହି ଶ୍ଳୋକ ଦୁଇଟି ଅବତୀର୍ଣ୍ଣ ହୋଇଥିଲା । କୌଣସି ଅଙ୍ଗୀକାର କରିବା ସମୟରେ ଏହି ବାକ୍ୟ ସଙ୍ଗେ ସଙ୍ଗେ ଉଚ୍ଚାରଣ କରିବା ଆବଶ୍ୟକ; ଯଦି କେହି ଭୁଲିଯାଏ ତେବେ ମନେ ପଡ଼ିବା ସଙ୍ଗେ ସଙ୍ଗେ ତାହାର ଉଚ୍ଚାରଣ କରି ପରମେଶ୍ୱରଙ୍କ ସାହାଯ୍ୟ ପ୍ରାର୍ଥନା କରିବା ଆବଶ୍ୟକ ।

୨୫ । ୨୬ । ଗୁହାବାସୀମାନଙ୍କର ସଂଖ୍ୟାପରି ସେମାନେ କେତେକାଳ ଗୁହାରେ ଶୋଇଥିଲେ, ସେ ବିଷୟରେ ମଧ୍ୟ ସୂକ୍ଷ୍ମତର୍କ କରିବାରେ କିଛି ଲାଭ ନାହିଁ । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋ ୨୨କ ।

୨୮ । ଥରେ ବିଧର୍ମୀ ମକ୍କାବାସୀ ଧନୀ ଲୋକମାନେ ମହାପୁରୁଷ ମୋହମ୍ମଦଙ୍କ ନିକଟରେ ପ୍ରସ୍ତାବ କଲେ କି ଆପଣ ଯାହା ଦରିଦ୍ର ଲୋକମାନଙ୍କ ସହିତ ଉପବେଶନ କରୁଅଛନ୍ତି, ସେମାନଙ୍କ ସହିତ ଉପବେଶନ କରିବାକୁ

ଏବଂ ତୁମ୍ଭେ କୁହ, "ସତ୍ୟ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କ ଠାରୁ ଆସିଅଛି ଅତଏବ ଯେ ଇଚ୍ଛା କରେ ସେ ଏହାକୁ ବିଶ୍ୱାସ କରୁ ଏବଂ ଯେ ଇଚ୍ଛା କରେ ସେ ଏହାକୁ ଅବିଶ୍ୱାସ କରୁ; ଅମ୍ଭେ ଅତ୍ୟାଚାରୀମାନଙ୍କ ପାଇଁ ନରକାଗ୍ନି ପ୍ରସ୍ତୁତ କରି ରଖିଅଛୁଁ, ଯାହାର ଆବରଣ ସେମାନଙ୍କୁ ଘେରିନେବ; ଏବଂ ଯଦି ସେମାନେ ଜଳ ପାଇଁ ପ୍ରାର୍ଥନା କରିବେ ତେବେ ତରଳୀତ ତାମ୍ରବତ୍ ଜଳ ଦ୍ୱାରା ସେମାନଙ୍କ ପ୍ରାର୍ଥନା ପୂର୍ଣ୍ଣ କରାହେବ ଯାହା ସେମାନଙ୍କ ମୁଖମଣ୍ଡଳକୁ ସିଝାଇ ଦେବ; ସେହି ପାନୀୟ ନିକୃଷ୍ଟତର; ଏବଂ ସେହି ବାସସ୍ଥାନ ନିକୃଷ୍ଟତର ।୨୯।

ଅବଶ୍ୟ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କର୍ମ କରନ୍ତି, ନିଶ୍ଚୟ ଅମ୍ଭେ ସେମାନଙ୍କର ଉତ୍କୃଷ୍ଟତର କୃତ କର୍ମର ପୁରସ୍କାର ନଷ୍ଟ କରିବୁଁ ନାହିଁ ।୩୦।

ସେହିମାନଙ୍କ ପାଇଁ ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ ରହିଅଛି ଯାହାର ନିମ୍ନରେ ନଦୀମାନ ପ୍ରବାହିତ, ତାହା ମଧ୍ୟରେ ସେମାନଙ୍କୁ ସୁବର୍ଣ୍ଣ କଙ୍କଣରେ ସଜ୍ଜିତ କରାଯିବ ଏବଂ ସେମାନଙ୍କୁ ସୂକ୍ଷ୍ମ ସବୁଜ ରେଶମୀବସ୍ତ୍ର ଓ କାରୁକାର୍ଯ୍ୟ ଖଚିତ ମଖମଲ ବସ୍ତ୍ର ପିନ୍ଧିବାକୁ ଦିଆଯିବ; ସେଠାରେ ସେମାନେ ପଲଙ୍କମାନଙ୍କ ଉପରେ ଆଉଜିକରି ବିଶ୍ରାମ ନେଉଥିବେ; କି ଉପାଦେୟ ପ୍ରତିଦାନ । ଏବଂ କି ଉତ୍କୃଷ୍ଟତର ସୁଖ ନିକେତନ । ୩୧।

## ୫ମ ବିଭାଗ

ଏବଂ ସେମାନଙ୍କ ପାଇଁ ସେହି ଦୁଇ ବ୍ୟକ୍ତିର ଉପମା ବର୍ଣ୍ଣନା କର, ଯେଉଁମାନଙ୍କ ମଧ୍ୟରୁ ଏକଜଣ ପାଇଁ ଅମ୍ଭେ ଦୁଇଗୋଟି ଅଙ୍ଗୁରର ଉଦ୍ୟାନ କରିଥିଲୁଁ ଏବଂ ଅମ୍ଭେ ତାହାକୁ ଖଜୁରୀ ବୃକ୍ଷମାନଙ୍କ ଦ୍ୱାରା ଘେରାଇଥିଲୁଁ ଏବଂ ଏ ଦୁଇ ଉଦ୍ୟାନ ମଧ୍ୟରେ ଶସ୍ୟ କ୍ଷେତ୍ର କରିଥିଲୁଁ ।୩୨।

ଦୁଇ ଉଦ୍ୟାନ ଫଳପୁଞ୍ଜ ପ୍ରଦାନ କରିଥିଲେ ଏବଂ ସେଥିରେ କୌଣସି ବ୍ୟତିକ୍ରମ ଘଟିନଥିଲା ଏବଂ ଅମ୍ଭେ ସେମାନଙ୍କ ମଧ୍ୟରେ ନଦୀ ପ୍ରବାହିତ କରିଥିଲୁଁ; ।୩୩।

ଏବଂ ସେ ଧନଶାଳୀ ହୋଇଥିଲା; ତାପରେ ସେ ନିଜର ସଙ୍ଗୀ ସହିତ କଥୋପକଥନ ଛଳରେ କହିଥିଲା, "ଅମ୍ଭେ ତୁମ୍ଭ ଅପେକ୍ଷା ଧନରେ ଅଧିକତର ଏବଂ ଜନରେ ଶ୍ରେଷ୍ଠତର" ।୩୪।

ଏବଂ ସେ (ତାହାର ସଙ୍ଗୀ ସହିତ) ନିଜ ଉଦ୍ୟାନରେ ପ୍ରବେଶ କରିଥିଲା ଏବଂ ସେ ନିଜ ମନରେ ଅହଙ୍କାର କରିଥିଲା; ସେ କହିଥିଲା; "ଅମ୍ଭେ ମନେ କରୁନାହୁଁ ଯେ କୌଣସି କାଳେ ଏହା ବିନଷ୍ଟ ହେବ: ।୩୫।

---

ଅମ୍ଭମାନଙ୍କୁ ଲଜ୍ଜା ବୋଧ ହେଉଅଛି । ଯଦି ଆପଣ ସେମାନଙ୍କୁ ଅଲଗା କରି ଦିଅନ୍ତି ତେବେ ଅମ୍ଭେମାନେ ଆପଣଙ୍କ ନିକଟରେ ବସି ଉପଦେଶ ଶ୍ରବଣ କରିବୁଁ । ଏହାର ଉତ୍ତରରେ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ କହୁଅଛନ୍ତି, "ଯେଉଁ ଗରିବ ଦରିଦ୍ରମାନେ ପ୍ରଭାତ ଓ ସନ୍ଧ୍ୟାରେ ପରମେଶ୍ୱରଙ୍କୁ ସ୍ତୁତି କରନ୍ତି ତୁମ୍ଭେ ସେହିମାନଙ୍କ ସଙ୍ଗରେ ରୁହ ଏବଂ ସେମାନଙ୍କୁ ଅନ୍ତର କରନା ଏବଂ ଯେଉଁ ଧନୀ ଲୋକମାନେ ଧନ ଗର୍ବରେ ଅମ୍ଭକୁ ଭୁଲିଯାଇ ନିଜର କୁପ୍ରବୃତ୍ତିର ଅନୁସରଣ କରୁଅଛନ୍ତି ସେମାନଙ୍କ ସଙ୍ଗୀ ହୁଅନା" ।

"ଏବଂ ଆମ୍ଭେ ମନେ କରୁନାହୁଁ ଯେ ସେହି ସମୟ ଉପସ୍ଥିତ ହେବ ଏବଂ ଯଦି ଆମ୍ଭେ ନିଜ ପାଳନକର୍ତ୍ତାଙ୍କ ନିକଟ ଫେରିଯାଉଁ ତେବେ ନିଶ୍ଚୟ ଆମ୍ଭେ ଏହା ପରବର୍ତ୍ତିରେ ଉତ୍କୃଷ୍ଟତର ସ୍ଥାନ ପ୍ରାପ୍ତ ହେବୁ" ।୩୬।

ତାହାର ସଙ୍ଗୀ ତାହା ସହିତ କଥୋପକଥନ ଛଳରେ କହିଥିଲେ,"ତୁମ୍ଭେ କଅଣ ତାଙ୍କୁ ଅବିଶ୍ୱାସ କରୁଅଛ ଯେ ତୁମ୍ଭଙ୍କୁ ମୃତ୍ତିକାରୁ ତାପରେ ଶୁକ୍ରରୁ ସୃଷ୍ଟି କରି ଅଛନ୍ତି, ତାପରେ ସେ ତୁମ୍ଭଙ୍କୁ ପୂର୍ଣ୍ଣମାନବ ରୂପେ ଗଢ଼ି ଅଛନ୍ତି ? ୩୭ ।

"କିନ୍ତୁ ଆମ୍ଭ ପାଇଁ ସେହି ଆମ୍ଭର ପାଳନକର୍ତ୍ତା ପରମେଶ୍ୱର ଏବଂ ଆମ୍ଭେ ଆମ୍ଭର ପାଳନକର୍ତ୍ତାଙ୍କ ସହିତ କାହାକୁ ଅଂଶୀ ସ୍ଥିର କରୁ ନାହୁଁ ।୩୮।

"ଏବଂ ତୁମ୍ଭେ ନିଜ ଉଦ୍ୟାନରେ ପ୍ରବେଶ ସମୟରେ କାହିଁକି କହିଲ ନାହିଁ ଯେ 'ପରମେଶ୍ୱରଙ୍କ ଯାହା ଇଚ୍ଛା, ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ଶକ୍ତି ନାହିଁ' ? ଯଦିଚ ତୁମ୍ଭେ ଆମ୍ଭଙ୍କୁ ତୁମ୍ଭ ଅପେକ୍ଷା ଧନରେ ଓ ଜନରେ ଅଳ୍ପତର ଦେଖୁଅଛ ।୩୯।

"ତଥାପି ଶୀଘ୍ର ସମ୍ଭବତଃ ଆମ୍ଭର ପାଳନକର୍ତ୍ତା ଆମ୍ଭଙ୍କୁ ତୁମ୍ଭ ଉଦ୍ୟାନ ଅପେକ୍ଷା ଉତ୍କୃଷ୍ଟତର ଉଦ୍ୟାନ ପ୍ରଦାନ କରିବେ ଏବଂ (ଶାସ୍ତିସ୍ୱରୂପ) ଏହା ଉପରେ ଆକାଶରୁ ବଜ୍ରପାତ କରିବେ ଯଦ୍ଦ୍ୱାରା ଏହା ଉଦ୍ଭିଦଶୂନ୍ୟ ସମତଳ ହୋଇଯିବ ।୪୦।

"ଅଥବା ତାହାର ଜଳରାଶି ଭୂମିମଧ୍ୟରେ ଅନ୍ତର୍ହିତ ହୋଇଯିବ ସେତେବେଳେ ତୁମ୍ଭେ ଚେଷ୍ଟା କଲେ ମଧ୍ୟ ତାହା ପାଇ ପାରିବ ନାହିଁ" ।୪୧।

ଏବଂ ତାହାର ଧନ ସମ୍ପଦ ବିନଷ୍ଟ ହୋଇଯାଇଥିଲା; ତାପରେ ସେ ଉଦ୍ୟାନ ପଛରେ ଯାହା ବ୍ୟୟ କରିଥିଲା ସେଥିପାଇଁ ସେ ନିଜ କରମର୍ଦ୍ଦନ କରିବାକୁ ଲାଗିଲା ଏବଂ ତାହା ତାହାର ମଞ୍ଚା ଉପରେ ପଡ଼ି ଯାଇଥିଲା ଏବଂ ସେ କହିଥିଲା,"ହାୟ ! ଯଦି ଆମ୍ଭେ ନିଜ ପାଳନକର୍ତ୍ତାଙ୍କ ସହିତ କାହାକୁ ଅଂଶୀ ସ୍ଥିର କରି ନଥାନ୍ତୁ" । ୪୨।

ଏବଂ ତାହାକୁ ସାହାଯ୍ୟ କରିବା ପାଇଁ ପରମେଶ୍ୱରଙ୍କ ବ୍ୟତୀତ କୌଣସିଦଳ ତାହା ପାଇଁ ନଥିଲେ ଏବଂ ସେ ନିଜକୁ ମଧ୍ୟ ପରମେଶ୍ୱରଙ୍କ ଶାସ୍ତିରୁ ରକ୍ଷା କରି ପାରି ନଥିଲା ।୪୩।

ଏପରି ସ୍ଥଳରେ ସତ୍ୟ ସନାତନ ପରମେଶ୍ୱରହିଁ ଏକମାତ୍ର ରକ୍ଷା କର୍ତ୍ତା, ସେ ପ୍ରତିଫଳ ପ୍ରଦାନରେ ମହତ୍ତର ଏବଂ ପ୍ରତିଶୋଧ ଗ୍ରହଣରେ ଶ୍ରେଷ୍ଠତର ।୪୪।

---

୩୬ । ସେହି ସମୟ—ପରଲୋକର [redacted]ଶେଷ ବିଚାର ଦିନ ।

ଧନୀ ଲୋକ ଧନ ଗର୍ବରେ ପରକାଳରେ ଅବିଶ୍ୱାସ କରିଥିଲା ଏବଂ ମନେ କରିଥିଲା ଯେ ଯଦି ପରକାଳ ଥାଏ ତେବେ ପୃଥିବୀରେ ଯେତେବେଳେ ପରମେଶ୍ୱର ତାକୁ ସୁଖରେ ରଖିଛନ୍ତି ପରକାଳରେ ମଧ୍ୟ ସେ ସୁଖ ଭୋଗ କରିବ ।

୪୨ । କରମର୍ଦ୍ଦନ କରିବା—ଅନୁତାପ କରିବା

ତାହା ତାହାର ମଞ୍ଚା ଉପରେ ପଡ଼ି ଯାଇଥିଲା—ଧନୀଲୋକର ଉଦ୍ୟାନ ନଷ୍ଟ ହୋଇ ଅଙ୍ଗୁର ଗଛମାନ ମରିଯାଇ ମଞ୍ଚା ଉପରେ ପଡ଼ି ରହିଥିଲା ।

୩୨-୪୪ । ଏହି ଶ୍ଳୋକମାନଙ୍କରେ ଗୋଟିଏ ଉଦାହରଣ ଦ୍ୱାରା ପରମେଶ୍ୱରଙ୍କୁ ଭୁଲିଯାଇ ଧନ ଗର୍ବରେ ମତ୍ତ ହେବାର ବିଷମୟ ପରିଣାମ ବର୍ଣ୍ଣିତ ହୋଇଅଛି ।

## ୬ଷ୍ଠ ବିଭାଗ

ଏବଂ ତୁମ୍ଭେ ସେମାନଙ୍କ ନିକଟରେ ପାର୍ଥିବ ଜୀବନର ଉପମା ବର୍ଣ୍ଣନା କର; ତାହା ବୃଷ୍ଟି ଧାର ପରି ଯାହାକୁ ଅମ୍ଭେ ଆକାଶରୁ ବର୍ଷଣ କରୁଁ, ପରେ ତଦ୍ଦ୍ୱାରା ଭୂମିରେ ଉଦ୍ଭିଦ ଜାତ ହୁଏ; ତାପରେ ତାହା ଶୁଷ୍କ ଓ ଚୂର୍ଣ୍ଣ ହୋଇଗଲେ ବାୟୁ ସେମାନଙ୍କୁ ଉଡ଼ାଇ ନେଇ ଯାଏ; ଏବଂ ପରମେଶ୍ୱର ସମସ୍ତ ବିଷୟ ଉପରେ ଶକ୍ତିଶାଳୀ ।୪୫।

ଧନ ସମ୍ପଦ ଓ ସନ୍ତାନ ସନ୍ତତି ପାର୍ଥିବ ଜୀବନର ସୌନ୍ଦର୍ଯ୍ୟ; ଏବଂ ଚିରସ୍ଥାୟୀ ସତ୍‌କାର୍ଯ୍ୟମାନ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରେ ପ୍ରତିଦାନ ବିଷୟରେ ଶ୍ରେଷ୍ଠତର ଏବଂ ଆଶାରେ ଉତ୍କୃଷ୍ଟତର ।୪୬।

ଏବଂ ଯେଉଁଦିନ ଅମ୍ଭେ ପର୍ବତମାନଙ୍କୁ ବିଚଳିତ କରିବୁଁ ଏବଂ ତୁମ୍ଭେ ପୃଥିବୀକୁ ସମତଳ ଦେଖିବ ଏବଂ ଅମ୍ଭେ ସେମାନଙ୍କୁ ଏକତ୍ରିତ କରିବୁଁ, ତାପରେ ଅମ୍ଭେ ସେମାନଙ୍କ ମଧ୍ୟରୁ କାହାରିକୁ ପଛରେ ଛାଡ଼ିବୁଁ ନାହିଁ । ୪୭ ।

ଏବଂ ସେମାନଙ୍କୁ ଶ୍ରେଣୀବଦ୍ଧ ଭାବରେ ତୁମ୍ଭର ପାଳନକର୍ତ୍ତାଙ୍କର ସମ୍ମୁଖୀନ କରାହେବୁ ଏବଂ କୁହାଯିବ ନିଶ୍ଚୟ ବର୍ତ୍ତମାନ ତୁମ୍ଭେମାନେ ପୁନର୍ଜୀବିତ ହୋଇ ଅମ୍ଭ ଆଗରେ ଏକତ୍ରିତ ହୋଇଅଛ, ଯେପରି ଅମ୍ଭେ ତୁମ୍ଭମାନଙ୍କୁ ପ୍ରଥମ ବାର ସୃଷ୍ଟି କରିଥିଲୁଁ; ବରଂ ତୁମ୍ଭେମାନେ ମନେ କରିଥିଲ ଯେ ଅମ୍ଭେ ତୁମ୍ଭମାନଙ୍କ ପୁନର୍ଜୀବନ ପାଇଁ କୌଣସି ସମୟ ନିର୍ଦ୍ଦିଷ୍ଟ କରିବୁଁ ନାହିଁ ।୪୮ ।

ଏବଂ କର୍ମ ପୁସ୍ତକ ଉପସ୍ଥିତ କରାହେବ, ସେତେବେଳେ ତୁମ୍ଭେ ଅପରାଧୀମାନଙ୍କୁ ସେଥି ମଧ୍ୟରେ ଲିଖିତ ବିଷୟ ସମ୍ବନ୍ଧରେ ଭୀତ ହେବାର ଦେଖିବ ଏବଂ ସେମାନେ କହିବେ, "ହାୟ ! କି ପରିତାପ ! ଏ କିପରି ପୁସ୍ତକ ଯେ କ୍ଷୁଦ୍ର କର୍ମ ଅଥବା ବୃହତ କର୍ମ କିଛି ଛାଡ଼ ନାହିଁ, ବରଂ ସମସ୍ତଙ୍କୁ ଗଣନା କରିଅଛି;" ଏବଂ ସେମାନେ ଯାହା କରିଥିଲେ ସମସ୍ତ ବିଦ୍ୟମାନ ପାଇବେ, ଏବଂ ତୁମ୍ଭର ପାଳନକର୍ତ୍ତା କାହାକୁ ଅତ୍ୟାଚାର କରନ୍ତି ନାହିଁ । ୪୯ ।

## ୭ମ ବିଭାଗ

ଏବଂ ଯେତେବେଳେ ଅମ୍ଭେ ସ୍ୱର୍ଗ ଦୂତମାନଙ୍କୁ କହିଥିଲୁଁ "ତୁମ୍ଭେମାନେ ଆଦମ୍‌ଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କର", ସେତେବେଳେ ଇବଲିସ୍‌ ବ୍ୟତୀତ ସମସ୍ତେ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ; ସେ ଦାନବମାନଙ୍କର ଅନ୍ତର୍ଗତ ଥିଲା, ସେଥିପାଇଁ ସେ ତାହାର ପାଳନକର୍ତ୍ତାଙ୍କର ଆଦେଶ ଲଙ୍ଘନ କରିଥିଲା; ତାହାହେଲେ କଅଣ

---

୪୬ । ଧନ ସମ୍ପଦ ଓ ସନ୍ତାନ ସନ୍ତତି ଦ୍ୱାରା ପାର୍ଥିବ ଜୀବନର କ୍ଷଣସ୍ଥାୟୀ ସୁଖ ଲାଭ ହୁଏ, ମାତ୍ର ପୁଣ୍ୟ କାର୍ଯ୍ୟଦ୍ୱାରା ପରଲୋକର ଚିରସ୍ଥାୟୀ ସୁଖ ଲାଭ ହୁଏ ।

ଆଶାରେ ଉତ୍ତମ—ଲୋକମାନେ ପରମେଶ୍ୱରଙ୍କଠାରୁ ଯାହା ପାଇବାର (ଅର୍ଥାତ୍ ସତ୍‌କାର୍ଯ୍ୟର ପୁରସ୍କାର) ପ୍ରତ୍ୟାଶା କରନ୍ତି ସେ ବିଷୟରେ ମଧ୍ୟ ଉତ୍ତମ ।

୪୭-୪୮ । ପରଲୋକରେ ପୁନରୁତ୍ଥାନ ଏବଂ ଶେଷ ବିଚାରର ଦିନର ଘଟଣା ବର୍ଣ୍ଣିତ ହୋଇଅଛି ।

୪୭ । ସେମାନଙ୍କୁ=ମନୁଷ୍ୟମାନଙ୍କୁ ।

୪୯ । କର୍ମ ପୁସ୍ତକ ସମ୍ବନ୍ଧରେ ଦେଖ ୧୭ ଅଧ୍ୟାୟ ୧୩, ୧୪ ଶ୍ଳୋକ ଓ ତାହାର ଟୀକା ।

ତୁମ୍ଭେମାନେ ଆମ୍ଭଙ୍କୁ ପରିତ୍ୟାଗ କରି ତାହାକୁ ଓ ତାହାର ସନ୍ତାନମାନଙ୍କୁ ଅଭିଭାବକରୂପେ ଗ୍ରହଣ କରିବ, ଅଥଚ ସେମାନେ ତୁମ୍ଭମାନଙ୍କ ଶତ୍ରୁ ? ଅତ୍ୟାଚାରୀମାନଙ୍କର ପ୍ରତିଫଳ ନିକୃଷ୍ଟତର । ୫୦ ।

ଆକାଶମଣ୍ଡଳ ଓ ଭୂମଣ୍ଡଳ ସୃଷ୍ଟି ସମୟରେ ଅଥବା ସେହିମାନଙ୍କ ସୃଷ୍ଟି କରିବା ସମୟରେ ଆମ୍ଭେ ସେମାନଙ୍କୁ ସାକ୍ଷୀ ରଖିନାହୁଁ ଏବଂ କୁପଥ ପ୍ରଦର୍ଶନକାରୀମାନଙ୍କୁ ଆମ୍ଭେ ସାହାଯ୍ୟକାରୀ ରୂପେ ଗ୍ରହଣ କରିନଥିଲୁଁ । ୫୧ ।

ଏବଂ ଯେଉଁଦିନ ପରମେଶ୍ୱର କହିବେ, "ତୁମ୍ଭେମାନେ ଯାହାଙ୍କୁ ଆମ୍ଭର ଅଂଶୀ ବୋଲି ଦାବୀ କରୁଥିଲ ସେମାନଙ୍କୁ ଆହ୍ୱାନ କର", ସେତେବେଳେ ସେମାନେ ସେମାନଙ୍କୁ ଆହ୍ୱାନ କରିବେ, କିନ୍ତୁ ସେମାନେ ସେମାନଙ୍କୁ ଉତ୍ତର ଦେବେ ନାହିଁ, ଏବଂ ଆମ୍ଭେ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିଦେବୁଁ । ୫୨ ।

ଏବଂ ଅପରାଧୀମାନେ ଯେତେବେଳେ ନରକାଗ୍ନି ଦେଖିବେ; ସେତେବେଳେ ଧାରଣା କରିବେ ଯେ ସେମାନଙ୍କୁ ସେଥି ମଧ୍ୟରେ ପଡ଼ିବାକୁ ହେବ, ଏବଂ ସେମାନେ ସେଠାରୁ ପଳାଇ ଯିବାର କୌଣସି ସ୍ଥାନ ପାଇବେ ନାହିଁ । ୫୩ ।

## ୮ମ ବିଭାଗ

ଏବଂ ନିଶ୍ଚୟ ଆମ୍ଭେ ମାନବମଣ୍ଡଳୀ ପାଇଁ ଏହି କୋରାନରେ ସର୍ବ ପ୍ରକାର ଉପମାକୁ ଭଲରୂପେ ବର୍ଣ୍ଣନା କରିଅଛୁଁ; ଏବଂ ମନୁଷ୍ୟ ଅଧିକାଂଶ ବିଷୟରେ ତର୍କ କରିଥାଏ ।୫୪।

ଏବଂ ଯେତେବେଳେ ସେମାନଙ୍କ ନିକଟ ସଦୁପଦେଶ ଆସିଥିଲା ସେତେବେଳେ ମାନବ-ମଣ୍ଡଳୀକୁ ତତ୍‌ପ୍ରତି ବିଶ୍ୱାସ ସ୍ଥାପନ କରିବା ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟ କ୍ଷମା ପ୍ରାର୍ଥନା କରିବା ବିଷୟରେ ଏହା ଛଡ଼ା ଆଉ କିଛି ପ୍ରତିବନ୍ଧକ ନଥିଲା ଯେ ସେମାନେ ହଠ କରି ବସିଲେ ଯେ ସେମାନଙ୍କ ନିକଟ ପୂର୍ବବର୍ତ୍ତୀମାନଙ୍କ ସଦୃଶ ଘଟନା ଉପସ୍ଥିତ ହେଉ କିମ୍ବା ସେମାନଙ୍କ ଆଗରେ ଶାସ୍ତି ଆସୁ ।୫୫।

---

୫୦ । ଇବ୍‌ଲିସ୍—ସଇତାନ୍ ।
ତାହାକୁ ଓ ତାହାର ସନ୍ତାନମାନଙ୍କୁ—ସଇତାନକୁ ଏବଂ ସଇତାନର ଅନୁଚରମାନଙ୍କୁ ।
ପରମେଶ୍ୱର ମନୁଷ୍ୟମାନଙ୍କର ସୃଷ୍ଟିକର୍ତ୍ତା ଏବଂ ସେ ସେମାନଙ୍କର ମଙ୍ଗଳ ଚାହାନ୍ତି; ମାତ୍ର ସଇତାନ ଓ ତାହାର ଅନୁଚରମାନେ ମନୁଷ୍ୟମାନଙ୍କର ଶତ୍ରୁ ଏବଂ ସେମାନଙ୍କୁ ବିପଥଗାମୀ କରିବାକୁ ଚାହାନ୍ତି । ସୁତରାଂ ପରମେଶ୍ୱରଙ୍କୁ ପରିତ୍ୟାଗ କରି ସଇତାନର ଅନୁସରଣ କଲେ ମନୁଷ୍ୟମାନଙ୍କର ଯେ ସର୍ବନାଶ ଘଟିବ ଏହା ନିଶ୍ଚିତ ।

୫୧ । ସେହିମାନଙ୍କୁ—ସଇତାନ ଓ ତାହାର ଅନୁଚରମାନଙ୍କୁ
ପରମେଶ୍ୱର ମଙ୍ଗଳମୟ; ସେ ମାନବ ଜାତିର ମଙ୍ଗଳ ଚାହାନ୍ତି । ସୁତରାଂ ଜଗତକୁ ଓ ମାନବ ଜାତିକୁ ସୃଷ୍ଟି କରିବା ସମୟରେ ଯାବତୀୟ ମନ୍ଦ କାର୍ଯ୍ୟର ପ୍ରବର୍ତ୍ତକ ଓ କୁପଥ ପ୍ରଦର୍ଶନକାରୀ ସଇତାନର ସାହାଯ୍ୟ ଗ୍ରହଣ କରିବା ପରମେଶ୍ୱରଙ୍କ ପକ୍ଷରେ ସମ୍ଭବ ନଥିଲା ।

୫୫ । ବିଶ୍ୱାସ ସ୍ଥାପନ ପୂର୍ବରୁ ପରୀକ୍ଷା ସ୍ୱରୂପ ଶାସ୍ତିକୁ ଅପେକ୍ଷା କରିବା ଅବିଶ୍ୱାସକାରୀମାନଙ୍କ ଜିଦ୍ ଛଡା ଆଉ କିଛି ନଥିଲା ।

ଆମ୍ଭେ ପ୍ରେରିତ ପୁରୁଷମାନଙ୍କୁ ସୁସମ୍ବାଦ ଦାତା ଓ ଭୟ ପ୍ରଦର୍ଶନକାରୀ ଛଡ଼ା (ଅନ୍ୟ କୌଣସି-ରୂପେ) ପ୍ରେରଣ କରିନାହୁଁ; ଏବଂ ଅବିଶ୍ୱାସକାରୀମାନେ ଭିତ୍ତିହୀନ ବିଷୟରେ ତର୍କ କରିଥାନ୍ତି ଯେପରି ତଦ୍ୱାରା ସତ୍ୟକୁ ବ୍ୟର୍ଥ କରିଦେବେ, ଏବଂ ସେମାନେ ଆମ୍ଭର ନିଦର୍ଶନମାନଙ୍କୁ ଏବଂ ଯଦ୍ୱାରା ସେମାନଙ୍କୁ ଭୟ ପ୍ରଦର୍ଶନ କରା ହୋଇଥାଏ ତାହାକୁ ପରିହାସ କରନ୍ତି ।୫୬।

ଏବଂ ତାହା ଅପେକ୍ଷା କିଏ ଅଧିକ ଅତ୍ୟାଚାରୀ ଯାହାକୁ ତାହାର ପାଳନକର୍ତ୍ତାଙ୍କର ନିଦର୍ଶନ-ମାନଙ୍କୁ ସ୍ମରଣ କରାଇ ଦେଲେ ମଧ୍ୟ ସେଥିରୁ ସେ ବିମୁଖ ହୋଇଥାଏ ଏବଂ ତାହାର ହସ୍ତଦ୍ୱୟ ଯାହା ପୂର୍ବେ ପ୍ରେରଣ କରିଅଛି ତାହା ଭୁଲିଯାଏ ? ନିଶ୍ଚୟ ଆମ୍ଭେ ସେମାନଙ୍କର ହୃଦୟମାନଙ୍କୁ ଆବୃତ କରିଅଛୁଁ ଏବଂ ସେମାନଙ୍କର କର୍ଣ୍ଣମାନଙ୍କୁ ଭାରାକ୍ରାନ୍ତ କରିଅଛୁଁ ଯେପରି ସେମାନେ ହୃଦୟଙ୍ଗମ କରି ପାରିବେ ନାହିଁ; ଏବଂ ଯଦି ତୁମ୍ଭେ ସେମାନଙ୍କୁ ସୁପଥରେ ଆହ୍ୱାନ କର ତଥାପି ସେମାନେ କୌଣସି କାଳେ ପଥପ୍ରାପ୍ତ ହେବେନାହିଁ ।୫୭।

ଏବଂ ତୁମ୍ଭର ପାଳନକର୍ତ୍ତା କ୍ଷମାଶୀଳ କରୁଣାମୟ; ଏବଂ ସେମାନେ ଯାହା ଅର୍ଜନ କରୁଅଛନ୍ତି ସେଥିପାଇଁ ଯଦି ସେ ସେମାନଙ୍କୁ ଧରି ବସନ୍ତେ, ତେବେ ନିଶ୍ଚୟ ସେ ସେମାନଙ୍କୁ (ଏହି ପୃଥିବୀରେ) ଶୀଘ୍ର ଶାସ୍ତି ପ୍ରଦାନ କରନ୍ତେ; କିନ୍ତୁ ସେମାନଙ୍କ ପାଇଁ ନିର୍ଦ୍ଧାରିତ ସମୟ ରହିଅଛି; ତାଙ୍କ ବ୍ୟତୀତ ସେମାନେ ଅନ୍ୟ କୌଣସି ଆଶ୍ରୟ ପାଇବେ ନାହିଁ ।୫୮।

ଏବଂ ଏହି ସବୁ ନଗରମାନଙ୍କୁ, ଯେତେବେଳେ ସେଠାର ବାସିନ୍ଦାମାନେ ଅତ୍ୟାଚାର କରିଥିଲେ ସେତେବେଳେ ଆମ୍ଭେ ଧ୍ୱଂସ କରି ଦେଇଥିଲୁଁ; ଏବଂ ଆମ୍ଭେ ଏମାନଙ୍କ ଧ୍ୱଂସ ପାଇଁ ଏକ ସମୟ ନିର୍ଦ୍ଦିଷ୍ଟ କରିଅଛୁଁ ।୫୯।

## ୯ମ ବିଭାଗ

ଏବଂ ଯେତେବେଳେ ମୂସା ତାଙ୍କ ଅନୁଚରଙ୍କୁ କହିଥିଲେ, "ଆମ୍ଭେ ଦୁଇ ନଦୀର ସଙ୍ଗମ ସ୍ଥଳରେ ଉପସ୍ଥିତ ନହେବା ପର୍ଯ୍ୟନ୍ତ ନିରସ୍ତ ହେବୁନାହିଁ ଅଥବା ବହୁବର୍ଷ ବ୍ୟାପୀ ଭ୍ରମଣ କରୁଥିବୁଁ ।୬୦।

ତାପରେ ଯେତେବେଳେ ସେମାନେ ଦୁଇ ନଦୀର ସଙ୍ଗମ ସ୍ଥଳରେ ଉପସ୍ଥିତ ହେଲେ, ସେତେବେଳେ ସେମାନେ ସେମାନଙ୍କର (ସଙ୍ଗେ ଆଣିଥିବା) ମାଛକୁ ଭୁଲି ଯାଇଥିଲେ, ସୁତରାଂ ଏହା ଗୋଟାଏ ସୁଡ଼ଙ୍ଗ ମଧ୍ୟ ଦେଇ ସମୁଦ୍ର ମଧ୍ୟକୁ ଚାଲି ଯାଇଥିଲା ।୬୧।

ତାପରେ ଯେତେବେଳେ ଉଭୟେ ଅଗ୍ରସର ହୋଇଥିଲେ ସେତେବେଳେ ମୂସା ତାଙ୍କ ଅନୁଚରଙ୍କୁ କହିଥିଲେ, "ତୁମ୍ଭେ ଆମ୍ଭମାନଙ୍କର ପ୍ରାତଃର ଖାଦ୍ୟ ଆଣ ନିଶ୍ଚୟ ଆମ୍ଭେମାନେ ଏହି ଭ୍ରମଣ ହେତୁ କ୍ଳାନ୍ତ ହୋଇଅଛୁଁ ।"୬୨।

---

୫୬। ଦେଖ ଟୀକା ୨ୟ ଅଧ୍ୟାୟ ୬ ଶ୍ଳୋକ ।
ତାହା ଅପେକ୍ଷା—ସାଧାରଣ ଭାବରେ ସମସ୍ତ ଅବିଶ୍ୱାସକାରୀମାନଙ୍କୁ ଲକ୍ଷ୍ୟ କରାଯାଇଅଛି ।

୫୮ । ୫୯ । ମହାପୁରୁଷ ମୋହମ୍ମଦଙ୍କ ସମସାମୟିକ ବିଧର୍ମୀ । ଅତ୍ୟାଚାରୀମାନଙ୍କୁ ପୂର୍ବବର୍ତ୍ତୀ ଅତ୍ୟାଚାରୀମାନଙ୍କ ପରି ଶାସ୍ତି ଦେବା ପାଇଁ ସମୟ ନିର୍ଦ୍ଦିଷ୍ଟ ହୋଇଅଛି । ସେହି ସମୟ ଉପସ୍ଥିତ ହେଲେ ସେମାନେ ଧ୍ୱଂସ ପ୍ରାପ୍ତ ହେବେ ।

୬୦ । ଦୁଇ ନଦୀର ସଙ୍ଗମ ସ୍ଥଳ—ମିଶର ଦେଶର ନୀଳ ନଦୀ ଆବିସିନିଆ ଦେଶର ଖାର୍ଟୁମ୍ ନଗରଠାରେ ଦୁଇ ଶାଖାରେ ବିଭକ୍ତ ହୋଇଅଛି, ଶ୍ୱେତ ନଦୀ ଓ ନୀଳ ନଦୀ । ସେହି ସ୍ଥାନକୁ ଲକ୍ଷ୍ୟ କରାଯାଇଅଛି ।

ଅନୁଚର କହିଥିଲେ; "ତୁମ୍ଭେ କଅଣ ଦେଖିନାହିଁ ଯେ, ଯେତେବେଳେ ଆମ୍ଭେମାନେ ପାହାଡ଼ରେ ରହିଥିଲୁ, ସେତେବେଳେ ନିଶ୍ଚୟ ଆମ୍ଭେ ମାଛକୁ ଭୁଲି ଯାଇଥିଲୁଁ, ଏବଂ ସେ ବିଷୟ ଜଣାଇବା ପାଇଁ ସଇତାନ୍ ଆମ୍ଭଙ୍କୁ ଭୁଲାଇ ଥିଲା; ଏବଂ ତାହା ସମୁଦ୍ର ମଧ୍ୟରେ ଆଶ୍ଚର୍ଯ୍ୟରୂପେ ଚାଲିଯାଇ ଥିଲା ।୬୩।"

ମୂସା କହିଥିଲେ, "ଆମ୍ଭେ ଯାହା ଖୋଜୁଥିଲୁଁ ତାହା ଏହି;" ତାପରେ ସେମାନେ ଉଭୟେ ସେମାନଙ୍କର ପଦଚିହ୍ନର ଅନୁସରଣ କରି ଫେରିଥିଲେ ।୬୪।

ତାପରେ ସେ ଦୁହେଁ ଆମ୍ଭର ସେବକମାନଙ୍କ ମଧ୍ୟରୁ ଏପରି ଏକ ସେବକଙ୍କୁ ପାଇଥିଲେ, ଯାହାଙ୍କୁ ଆମ୍ଭେ ନିଜ ନିକଟରୁ ଅନୁଗ୍ରହ ପ୍ରଦାନ କରିଥିଲୁଁ ଏବଂ ଯାହାଙ୍କୁ ଆମ୍ଭେ ନିଜଠାରୁ ଆଧ୍ୟାତ୍ମିକ ଜ୍ଞାନ ଶିକ୍ଷା ଦେଇଥିଲୁ ।୬୫।

ମୂସା ତାଙ୍କୁ କହିଥିଲେ, "ଆମ୍ଭେ କଅଣ ଏହି ସର୍ତ୍ତରେ ତୁମ୍ଭର ଅନୁସରଣ କରିବୁ ଯେ, ତୁମ୍ଭଙ୍କୁ ଯେଉଁ ଶିକ୍ଷା ଦିଆଯାଇ ଅଛି, ତୁମ୍ଭେ ସେଥିରୁ ଆମ୍ଭଙ୍କୁ ସଠିକ ଜ୍ଞାନ ଶିକ୍ଷାଦେବ" ? ୬୬।

ସେ କହିଥିଲେ, "ନିଶ୍ଚୟ ତୁମ୍ଭେ ଆମ୍ଭ ସହିତ ଧୈର୍ଯ୍ୟ ଧାରଣ କରି ପାରିବ ନାହିଁ ।୬୭।

"ଏବଂ ତୁମ୍ଭେ କିପରି ସେହି ବିଷୟରେ ଧୈର୍ଯ୍ୟ ଧାରଣ କରିବ, ଯେଉଁ ବିଷୟରେ ତୁମ୍ଭର ଅଭିଜ୍ଞତା ନାହିଁ" ?୬୮।

ମୂସା କହିଥିଲେ "ଯଦି ପରମେଶ୍ୱର ଇଚ୍ଛା କରନ୍ତି, ତେବେ ତୁମ୍ଭେ ନିଶ୍ଚୟ ଆମ୍ଭଙ୍କୁ ଧୈର୍ଯ୍ୟଶୀଳ ପାଇବ ଏବଂ ଆମ୍ଭେ କୌଣସି କାର୍ଯ୍ୟରେ ତୁମ୍ଭର ବିରୁଦ୍ଧାଚରଣ କରିବୁଁ ନାହିଁ ।"୬୯।

ସେ କହିଥିଲେ, "ବାସ୍ତବରେ ଯଦି ତୁମ୍ଭେ ଆମ୍ଭର ଅନୁସରଣ କର, ତେବେ ତୁମ୍ଭେ କୌଣସି ବିଷୟରେ ଆମ୍ଭଙ୍କୁ ପ୍ରଶ୍ନ କରିବ ନାହିଁ, ଯେ ପର୍ଯ୍ୟନ୍ତ ଆମ୍ଭେ ନିଜେ ତୁମ୍ଭଙ୍କୁ ଏ ବିଷୟରେ କିଛି ନ କହୁଁ ।"୭୦।

## ୧୦ମ ବିଭାଗ

ତାପରେ ସେମାନେ ପଥ ଅତିକ୍ରମ କରିଥିଲେ, ଅବଶେଷରେ ସେମାନେ ନୌକାରେ ଆରୋହଣ କରି ଥିଲେ; ସେ ଏଥିରେ ଛିଦ୍ର କରି ଦେଇଥିଲେ; (ମୂସା) କହିଥିଲେ, "ତୁମ୍ଭେ କଅଣ ଏହାର ଆରୋହୀମାନଙ୍କୁ ଜଳମଗ୍ନ କରିବା ପାଇଁ ଏଥିରେ ଛିଦ୍ର କରିଅଛ ? ନିଶ୍ଚୟ ତୁମ୍ଭେ ଗୁରୁତର କାର୍ଯ୍ୟ କରିଅଛ" ।୭୧।

---

୬୫ । ଟୀକାକାରମାନଙ୍କ ମତରେ ଥରେ ମହାପୁରୁଷ ମୂସା ଇସ୍ରାଇଲ ବଂଶଧରମାନଙ୍କୁ ଉପଦେଶ ଦେଉଥିବା ସମୟରେ ଜଣେ ଲୋକ ତାଙ୍କୁ ପ୍ରଶ୍ନ କରିଥିଲା—'ପୃଥିବୀରେ ସର୍ବଶ୍ରେଷ୍ଠ ଜ୍ଞାନୀ ଲୋକ କିଏ ?' ମୂସା ଉତ୍ତର ଦେଇ ଥିଲେ—'ଆମ୍ଭେ ସର୍ବଶ୍ରେଷ୍ଠ ଜ୍ଞାନୀ ଲୋକ ।' ଏଥିରେ ପରମେଶ୍ୱର ତାଙ୍କପ୍ରତି ଅସନ୍ତୁଷ୍ଟ ହୋଇ ପ୍ରତ୍ୟାଦେଶ କରିଥିଲେ, "ହେ ମୂସା ! ତୁମ୍ଭେ ନିଜକୁ ସର୍ବଶ୍ରେଷ୍ଠ ଜ୍ଞାନୀ ଲୋକ କହି ଅନ୍ୟାୟ କରିଅଛ । ତୁମ୍ଭର କହିବା ଉଚିତ ଥିଲା ଯେ, ପରମେଶ୍ୱରହିଁ ସର୍ବଶ୍ରେଷ୍ଠ ଜ୍ଞାନୀ । ପୃଥିବୀରେ ତୁମ୍ଭ ଅପେକ୍ଷା ଅଧିକ ଜ୍ଞାନୀ ଆମ୍ଭର ସେବକମାନେ ଅଛନ୍ତି । ତୁମ୍ଭେ ଗୋଟିଏ ଥଳୀରେ ମାଛ ନେଇ ପରିଭ୍ରମଣ କର । ଦୁଇ ନଦୀର ସଂଗମ ସ୍ଥଳରେ ଯେଉଁଠାରେ କୌଣସି ତୁମ୍ଭର ମାଛ ଥଳୀମଧ୍ୟରୁ ଅଦୃଶ୍ୟ ହୋଇଅଛି ସେହି ସ୍ଥାନରେ ଆମ୍ଭର ଜଣେ ଭକ୍ତ ସେବକଙ୍କୁ ଭେଟିବ, ଯେ କି ତୁମ୍ଭ ଅପେକ୍ଷା ଅଧିକ ଜ୍ଞାନୀ ।" ତଦନୁଯାୟୀ ମୂସା ନିଜ ଅନୁଚର ସହିତ ଭ୍ରମଣ କରିଥିଲେ ଏବଂ ଦୁଇ ନଦୀର ସଙ୍ଗମ ସ୍ଥଳରେ ତାଙ୍କୁ ଭେଟିଥିଲେ । ସେ ହେଉଛନ୍ତି ମହାପୁରୁଷ ଖ୍ୱାଜା ଖିଜର ।

୬୬ । ମୂସା ତାଙ୍କୁ କହିଲେ—ଖ୍ୱାଜା ଖିଜରଙ୍କୁ କହିଲେ ।

୭୧ । ସେ—ଖ୍ୱାଜା ଖିଜର ।

ସେ କହିଥିଲେ; "ଅମ୍ଭେ କଣ ତୁମ୍ଭଙ୍କୁ କହିନାହୁଁ ଯେ ତୁମ୍ଭେ କଦାପି ଅମ୍ଭ ସହିତ ଧୈର୍ଯ୍ୟଧାରଣ କରି ପାରିବ ନାହିଁ ?"୭୨।

ମୂସା କହିଥିଲେ, "ଅମ୍ଭେ ଯାହା ଭୁଲି ଯାଇ ଅଛୁଁ ସେଥିପାଇଁ ଅମ୍ଭଙ୍କୁ ଧୃତକରନା ଏବଂ ଅମ୍ଭର କାର୍ଯ୍ୟରେ ଅମ୍ଭ ପ୍ରତି କଠୋରତା ପ୍ରୟୋଗ କରନା ।"୭୩।

ତାପରେ ସେମାନେ ଗମନ କରିଥିଲେ, ଅବଶେଷରେ ଗୋଟିଏ ବାଳକ ସହିତ ସେମାନଙ୍କ ସାକ୍ଷାତ ହୋଇଥିଲା, ସେ ତାହାକୁ ହତ୍ୟା କରିଥିଲେ; (ମୂସା) କହିଥିଲେ, "ତୁମ୍ଭେ କାହିଁକି ଗୋଟିଏ ନିରପରାଧ ପ୍ରାଣୀକୁ ବିନା ଦୋଷରେ ହତ୍ୟା କଲ ? ନିଶ୍ଚୟ ତୁମ୍ଭେ ଏ ଅନ୍ୟାୟକାର୍ଯ୍ୟ କରିଅଛ ।"୭୪।

## ଷଷ୍ଠଦଶ ଭାଗ

ସେ କହିଥିଲେ, "ଅମ୍ଭେ କଅଣ ତୁମ୍ଭଙ୍କୁ କହି ନାହୁଁ ଯେ ତୁମ୍ଭେ କଦାପି ଅମ୍ଭ ସହିତ ଧୈର୍ଯ୍ୟ ଧାରଣ କରି ପାରିବ ନାହିଁ ?"୭୫।

ମୂସା କହିଥିଲେ, "ଯଦି ଏହାପରେ ଅମ୍ଭେ ତୁମ୍ଭଙ୍କୁ କୌଣସି ବିଷୟରେ ପ୍ରଶ୍ନ କରୁଁ, ତେବେ ତୁମ୍ଭେ ଅମ୍ଭଙ୍କୁ ତୁମ୍ଭ ସଙ୍ଗରେ ରଖିବ ନାହିଁ; ନିଶ୍ଚୟ (ସେତେବେଳେ) ଅମେ ଦୋଷୀ ହେବୁଁ ।"୭୬।

ତାପରେ ସେମାନେ ଏତେଦୂର ଭ୍ରମଣ କରିଥିଲେ ଯେ ସେମାନେ ଗୋଟିଏ ନଗରର ଅଧିବାସୀ-ମାନଙ୍କ ନିକଟ ଉପସ୍ଥିତ ହୋଇଥିଲେ; ତାହାର ଅଧିବାସୀମାନଙ୍କ ନିକଟ ଖାଦ୍ୟ ପ୍ରାର୍ଥନା କରିଥିଲେ, କିନ୍ତୁ ସେମାନେ ସେମାନଙ୍କୁ ନିମନ୍ତ୍ରଣ କରିବାକୁ ଅସ୍ୱୀକାର କରିଥିଲେ; ତାପରେ ସେମାନେ ଗୋଟିଏ ପ୍ରାଚୀର ଦେଖିଥିଲେ ତାହା ପଡ଼ିଯିବା ଉପରେ ରହିଥିଲା; ସେ ଏହାକୁ ସୁପ୍ରତିଷ୍ଠିତ କରି ଦେଇଥିଲେ; (ମୂସା ତାଙ୍କୁ) କହିଥିଲେ, "ଯଦି ତୁମ୍ଭେ ଇଚ୍ଛାକରିଥାନ୍ତ ତେବେ ଅବଶ୍ୟ ଏହାର ପ୍ରତିଦାନ ଗ୍ରହଣ କରି ପାରିଥାଅନ୍ତ" ।୭୭।

ସେ କହିଥିଲେ, "ଏହାହିଁ ଅମ୍ଭ ମଧ୍ୟରେ ଓ ତୁମ୍ଭ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିବ, ବର୍ତ୍ତମାନ ଅମ୍ଭେ ତୁମ୍ଭଙ୍କୁ ତାହାର ତାତ୍ପର୍ଯ୍ୟ ଜଣାଉଅଛୁଁ, ଯେଉଁ ସମ୍ବନ୍ଧରେ ତୁମ୍ଭେ ଧୈର୍ଯ୍ୟ ଧାରଣ କରି ପାରି ନଥିଲ ।୭୮।

"ଏହି ଯେ ନୌକା, ବାସ୍ତବରେ ଏହା କେତେକ ଦରିଦ୍ର ଲୋକଙ୍କର ଥିଲା, ସେମାନେ ନଦୀ ମଧ୍ୟରେ କାର୍ଯ୍ୟ କରୁଥିଲେ, ତାପରେ ଅମ୍ଭେ ତାହାକୁ ଦୋଷଯୁକ୍ତ କରିବାକୁ ଇଚ୍ଛାକରିଥିଲୁଁ; ଏବଂ ସେମାନଙ୍କ ପଶ୍ଚାତରେ ଏକ ରାଜା ଥିଲେ ଯେ ବଳ ପୂର୍ବକ ପ୍ରତ୍ୟେକ ନୌକା ଧରି ନେଉଥିଲେ ।୭୯।

---

୭୨ । ସେ—ଖ୍ୱାଜା ଖିଜର

୭୪ । ସେ—ଖ୍ୱାଜା ଖିଜର । ବିନା ବିନିମୟ=ଏ ବାଳକ ତ କାହାର ପ୍ରାଣନାଶ କରିନଥିଲା ଯେ ତାହାର ବିନିମୟରେ ବାଳକକୁ ହତ୍ୟା କରାଗଲା ।

୭୫ । ସେ—ଖ୍ୱାଜା ଖିଜର ।

୭୭ । ସେ—ଖ୍ୱାଜା ଖିଜର ।
ଏହାର ପ୍ରତିଦାନ—ପ୍ରାଚୀରକୁ ମରାମତି କରିବାର ପୁରସ୍କାର ।

୭୮ । ସେ—ଖ୍ୱାଜା ଖିଜର । ପାର୍ଥକ୍ୟ ସୃଷ୍ଟି କରିବ—ତୁମେ ଅମ୍ଭସଙ୍ଗ ରହିପାରିବ ନାହିଁ ।

୭୯ । ସେ ସ୍ଥାନର ଅତ୍ୟାଚାରୀ ରାଜା ଯେତେ ଭଲ ନୌକା ଦେଖୁଥିଲେ ତାକୁ ବଳପୂର୍ବକ ନେଇ ଯାଉଥିଲେ, ମାତ୍ର ନୌକାରେ କୌଣସି ପ୍ରକାର ଦୋଷ ଥିଲେ ତାକୁ ନେଉନଥିଲେ । ସେଥିପାଇଁ ଖ୍ୱାଜା ଖିଜର ଉକ୍ତ

"ଏବଂ ଏହି ଯେ ବାଳକ, ବାସ୍ତବରେ ତାହାର ପିତା ମାତା ବିଶ୍ୱାସକାରୀ ଥିଲେ, ଅମ୍ଭେ ଆଶଙ୍କା କରିଥିଲୁଁ ଯେ ତାହା ଯୋଗୁଁ ସେମାନେ ଅବାଧ୍ୟତା ଓ ଅବିଶ୍ୱାସରେ ଆକ୍ରାନ୍ତ ହେବେ ।୮୦।

"ତାପରେ ଅମ୍ଭେ ଇଚ୍ଛା କରିଥିଲୁଁ ଯେ ସେମାନଙ୍କର ପାଳନକର୍ତ୍ତା ସେମାନଙ୍କୁ ତାହା ଅପେକ୍ଷା ପବିତ୍ରତର ଓ କରୁଣାରେ ନିକଟତର (ସନ୍ତାନ) ପ୍ରଦାନ କରିବେ ।୮୧।

"ଏବଂ ଏହି ଯେ ପ୍ରାଚୀର, ବାସ୍ତବରେ ଏହା ନଗରର ଦୁଇ ଗୋଟି ଅନାଥ ବାଳକଙ୍କର ଥିଲା ଏବଂ ତାହାର ନିମ୍ନରେ ସେମାନଙ୍କ ପାଇଁ ଧନରାଶି ପୋତା ହୋଇଥିଲା ଏବଂ ସେମାନଙ୍କର ପିତା ସତ୍‌କର୍ମଶୀଳ ଥିଲେ ଏବଂ ତୁମ୍ଭର ପାଳନକର୍ତ୍ତା ଇଚ୍ଛା କରିଥିଲେ ଯେ ସେମାନେ ଯୌବନରେ ଉପସ୍ଥିତ ହେବେ ଏବଂ ତୁମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହରେ ସେମାନଙ୍କର ଧନରାଶି ବାହାର କରି ନେବେ; ଏବଂ ଅମ୍ଭେତ ଏହା ନିଜ ଇଚ୍ଛାରୁ କରିନାହୁଁ; ଏହାହିଁ ଏହାର ତାତ୍ପର୍ଯ୍ୟ ଯେଉଁ ବିଷୟରେ ତୁମ୍ଭେ ଧୈର୍ଯ୍ୟ ଧାରଣ କରି ପାରି ନଥିଲ।" ।୮୨।

## ୧୧ଶ ବିଭାଗ

ଏବଂ ସେମାନେ 'ଜୁଲ୍‌କର୍‌ନଏନ୍‌' ସମ୍ବନ୍ଧରେ ତୁମ୍ଭଙ୍କୁ ପ୍ରଶ୍ନ କରୁଅଛନ୍ତି; ତୁମ୍ଭେ କୁହ, "ଅମ୍ଭେ ବର୍ତ୍ତମାନ ତୁମ୍ଭମାନଙ୍କ ନିକଟରେ ତାଙ୍କର ବିବରଣ ବର୍ଣ୍ଣନା କରିବୁଁ" ।୮୩।

ନିଶ୍ଚୟ ଅମ୍ଭେ ତାହାଙ୍କୁ ପୃଥିବୀରେ ପରାକ୍ରାନ୍ତ କରିଥିଲୁଁ ଏବଂ ଅମ୍ଭେ ତାହାଙ୍କୁ ସମସ୍ତ ପ୍ରକାର ବିଷୟ ସମ୍ପଦ ପ୍ରଦାନ କରିଥିଲୁଁ ।୮୪।

---

ନୌକାରେ ଗୋଟିଏ ଛିଦ୍ର କରିଦେଇ ତାକୁ ଦୋଷଯୁକ୍ତ କରିଦେଇଥିଲେ ଯଦ୍ଦ୍ୱାରା ନୌକାର ଦରିଦ୍ର ମାଲିକମାନେ ରାଜାଙ୍କ କବଳରୁ ରକ୍ଷା ପାଇଥିଲେ ।

୮୦ । ୮୧ । ସେହି ବାଳକଟି ଦୁଷ୍ଟ ଓ ଅବାଧ୍ୟ ଥିଲା ଏବଂ ତାହାର ପୁଣ୍ୟବାନ ପିତାମାତାଙ୍କ ପକ୍ଷରେ ଅନିଷ୍ଟର କାରଣ ଥିଲା । ସେଥିପାଇଁ ତାକୁ ମାରିଦିଆ ଗଲା ଯେ ପରମେଶ୍ୱର ତାହାର ପରିବର୍ତ୍ତିରେ ତାହାର ପିତାମାତାଙ୍କୁ ଆଜ୍ଞାକାରୀ ଓ ପିତୃଭକ୍ତ ସନ୍ତାନ ଦେବେ ।

୮୨ । ପ୍ରାଚୀରଟି ପୁରୁଣା ଦରଦରି ହୋଇ ଯାଇଥିଲା । ଯଦି ଆପଣା ଛାଏଁ ଏହା ପଡ଼ିଯାଇଥାନ୍ତା ତେବେ ତହିଁତଳେ ପୋତାଥିବା ଧନରାଶି କଏ ଲୁଅଡେ ଲୁଟି କରି ନେଇଯାଇଥାନ୍ତେ ଏବଂ ଅନାଥ ବାଳକମାନେ କିଛି ପାଇପାରି-ନଥାନ୍ତେ । ସୁତରାଂ ସେ ଏହାକୁ ମରାମତି କରିଦେଇଥିଲେ ।

୮୩ । ତୁମ୍ଭେ—ମହାପୁରୁଷ ମୋହମ୍ମଦ । ବିଧର୍ମୀ ମକ୍କାବାସୀମାନେ ତାଙ୍କୁ 'ଜୁଲ୍‌କରନ ଏନ୍‌' ସମ୍ବନ୍ଧରେ ପ୍ରଶ୍ନ କରିଥିଲେ । ପରମେଶ୍ୱରଙ୍କ ପ୍ରତ୍ୟାଦେଶ ପ୍ରାପ୍ତ ହୋଇ ସେ ତାହାର ବିବରଣ ବର୍ଣ୍ଣନା କରିଥିଲେ । 'ଜୁଲ-କରନଏନ୍‌'ଙ୍କ ପରିଚୟ ସମ୍ବନ୍ଧରେ ଟୀକାକାରମାନଙ୍କ ମଧ୍ୟରେ ମତ ଭେଦ ଅଛି । କେତେକ ତାଙ୍କୁ ଦିଗ-ବିଜୟୀ ସମ୍ରାଟ ଅଲେକଜାଣ୍ଡର (ସିକନ୍ଦର) ବୋଲି ମନେ କରନ୍ତି । କେତେକେ ପାରସ୍ୟ ସମ୍ରାଟ 'ଦାରିୟ' ବୋଲି ମନେ କରନ୍ତି ।

୮୪ । ଅମ୍ଭେ—ପରମେଶ୍ୱର । କରନଏନ୍ ଅର୍ଥ ଦୁଇଶିଙ୍ଗ । ଜୁଲ—କରନଏନ୍‌—ଦୁଇ ଶିଙ୍ଗର ଅଧିକାରୀ ଅର୍ଥାତ୍ ଦୁଇଟି ବିରାଟ ସାମ୍ରାଜ୍ୟର ଅଧିପତି ।

ତାପରେ ସେ ଏକ ଦଗରେ ଯାତ୍ରା କରିଥିଲେ ।୮୫।

ଅବଶେଷରେ ଯେତେବେଳେ ସେ ସୂର୍ଯ୍ୟାସ୍ତ ସ୍ଥଳରେ ଉପସ୍ଥିତ ହେଲେ ସେତେବେଳେ ସେ ତାହାକୁ ଏକ କୃଷ୍ଣ ସାଗରରେ ଅସ୍ତଗତ ହେବାର ଦେଖିଲେ ଏବଂ ତାହାର ନିକଟରେ ଏକ ସମ୍ପ୍ରଦାୟକୁ ପାଇଲେ; ଅମ୍ଭେ କହିଥିଲୁଁ, "ହେ ଜୁଲ୍‌କର୍‌ନ୍‌ଏନ୍ ! ତୁମ୍ଭେ ହୁଏତ ଏମାନଙ୍କୁ ଶାସ୍ତି ପ୍ରଦାନକର ଅଥବା ସେମାନଙ୍କ ସହିତ ସଦ୍‌ବ୍ୟବହାର କର"।୮୬।

ଜୁଲ୍‌କର୍‌ନ୍‌ଏନ୍ କହିଥିଲେ, "ଯେ ଅତ୍ୟାଚାରୀ ନିଶ୍ଚୟ ଅମ୍ଭେ ତାହାକୁ ଏଠାରେ ଶାସ୍ତି ପ୍ରଦାନ କରିବୁଁ; ତାପରେ ସେ ତାହାର ପାଳନକର୍ତ୍ତାଙ୍କ ନିକଟ ପ୍ରେରିତ ହେବ, ସେତେବେଳେ ସେ ତାହାକୁ ସାଂଘାତିକ ଶାସ୍ତି ପ୍ରଦାନ କରିବେ ।୮୭।

"କିନ୍ତୁ ଯେ ବ୍ୟକ୍ତି ବିଶ୍ୱାସ ସ୍ଥାପନ କରିବ ଏବଂ ସତ୍‌କାର୍ଯ୍ୟ କରିବ ତାହା ପାଇଁ ବାସ୍ତବରେ ଉତ୍କୃଷ୍ଟତର ପ୍ରତିଦାନ ରହିଅଛି; ଏବଂ ଶୀଘ୍ର ଅମ୍ଭେ ନିଜ ଆଦେଶରୁ ତାହା ପାଇଁ ସହଜ ସାଧ୍ୟ କର୍ମ କରିବା ପାଇଁ କହିବୁଁ" ।୮୮।

ତାପରେ ଜୁଲ୍‌କରନ୍‌ଏନ୍ ଅନ୍ୟ ଦଗରେ ଯାତ୍ରା କରିଥିଲେ ।୮୯।

ଅବଶେଷରେ ସେ ଯେତେବେଳେ ସୂର୍ଯ୍ୟୋଦୟ ସ୍ଥାନରେ ଉପସ୍ଥିତ ହୋଇଥିଲେ, ସେତେବେଳେ ସେ ତାହାକୁ ଏପରି ଏକ ସମ୍ପ୍ରଦାୟ ଉପରେ ଉଦୟ ହେବାର ଦେଖିଲେ, ଯେଉଁମାନଙ୍କ ପାଇଁ ଅମ୍ଭେ ଏଥିରୁ (ରକ୍ଷାପାଇବା ପାଇଁ) କୌଣସି ପ୍ରକାର ଆଚ୍ଛାଦନ କରି ନଥିଲୁଁ ।୯୦।

ଏହା ଏହିପରି ବିବରଣ ଥିଲା ଏବଂ ତାଙ୍କ ନିକଟରେ ଯାହା କିଛି ଥିଲା ଅମ୍ଭେ ଭଲରୂପେ ଅବଗତ ଥିଲୁଁ ।୯୧।

ତାପରେ ସେ ଅନ୍ୟ ଏକ ଦଗରେ ଯାତ୍ରା କରିଥିଲେ ।୯୨।

ଅବଶେଷରେ ଯେତେବେଳେ ସେ ଦୁଇ ପର୍ବତର ମଧ୍ୟରେ ଉପସ୍ଥିତ ହୋଇଥିଲେ, ସେତେବେଳେ ସେ ସେଠାରେ ଏପରି ଏକସମ୍ପ୍ରଦାୟକୁ ପାଇଥିଲେ ଯେଉଁମାନେ କୌଣସି କଥା ବୁଝିବାର ଉପଯୋଗୀ ନଥିଲେ ।୯୩।

---

୮୫ । ଏକ ଦଗରେ—ପଶ୍ଚିମ ଦଗରେ ।

୮୯ ଅନ୍ୟ ଦଗରେ—ପୂର୍ବ ଦଗରେ ।

୯୦ । ଏକ ସମ୍ପ୍ରଦାୟ—ଏକ ଅସଭ୍ୟ ଅଧମ ଜାତି । ସେମାନେ ନିଜପାଇଁ ଗୃହ ନିର୍ମାଣ କରି ଜାଣି ନଥିଲେ ଏବଂ ପର୍ବତ ଗହ୍ୱର କିମ୍ବା ବୃକ୍ଷ ତଳେ ରହୁଥିଲେ । ଅମ୍ଭେ—ପରମେଶ୍ୱର । ଏଥିରୁ—ସୂର୍ଯ୍ୟ ଉତ୍ତାପରୁ ।

୯୧ । 'ଜୁଲ୍‌କରନ୍‌ଏନ୍'ଙ୍କ ସମ୍ବନ୍ଧରେ ଯାହା ଘଟିଥିଲା ତାହା ପରମେଶ୍ୱର ଭଲରୂପେ ଜାଣନ୍ତି, ଅନ୍ୟ କେହି ଜାଣନ୍ତି ନାହିଁ ।

୯୨ । ଅନ୍ୟ ଦଗରେ—ଉତ୍ତର ଦଗରେ ।

୯୩ । କଥା ବୁଝିବାର ଉପଯୋଗୀ ନଥିଲେ—ସେମାନେ ଭିନ୍ନ ଭାଷାଭାଷୀ ଥିବାରୁ ସେମାନଙ୍କ କଥା ବୁଝିବାର ଉପାୟ ନଥିଲା ।

ଦୁଇ ପର୍ବତର ମଧ୍ୟରେ—ପର୍ବତମାଳା ମଧ୍ୟରେ ଥିବା ଘାଟି ସ୍ଥାନ ।

ସେମାନେ କହିଥିଲେ, "ହେ ଜୁଲ୍‌କର୍‌ନଏନ୍, ନିଶ୍ଚୟ 'ୟାଜୁଜ୍' ଓ 'ମାଜୁଜ୍' ପୃଥିବୀରେ ଅଶାନ୍ତି ଉତ୍ପାଦନକାରୀ; ଏତଏବ ଆମ୍ଭେମାନେ କଅଣ ତୁମ୍ଭ ପାଇଁ କୌଣସି କର ନିର୍ଦ୍ଧାରଣ କରିଦେବୁ ଯେ ତୁମ୍ଭେ ଆମ୍ଭମାନଙ୍କର ଓ ସେମାନଙ୍କର ମଧ୍ୟରେ ଗୋଟିଏ ପ୍ରାଚୀର ନିର୍ମାଣ କରିଦେବ" ? ।୯୪।

ସେ କହିଥିଲେ, "ଏ ବିଷୟରେ ଆମ୍ଭର ପାଳନକର୍ତ୍ତା ଆମ୍ଭକୁ ଯେଉଁ କ୍ଷମତା ଦେଇ ଅଛନ୍ତି ତାହାହିଁ କରଠାରୁ ଉତ୍କୃଷ୍ଟତର; ଅତଏବ ତୁମ୍ଭେମାନେ ମନୁଷ୍ୟ ବଳ ଦ୍ୱାରା ଆମ୍ଭକୁ ସାହାଯ୍ୟ କର, ଆମ୍ଭେ ତୁମ୍ଭମାନଙ୍କ ଓ ସେମାନଙ୍କ ମଧ୍ୟରେ ଏକ ପ୍ରଶସ୍ତ ପ୍ରାଚୀର ନିର୍ମାଣ କରି ଦେବୁ ।୯୫।

"ତୁମ୍ଭେମାନେ ଆମ୍ଭ ନିକଟ ଲୌହଖଣ୍ଡମାନ ଆଣ"; ଅବଶେଷରେ ଯେତେବେଳେ ସେ ଦୁଇ ପର୍ବତର ମଧ୍ୟସ୍ଥଳ ସମତଳ କରି ଦେଇଥିଲେ ସେ କହିଥିଲେ, "ତୁମ୍ଭେମାନେ ଫୁତ୍‌କାର ପ୍ରଦାନ କର;" ଅବଶେଷରେ ଯେତେବେଳେ ସେ ଏହାକୁ ଅଗ୍ନି ପରି (ଲାଲ) କରିଥିଲେ, ସେ କହିଥିଲେ, "ତୁମ୍ଭେମାନେ ଗଳିତ ତାମ୍ରରାଶି ଆଣି ଏହା ଉପରେ ନିକ୍ଷେପ କର," ।୯୬।

ତାପରେ ସେମାନେ ଏହା ଉପରେ ଆରୋହଣ କରି ପାରିବେ ନାହିଁ ଏବଂ ଏଥିରେ ଛିଦ୍ର ମଧ୍ୟ କରି ପାରିବେ ନାହିଁ ।୯୭।

ଜୁଲକରନଏନ କହିଥିଲେ, "ଏହା ଆମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହ; କିନ୍ତୁ ଯେତେବେଳେ ଆମ୍ଭର ପାଳନକର୍ତ୍ତାଙ୍କର ଅଙ୍ଗୀକାର ଉପସ୍ଥିତ ହେବ, ସେତେବେଳେ ସେ ତାହାକୁ ସମତଳ କରିଦେବେ; ଏବଂ ଆମ୍ଭର ପାଳନକର୍ତ୍ତାଙ୍କର ଅଙ୍ଗୀକାର ସତ୍ୟ ଅଟେ ।"୯୮।

ଏବଂ ସେଦିନ ଆମ୍ଭେ ସେମାନଙ୍କର ଏକ ଦଳକୁ ଅନ୍ୟଦଳ ବିରୁଦ୍ଧରେ ଛାଡ଼ିଦେବୁ, ଏବଂ ଭେରୀ ଧ୍ୱନି କରାହେବ, ତାପରେ ଆମ୍ଭେ ସେମାନଙ୍କୁ ଏକତ୍ରିତ କରିବୁ ।୯୯।

---

୯୪ । 'ୟାଜୁଜ୍' ଓ 'ମାଜୁଜ୍'—ପର୍ବତ ମାଳାର ଉତ୍ତର ଦିଗରେ ବାସ କରୁଥିବା ଦୁଇଗୋଟି ଅତ୍ୟାଚାରୀ ସମ୍ପ୍ରଦାୟ । ସେମାନେ ପର୍ବତ ମଧ୍ୟରେ ଥିବା ଘାଟି ସ୍ଥାନ ଦେଇ ଦକ୍ଷିଣ ଦିଗକୁ ଆସି ସମତଳ ପ୍ରଦେଶର ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ସେହି ଘାଟି ମଧ୍ୟରେ ଏକ ସୁଦୃଢ଼ ପ୍ରାଚୀର ନିର୍ମାଣ କରିବା ପାଇଁ ସମତଳ ପ୍ରଦେଶର ଲୋକମାନେ ଅନୁରୋଧ କରିଥିଲେ ଯେପରି ଅତ୍ୟାଚାରୀ ସମ୍ପ୍ରଦାୟମାନେ ଦକ୍ଷିଣ ଦିଗକୁ ଆସି-ପାରିବେ ନାହିଁ ।

୯୪-୯୮ । ସମ୍ରାଟ ଜୁଲକରନଏନଙ୍କ ସାମ୍ରାଜ୍ୟର ଉତ୍ତର ଦିଗରେ ଲୁଣ୍ଠନପ୍ରିୟ ଅତ୍ୟାଚାରୀ ଅସଭ୍ୟ ଜାତି ରହୁଥିଲେ । ଏମାନେ ୟାଜୁଜ୍ ଓ ମାଜୁଜ୍ ସମ୍ପ୍ରଦାୟ ଭୁକ୍ତ ଥିଲେ । ସେମାନଙ୍କ ଆକ୍ରମଣ ଓ ଲୁଣ୍ଠନରୁ ଲୋକମାନଙ୍କୁ ରକ୍ଷା କରିବା ପାଇଁ ସମ୍ରାଟ ଏକ ଉଚ୍ଚ ସୁଦୃଢ଼ ପ୍ରାଚୀର ନିର୍ମାଣ କରି ଦେଇଥିଲେ । ଏହା ଅବଶ୍ୟ ସେମାନଙ୍କ ପ୍ରତି ପରମେଶ୍ୱରଙ୍କ ଅନୁଗ୍ରହ ଥିଲା । ମାତ୍ର ସଂସାର ଯେ କ୍ଷଣ ଭଙ୍ଗୁର ଏ ପ୍ରାଚୀର ମଧ୍ୟ ସେହି ପ୍ରାକୃତିକ ନିୟମର ଅଧୀନ ଅଟେ । ଦିନେ ଏହା ଭୂମିସାତ ହେବାର ଅଛି ଏବଂ ୟାଜୁଜ ଓ ମାଜୁଜ ସମ୍ପ୍ରଦାୟର ବହିର୍ଗମନ ହେବାର ଅଛି । ୨୧ ଅଧ୍ୟାୟର ୯୫ ଓ ୯୬ ଶ୍ଳୋକର ଟୀକା ଦେଖ ।

୯୮ । ଅଙ୍ଗୀକାର ଉପସ୍ଥିତ ହେବ=ଶେଷ ବିଚାର ଦିନପାଇଁ ପୁନରୁତ୍ଥାନର ସମୟ ଉପସ୍ଥିତ ହେବ ସେତେବେଳେ ଏହି ସୁଦୃଢ଼ ପ୍ରାଚୀର ଭୂମିସାତ ହୋଇ ସମତଳ ହୋଇଯିବ । ୨୧ ଅଧ୍ୟାୟର ୯୬ ଶ୍ଳୋକ ଦେଖ ।
ଆମ୍ଭେ=ପରମେଶ୍ୱର

୯୯-୧୦୧ । ଏଥିରେ ଶେଷ ବିଚାର ଦିନର ଘଟଣା ଉଲ୍ଲେଖ କରାଯାଇଅଛି ।

ଏବଂ ଆମ୍ଭେ ସେଦିନ ଅବିଶ୍ୱାସକାରୀମାନଙ୍କ ସମ୍ମୁଖରେ ନରକ ଉପସ୍ଥିତ କରିବୁଁ ।୧୦୦।

ଆମ୍ଭର ସ୍ମରଣରୁ ଯେଉଁମାନଙ୍କ ଆଖି ଉପରେ ପର୍ଦ୍ଦା ପଡିଥିଲା ଏବଂ ସେମାନେ ଶ୍ରବଣ କରିବାକୁ ମଧ୍ୟ ସମର୍ଥ ନଥିଲେ ।୧୦୧।

## ୧୮ଶ ବିଭାଗ

ତେବେ କଅଣ ଅବିଶ୍ୱାସକାରୀମାନେ ଧାରଣା କରିଅଛନ୍ତି ଯେ ସେମାନେ ଆମ୍ଭ ପରିବର୍ତ୍ତିରେ ଆମ୍ଭର ସେବକମାନଙ୍କୁ ଅଭିଭାବକ ରୂପେ ଗ୍ରହଣ କରିବେ ? ନିଶ୍ଚୟ ଆମ୍ଭେ ନରକକୁ ଅବିଶ୍ୱାସକାରୀମାନଙ୍କ ଉପଭୋଗ ପାଇଁ ପ୍ରସ୍ତୁତ କରିଅଛୁଁ ।୧୦୨।

ତୁମ୍ଭେ କୁହ, "ଆମ୍ଭେ କଅଣ କୃତକର୍ମରେ କ୍ଷତିଗ୍ରସ୍ତମାନଙ୍କର ବିଷୟ ତୁମ୍ଭମାନଙ୍କ ଆଗରେ ପ୍ରକାଶ କରିବୁ ।"୧୦୩।

"ପାର୍ଥିବ ଜୀବନରେ ଯେଉଁମାନଙ୍କର ପରିଶ୍ରମ ବୃଥା ହୋଇଅଛି ଏବଂ ସେମାନେ ଧାରଣା କରୁ ଅଛନ୍ତି ଯେ ସେମାନେ ଭଲ କାର୍ଯ୍ୟ କରିବାରେ ସୁଦକ୍ଷ" ।୧୦୪।

ଏହିମାନେହିଁ ନିଜ ପାଳନ କର୍ତ୍ତାଙ୍କର ନିଦର୍ଶନମାନଙ୍କରେ ଏବଂ ତାଙ୍କର ସାକ୍ଷାତ ସମ୍ବନ୍ଧରେ ଅବିଶ୍ୱାସ କରୁଅଛନ୍ତି; ବାସ୍ତବରେ ସେମାନଙ୍କର କୃତକର୍ମମାନ ବିନଷ୍ଟ ହୋଇ ଯାଇଅଛି, ତା ପରେ ପୁନରୁତ୍ଥାନ ଦିବସରେ ଆମ୍ଭେ ସେହି କାର୍ଯ୍ୟମାନଙ୍କ ପାଇଁ କୌଣସି ପରିମାଣ ନିର୍ଦ୍ଦିଷ୍ଟ କରିବୁଁ ନାହିଁ ।୧୦୫।

ଏହିପରି ନରକହିଁ ସେମାନଙ୍କର ପ୍ରତିଫଳ, କାରଣ ସେମାନେ ଅବିଶ୍ୱାସ କରିଥିଲେ ଏବଂ ଆମ୍ଭର ନିଦର୍ଶନମାନଙ୍କୁ ଓ ପ୍ରେରିତ ପୁରୁଷମାନଙ୍କୁ ପରିହାସ କରିଥିଲେ ।୧୦୬।

ନିଶ୍ଚୟ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି, ସେମାନଙ୍କର ଉପଭୋଗ ପାଇଁ ସ୍ୱର୍ଗୀୟ ଉଦ୍ୟାନମାନ ରହିଅଛି ।୧୦୭।

ସେମାନେ ସେଥିରେ ସର୍ବଦା ବାସ କରିବେ, ସେଠାରୁ ସ୍ଥାନାନ୍ତରିତ ହେବାପାଇଁ ଇଚ୍ଛା କରିବେ ନାହିଁ ।୧୦୮।

---

୧୦୧ । ଅବିଶ୍ୱାସକାରୀମାନେ ଚକ୍ଷୁ ଥାଇ ମଧ୍ୟ ଦେଖି ପାରନ୍ତି ନାହିଁ, କାନ ଥାଇ ମଧ୍ୟ ଶୁଣି ପାରନ୍ତି ନାହିଁ । ସୁତରାଂ ସେମାନେ ପରମେଶ୍ୱରଙ୍କ ମହିମା ଉପଲବ୍ଧି କରିପାରନ୍ତି ନାହିଁ ।

୧୦୨ । ସ୍ୱର୍ଗଦୂତ, ପ୍ରେରିତ ପୁରୁଷ ଧର୍ମୋପଦେଷ୍ଟା କିମ୍ବା ସାଧୁ ସନ୍ନ୍ୟାସୀ—ଏମାନେ ପରମେଶ୍ୱରଙ୍କ ସେବକ ଅଟନ୍ତି, କାରଣ ସେମାନେ ପରମେଶ୍ୱରଙ୍କୁ ଉପାସନା କରନ୍ତି । ସୁତରାଂ ପରମେଶ୍ୱରଙ୍କୁ ଛାଡ଼ି ଏମାନଙ୍କୁ ଉପାସନା କଲେ ପରଲୋକରେ ନରକ ଯନ୍ତ୍ରଣା ଭୋଗ କରିବାକୁ ହେବ ।

୧୦୩ । ୧୦୪ । ୧୦୫ । ଅବିଶ୍ୱାସକାରୀମାନେ ସଂସାରରେ ଯେଉଁ ପାପ କାର୍ଯ୍ୟମାନ କରୁଅଛନ୍ତି ତାକୁ ସେମାନେ ପୁଣ୍ୟ କାର୍ଯ୍ୟ ମନେ କରି ମନରେ ଅହଙ୍କାର କରୁଅଛନ୍ତି । ମାତ୍ର ଶେଷ ବିଚାର ଦିନ ପରମେଶ୍ୱରଙ୍କ ଆଗରେ ଯେତେବେଳେ ପାପପୁଣ୍ୟ ଓ ଭଲ ମନ୍ଦ କାର୍ଯ୍ୟର ହିସାବ କରାଯିବ ସେତେବେଳେ ସେମାନଙ୍କ ପାର୍ଥିବ କାର୍ଯ୍ୟମାନ ପୁଣ୍ୟ କାର୍ଯ୍ୟରୂପେ ଗଣନା କରାଯିବ ନାହିଁ, ବରଂ ପୁଣ୍ୟ ପରିବର୍ତ୍ତିରେ ପାପକାର୍ଯ୍ୟ ରୂପେ ଗଣନା କରାଯିବ । ଫଳରେ ସେମାନଙ୍କର ପାପ କାର୍ଯ୍ୟର ଭାର ପୁଣ୍ୟ କାର୍ଯ୍ୟର ଭାର ଅପେକ୍ଷା ଅଧିକ ହେବ ଏବଂ ସେମାନେ କ୍ଷତିଗ୍ରସ୍ତ ହେବେ ଓ ଦଣ୍ଡ ଭୋଗ କରିବେ ।

ତୁମ୍ଭେ କୁହ, "ଯଦି ଆମ୍ଭର ପାଳନକର୍ତ୍ତାଙ୍କର ବାକ୍ୟାବଳୀ (ଲେଖି କରି) ପ୍ରକାଶ କରିବାପାଇଁ ସମୁଦ୍ର କାଳିହୁଏ, ତେବେ ନିଶ୍ଚୟ ଆମ୍ଭର ପାଳନ କର୍ତ୍ତାଙ୍କର ବାକ୍ୟାବଳୀ ଶେଷ ହେବା ପୂର୍ବରୁ ସମୁଦ୍ର ଶେଷ ହୋଇଯିବ, ଯଦିଓ ଆମ୍ଭେ ତାହାର ସଦୃଶ (ଅନ୍ୟ ସମୁଦ୍ର) ସେଥିରେ ଯୋଗ କରୁ।"୧୦୯।

ତୁମ୍ଭେ କୁହ, "ଆମ୍ଭେ ତୁମ୍ଭମାନଙ୍କ ପରି ମାନବ ଛଡ଼ା ଅଉ କିଛି ନୋହୁଁ; ଆମ୍ଭପ୍ରତି ପ୍ରତ୍ୟାଦେଶ ହୋଇଅଛି ଯେ ଏକମାତ୍ର ପରମେଶ୍ୱର ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ ଉପାସ୍ୟ ନାହିଁ; ଅତଏବ ଯେ ବ୍ୟକ୍ତି ନିଜ ପାଳନ କର୍ତ୍ତାଙ୍କର ସାକ୍ଷାତ କାମନା କରେ, ବାସ୍ତବରେ ସେ ସତ୍କାର୍ଯ୍ୟ କରିବ ଏବଂ ନିଜ ପାଳନ କର୍ତ୍ତାଙ୍କର ଉପାସନାରେ କାହାକୁ ଅଂଶୀ ସ୍ଥାପନ କରିବ ନାହିଁ" ।୧୧୦।

---

୧୦୯। ଏହି ଶ୍ଲୋକରେ ପରମେଶ୍ୱରଙ୍କ ଅନନ୍ତ ଓ ଅସୀମ ମହିମାର ବିଷୟ ଉଲ୍ଲେଖ କରାଯାଇଅଛି ! ତାହା ମନୁଷ୍ୟ ବର୍ଣ୍ଣନା କରି ଶେଷ କରିପାରିବ ନାହିଁ ।

୧୧୦। ଏହି ଅଧ୍ୟାୟରେ ଯେଉଁ ଉପଦେଶମାନ ଦିଆଯାଇଅଛି ତାହାର ସାରାଂଶ ଏହି ଶ୍ଲୋକରେ ଉଲ୍ଲେଖ କରାଯାଇଅଛି ଯଥା—

(୧) ପ୍ରେରିତ ପୁରୁଷ ଉପଦେଷ୍ଟା ମନୁଷ୍ୟ ଛଡ଼ା ଅଉ କିଛି ନୁହନ୍ତି ।
(୨) ପରମେଶ୍ୱର ଏକମାତ୍ର ଉପାସ୍ୟ । ତାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ କେହି ନାହିଁ ।
(୩) ପରଲୋକରେ ପରମେଶ୍ୱରଙ୍କ ସହିତ ସାକ୍ଷାତ ହେବ, ଏ କଥାରେ ବିଶ୍ୱାସ କରିବା ଆବଶ୍ୟକ ।
(୪) ସୁତରାଂ ଅସତ୍ କାର୍ଯ୍ୟ ପରିତ୍ୟାଗ କରି ସତ୍କାର୍ଯ୍ୟ କରିବା ଆବଶ୍ୟକ ।
(୫) ପରମେଶ୍ୱରଙ୍କ ସହିତ ଅଂଶୀ ଉପାସ୍ୟ ସ୍ଥିର କରିବା ଅନ୍ୟାୟ ।

# ୧୯ଶ ଅଧ୍ୟାୟ

## ନାମ—ମରୟମ୍

ମକ୍କାରେ ଅବତୀର୍ଣ୍ଣ । ଏଥିରେ ଗୋ ୬ ଟି ବିଭାଗ ଏବଂ
ଗୋ ୯୮ ଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣା ସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ) ।

## ୧ମ ବିଭାଗ

କାଫ, ହା, ୟା, ଅଇନ, ସ୍ୱାଦ୍ ।୧।

ଏହା ତୁମ୍ଭର ପାଳନକର୍ତ୍ତାଙ୍କ ନିଜ ସେବକ ଜକରୟାଙ୍କ ପ୍ରତି ଅନୁଗ୍ରହର ବିବରଣ ।୨।

ଯେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ଗୋପନରେ ଆହ୍ୱାନ କରିଥିଲେ ।୩।

ସେ କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଆମ୍ଭର ହାଡ଼ ସବୁ ଢିଲା ହୋଇଯାଇଅଛି ଏବଂ ଆମ୍ଭର ମୁଣ୍ଡର ବାଳ ଧଳା ହୋଇଅଛି ଏବଂ ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭେ ତୁମ୍ଭଙ୍କୁ ଆହ୍ୱାନ କରିବାରୁ କେବେ ବଞ୍ଚିତ ହୋଇ ନାହୁଁ ।୪।

"ଏବଂ ନିଶ୍ଚୟ ଆମ୍ଭେ ଆମ୍ଭର ମୃତ୍ୟୁ ପରେ ନିଜ ଜ୍ଞାତିମାନଙ୍କ ସମ୍ବନ୍ଧରେ ଆଶଙ୍କା କରୁଅଛୁଁ ଏବଂ ଆମ୍ଭର ସ୍ତ୍ରୀ ମଧ୍ୟ ବନ୍ଧ୍ୟା; ଅତଏବ ତୁମ୍ଭେ ନିଜ ପାଖରୁ ଆମ୍ଭଙ୍କୁ ଏପରି ଉତ୍ତରାଧିକାରୀ ପ୍ରଦାନ କର, ।୫।

"ଯେ ଆମ୍ଭର ଉତ୍ତରାଧିକାରୀ ହେବ ଏବଂ ୟାକୁବ ବଂଶର ମଧ୍ୟ ଉତ୍ତରାଧିକାରୀ ହେବ; ଏବଂ ହେ ଆମ୍ଭର ପାଳନକର୍ତ୍ତା ତାଙ୍କୁ ମନୋନୀତ କର " ।୬।

---

ନାମକରଣ—ଏହି ଅଧ୍ୟାୟର ୨ୟ ବିଭାଗରେ ମହାପୁରୁଷ ଇସାମସିହ ଏବଂ ତାଙ୍କର ମାତା ବିବିମରୟମଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଅଛି ।

୧ । ଏହି ଶ୍ଳୋକଟିରେ 'କାଫ୍, ହା, ୟା, ଅଇନ, ସ୍ୱାଦ' ଏହି ସାଙ୍କେତିକ ବର୍ଣ୍ଣମାନ ଦିଆଯାଇଅଛି । କେତେକ ଟୀକାକାର କହନ୍ତି ଏହାର ପ୍ରକୃତ ଅର୍ଥ ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାରିକୁ ଜଣା ନାହିଁ । ଅନ୍ୟ କେତେକ ଟୀକାକାରମାନଙ୍କ ମତରେ ଏହି ପାଞ୍ଚଗୋଟି ବର୍ଣ୍ଣ ପରମେଶ୍ୱରଙ୍କ ପାଞ୍ଚଗୋଟି ଗୁଣବାଚକ ନାମର ପ୍ରଥମ ବର୍ଣ୍ଣ ଅଟେ । ଅନ୍ୟ କେତେକଙ୍କ ମତରେ ଏହାର ସମ୍ପୂର୍ଣ୍ଣ ବାକ୍ୟ "କାଫେ ହାଦିଅ ଅମିନ୍ ଓ ସାଦେକା" ଅଟେ ଯାହାର ଭାବାର୍ଥ ହେଉଛି—ହେ ସର୍ବଜ୍ଞ ସତ୍ୟମୟ, ତୁମ୍ଭେ ପଥ ପ୍ରଦର୍ଶକରୂପେ ଯଥେଷ୍ଟ । ଦେଖ ଟୀକା ୨ୟ ଅଧ୍ୟାୟ ୧ମ ଶ୍ଳୋକ ।

୪ । ସେ—ଜକରୟା । ବଞ୍ଚିତ ହୋଇନାହୁଁ—ତୁମ୍ଭେ ସର୍ବଦା ଆମ୍ଭର ଆହ୍ୱାନ ବା ପ୍ରାର୍ଥନା ପୂରଣ କରିଥାଅ; ଅତଏବ ଏ ପ୍ରାର୍ଥନାଟି ମଧ୍ୟ ପୂର୍ଣ୍ଣ କର ।

ପରମେଶ୍ୱର ଜବାବ ଦେଲେ "ହେ ଜକରିୟା, ନିଶ୍ଚୟ ଅମ୍ଭେ ତୁମ୍ଭଙ୍କୁ ଗୋଟିଏ ପୁତ୍ର ସନ୍ତାନ ସମ୍ବନ୍ଧରେ ସୁସମ୍ବାଦ ପ୍ରଦାନ କରୁଅଛୁଁ, ତାହାର ନାମ 'ୟୋହ୍ୟା'; ଏଥିପୂର୍ବେ ଅମ୍ଭେ କାହାକୁ ତାଙ୍କ ନାମର ଲୋକ ସୃଷ୍ଟି କରିନାହୁଁ" ।୭।

ସେ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା, କିପରି ଅମ୍ଭର ପୁତ୍ର ସନ୍ତାନ ହେବ ଏବଂ ଅମ୍ଭର ସ୍ତ୍ରୀ ତ ବନ୍ଧ୍ୟା ଏବଂ ନିଶ୍ଚୟ ଅମ୍ଭେ ଚରମ ବୃଦ୍ଧାବସ୍ଥାରେ ଉପସ୍ଥିତ ହୋଇଅଛୁଁ" ! ।୮।

ପରମେଶ୍ୱର କହିଥିଲେ, "ଏହିପରି ହେବ; ତୁମ୍ଭର ପାଳନକର୍ତ୍ତା କହୁ ଅଛନ୍ତି, "ଏହା ଅମ୍ଭ ପକ୍ଷରେ ସହଜ ସାଧ୍ୟ; ଏବଂ ନିଶ୍ଚୟ ଅମ୍ଭେ ଏଥିପୂର୍ବେ ତୁମ୍ଭଙ୍କୁ ସୃଷ୍ଟି କରିଥିଲୁଁ, ଯେତେବେଳେ ତୁମ୍ଭର କିଛି ନଥିଲ" ।୯।

ଜକରିୟା କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା, ତୁମ୍ଭେ ଅମ୍ଭ ପାଇଁ କୌଣସି ନିଦର୍ଶନ ଦିଅ;" ସେ କହିଥିଲେ, "ତୁମ୍ଭପାଇଁ ନିଦର୍ଶନ ଏହି ଯେ ତୁମ୍ଭେ ସୁସ୍ଥ ଶରୀରରେ ତିନି ରାତି ଲୋକମାନଙ୍କ ସହିତ କଥା ବାର୍ତ୍ତା କରିବ ନାହିଁ" ।୧୦।

ତାପରେ ସେ ଉପାସନାଳୟରୁ ନିଜ ସମ୍ପ୍ରଦାୟ ନିକଟକୁ ଯାଇଥିଲେ; ତାପରେ ସେ ସେମାନଙ୍କୁ ଆଦେଶ କରିଥିଲେ, "ତୁମ୍ଭେମାନେ ପ୍ରଭାତରେ ଓ ସନ୍ଧ୍ୟାରେ (ପରମେଶ୍ୱରଙ୍କ) ମହିମା କୀର୍ତ୍ତନ କର" ।୧୧।

ତାଙ୍କ ପୁତ୍ରଙ୍କୁ ପରମେଶ୍ୱର କହିଲେ "ହେ ୟୋହ୍ୟା ! ତୁମ୍ଭେ ଦୃଢ ଭାବରେ ଗ୍ରନ୍ଥ ଧାରଣ କର;" ଏବଂ ଅମ୍ଭେ ତାଙ୍କୁ ଶୈଶବରୁ ଜ୍ଞାନ ଦାନ କରିଥିଲୁଁ; ।୧୨।

ଏବଂ ଅମ୍ଭେ ନିଜ ପାଖରୁ ତାଙ୍କୁ କୋମଳତା ଓ ପବିତ୍ରତା ପ୍ରଦାନ କରିଥିଲୁଁ; ଏବଂ ସେ ସଂଯମୀ ଥିଲେ; ।୧୩।

ଏବଂ ସେ ନିଜ ପିତା ମାତାଙ୍କର ଅନୁଗତ ଥିଲେ ଏବଂ ଉଦ୍ଧତ ଓ ଅବାଧ୍ୟ ନଥିଲେ ।୧୪।

ଏବଂ ତାଙ୍କ ଉପରେ ଶାନ୍ତି ! ଯେଉଁଦିନ ସେ ଜନ୍ମଗ୍ରହଣ କରିଥିଲେ ଏବଂ ଯେଉଁଦିନ ସେ ମୃତ୍ୟୁ ଲାଭ କରିବେ ଏବଂ ଯେଉଁଦିନ ସେ ଜୀବିତ ହୋଇ ପୁନରୁତ୍ଥାନ କରିବେ ।୧୫।

## ୨ୟ ବିଭାଗ

ଏବଂ ଗ୍ରନ୍ଥର ଅନ୍ତର୍ଗତ ମରିୟମଙ୍କ ବିଷୟ ବର୍ଣ୍ଣନା କର; ଯେତେବେଳେ ସେ ତାଙ୍କ ପରିବାରସ୍ଥ ଲୋକମାନଙ୍କଠାରୁ ପୂର୍ବ ଦିଗରେ ଥିବା ଗୃହରେ ଆଶ୍ରୟ ଗ୍ରହଣ କରିଥିଲେ, ।୧୬।

---

୭ । 'ୟୋହ୍ୟା' ବାଇବଲ୍‌ରେ ତାଙ୍କର ନାମ 'ଯୋହନ ଦ ବ୍ୟାପ୍‌ଟିଷ୍ଟ' ବା ତୁବନଦାତା ଯୋହନ ଲେଖାଅଛି । ସେ ମହାପୁରୁଷ ଇସାଙ୍କ ଅଗ୍ରଦୂତ ଥିଲେ ।

୧୦ । କଥା ବାର୍ତ୍ତା କରିବ ନାହିଁ—ଜକରିୟାଙ୍କ ସ୍ୱାସ୍ଥ୍ୟ ଭଲ ଥିଲା ଏବଂ ସେ ମୂକ ହୋଇଯାଇ ନଥିଲେ । ସମ୍ଭବତଃ ଏକାଗ୍ର ଚିତ୍ତରେ ଉପାସନାଳୟରେ ମହାନ ପରମେଶ୍ୱରଙ୍କ ଆରାଧନା ପାଇଁ ତାଙ୍କୁ ତିନିରାତି ମୌନବ୍ରତ ଅବଲମ୍ବନ କରିବାକୁ କୁହାଯାଇଥିଲା ।

୧୨ । ଗ୍ରନ୍ଥ=ତଉରେତ

୧୫ । ତାଙ୍କର ଜନ୍ମ, ମରଣ ଏବଂ ମୃତ୍ୟୁପରେ ପୁନରୁତ୍ଥାନ ଶାନ୍ତିମୟ ହେବ ।

ସେତେବେଳେ ସେ ସେମାନଙ୍କ ଠାରୁ ଅବରଣ ସ୍ଥାପନ କରିଥିଲେ; ତାପରେ ଅମ୍ଭେ ତାଙ୍କ ନିକଟ ଅମ୍ଭର ସ୍ୱର୍ଗଦୂତଙ୍କୁ ପଠାଇଥିଲୁଁ ଏବଂ ସେ ତାଙ୍କ ସମ୍ମୁଖରେ ସମ୍ପୂର୍ଣ୍ଣ ମାନବାକୃତି ଧାରଣ କରିଥିଲେ ।୧୭।

ମରିୟମ କହିଥିଲେ, "ନିଶ୍ଚୟ ଅମ୍ଭେ ତୁମ୍ଭଠାରୁ ଦୟାମୟଙ୍କର ଆଶ୍ରୟ ଗ୍ରହଣ କରୁଅଛୁଁ, ଯଦି ତୁମ୍ଭେ ଧର୍ମଭୀରୁ ହୁଅ ଅମ୍ଭପାଖକୁ ଆସନା" ।୧୮।

ସ୍ୱର୍ଗଦୂତ କହିଥିଲେ, "ଅମ୍ଭେ ତୁମ୍ଭର ପାଳନକର୍ତ୍ତାଙ୍କର ଏହି ସମ୍ବାଦ ଆଣିଅଛୁଁ ଯେ ଅମ୍ଭେ ତୁମ୍ଭଙ୍କୁ ଏକ ପବିତ୍ର ପୁତ୍ର ପ୍ରଦାନ କରିବୁଁ" ।୧୯।

ମରିୟମ କହିଥିଲେ, "କିପରି ଅମ୍ଭର ସନ୍ତାନ ହେବ, ଏବଂ କୌଣସି ମନୁଷ୍ୟ ଅମ୍ଭଙ୍କୁ ସ୍ପର୍ଶ କରିନାହିଁ ଏବଂ ଅମ୍ଭେ ଭ୍ରଷ୍ଟା ମଧ୍ୟ ନୋହୁଁ" ? ।୨୦।

ସ୍ୱର୍ଗଦୂତ କହିଥିଲେ, "ଏହିପରି ହେବ; ତୁମ୍ଭର ପାଳନକର୍ତ୍ତା କହିଅଛନ୍ତି ଏହା ଅମ୍ଭ ପକ୍ଷରେ ସହଜ-ସାଧ୍ୟ; ଏବଂ ଯେପରି ଅମ୍ଭେ ତାହାଙ୍କୁ ମାନବ ମଣ୍ଡଳୀ ପାଇଁ ନିଦର୍ଶନ ଓ ଅମ୍ଭର କରୁଣା ସ୍ୱରୂପ କରିବୁଁ; ଏବଂ ଏ ବିଷୟ ସ୍ଥିର ହୋଇ ଯାଇଅଛି" ।୨୧।

ତାପରେ ସେ ଗର୍ଭବତୀ ହେଲେ; (ଲୋକଲଜ୍ଜା ଏଡ଼ାଇବା ପାଇଁ) ପରେ ସେ ତାଙ୍କ ସହିତ ଦୂରବର୍ତ୍ତୀ ଅଶ୍ରୟ ସ୍ଥଳକୁ ଚାଲି ଯାଇ ଥିଲେ ।୨୨।

ତାପରେ ସେ ପ୍ରସବ ବେଦନାରେ ଗୋଟିଏ ଖଜୁରୀ ଗଛ ନିକଟକୁ ଗମନ କରିଥିଲେ; ସେ କହୁଥିଲେ, "ହାୟ ! ଏହାପୂର୍ବରୁ ଯଦି ଅମ୍ଭେ ମରି ଯାଇଥାନ୍ତୁ ଏବଂ ସମସ୍ତେ ଅମ୍ଭଙ୍କୁ ଭୁଲିଯାଇ ଥାନ୍ତେ ।" ।୨୩।

ତାପରେ (ଗୋଟିଏ ଶବ୍ଦ) ତାଙ୍କ ନିମ୍ନ ଦେଶରୁ ତାଙ୍କୁ ଅହ୍ୱାନ କରି କହିଥିଲା, "ତୁମ୍ଭେ ଦୁଃଖିତ ହୁଅନା; ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ତୁମ୍ଭର ନିମ୍ନ ଦେଶରେ ପ୍ରସ୍ରବଣ ପ୍ରବାହିତ କରିଦେଇ ଅଛନ୍ତି ।୨୪।

"ଏବଂ ତୁମ୍ଭ ଅଡ଼କୁ ଖଜୁରୀ ଶାଖାକୁ ହଲାଅ, ଏହା ତୁମ୍ଭ ପ୍ରତି ସଦ୍ୟ ସୁପକ୍ୱ ଖଜୁରୀଫଳ ନିକ୍ଷେପ କରିବ ।୨୫।

"ଅତଏବ ତୁମ୍ଭେ ଭକ୍ଷଣ କର ଓ ପାନକର ଏବଂ ନୟନ ତୃପ୍ତକର; ତାପରେ ଯଦି ତୁମ୍ଭେ କୌଣସି ମନୁଷ୍ୟଙ୍କୁ ଦେଖ (ଏବଂ ସେ ତୁମ୍ଭଙ୍କୁ କିଛି ପଚାରେ) ତେବେ(ସଙ୍କେତରେ) କୁହ ଯେ ନିଶ୍ଚୟ ଆମ୍ଭେ ଦୟାମୟଙ୍କ ଉଦ୍ଦେଶ୍ୟରେ ଉପବାସ ପାଳନ କରିଅଛୁଁ, ସେଥିପାଇଁ ଅଜ ଆମ୍ଭେ କୌଣସି ଲୋକସହିତ କଥା କହିବୁଁ ନାହିଁ" ।୨୬।

ତାପରେ ସେ ତାଙ୍କୁ ବହନ କରି ତାଙ୍କ ସହିତ ନିଜ ସମ୍ପ୍ରଦାୟ ନିକଟ ଉପସ୍ଥିତ ହୋଇଥିଲେ; ସେମାନେ କହିଥିଲେ, "ହେ ମରିୟମ ! ନିଶ୍ଚୟ ତୁମ୍ଭେ ଏକ ବିସ୍ମୟ କର ବ୍ୟାପାର ଅଣିଅଛ ।୨୭।

---

୧୯ । ୧ମ ଅମ୍ଭେ—ସ୍ୱର୍ଗଦୂତ; ୨ୟ ଅମ୍ଭେ—ପରମେଶ୍ୱର

୨୦ । ୨୧ । ପରମେଶ୍ୱର ମହାପୁରୁଷ ଇସାଙ୍କୁ ପିତା ବିନା ସୃଷ୍ଟି କରିଥିଲେ । ଏହା ଲୋକମାନଙ୍କ ପାଇଁ ପରମେଶ୍ୱରଙ୍କ ମହିମାର ଗୋଟିଏ ନିଦର୍ଶନ ଥିଲା । ୩ୟ ଅଧ୍ୟାୟ ୦୭ ଶ୍ଳୋକର ଟୀକା ଦେଖ ।

୨୨ । ତାଙ୍କ ସହିତ—ଗର୍ଭରେ ଥିବା ସନ୍ତାନ ସହିତ ।

୨୪ । ମରିୟମଙ୍କ ସାହାଯ୍ୟକାରୀ ସ୍ୱର୍ଗଦୂତ ତାଙ୍କୁ ଆହ୍ୱାନ କରି କହିଥିଲା ।

୨୬ । କଥା କହିବୁଁ ନାହିଁ—ସେ ସମୟର ବିଧାନ ଅନୁସାରେ ଉପବାସ ସମୟରେ କାହାରି ସଙ୍ଗେ କଥାବାର୍ତ୍ତା କରିବା ନିଷିଦ୍ଧ ଥିଲା ।

"ହେ ହାରୁନଙ୍କର ଭଗ୍ନୀ । ତୁମ୍ଭର ପିତା ତ ଅସତ୍ ଲୋକ ନଥିଲେ ଏବଂ ତୁମ୍ଭର ମାତା ମଧ୍ୟ ବ୍ୟଭିଚାରିଣୀ ନଥିଲେ ।"୨୮ ।

ସେତେବେଳେ ସେ ତାଙ୍କର ଅଙ୍ଗକୁ ଇଙ୍ଗିତ କରିଥିଲେ; ସେମାନେ କହିଥିଲେ; "ଆମ୍ଭେମାନେ କିପରି ତାହା ସହିତ କଥା କହିବୁଁ ଯେ ଦୋଳାର ଶିଶୁମାନ" ! ୨୯ ।

ସେ କହିଥିଲେ; "ନିଶ୍ଚୟ ଆମ୍ଭେ ପରମେଶ୍ୱରଙ୍କ ସେବକ, ସେ ଆମ୍ଭକୁ ଗ୍ରନ୍ଥକୁ ପ୍ରଦାନ କରି ଅଛନ୍ତି ଏବଂ ଆମ୍ଭକୁ ଧର୍ମ ପ୍ରବର୍ତ୍ତକ (ନିଯୁକ୍ତ) କରି ଦେଇଅଛନ୍ତି ।୩୦।

"ଏବଂ ଆମ୍ଭେ ଯେଉଁଠାରେ ରହୁଁ, ସେ ଆମ୍ଭକୁ କଲ୍ୟାଣ ଯୁକ୍ତ କରିଅଛନ୍ତି ଏବଂ ସେ ଆମ୍ଭକୁ ଆମ୍ଭର ଜୀବିତାବସ୍ଥା ପର୍ଯ୍ୟନ୍ତ ଆରାଧନା ଓ ଜକାତ ସମ୍ବନ୍ଧରେ ଉପଦେଶ ଦେଇ ଅଛନ୍ତି ।୩୧।

"ଏବଂ ଆମ୍ଭ ମାତାଙ୍କ ପ୍ରତି ସଦ୍ବ୍ୟବହାର; ଏବଂ ସେ ଆମ୍ଭକୁ ଅବାଧ୍ୟ ଓ ହତଭାଗ୍ୟ କରି ନାହାନ୍ତି ।୩୨।

"ଏବଂ ଆମ୍ଭ ପ୍ରତି ଶାନ୍ତି ! ଯେଦିନ ଆମ୍ଭେ ଜନ୍ମ ଗ୍ରହଣ କରି ଅଛୁଁ ଏବଂ ଯେଦିନ ଆମ୍ଭେ ମୃତ୍ୟୁଗତ କରିବୁ ଏବଂ ଯେଉଁଦିନ ଆମ୍ଭେ ଜୀବିତ ହୋଇ ପୁନରୁତ୍ଥିତ ହେବୁଁ ।"୩୩ ।

ଏହିତ ମରିୟମ ନନ୍ଦନ ଇସା, ଏହାହିଁ ସତ୍ୟ କଥା ଯେଉଁ ବିଷୟରେ ସେମାନେ ସନ୍ଦେହ କରୁ ଅଛନ୍ତି ।୩୪।

ଏହା ପରମେଶ୍ୱରଙ୍କ ପକ୍ଷରେ ଶୋଭନୀୟ ନୁହେ ଯେ ସେ ସନ୍ତାନ ଗ୍ରହଣ କରିବେ; ସେ ପବିତ୍ରତମ, ଯେତେବେଳେ ସେ କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ସେ ତାକୁ କହନ୍ତି, 'ହୁଅ' ଏବଂ ତାହା ହୋଇଯାଏ ।୩୫।

(ଇସା ପ୍ରଚାର କରିଥିଲେ) ନିଶ୍ଚୟ ପରମେଶ୍ୱର ଆମ୍ଭର ପାଳନକର୍ତ୍ତା ଓ ତୁମ୍ଭମାନଙ୍କର ପାଳନକର୍ତ୍ତା; ଅତଏବ ତୁମ୍ଭେମାନେ ତାଙ୍କୁହିଁ ଉପାସନା କର ଏହାହିଁ ସରଳ ସୁପଥ" ।୩୬।

କିନ୍ତୁ ସେମାନଙ୍କ ମଧ୍ୟରୁ ବିଭିନ୍ନ ଦଳ ପରସ୍ପର ବିରୋଧ କରିଥିଲେ; ଅତଏବ ସେମାନଙ୍କର ସର୍ବନାଶ ଯେଉଁମାନେ ସେହି ମହା ଦିବସର ଉପସ୍ଥିତି ସମ୍ବନ୍ଧରେ ଅବିଶ୍ୱାସ କରନ୍ତି ! ୩୭।

ଯେଉଁଦିନ ସେମାନେ ଆମ୍ଭ ସମ୍ମୁଖରେ ଉପସ୍ଥିତ ହେବେ; ସେତେବେଳେ କିପରି ସୁସ୍ପଷ୍ଟ ଭାବରେ ଶ୍ରବଣ କରିବେ ଏବଂ କିପରି ସ୍ପଷ୍ଟତର ଭାବରେ ପ୍ରତ୍ୟକ୍ଷ କରିବେ ! କିନ୍ତୁ ଆଜି ଅତ୍ୟାଚାରୀମାନେ ପ୍ରକାଶ୍ୟ ଭ୍ରାନ୍ତି ମଧ୍ୟରେ ରହି ଅଛନ୍ତି ।୩୮।

ଏବଂ ତୁମ୍ଭେ ସେମାନଙ୍କୁ ସେହି ଦୁଃଖମୟ ଦିବସର ଭୟପ୍ରଦର୍ଶନ କର, ଯେତେବେଳେ କାର୍ଯ୍ୟ ମୀମାଂସିତ ହୋଇ ଯିବ; ଏବଂ ସେମାନେ ଅବହେଳାରେ ଅଛନ୍ତି ଏବଂ ସେମାନେ ବିଶ୍ୱାସ ସ୍ଥାପନ ମଧ୍ୟ କରନ୍ତି ନାହିଁ ।୩୯।

---

୨୮ । ମରିୟମଙ୍କ ପିତା ଇମରାନ ହାରୁନଙ୍କ ବଂଶଧର ଥିଲେ । କେହି କେହି କହନ୍ତି ମରିୟମଙ୍କ ପିତାଙ୍କ ନାମ ଇମରାନ ଓ ଭ୍ରାତାଙ୍କ ନାମ ହାରୁନ ଥିଲା । ଏ ହାରୁନ ଅନ୍ୟ ଲୋକ ଅଟନ୍ତି । ମୁସାଙ୍କ ଭାଇ ହାରୁନ ନୁହନ୍ତି ।

୩୦ । ସେ—ମହାପୁରୁଷ ଇସା । ଗ୍ରନ୍ଥ—ଇଞ୍ଜିଲ । ଦେଖ ଟୀକା ୧୪ ଶ୍ଳୋକ ୫ମ ଅଧ୍ୟାୟ ।

୩୩ । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋ୧୫କ । ଦେଖ ୭ମ ଅଧ୍ୟାୟ ଶ୍ଳୋ୨୫କ ।

୩୭ । ମହାଦିବସ—ପୁନରୁତ୍ଥାନ ଓ ଶେଷ ବିଚାର ଦିବସ ।

୩୯ । ଦୁଃଖମୟ ଦିବସ—ଶେଷ ବିଚାର ଦିନ ।

ନିଶ୍ଚୟ ଆମ୍ଭେହିଁ ପୃଥିବୀ ଓ ତାହା ଉପରେ ଥିବା ବିଷୟମାନଙ୍କର ଉତ୍ତରାଧିକାରୀ ହେବୁଁ ଏବଂ ଆମ୍ଭର ଆଡ଼କୁ ସେମାନଙ୍କୁ ଫେରି ଯିବାକୁ ହେବ ।୪୦।

## ୩ୟ ବିଭାଗ

ଏହି ଗ୍ରନ୍ଥର ଅନ୍ତର୍ଗତ ଇବ୍ରାହିମଙ୍କ ବିଷୟ ବର୍ଣ୍ଣନା କର; ନିଶ୍ଚୟ ସେ ସତ୍ୟ ପରାୟଣ ଧର୍ମ ପ୍ରବର୍ତ୍ତକ ଥିଲେ ।୪୧।

ଯେତେବେଳେ ସେ ତାଙ୍କ ପିତାଙ୍କୁ କହିଥିଲେ, "ହେ ଆମ୍ଭର ପିତା ତୁମ୍ଭେ କାହିଁକି ତାହାର ଉପାସନା କରୁଅଛ ଯେ ଶ୍ରବଣ କରି ପାରେନା ଏବଂ ଦର୍ଶନ କରି ପାରେନା ଏବଂ ତୁମ୍ଭର କୌଣସି ଉପକାର ମଧ୍ୟ କରି ପାରେନା ? ୪୨ ।

'ହେ ଆମ୍ଭର ପିତା ' ନିଶ୍ଚୟ ଆମ୍ଭ ନିକଟ ଯେଉଁ ଜ୍ଞାନ ଆସିଅଛି ତାହା ତୁମ୍ଭ ନିକଟ ଆସି ନାହିଁ, ଅତଏବ ତୁମ୍ଭେ ଆମ୍ଭର ଅନୁସରଣ କର, ଆମ୍ଭେ ତୁମ୍ଭକୁ ସରଳ ସୁପଥ ଦେଖାଇବୁ ।୪୩।

"ହେ ଆମ୍ଭର ପିତା ! ତୁମ୍ଭେ ସଇତାନର ଉପାସନା କରନା, ନିଶ୍ଚୟ ସଇତାନ ଦୟାମୟଙ୍କର ଅବାଧ୍ୟ ।୪୪।

"ହେ ଆମ୍ଭର ପିତା ! ନିଶ୍ଚୟ ଆମ୍ଭେ ଆଶଙ୍କା କରୁଅଛୁଁ ଯେ ଦୟାମୟଙ୍କର ଶାସ୍ତି ତୁମ୍ଭକୁ ସ୍ପର୍ଶ କରିବ, ପରେ ତୁମ୍ଭେ ସଇତାନର ବନ୍ଧୁ ହୋଇଯିବ" ।୪୫।

ତାଙ୍କ ପିତା କହିଥିଲେ, "ହେ ଇବ୍ରାହିମ ! ତୁମ୍ଭେ କଅଣ ଆମ୍ଭର ଉପାସ୍ୟଙ୍କୁ ଅବଜ୍ଞା କରୁଅଛ ? ଯଦି ତୁମ୍ଭେ ପ୍ରକୃତରେ କ୍ଷାନ୍ତ ନ ହୁଅ ତେବେ ନିଶ୍ଚୟ ଆମ୍ଭେ ତୁମ୍ଭକୁ ପ୍ରସ୍ତରାଘାତରେ ବିଚୂର୍ଣ୍ଣ କରିଦେବୁଁ ଏବଂ ତୁମ୍ଭେ ବର୍ତ୍ତମାନ ଆମ୍ଭଠାରୁ ଦୂର ହୋଇଯାଅ" ।୪୬।

ଇବ୍ରାହିମ କହିଥିଲେ; "ତୁମ୍ଭ ଉପରେ ଶାନ୍ତି ହେଉ । ଆମ୍ଭେ ତୁମ୍ଭ ପାଇଁ ଆମ୍ଭ ପାଳନକର୍ତ୍ତାଙ୍କ ନିକଟ କ୍ଷମା ପ୍ରାର୍ଥନା କରିବୁ; ନିଶ୍ଚୟ ସେ ଆମ୍ଭ ପ୍ରତି ସ୍ନେହଶୀଳ ।୪୭।

"ଏବଂ ଆମ୍ଭେ ତୁମ୍ଭକୁ ପରିତ୍ୟାଗ କରିବୁଁ ଏବଂ ପରମେଶ୍ୱରଙ୍କ ବ୍ୟତୀତ ତୁମ୍ଭେ ଯାହାକୁ ଆହ୍ୱାନ କରୁଥାଅ ତାକୁ ମଧ୍ୟ ପରିତ୍ୟାଗ କରିଯିବୁଁ ଏବଂ ଆମ୍ଭେ ଆମ୍ଭର ପାଳନକର୍ତ୍ତାଙ୍କୁହିଁ ଆହ୍ୱାନ କରିବୁଁ; ଏବଂ ସମ୍ଭବତଃ ଆମ୍ଭେ ନିଜ ପାଳନକର୍ତ୍ତାଙ୍କୁ ଆହ୍ୱାନ କରି ଅକୃତକାର୍ଯ୍ୟ ହେବୁଁ ନାହିଁ" ।୪୮।

ତାପରେ ଯେତେବେଳେ ସେ ସେମାନଙ୍କୁ ଏବଂ ସେମାନେ ପରମେଶ୍ୱରଙ୍କ ବ୍ୟତୀତ ଯେଉଁମାନଙ୍କୁ ଉପାସନା କରୁଥିଲେ ସେମାନଙ୍କୁ ପରିତ୍ୟାଗ କରି ଚାଲିଗଲେ ସେତେବେଳେ ଆମ୍ଭେ ତାଙ୍କୁ ଇସହାକ ଓ ୟାକୁବ ପ୍ରଦାନ କରିଥିଲୁ ଏବଂ ସେମାନଙ୍କର ପ୍ରତ୍ୟେକଙ୍କୁ ଆମ୍ଭେ ଧର୍ମ ପ୍ରବର୍ତ୍ତକ କରି ଦେଇଥିଲୁଁ ।୪୯।

---

୪୭ । ଇବ୍ରାହିମ ତାଙ୍କ ପିତାଙ୍କ ପାଇଁ କ୍ଷମା ପ୍ରାର୍ଥନା କରିଥିଲେ । ମାତ୍ର ତାଙ୍କ ପିତା ପୌତ୍ତଳିକତାରେ ଦୃଢ଼ ରହିଥିବାରୁ ତାଙ୍କ ପ୍ରାର୍ଥନା କାର୍ଯ୍ୟକାରୀ ହୋଇପାରିନାହିଁ । ୯ମ ଅଧ୍ୟାୟର ୧୧୪ ଶ୍ଳୋକ ଓ ତାହାର ଟୀକା ଦେଖ ।

୪୯ । ପ୍ରଦାନ କରିଥିଲୁ=ଇବ୍ରାହିମଙ୍କ ପୁତ୍ର ଇସହାକ ଓ ଇସହାକଙ୍କ ପୁତ୍ର ୟାକୁବ ଜନ୍ମିଥିଲେ । ୟାକୁବ ଇସରାଇଲ ନାମରେ ମଧ୍ୟ ଖ୍ୟାତ ।

ଏବଂ ଆମେ ସେମାନଙ୍କୁ ଆମର ଅନୁଗ୍ରହ ଦାନ କରିଥିଲୁଁ ଏବଂ ଆମେ ସେମାନଙ୍କୁ ନିସ୍ଥାପର ସତ୍ୟଗ୍ରାହୀ ଲୋକମାନଙ୍କ ମୁଖରେ ସମ୍ମାନିତ କରିଥିଲୁଁ ।୫୦।

## ୪ର୍ଥ ବିଭାଗ

ଏବଂ ଗ୍ରନ୍ଥର ଅନ୍ତର୍ଗତ ମୂସାଙ୍କ ବିଷୟ ବର୍ଣ୍ଣନା କର; ନିଶ୍ଚୟ ସେ ପବିତ୍ର ଥିଲେ ଏବଂ ସେ ପ୍ରେରିତ ପୁରୁଷ ଓ ଧର୍ମ ପ୍ରବର୍ତ୍ତକ ଥିଲେ ।୫୧।

ଏବଂ ଆମେ ତାହାଙ୍କୁ ତୁର ପର୍ବତର ଦକ୍ଷିଣ ପାର୍ଶ୍ୱରୁ ଆହ୍ୱାନ କରିଥିଲୁଁ ଏବଂ ଆମେ ତାହାଙ୍କୁ କଥୋପକଥନରେ ନିକଟବର୍ତ୍ତୀ କରିଥିଲୁଁ ।୫୨।

ଏବଂ ଆମେ ନିଜ କରୁଣାରୁ ତାଙ୍କର ଭ୍ରାତା ହାରୁନଙ୍କୁ ଧର୍ମ ପ୍ରବର୍ତ୍ତକ ରୂପେ ତାଙ୍କୁ ଦେଇଥିଲୁଁ ।୫୩।

ଏବଂ ଗ୍ରନ୍ଥର ଅନ୍ତର୍ଗତ ଇସମାଇଲଙ୍କ ବିଷୟ ବର୍ଣ୍ଣନା କର, ନିଶ୍ଚୟ ସେ ପ୍ରତିଜ୍ଞାରେ ସତ୍ୟପରାୟଣ ଏବଂ ପ୍ରେରିତ ପୁରୁଷ ଓ ଧର୍ମ ପ୍ରବର୍ତ୍ତକ ଥିଲେ ।୫୪।

ସେ ନିଜ ପରିବାର ମଧ୍ୟରେ ଆରାଧନା ଓ ଜକାତର ଆଦେଶ କରୁଥିଲେ ଏବଂ ସେ ନିଜ ପାଳନକର୍ତ୍ତାଙ୍କ ନିକଟ ପ୍ରିୟତର ଥିଲେ ।୫୫।

ଏବଂ ଗ୍ରନ୍ଥର ଅନ୍ତର୍ଗତ ଇଦ୍‌ରିସଙ୍କ ବିଷୟ ବର୍ଣ୍ଣନା କର, ନିଶ୍ଚୟ ସେ ସତ୍ୟ ପରାୟଣ ଧର୍ମପ୍ରବର୍ତ୍ତକ ଥିଲେ ।୫୬।

ଏବଂ ଆମେ ତାହାଙ୍କୁ ଉଚ୍ଚ ସ୍ଥାନରେ ଉନ୍ନୀତ କରିଥିଲୁଁ ।୫୭।

ଆଦମ ବଂଶଧରମାନଙ୍କ ମଧ୍ୟରୁ ଏବଂ ଯେଉଁମାନଙ୍କୁ ଆମେ ନୁହଙ୍କ ସହିତ ନୌକାରେ ଆରୋହଣ କରାଇଥିଲୁଁ ସେମାନଙ୍କ ବଂଶଧରମାନଙ୍କ ମଧ୍ୟରୁ ଏବଂ ଇବ୍ରାହିମ ଓ ଇସମାଇଲଙ୍କ ବଂଶଧରମାନଙ୍କ ମଧ୍ୟରୁ ଏହିମାନେହିଁ କେତେକ ଧର୍ମ ପ୍ରବର୍ତ୍ତକ ଯେଉଁମାନଙ୍କୁ ପରମେଶ୍ୱର ଅନୁଗୃହୀତ କରିଥିଲେ ଏବଂ ଯେଉଁମାନଙ୍କୁ ଆମେ ସୁପଥଗାମୀ ଓ ମନୋନୀତ କରିଥିଲୁଁ; ଏବଂ ଯେତେବେଳେ ସେମାନଙ୍କ ନିକଟ ଦୟାମୟଙ୍କ ନିଦର୍ଶନମାନ ପାଠ କରା ହେଉଥିଲା ସେମାନେ ସେତେବେଳେ କ୍ରନ୍ଦନ କରୁଥିବା ଅବସ୍ଥାରେ ସାଷ୍ଟାଙ୍ଗ ପ୍ରଣିପାତରେ ପତିତ ହେଉଥିଲେ ।୫୮।

ତାପରେ ସେମାନଙ୍କ ପରେ ଅସତ୍ ବଂଶୀୟମାନେ ଉତ୍ତରାଧିକାରୀ ହୋଇଥିଲେ, ଯେଉଁମାନେ ଆରାଧନାକୁ ବିନଷ୍ଟ କରିଥିଲେ ଏବଂ କୁପ୍ରବୃତ୍ତିର ଅନୁସରଣ କରିଥିଲେ; ସୁତରାଂ ସେମାନେ ଶୀଘ୍ର ଶାସ୍ତି ଦେଖିବେ ।୫୯।

---

୫୦ । ଲୋକମାନଙ୍କ ମୁଖରେ ସମ୍ମାନିତ କରିଥିଲୁଁ—ମହାପୁରୁଷ ଇବ୍ରାହିମ, ଇସହାକ ଓ ୟାକୁବଙ୍କୁ ନିସ୍ଥାପର ଗ୍ରନ୍ଥାନୁସରଣକାରୀମାନେ ମୁକ୍ତରେ ପ୍ରଶଂସା କରିଥାନ୍ତି ଏବଂ ସେମାନଙ୍କ ସୁଖ୍ୟାତି ପ୍ରଚାର କରିଥାନ୍ତି ।

୫୭ । ୨୧ ଅଧ୍ୟାୟର ୮୫ ଶ୍ଳୋକରେ ମହାପୁରୁଷ ଇଦରିସଙ୍କୁ ଧୈର୍ଯ୍ୟଶାଳୀ କୁହାଯାଇଅଛି ।
ଉନ୍ନୀତ କରିଥିଲୁ=ପରମେଶ୍ୱର ତାଙ୍କୁ ଉଚ୍ଚ ପଦରେ ମର୍ଯ୍ୟାଦାଶାଳୀ କରିଥିଲେ ।

୫୮ । ଏହି ଶ୍ଳୋକ ପାଠ ବା ଶ୍ରବଣ ପରେ ସଙ୍ଗେ ସଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ କରିବା ବିଧେୟ । ଏହିମାନେହିଁ – ଏହି ଅଧ୍ୟାୟର ପୂର୍ବ ଶ୍ଳୋକମାନଙ୍କରେ ବର୍ଣ୍ଣିତ ଧର୍ମପ୍ରବର୍ତ୍ତକମାନେ ।

କିନ୍ତୁ ଯେଉଁମାନେ ଅନୁତାପ କରି କ୍ଷମା ପ୍ରାର୍ଥନା କରିଥିଲେ ଓ ବିଶ୍ୱାସ ସ୍ଥାପନ କରିଥିଲେ ଏବଂ ସତ୍‌କାର୍ଯ୍ୟ କରିଥିଲେ, ବାସ୍ତବରେ ସେହିମାନେହିଁ ସ୍ୱର୍ଗୋଦ୍ୟାନରେ ପ୍ରବିଷ୍ଟ ହେବେ ଏବଂ ସେମାନଙ୍କ ପ୍ରତି ଲେଶ ମାତ୍ର ଅନ୍ୟାୟ କରା ହେବ ନାହିଁ ।୬୦।

ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ ଯାହା ଦୟାମୟ ତାଙ୍କ ସେବକମାନଙ୍କ ପାଇଁ ଅଦୃଶ୍ୟରୁ ଅଙ୍ଗୀକାର କରି ଅଛନ୍ତି; ନିଶ୍ଚୟ ତାଙ୍କର ଅଙ୍ଗୀକାର ଉପସ୍ଥିତ ହେବ ।୬୧।

ସେଠାରେ ସେମାନେ ଶାନ୍ତି ସମ୍ଭାଷଣ ଛଡ଼ା କୌଣସି ଅଯଥା କଥା ଶୁଣିବେ ନାହିଁ ଏବଂ ସେଠାରେ ସେମାନଙ୍କ ପାଇଁ ପ୍ରଭାତ ଓ ସନ୍ଧ୍ୟାରେ ସେମାନଙ୍କର ଜୀବିକା ରହିଅଛି ।୬୨।

ଏହାହିଁ ସ୍ୱର୍ଗୋଦ୍ୟାନ, ଯାହାର ଉତ୍ତରାଧିକାରୀ ଅମ୍ଭେ ନିଜ ସେବକମାନଙ୍କ ମଧ୍ୟରୁ ଧର୍ମଭୀରୁମାନଙ୍କୁ କରିଅଛୁଁ ।୬୩।

ସ୍ୱର୍ଗଦୂତମାନେ କହନ୍ତି "ହେ ମହମ୍ମଦ ତୁମ୍ଭର ପାଳନ କର୍ତ୍ତାଙ୍କର ଆଦେଶ ବ୍ୟତୀତ ଅମ୍ଭେମାନେ ଅବତୀର୍ଣ୍ଣ ହେଉନାହୁଁ ଯାହା ଅମ୍ଭମାନଙ୍କ ସମ୍ମୁଖରେ ଓ ଯାହା ଅମ୍ଭମାନଙ୍କ ପଶ୍ଚାତରେ ଏବଂ ଯାହା ଏହା ମଧ୍ୟରେ ରହିଅଛି ତାହା ତାଙ୍କର ଏବଂ ତୁମ୍ଭର ପାଳନକର୍ତ୍ତା ଭୁଲି ଯିବା ଲୋକ ନୁହନ୍ତି ।୬୪।

"ସେ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ଏବଂ ତହିଁ ମଧ୍ୟରେ ଥିବା ବିଷୟମାନଙ୍କର ପାଳନକର୍ତ୍ତା ଅଟନ୍ତି; ଅତଏବ ତାଙ୍କୁହିଁ ଉପାସନା କର ଏବଂ ତାଙ୍କର ଉପାସନାରେ ଧୈର୍ଯ୍ୟଶୀଳ ହୁଅ; ତୁମ୍ଭେମାନେ କଅଣ ତାଙ୍କର ନାମଧାରୀ ଅନ୍ୟ କାହାକୁ ଜାଣ ?"୬୫।

## ୫ମ ବିଭାଗ

ଏବଂ ମନୁଷ୍ୟ କହେ, "ଯେତେବେଳେ ଅମ୍ଭେ ମରିଯିବୁଁ, ସେତେବେଳେ ପ୍ରକୃତରେ କଅଣ ଜୀବିତ ଅବସ୍ଥାରେ ବହିର୍ଗତ ହେବୁ ?"୬୬।

ମନୁଷ୍ୟ କଅଣ ସ୍ମରଣ କରୁ ନାହିଁ ଯେ ପୂର୍ବେ ମଧ୍ୟ ଅମ୍ଭେ ତାହାକୁ ସୃଷ୍ଟି କରିଥିଲୁଁ ଯେତେବେଳେ ସେ କିଛି ନ ଥିଲା ? ୬୭।

ଅତଏବ ତୁମ୍ଭର ପାଳନ କର୍ତ୍ତାଙ୍କର ରାଣ ! ନିଶ୍ଚୟ ଅମ୍ଭେ ସେମାନଙ୍କୁ ଓ ସଇତାନମାନଙ୍କୁ ଏକତ୍ରିତ କରିବୁଁ ତାପରେ ନିଶ୍ଚୟ ଅମ୍ଭେ ସେମାନଙ୍କୁ ନରକର ଚତୁର୍ଦ୍ଦିଗରେ ଆଣ୍ଠୁମାଡ଼ି ଥିବା ଅବସ୍ଥାରେ ହାଜର କରିବୁଁ ।୬୮।

---

୬୪ । ଅମ୍ଭେମାନେ—ସ୍ୱର୍ଗଦୂତମାନେ । ଥରେ ମହାପୁରୁଷ ମୋହମ୍ମଦ ସ୍ୱର୍ଗଦୂତ ଜିବରେଇଲଙ୍କୁ କହିଥିଲେ, 'ତୁମ୍ଭେ କାହିଁକି ଶୀଘ୍ର ଶୀଘ୍ର ଆମ ନିକଟ ଆସୁନାହଁ ?' ତାହାର ଉତ୍ତରରେ ପରମେଶ୍ୱର ଜିବରେଇଲଙ୍କ ମୁଖରେ କହୁଅଛନ୍ତି—'ପରମେଶ୍ୱରଙ୍କ ଆଦେଶ ବ୍ୟତୀତ ସ୍ୱର୍ଗଦୂତମାନେ ବାରମ୍ବାର ତୁମ୍ଭ ନିକଟ ଆସି ନପାରନ୍ତି । ଯେତେବେଳେ ସେମାନଙ୍କର ଆସିବାର ଆବଶ୍ୟକ ହେବ ସେମାନେ ନିଶ୍ଚୟ ଆସିବେ । ଏଥିରେ କିଛି ଭୁଲ ହେବ ନାହିଁ । ସେ ତୁମ୍ଭକୁ ଭୁଲିଯାଇ ନାହାନ୍ତି' ।

୬୫ । ଅନ୍ୟ କାହାକୁ ଜାଣ ?—ପରମେଶ୍ୱର ଏକ ଏବଂ ଅଦ୍ୱିତୀୟ; ଅନ୍ୟ କେହି ଏହି ପରମେଶ୍ୱର ନାମ ଧାରଣ କରିବାର ଉପଯୁକ୍ତ ନୁହେ ।

୬୬ । ମନୁଷ୍ୟ—ପରଲୋକରେ ଅବିଶ୍ୱାସକାରୀ ମନୁଷ୍ୟ ।

ତାପରେ ନିଶ୍ଚୟ ଅମ୍ଭେ ପ୍ରତ୍ୟେକ ଦଳ ମଧ୍ୟରୁ ସେମାନଙ୍କୁ ବାହାର କରିବୁଁ ଯେଉଁମାନେ ଦୟାମୟଙ୍କ ପ୍ରତି ସର୍ବାପେକ୍ଷା ଅଧିକ ବିରୁଦ୍ଧାଚରଣକାରୀ ଅଟନ୍ତି ।୬୯।

ତାପରେ ନିଶ୍ଚୟ ଅମ୍ଭେ ସେମାନଙ୍କୁ ଭଲ ରୂପେ ଜାଣୁଁ ଯେ ତାହା ମଧ୍ୟରେ ନିକ୍ଷିପ୍ତ ହେବାର ସର୍ବାପେକ୍ଷା ଅଧିକ ଉପଯୁକ୍ତ ।୭୦।

ଏବଂ ତୁମ୍ଭମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯେ ଏହାର ନିକଟକୁ ନ ଆସିବ; ଏହା ତୁମ୍ଭର ପାଳନକର୍ତ୍ତାଙ୍କର ଅନିବାର୍ଯ୍ୟ ନିର୍ଦ୍ଦେଶ ।୭୧।

ଏବଂ ଯେଉଁମାନେ ଧର୍ମଭୀରୁ ଅମ୍ଭେ ସେମାନଙ୍କୁ ମୁକ୍ତିଦାନ କରିବୁଁ ଏବଂ ଅମ୍ଭେ ଅତ୍ୟାଚାରୀମାନଙ୍କୁ ସେଥି ମଧ୍ୟରେ ଆଣ୍ଠୁମାଡ଼ି ଥିବା ଅବସ୍ଥାରେ ଛାଡ଼ି ଦେବୁଁ ।୭୨।

ଏବଂ ଯେତେବେଳେ ସେମାନଙ୍କ ପ୍ରତି ଅମ୍ଭର ପ୍ରକାଶ୍ୟ ନିଦର୍ଶନମାନ ପଠିତ ହୁଏ, ସେତେବେଳେ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, "ଆମ୍ଭମାନଙ୍କର ଏହି ଦୁଇଦଳ ମଧ୍ୟରେ ବାସସ୍ଥାନରେ କିଏ ଉତ୍କୃଷ୍ଟତର ଏବଂ ସାମାଜିକ ଉତ୍ସବରେ କିଏ ଶ୍ରେଷ୍ଠତର" ? ୭୩।

ଏବଂ ସେମାନଙ୍କ ପୂର୍ବେ ଅମ୍ଭେ ଏପରି କେତେ ସମ୍ପ୍ରଦାୟକୁ ଧ୍ୱଂସ କରି ଦେଇ ଅଛୁଁ ଯେଉଁମାନେ ଧନ ସମ୍ପଦ ଏବଂ ବାହ୍ୟ ଦୃଶ୍ୟରେ ସେମାନଙ୍କ ଠାରୁ ଉତ୍କୃଷ୍ଟତର ଥିଲେ ।୭୪।

ତୁମ୍ଭେ କୁହ, "ଯେ ଭ୍ରାନ୍ତି ମଧ୍ୟରେ ରହିଅଛି, ବାସ୍ତବରେ ଦୟାମୟ ତାହାପାଇଁ ସମୟ ବଢ଼େଇ ଦେବେ, ଏପରିକି ସେମାନଙ୍କୁ ଯେଉଁ ବିଷୟରେ ପ୍ରତିଶ୍ରୁତି ଦିଆଯାଇ ଅଛି ସେହି ଶାସ୍ତି ବା ସମୟ ସେମାନେ ପ୍ରତ୍ୟକ୍ଷ କରିବେ, ସେତେବେଳେ ସେମାନେ ଅବଗତ ହେବେ ଯେ କିଏ ନିକୃଷ୍ଟତର ସ୍ଥାନରେ ଏବଂ ଦୁର୍ବଳତର ଦଳରେ ରହିଅଛି ।୭୫।

"ଏବଂ ଯେଉଁମାନେ ସୁପଥଗାମୀ ପରମେଶ୍ୱର ସେମାନଙ୍କର ପଥ ପ୍ରଶସ୍ତ କରି ଦିଅନ୍ତି ଏବଂ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରେ ଚିରସ୍ଥାୟୀ ସତ୍‌କାର୍ଯ୍ୟମାନ ପ୍ରତିଦାନ ବିଷୟରେ ଶ୍ରେଷ୍ଠତର ଏବଂ ଭବିଷ୍ୟତ୍ ଫଳଦାନରେ ଉତ୍କୃଷ୍ଟତର ।"୭୬।

ତୁମ୍ଭେ କଅଣ ତାହାପ୍ରତି ଲକ୍ଷ୍ୟ କରିଅଛ ଯେ ଅମ୍ଭର ନିଦର୍ଶନମାନଙ୍କୁ ଅବିଶ୍ୱାସ କରେ ଏବଂ କହେ ଯେ, "ନିଶ୍ଚୟ ଅମ୍ଭକୁ ଧନ ସମ୍ପଦ ଓ ସନ୍ତାନ ସନ୍ତତି ପ୍ରଦତ୍ତ ହେବ ?"୭୭।

---

୭୦ । ତାହା ମଧ୍ୟରେ—ନରକ ମଧ୍ୟରେ ।

୭୧ । ତୁମ୍ଭମାନଙ୍କ ମଧ୍ୟରେ—ଅବିଶ୍ୱାସକାରୀମାନଙ୍କ ମଧ୍ୟରେ ।
ଏହାର ନିକଟକୁ—ନରକର ନିକଟକୁ
ଅନିବାର୍ଯ୍ୟ—ଯାହା ଅନ୍ୟଥା ହେବ ନାହିଁ ।

୭୩ । ଅବିଶ୍ୱାସକାରୀମାନେ କହନ୍ତି 'ଆମ୍ଭମାନଙ୍କ ବାସଗୃହ ଓ ମଜଲିସ (ସାମାଜିକ ଉତ୍ସବ) ବିଶ୍ୱାସକାରୀମାନଙ୍କ ବାସସ୍ଥାନ ଓ ମଜଲିସ ଅପେକ୍ଷା ଉତ୍କୃଷ୍ଟତର ।

୭୭ । ମହାପୁରୁଷ ମୋହମ୍ମଦଙ୍କ ଖବାବ୍ ନାମକ ଜଣେ ବିଶ୍ୱସ୍ତ ଅନୁଚର କମାରର କାର୍ଯ୍ୟ କରୁଥିଲେ । ତାଙ୍କର କିଛି ମୂଲ୍ୟ ଅସ୍ ନାମକ ଜଣେ ଅବିଶ୍ୱାସକାରୀ ଲୋକ ନିକଟରେ ରହିଗଲା । ସେ ତାଙ୍କୁ ମାଗିବାରୁ ସେ ଉତ୍ତର ଦେଲା, "ତୁମ୍ଭେ ମୋହମ୍ମଦଙ୍କ ପ୍ରତି ଅବିଶ୍ୱାସ ନକରିବା ପର୍ଯ୍ୟନ୍ତ ମୁଁ ତୁମ୍ଭର ମୂଲ୍ୟ ଦେବି ନାହିଁ ।" ଖବାବ୍ ଉତ୍ତର ଦେଲେ, 'ତୁମ୍ଭେ ମରିକରି ପୁନର୍ଜୀବିତ ହେଲେ ମଧ୍ୟ ମୁଁ ମୋହମ୍ମଦଙ୍କ ପ୍ରତି ଅବିଶ୍ୱାସ କରିବି ନାହିଁ ।' ତହିଁ ଅସ୍ ପରିହାସ କରି କହିଲା, 'ଭଲ କଥା, ମୁଁ ମରିବାର ପୁନର୍ଜୀବିତ ହେଲାପରେ ତୁମ୍ଭର ମୂଲ୍ୟ ଦେବି ।

ତେବେ କଅଣ ସେ ଭବିଷ୍ୟତ ଅଦୃଶ୍ୟ ବିଷୟ ଜାଣି ପାରିଅଛି କିମ୍ବା ଦୟାମୟଙ୍କଠାରୁ ପ୍ରତିଶ୍ରୁତି ଗ୍ରହଣ କରିଅଛି ?୭୮।

କଦାପି ନୁହେ; ସେ ଯାହା କହୁଅଛି ତାହା **ଆମ୍ଭେ** **ଲିପିବଦ୍ଧ କରୁଅଛୁ** ଏବଂ ଆମ୍ଭେ ତାହାପାଇଁ ଶାସ୍ତି ଉପରେ ଶାସ୍ତି ବଢ଼ାଇବୁ ୭୯ ।

ଏବଂ ସେ ଯାହା କହୁଅଛି ତାହାର ଉତ୍ତରାଧିକାରୀ **ଆମ୍ଭେ** ହେବୁ ଏବଂ ସେ ଏକାକୀ **ଆମ୍ଭ** ନିକଟ ଉପସ୍ଥିତ ହେବ ।୮୦।

ଏବଂ ସେମାନେ ପରମେଶ୍ବରଙ୍କ ପରିବର୍ତ୍ତିରେ ଅନ୍ୟ ଉପାସ୍ୟମାନଙ୍କୁ ଗ୍ରହଣ କରିଛନ୍ତି ଯେ ସେମାନେ ସେମାନଙ୍କୁ ଗୌରବ ଓ ଶକ୍ତି ଦେବେ ।୮୧।

କଦାପି ନୁହେ; ଶୀଘ୍ର ସେମାନେ ସେମାନଙ୍କ ଉପାସନା ସମ୍ବନ୍ଧରେ ଅସ୍ବୀକାର କରିବେ ଏବଂ ସେମାନଙ୍କ ପ୍ରତି ଶତ୍ରୁତାଚରଣ କରିବେ ।୮୨।

## ଷଷ୍ଠ ବିଭାଗ

ତୁମ୍ଭେ କଅଣ ଲକ୍ଷ୍ୟ କରୁନାହିଁ ଯେ **ଆମ୍ଭେ** ସଇତାନମାନଙ୍କୁ ଅବିଶ୍ବାସକାରୀମାନଙ୍କ ପ୍ରତି ପ୍ରେରଣ କରିଅଛୁ, ସେମାନଙ୍କୁ ଉତ୍ତେଜନାରେ ପ୍ରବର୍ତ୍ତାଇବା ପାଇଁ ।୮୩।

ଅତଏବ ତୁମ୍ଭେ ସେମାନଙ୍କ ପ୍ରତି ସତ୍ବରତା କରନା; **ଆମ୍ଭେ** ସେମାନଙ୍କ ପାଇଁ ସମୟର ନିର୍ଦ୍ଦିଷ୍ଟ ସଂଖ୍ୟା ଗଣନା କରୁଅଛୁ ।୮୪।

ଯେଉଁଦିନ **ଆମ୍ଭେ** ଧର୍ମଭୀରୁମାନଙ୍କୁ ଦୟାମୟଙ୍କ ନିକଟରେ ଅତିଥିରୂପେ ଏକତ୍ରିତ କରିବୁ ।୮୫।

ଏବଂ ଅପରାଧୀମାନଙ୍କୁ (ପିପାସିତ ପଶୁମାନଙ୍କୁ ଜଳ ଆଡ଼କୁ ତଡ଼ିଲା ପରି) ନରକ ଆଡ଼କୁ ତଡ଼ି ଦେବୁ ।୮୬।

ଯେ ଦୟାମୟଙ୍କ ନିକଟରୁ ପ୍ରତିଶ୍ରୁତି ଗ୍ରହଣ କରିଅଛି ତାହାଛଡ଼ା ଅନ୍ୟ କାହାର ସୁପାରସ୍ କରିବାର କ୍ଷମତା ରହିବ ନାହିଁ ।୮୭।

---

ସେତେବେଳେ ନିଶ୍ଚୟ ମୋର ଧନ ସମ୍ପଦ ଓ ସନ୍ତାନ ସନ୍ତତି ମୋ ସହିତରେ ଥିବେ ।' ଏହି ପ୍ରସଙ୍ଗରେ ଏହି ଶ୍ଳୋକ ଏବଂ ପରବର୍ତ୍ତୀ ୩ ଗୋଟି ଶ୍ଳୋକ ଅବତୀର୍ଣ୍ଣ ହୋଇଥିଲା ।

୮୦ । ଉତ୍ତରାଧିକାରୀ ଆମ୍ଭେ ହେବୁ—ଅର୍ଥାତ୍ ତାହାର ମୃତ୍ୟୁରେ ତାହାର ଧନସମ୍ପଦ ଓ ସନ୍ତାନସନ୍ତତି କେହି ତାହା ସହିତରେ ଯିବେ ନାହିଁ ଏବଂ ଶେଷ ବିଚାର ଦିନ କେହି ତାହାର କିଛି ଉପକାରରେ ଆସିବେ ନାହିଁ । ବରଂ ସେ ଏକାକୀ ତାହାର କର୍ମଫଳ ଭୋଗ କରିବ ।

୮୨ । ଶେଷ ବିଚାର ଦିନ ଅଂଶୀ ଉପାସ୍ୟମାନେ ସେମାନଙ୍କୁ ଉପାସନା କରାଯାଇଥିବା ବିଷୟ ଅସ୍ବୀକାର କରିବେ ଏବଂ ଉପାସକମାନଙ୍କୁ ସାହାଯ୍ୟ କରିବା ପରିବର୍ତ୍ତିରେ ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବେ ।

୮୩ । ଦାନବ ଓ ମାନବରୂପୀ ସଇତାନର ଦଳମାନେ ମନୁଷ୍ୟମାନଙ୍କୁ ବିପଥଗାମୀ କରିବା ପାଇଁ ଉତ୍ତେଜନା କରୁଅଛନ୍ତି । ତଦ୍ବାରା ପରମେଶ୍ବରଙ୍କ ଗୋଟି ଭକ୍ତମାନଙ୍କର ପରୀକ୍ଷା ହେଉଅଛି । ଯେଉଁମାନେ ସେମାନଙ୍କ ଉତ୍ତେଜନା ଏଡ଼ି ସତ୍କାର୍ଯ୍ୟ କରନ୍ତି ସେମାନେ ପୁରସ୍କାର ପାଇବାର ଉପଯୁକ୍ତ ଏବଂ ଯେଉଁମାନେ ସେମାନଙ୍କ ଅନୁସରଣ କରି ପାପ କାର୍ଯ୍ୟ କରନ୍ତି ସେମାନେ ଅପରାଧୀ ଓ ନରକଗାମୀ ।

୮୪ । ସେମାନଙ୍କୁ ଶାସ୍ତି ଦେବା ପାଇଁ ତୁମ୍ଭେ ପ୍ରାର୍ଥନାରେ ତର ତର ହୁଅନା; ଆମ୍ଭେ ସମୟ ଗଣି ରଖିଅଛୁ; ଶାସ୍ତିର ସମୟ ଉପସ୍ଥିତ ହେଲେ ସେମାନେ ଶାସ୍ତି ଭୋଗିବେ ।

୮୭ । ସୁପାରିସ ସମ୍ବନ୍ଧରେ ୪୩ ଅଧ୍ୟାୟର ୮୬ ଶ୍ଳୋକ ଓ ତହିଁର ଟୀକା ଦେଖ ।

ଏବଂ ସେମାନେ କହନ୍ତି ଦୟାମୟ ସନ୍ତାନ ଗ୍ରହଣ କରି ଅଛନ୍ତି ।୮୮।

ନିଶ୍ଚୟ ତୁମ୍ଭେମାନେ ଗୁରୁତର ବିଷୟ ଆଣିଅଛ ।୮୯।

ଯଦ୍ଦ୍ୱାରା ଶୀଘ୍ର ଆକାଶ ମଣ୍ଡଳ ବିଦୀର୍ଣ୍ଣ ହେବ ଏବଂ ଭୂମଣ୍ଡଳ ବିଚୂର୍ଣ୍ଣ ହୋଇଯିବ ଏବଂ ପର୍ବତମାନେ ଖଣ୍ଡ ଖଣ୍ଡ ହୋଇ ପଡ଼ିଯିବେ ।୯୦।

ଯେହେତୁ ସେମାନେ ଦୟାମୟଙ୍କ ପାଇଁ ସନ୍ତାନ ଦାବୀ କରନ୍ତି ।୯୧।

ଏହା ଦୟାମୟଙ୍କ ଶୋଭନୀୟ ନୁହେ ଯେ ସେ ସନ୍ତାନ ଗ୍ରହଣ କରିବେ ।୯୨।

ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହାକିଛି ଅଛି ସେ ସମସ୍ତ ଦୟାମୟଙ୍କ ନିକଟ ସେବକରୂପେ ଉପସ୍ଥିତ ହେବେ, ଏଥିର ଅନ୍ୟଥା ନାହିଁ ।୯୩।

ନିଶ୍ଚୟ ସେ ସେମାନଙ୍କୁ ଘେରି ନେଇ ଅଛନ୍ତି ଏବଂ ସେମାନଙ୍କର ସଂଖ୍ୟା ଠିକ୍‌ରୂପେ ଗଣନାକରି ରଖିଅଛନ୍ତି ।୯୪।

ଏବଂ ପୁନରୁତ୍‌ଥାନ ଦିବସରେ ସେମାନଙ୍କର ପ୍ରତ୍ୟେକଙ୍କୁ ଏକାକୀ ତାଙ୍କ ଆଗରେ ଉପସ୍ଥିତ ହେବାକୁ ହେବ ।୯୫।

ବାସ୍ତବରେ ଯେଉଁମାନେ ବିଶ୍ୱାସସ୍ଥାପନ କରିଅଛନ୍ତି ଏବଂ ସତ୍‌କାର୍ଯ୍ୟ କରନ୍ତି ଶୀଘ୍ର ଦୟାମୟ ସେମାନଙ୍କ ପାଇଁ ପ୍ରେମ ସଞ୍ଚାଳନ କରିବେ ।୯୬।

ତାପରେ ଆମ୍ଭେ ଏହାକୁ ତୁମ୍ଭ ଭାଷାରେ ସହଜ କରିଦେଇ ଅଛୁଁ, ଯେପରି ତୁମ୍ଭେ ଏହାଦ୍ୱାରା ଧର୍ମଭୀରୁମାନଙ୍କୁ ସୁ-ସମ୍ବାଦ ପ୍ରଦାନ କରିବ ଏବଂ ତଦ୍ଦ୍ୱାରା କଳହପ୍ରିୟ ସମ୍ପ୍ରଦାୟକୁ ଭୟ ପ୍ରଦର୍ଶନ କରିବ ।୯୭।

ଏବଂ ଆମ୍ଭେ ଏହା ପୂର୍ବେ କେତେ ସମ୍ପ୍ରଦାୟକୁ ଧ୍ୱଂସ କରି ଦେଇଅଛୁଁ, ତୁମ୍ଭେ କଅଣ ସେମାନଙ୍କ ମଧ୍ୟରୁ କାହାକୁ ଦେଖୁଅଛ କିମ୍ବା ସେମାନଙ୍କର ଶବ୍ଦ ଶୁଣୁଅଛ ?୯୮।

———

୮୮ । ଖ୍ରୀଷ୍ଟାନମାନଙ୍କର ବିଶ୍ୱାସ ଯେ ଇସା (ଯୀଶୁ ଖ୍ରୀଷ୍ଟ) ପରମେଶ୍ୱରଙ୍କ ପୁତ୍ର ।

୯୩ । ଶେଷ ବିଚାର ଦିନ ସମସ୍ତେ ପରମେଶ୍ୱରଙ୍କ ନିକଟରେ 'ସେବକରୂପେ' ଉପସ୍ଥିତ ହେବେ, ସନ୍ତାନରୂପେ ନୁହେ ।

୯୬ । ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଏବଂ ସତ୍‌କାର୍ଯ୍ୟ କରନ୍ତି ଅର୍ଥାତ୍ ଖାଣ୍ଟି ମୁସଲମାନମାନଙ୍କୁ ପରମେଶ୍ୱର ସେମାନଙ୍କ ହୃଦୟରେ ପ୍ରେମ ସଞ୍ଚାର କରି ସେମାନଙ୍କୁ ପରସ୍ପର ଭ୍ରାତୃତ୍ୱରେ ବନ୍ଧନ କରିବେ ବୋଲି ସୁସମ୍ବାଦ ଦେଇଅଛନ୍ତି । ଏହା ଇହ ସଂସାରରେ ସେମାନଙ୍କ ପୁରସ୍କାର ।

୯୭ । ପରମେଶ୍ୱର ପବିତ୍ର କୋରାନ ଗ୍ରନ୍ଥକୁ ମହାପୁରୁଷ ମୋହମ୍ମଦଙ୍କ ମାତୃଭାଷା ଅର୍ଥାତ୍ ସହଜ ଓ ସୁବୋଧ ଆରବୀ ଭାଷାରେ ଅବତୀର୍ଣ୍ଣ କରିଅଛନ୍ତି ଯେପରିକି ସେ ଧର୍ମଭୀରୁମାନଙ୍କୁ ଇହକାଳ ଓ ପରକାଳର ସୁସମ୍ବାଦ ପ୍ରଦାନ କରିବେ ଏବଂ ଅବିଶ୍ୱାସକାରୀମାନଙ୍କୁ ଇହକାଳ ଓ ପରକାଳର ଶାସ୍ତି ବିଷୟରେ ଭୟ ପ୍ରଦର୍ଶନ କରିବେ ।

—o—

## ୨୦ଶ ଅଧ୍ୟାୟ

ନାମ—ତ୍ୱାହା

ମକ୍କାରେ ଅବତୀର୍ଣ୍ଣ । ଏଥିରେ ଗୋ ଟି ବିଭାଗ
ଏବଂ ଗୋ୧୩୫ଟି ଶ୍ଳୋକ ଅଛି ।
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ତ୍ୱା—ହା ! ୧।

ହେ ମୋହମ୍ମଦ, ଆମ୍ଭେ ତୁମ୍ଭ ପ୍ରତି ଏ କୋରାନ ଏଥିପାଇଁ ଅବତୀର୍ଣ୍ଣ କରିନାହୁଁ ଯେ ତୁମ୍ଭେ କ୍ଳେଶ ଉଠାଇବ ।୨।

ବରଂ ଏହା ତାହାପାଇଁ ସଦୁପଦେଶ ଯେ (ପରମେଶ୍ୱରଙ୍କୁ) ଭୟକରେ ।୩।

ଏହା ତାଙ୍କର ନିକଟରୁ ଅବତୀର୍ଣ୍ଣ ହୋଇଅଛି ଯେ ଭୂମଣ୍ଡଳ ଏବଂ ଅତ୍ୟୁଚ୍ଚ ଆକାଶ ମଣ୍ଡଳ ସୃଷ୍ଟି କରି ଅଛନ୍ତି ।୪।

ସେ ଦୟାମୟ ସିଂହାସନ ଉପରେ ସୁପ୍ରତିଷ୍ଠିତ ।୫।

ଆକାଶ ମଣ୍ଡଳରେ ଯାହାକିଛି ଅଛି ଏବଂ ଭୂମଣ୍ଡଳରେ ଯାହା କିଛି ଅଛି ଏବଂ ଯାହାକିଛି ଏ ଉଭୟ ମଧ୍ୟରେ ଅଛି ଏବଂ ଯାହାକିଛି ପାତାଳରେ ଅଛି ସେ ସମସ୍ତ ତାଙ୍କର ।୬।

ଏବଂ ଯଦିଚ ତୁମ୍ଭେ ଉଚ୍ଚ ସ୍ୱରରେ କଥାକୁହ, ତଥାପି ସେ ନିଶ୍ଚୟ ଗୁପ୍ତ ବିଷୟ ଏବଂ ଗୂଢ଼ତର ବିଷୟ ଅବଗତ ଅଛନ୍ତି ।୭।

ପରମେଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ତାଙ୍କର ପାଇଁ ଉତ୍ତମ ନାମ ସବୁଅଛି ।୮।

---

ନାମକରଣ—ଏହି ଅଧ୍ୟାୟର ୧ମ ଶ୍ଳୋକରେ ତ୍ୱା-ହା ଏହି ସାଙ୍କେତିକ ବର୍ଣ୍ଣ ଦୁଇଟି ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି । ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ୨ୟ ଅଧ୍ୟାୟ ୧ମ ଶ୍ଳୋକର ଟୀକା ଦେଖ ।

୧ । ବିଶିଷ୍ଟ ଟୀକାକାରମାନଙ୍କ ମତରେ ତ୍ୱା-ହା ଏହି ସାଙ୍କେତିକ ବର୍ଣ୍ଣ ଦୁଇଟି ଗୋଟିଏ ସମ୍ବୋଧନ ବାଚକ ଶବ୍ଦ ଯାହାର ଅର୍ଥ 'ହେ ମାନବ !' ଏହା ମହାପୁରୁଷ ମୋହମ୍ମଦଙ୍କୁ ଲକ୍ଷ୍ୟ କରାଯାଇଅଛି ।

୨ । କ୍ଳେଶ ଉଠାଇବ—ମହାପୁରୁଷ ମୋହମ୍ମଦ ଓ ତାଙ୍କ ସଙ୍ଗୀମାନେ ରାତିରେ 'ତହଜ୍ଜୁଦ' ପ୍ରାର୍ଥନା କରୁଥିଲେ ଏବଂ ଅନେକକ୍ଷଣ ପର୍ଯ୍ୟନ୍ତ କୋରାନ ପଢ଼ୁଥିଲେ ଏବଂ ଲୋକମାନଙ୍କ ମଧ୍ୟରେ ଇସଲାମ ପ୍ରଚାର କରୁଥିଲେ । ଅବିଶ୍ୱାସୀମାନେ ବ୍ୟଙ୍ଗପୂର୍ବକ କହୁଥିଲେ ଯେ ଏ କୋରାନ ମହାପୁରୁଷଙ୍କୁ ଏପରି କ୍ଳେଶ ଦେବା ପାଇଁ ଅବତୀର୍ଣ୍ଣ ହୋଇଅଛି ।

୩ । ଗୁପ୍ତ ବିଷୟ—ନୀରବ ଶବ୍ଦ । ଗୂଢ଼ତର—ଯାହା ମନେ ମନେ ଉଦୟ ହୁଏ । ଆମ୍ଭେମାନେ ଯାହା ଉଚ୍ଚ ସ୍ୱରରେ କହୁଁ, ବା ନୀରବରେ କହୁଁ ବା ମନେ ମନେ କହୁଁ ପରମେଶ୍ୱର ସବୁ ଜାଣିପାରନ୍ତି ।

ଏବଂ ତୁମ୍ଭ ନିକଟ କଅଣ ମୂସାଙ୍କ ବିବରଣ ଆସିଅଛି ?୯।

ଯେତେବେଳେ ସେ ଅଗ୍ନି ଦେଖିଥିଲେ, ସେତେବେଳେ ସେ ନିଜ ପରିବାରର ଲୋକମାନଙ୍କୁ କହିଥିଲେ, "ଏଠାରେ ରୁହ ! ନିଶ୍ଚୟ ଅମ୍ଭେ ଅଗ୍ନି ଦେଖୁଅଛୁଁ, ସମ୍ଭବତଃ ଅମ୍ଭେ ସେଥିରୁ ତୁମ୍ଭମାନଙ୍କ ପାଇଁ ଅଙ୍ଗାର ଆଣି ପାରିବୁଁ ଅଥବା ଅଗ୍ନିପାଖରେ ବାଟ ଦେଖାଇବା ଲୋକ ପାଇବୁଁ ।"୧୦।

ତାପରେ ଯେତେବେଳେ ସେ ତାହାନିକଟରେ ଉପସ୍ଥିତ ହେଲେ ସେତେବେଳେ ଏକ ଶବ୍ଦ ଶୁଣାଗଲା, "ହେ ମୂସା !୧୧।

"ନିଶ୍ଚୟ ଅମ୍ଭେହିଁ ତୁମ୍ଭର ପାଳନକର୍ତ୍ତା, ଅତଏବ ତୁମ୍ଭେ ତୁମ୍ଭର ପାଦୁକାଦ୍ୱୟ ଖୋଲିଦିଅ; ନିଶ୍ଚୟ ତୁମ୍ଭେ 'ତୋଆ' ନାମକ ପବିତ୍ର ଉପତ୍ୟକାରେ ରହିଅଛ ।୧୨।

"ଏବଂ ଅମ୍ଭେ ତୁମ୍ଭଙ୍କୁ ମନୋନୀତ କରିଅଛୁଁ; ତାପରେ ଯାହା ଅବତୀର୍ଣ୍ଣ ହେଉଅଛି ତାହା ଶ୍ରବଣ କର ।୧୩।

"ନିଶ୍ଚୟ ଅମ୍ଭେହିଁ ପରମେଶ୍ୱର, ଅମ୍ଭ ବ୍ୟତୀତ ଅନ୍ୟ କେହି ଉପାସ୍ୟନାହିଁ; ଅତଏବ ଅମ୍ଭର ଉପାସନାକର ଏବଂ ଅମ୍ଭର ସ୍ମରଣ ପାଇଁ ଆରାଧନା ପ୍ରତିଷ୍ଠିତକର ।୧୪।

"ନିଶ୍ଚୟ ସେହି ସମୟ ଆସୁଅଛି, ଅମ୍ଭେ ଏଥିପାଇଁ ଏହାକୁ ଗୋପନରେ ରଖିଅଛୁଁ ଯେପରି ପ୍ରତ୍ୟେକେ ନିଜ ନିଜ ଉଦ୍ୟମର ଅନୁରୂପ ପ୍ରତିଦାନ ପାଇବେ ।୧୫।

"ସୁତରାଂ ଯେ ସେ ବିଷୟରେ ବିଶ୍ୱାସ କରେ ନାହିଁ ଏବଂ ନିଜ ପ୍ରବୃତ୍ତିର ଅନୁସରଣ କରେ, ସେ ଯେପରି ତୁମ୍ଭଙ୍କୁ ଏଥିରୁ ପ୍ରତିରୋଧ ନକରେ ଯଦ୍ଦ୍ୱାରା ତୁମ୍ଭେ ଧ୍ୱଂସପ୍ରାପ୍ତ ହେବ ।"୧୬।

"ଏବଂ ହେ ମୂସା ! ତୁମ୍ଭର ଦକ୍ଷିଣ ହସ୍ତରେ କଅଣ ରହିଅଛି ?"୧୭।

ମୂସା କହିଥିଲେ, "ଏହା ଅମ୍ଭର ଯଷ୍ଟି; ଅମ୍ଭେ ଏହା ଉପରେ ଭର ଦେଇଥାଉଁ ଏବଂ ଏହାଦ୍ୱାରା ଅମ୍ଭେ ଅମ୍ଭର ଛେଳିପଲ ଉପରେ ଗଛର ପତ୍ର ଭାଙ୍ଗି ନିକ୍ଷେପ କରୁଁ ଏବଂ ଏହାଦ୍ୱାରା ଅମ୍ଭର ଅନ୍ୟ ଆବଶ୍ୟକୀୟ କାର୍ଯ୍ୟମାନ କରୁଁ"।୧୮।

ପରମେଶ୍ୱର କହିଥିଲେ; "ହେ ମୂସା ! ତୁମ୍ଭେ ଏହାକୁ ନିକ୍ଷେପ କର ।"୧୯।

ତାପରେ ସେ ଯେତେବେଳେ ଏହାକୁ ନିକ୍ଷେପ କଲେ ସେ ସର୍ପହୋଇ ବିଚରଣ କରିବାକୁ ଲାଗିଲା ।୨୦।

ପରମେଶ୍ୱର କହିଥିଲେ, "ତୁମ୍ଭେ ଏହାକୁ ଧର ଏବଂ ଭୟକରନା; ଅମ୍ଭେ ଏହାକୁ ଏହାର ପୂର୍ବ ଅବସ୍ଥାକୁ ପରିବର୍ତ୍ତିନ କରିଦେଉ ଅଛୁଁ ।୨୧।

---

୯ । ମହାପୁରୁଷ ମୁସାଙ୍କ ବିବରଣ ଏହି ଅଧ୍ୟାୟ ଶ୍ଳୋକରୁ ୯୮କରେ ବର୍ଣ୍ଣିତ ହୋଇଅଛି । ଏଥିପୂର୍ବେ ୨ୟ ଅଧ୍ୟାୟ ଶ୍ଳୋ୪୯ରୁ ୭୧କରେ ଏବଂ ୭ମ ଅଧ୍ୟାୟ ଶ୍ଳୋ୧୦୩ରୁ ୧୫୭କରେ ମଧ୍ୟ ବର୍ଣ୍ଣିତ ହୋଇଅଛି ।

୧୫ । ପୁନରୁତ୍‌ଥାନ ଓ ଶେଷ ବିଚାର ଦିନ ଅଲକ୍ଷିତ ଭାବରେ କ୍ରମଶଃ ନିକଟବର୍ତ୍ତୀ ହୋଇଆସୁଅଛି ଏବଂ ଏହା ଦିନେ ନିଶ୍ଚୟ ଘଟିବ । କିନ୍ତୁ ପରମେଶ୍ୱର ଲୋକମାନଙ୍କଠାରୁ ଏହାର ନିର୍ଦ୍ଦିଷ୍ଟ କାଳ ଗୋପନ ରଖିବାର ଉଦ୍ଦେଶ୍ୟ ଏହିକି ସେମାନେ ଏହା ଉପରେ ବିଶ୍ୱାସ କରି ନିଜ ନିଜ ଉଦ୍ୟମରେ ତ୍ରୁଟି କରିବେ ନାହିଁ, ଏବଂ ଯେଉଁମାନେ ବିଶ୍ୱାସ ନ କରିବେ ସେମାନେ କର୍ତ୍ତବ୍ୟରେ ଅବହେଳା କରିବେ । ଯଦି ନିର୍ଦ୍ଦିଷ୍ଟ କାଳ ପୂର୍ବରୁ ଜଣାଯିବ ତାହାହେଲେ ସ୍ୱାଧୀନ ଉଦ୍ୟମରେ ବାଧା ପଡ଼ିବ ।

"ଏବଂ ତୁମ୍ଭେ ତୁମ୍ଭର ହସ୍ତ ନିଜ କାଖରେ ଲଗାଅ, କୌଣସି ଅନିଷ୍ଟ ବ୍ୟତୀତ ଏହା ଶୁଭ୍ର ବର୍ଣ୍ଣରେ ବିକଶିତ ହେବ, ଏହା ଅନ୍ୟ ନିଦର୍ଶନ ।୨୨।

ଯେପରି ଆମ୍ଭେ ତୁମ୍ଭଙ୍କୁ ଆମ୍ଭର ବୃହତ୍ତର ନିଦର୍ଶନମାନ ପ୍ରଦର୍ଶନ କରିବୁଁ;୨୩।

"ତୁମ୍ଭେ ଫେରଅଉନ୍ ନିକଟକୁ ଗମନକର, ନିଶ୍ଚୟ ସେ ସୀମା ଲଙ୍ଘନ କରିଅଛି ।୨୪।"

## ୨ୟ ବିଭାଗ

ମୂସା କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ଅମ୍ଭର ହୃଦୟକୁ ଅମ୍ଭପାଇଁ ପ୍ରଶସ୍ତ କର;—୨୫।

"ଏବଂ ଅମ୍ଭପାଇଁ ଅମ୍ଭର କାର୍ଯ୍ୟ ସହଜସାଧ୍ୟ କର ।୨୬।

"ଏବଂ ଅମ୍ଭ ଜିହ୍ୱାରୁ ଗଣ୍ଠି ଫିଟାଇ ଦିଅ ।୨୭।

"ଯେପରି ସେମାନେ ଅମ୍ଭର ବାକ୍ୟକୁ ହୃଦୟଙ୍ଗମ କରିପାରିବେ ।୨୮।

"ଏବଂ ଅମ୍ଭ ପରିବାର ମଧ୍ୟରୁ ଅମ୍ଭଙ୍କୁ ସହକାରୀ ଦିଅ; ୨୯।

"ଅମ୍ଭର ଭାଇ ହାରୁନ୍‌ଙ୍କୁ;—୩୦।

"ତାଙ୍କଦ୍ୱାରା ଅମ୍ଭର ଶକ୍ତି ସୁଦୃଢ଼ କର;—୩୧।

"ଏବଂ ତାଙ୍କୁ ଅମ୍ଭ କାର୍ଯ୍ୟର ସହଯୋଗୀ କର;—୩୨।

"ଯେପରି ଅମ୍ଭେମାନେ ତୁମ୍ଭର ଅଧିକତର ମହିମା ପ୍ରଚାର କରିପାରିବୁଁ ।୩୩।

"ଏବଂ ତୁମ୍ଭଙ୍କୁ ଅଧିକତର ସ୍ମରଣ କରି ପାରିବୁଁ ।୩୪।

"ନିଶ୍ଚୟ ତୁମ୍ଭେ ଅମ୍ଭମାନଙ୍କର ପରିଦର୍ଶକ" ।୩୫।

ପରମେଶ୍ୱର କହିଥିଲେ; "ହେ ମୂସା ! ନିଶ୍ଚୟ ତୁମ୍ଭର ପ୍ରାର୍ଥନା ଗୃହୀତ ହୋଇଅଛି ।୩୬।

"ନିଶ୍ଚୟ ଅମ୍ଭେ ଏଥିପୂର୍ବେ ତୁମ୍ଭପ୍ରତି ଅନୁଗ୍ରହ କରିଅଛୁଁ; ।୩୭।

"ଯେତେବେଳେ ଅମ୍ଭେ ତୁମ୍ଭ ମାତାଙ୍କଠାରେ ପ୍ରତ୍ୟାଦିଷ୍ଟ ବିଷୟ ପ୍ରକାଶ କରିଥିଲୁଁ ।୩୮।

"(ତାହା ଏହି) ତୁମ୍ଭେ ତାହାଙ୍କୁ ସିନ୍ଦୁକ ମଧ୍ୟରେ ବନ୍ଦ କରି ପରେ ତାଙ୍କୁ ନଦୀ ମଧ୍ୟରେ ପକାଇ ଦିଅ; ତାପରେ ନଦୀ ତାଙ୍କୁ ତୀରରେ ଲଗାଇ ଦେବ; ତାପରେ ଅମ୍ଭର ଶତ୍ରୁ ଓ ତାଙ୍କର ଶତ୍ରୁ ତାଙ୍କୁ ନେଇଯିବେ ଏବଂ ଅମ୍ଭେ ତୁମ୍ଭପ୍ରତି ନିଜ ସ୍ନେହ ଆଶୀର୍ବାଦ ନିକ୍ଷେପ କରିଥିଲୁଁ, ଏବଂ ଯେପରି ତୁମ୍ଭେ ଅମ୍ଭର ଆଖି ଆଗରେ ପାଳିତ ହେବ ।୩୯।

"ଯେତେବେଳେ ତୁମ୍ଭର ଭଗିନୀ ଯାଇଥିଲେ ଏବଂ କହିଥିଲେ, 'ଅମ୍ଭେ କଅଣ ଏପରି ଜଣେ ଲୋକଙ୍କୁ ବନ୍ଦୋବସ୍ତ କରିଦେବୁଁ ଯେ ତାହାର ପାଳନର ଭାର ଗ୍ରହଣ କରିବ' ? ତାପରେ ଅମ୍ଭେ ତୁମ୍ଭଙ୍କୁ ତୁମ୍ଭର ମାତାଙ୍କ ନିକଟ ଫେରାଇ ଆଣିଥିଲୁଁ ଯେପରି ତାଙ୍କର ନୟନ ଶୀତଳ ହୁଏ ଏବଂ ସେ ଦୁଃଖିତ ନ ହୁଅନ୍ତି; ଏବଂ ତୁମ୍ଭେ ଜଣେ ଲୋକକୁ ହତ୍ୟା କରିଥିଲ, ତାପରେ ଅମ୍ଭେ ତୁମ୍ଭଙ୍କୁ ଶୋକରୁ ମୁକ୍ତ କରିଥିଲୁଁ

---

୨୩ । ମହାପୁରୁଷ ମୂସାଙ୍କ ନିଦର୍ଶନମାନଙ୍କ ସମ୍ବନ୍ଧରେ ଦେଖ ଟୀକା ୧୭ଶ ଅଧ୍ୟାୟ ଶ୍ଳୋ୧୦୧କ ।

୨୭ । ମହାପୁରୁଷ ମୂସା କଥା କହିବାବେଳେ ପାଟି ଲାଗୁଥିଲା । ଏହାକୁ ଦୂର କରିବା ପାଇଁ ସେ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରିଥିଲେ ।

୩୯ । ଅମ୍ଭର ଶତ୍ରୁ ଓ ତାଙ୍କର ଶତ୍ରୁ—ଫେରଅଉନ ଯେକି ପରମେଶ୍ୱରଙ୍କ ଶତ୍ରୁ ଓ ମୂସାଙ୍କ ଶତ୍ରୁ ଥିଲା । ତାହାଙ୍କୁ—ଶିଶୁ ମୂସାଙ୍କୁ; ତାଙ୍କୁ---ସିନ୍ଦୁକକୁ

ଏବଂ ତୁମ୍ଭକୁ (କଠିନ) ପରୀକ୍ଷାମାନଙ୍କରେ ପରୀକ୍ଷା କରିଥିଲୁଁ; ତାପରେ ତୁମ୍ଭେ ମଦାୟେନବାସୀମାନଙ୍କ ମଧ୍ୟରେ ଅନେକ ବର୍ଷ ରହିଥିଲ; ତାପରେ ହେ ମୂସା ! ତୁମ୍ଭେ ଯଥା ସମୟରେ ଏଠାକୁ ଆସିଥିଲ ।୪୦।

"ଏବଂ ଅମ୍ଭେ ତୁମ୍ଭକୁ ଅମ୍ଭ ପାଇଁ ମନୋନୀତ କରିଅଛୁଁ ।୪୧।

"ତୁମ୍ଭେ ଓ ତୁମ୍ଭର ଭ୍ରାତା ଅମ୍ଭର ନିଦର୍ଶନମାନଙ୍କ ସହିତ ଗମନ କର ଏବଂ ଅମ୍ଭକୁ ସ୍ମରଣ କରିବାରେ କେହି ଅବହେଳା କରନା ।୪୨।

"ତୁମ୍ଭେମାନେ ଉଭୟେ ଫେରଅଉନ୍‌ଙ୍କ ନିକଟ ଗମନକର, ନିଶ୍ଚୟ ସେ ଅବାଧ୍ୟ ହୋଇଅଛି ।୪୩।

"ତାପରେ ତୁମ୍ଭେ ତାକୁ କୋମଳ ବାକ୍ୟ କୁହ, ସମ୍ଭବତଃ ସେ ଉପଦେଶ ଗ୍ରହଣ କରିବ କିମ୍ବା ପରମେଶ୍ୱରଙ୍କୁ ଭୟ କରିବ" ।୪୪।

ମୂସା ଓ ହାରୁନ କହିଥିଲେ, "ହେ ଅମ୍ଭମାନଙ୍କର ପାଳନକର୍ତ୍ତା ! ନିଶ୍ଚୟ ଅମ୍ଭେମାନେ ଆଶଙ୍କା କରୁଅଛୁଁ ଯେ ସେ ଅମ୍ଭମାନଙ୍କ ପ୍ରତି ଅନାଚାରଣ କରିବ ଅଥବା ଅବାଧ୍ୟ ହେବ" ।୪୫।

ପରମେଶ୍ୱର କହିଥିଲେ, "ତୁମ୍ଭେମାନେ ଭୟ କରନା, ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ସଙ୍ଗରେ ରହି ସବୁ ଶ୍ରବଣ କରିବୁଁ ଓ ଦର୍ଶନ କରିବୁଁ ।୪୬।

"ତାପରେ ତୁମ୍ଭେମାନେ ଉଭୟେ ତାହା ନିକଟ ଗମନକର ଏବଂ କୁହ, ନିଶ୍ଚୟ ଅମ୍ଭେମାନେ ଉଭୟେ ତୁମ୍ଭର ପାଳନକର୍ତ୍ତାଙ୍କ ଦ୍ୱାରା ପ୍ରେରିତ, ଅତଏବ ତୁମ୍ଭେ ଇସରାଇଲ ବଂଶଧରମାନଙ୍କୁ ଅମ୍ଭମାନଙ୍କ ସହିତ ପ୍ରେରଣ କର ଏବଂ ସେମାନଙ୍କୁ କଷ୍ଟ ଦିଅନା; ନିଶ୍ଚୟ ଅମ୍ଭେମାନେ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ତୁମ୍ଭ ନିକଟ ନିଦର୍ଶନ ଆଣିଅଛୁଁ; ଏବଂ ଯେ ସୁପଥର ଅନୁସରଣ କରିବ ତାହାର ଉପରେ ଶାନ୍ତି ହେବ !।୪୭।

"ନିଶ୍ଚୟ ଅମ୍ଭେମାନେ ପ୍ରତ୍ୟାଦିଷ୍ଟ ହୋଇଅଛୁଁ ଯେ ତାହାର ଉପରେ ଶାସ୍ତି ହେବ ଯେ (ଅମ୍ଭମାନଙ୍କ ପ୍ରତି) ମିଥ୍ୟାରୋପ କରି ମୁହଁ ଫେରାଇ ନେବ" ।୪୮।

ଫେରଅଉନ କହିଥିଲ, "ହେ ମୂସା ! ତୁମ୍ଭ ଦୁହିଁଙ୍କର ପାଳନକର୍ତ୍ତା କିଏ ?" ।୪୯।

ମୂସା କହିଥିଲେ, "ସେହି ଅମ୍ଭମାନଙ୍କର ପାଳନକର୍ତ୍ତା ଯେ ପ୍ରତ୍ୟେକ ବସ୍ତୁକୁ ସୃଷ୍ଟି କରି ଅଛନ୍ତି; ପରେ ତାହାକୁ ସୁପରିଚାଳିତ କରୁଅଛନ୍ତି" ।୫୦।

ଫେରଅଉନ କହିଥିଲ, "ତେବେ ପୂର୍ବବର୍ତ୍ତୀ ଯୁଗବାସୀମାନଙ୍କର କି ଅବସ୍ଥା ହୋଇଅଛି ?" ।୫୧।

ମୂସା କହିଥିଲେ, "ଏହାର ଜ୍ଞାନ ଅମ୍ଭର ପାଳନକର୍ତ୍ତାଙ୍କ ନିକଟ ଲେଖା ରହିଅଛି; ଅମ୍ଭର ପାଳନକର୍ତ୍ତା ଭ୍ରମରେ ପଡନ୍ତି ନାହିଁ ଓ ଭୁଲନ୍ତି ନାହିଁ !।୫୨।

"ଯେ କି ତୁମ୍ଭମାନଙ୍କ ପାଇଁ ଭୂମଣ୍ଡଳକୁ ଶଯ୍ୟାସ୍ୱରୂପ କରି ଅଛନ୍ତି ଏବଂ ତନ୍ମଧ୍ୟରେ ତୁମ୍ଭମାନଙ୍କ ପାଇଁ ପଥମାନ ପ୍ରସ୍ତୁତ କରିଅଛନ୍ତି ଏବଂ ଆକାଶରୁ ବାରିବର୍ଷଣ କରୁଅଛନ୍ତି"; ତଦ୍ୱାରା ଅମ୍ଭେ ଭିନ୍ନ ଭିନ୍ନ ପ୍ରକାର ଯୋଡ଼ା ଯୋଡ଼ା ତରୁଲତାରୁ ଶସ୍ୟ ଉତ୍ପନ୍ନ କରିଥାଉଁ ।୫୩।

ଯାହାକୁ ତୁମ୍ଭେମାନେ ଭକ୍ଷଣ କର ଏବଂ ଯହିଁରେ ନିଜର ଗୃହ ପାଳିତ ପଶୁମାନଙ୍କୁ ଚରାଅ; ନିଶ୍ଚୟ ଏହା ମଧ୍ୟରେ ଉପଦେଶ ଗ୍ରହଣକାରୀମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୫୪।

---

୫୩ । ଉତ୍ପନ୍ନ କରୁଁ—ଜୀବ ଓ ପ୍ରାଣୀ ଜଗତ ପରି ଉଦ୍ଭିଦ ଜଗତରେ ମଧ୍ୟ ସ୍ତ୍ରୀପୁରୁଷରୂପେ ଯୋଡ଼ା ଯୋଡ଼ା ସୃଷ୍ଟିର ଏ ଶ୍ଳୋକରୁ ଇଙ୍ଗିତ ମିଳେ । ୩୬ ଅଧ୍ୟାୟର ୩୬ ଶ୍ଳୋକ ଓ ୫୧ ଅଧ୍ୟାୟର ୪୯ ଶ୍ଳୋକ ଦେଖ ।
'ଆକାଶରୁ ପାଣି ବର୍ଷଣ କରୁଅଛନ୍ତି'—ଏହିଠାରେ ମହାପୁରୁଷ ମୂସାଙ୍କ ବାକ୍ୟ ଶେଷ ହୋଇଅଛି ।
ତଦ୍ୱାରା ଅମ୍ଭେ—ଏଠାରେ ଅମ୍ଭେ ପରମେଶ୍ୱର; ତଦ୍ୱାରା—ବୃଷ୍ଟିଜଳଦ୍ୱାରା ।

## ୭ମ୍ଯ ବିଭାଗ

ଅମ୍ଭେ ଏଥିରୁ ତୁମ୍ଭମାନଙ୍କୁ ସୃଷ୍ଟି କରିଅଛୁଁ ଏବଂ (ମୃତ୍ୟୁ ପରେ) ଏହାର ମଧ୍ୟକୁ ତୁମ୍ଭମାନଙ୍କୁ ପଠାଇବୁଁ ଏବଂ ଏଥିରୁ ତୁମ୍ଭମାନଙ୍କୁ ପୁନରାୟ ଉଠାଇବୁଁ ।୫୫।

ଏବଂ ନିଶ୍ଚୟ ଅମ୍ଭେ ତାହାକୁ ଅମ୍ଭର ସମସ୍ତ ନିଦର୍ଶନମାନ ଦେଖାଇଥିଲୁଁ, କିନ୍ତୁ ସେ ସେଥିପ୍ରତି ମିଥ୍ୟାରୋପ କରିଥିଲା ଏବଂ ଅଗ୍ରାହ୍ୟ କରିଥିଲା ।୫୬।

ଫେରଅଉନ କହିଥିଲା, "ହେ ମୂସା ! ତୁମ୍ଭେ କଅଣ ଅମ୍ଭମାନଙ୍କ ନିକଟ ଏଥିପାଇଁ ଅସିଅଛ ଯେ ତୁମ୍ଭର ଯାଦୁ ଦ୍ଵାରା ଅମ୍ଭମାନଙ୍କୁ ଅମ୍ଭମାନଙ୍କ ଦେଶରୁ ବାହାର କରି ଦେବ ?।୫୭।

"ସୁତରାଂ ଅମ୍ଭେମାନେ ମଧ୍ୟ ତୁମ୍ଭମାନଙ୍କ ନିକଟ ସେହିପରି ଯାଦୁ ଅଣିବୁଁ; ଅତଏବ ଅମ୍ଭମାନଙ୍କର ଓ ତୁମ୍ଭର ମଧ୍ୟରେ କୌଣସି କେନ୍ଦ୍ରସ୍ଥଳରେ ଗୋଟିଏ ସମୟ ସ୍ଥିର କର; ଯାହାକୁ ଅମ୍ଭେମାନେ କିମ୍ବା ତୁମ୍ଭେ ବ୍ୟତିକ୍ରମ କରିବ ନାହିଁ" ।୫୮।

ମୂସା କହିଥିଲେ, "କୌଣସି ପର୍ବଦିନରେ ତୁମ୍ଭମାନଙ୍କର ପ୍ରତିଶ୍ରୁତ ସମୟ ସ୍ଥିରକର ଏବଂ ଯେପରି ଲୋକମାନେ ପୂର୍ବାହ୍ନରେ ଏକତ୍ରିତ ହେବେ ।"୫୯।

ତାପରେ ଫେର୍‌ଅଉନ୍ ଫେରିଗଲେ; ତାପରେ ସେ ତାଙ୍କର କୌଶଳ ସ୍ଥିରକରି ଉପସ୍ଥିତ ହୋଇଥିଲେ ।୬୦।

ମୂସା ସେମାନଙ୍କୁ କହିଥିଲେ, "ତୁମ୍ଭମାନଙ୍କର ସର୍ବନାଶ ! ତୁମ୍ଭେମାନେ ପରମେଶ୍ଵରଙ୍କ ବିପକ୍ଷରେ ଅସତ୍ୟ ରଚନା କରନା, ନଚେତ ସେ ତୁମ୍ଭମାନଙ୍କୁ ଶାସ୍ତି ଦ୍ଵାରା ଧ୍ଵଂସ କରିଦେବେ ଏବଂ ଯେ ଅସତ୍ୟ ରଚନା କରିବ ନିଶ୍ଚୟ ସେ ବିଫଳ ହେବ ।"୬୧।

ତାପରେ ସେମାନେ ସେମାନଙ୍କ କାର୍ଯ୍ୟ ସମ୍ବନ୍ଧରେ ନିଜ ମଧ୍ୟରେ ତର୍କ କରିଥିଲେ ଏବଂ ଗୋପନରେ ସେମାନେ ସିଦ୍ଧାନ୍ତ କରିଥିଲେ ।୬୨।

ସେମାନେ ଅପଣା ମଧ୍ୟରେ କହିଥିଲେ, "ନିଶ୍ଚୟ ଏ ଦୁଇଜଣ ଯାଦୁ କର, ଯେଉଁମାନେ ନିଜ ଯାଦୁକ୍ରିୟା ଦ୍ଵାରା ତୁମ୍ଭମାନଙ୍କୁ ତୁମ୍ଭମାନଙ୍କ ଦେଶରୁ ବାହାର କରି ଦେବାକୁ ଏବଂ ତୁମ୍ଭମାନଙ୍କର ଉତ୍କୃଷ୍ଟ ଅଗ୍ରର ପଦ୍ଧତି ଉଠାଇ ଦେବାକୁ ଇଚ୍ଛା କରନ୍ତି ।୬୩।

"ଅତଏବ ତୁମ୍ଭମାନଙ୍କର ସମସ୍ତ କୌଶଳ ସଂଗ୍ରହ କରି ଶ୍ରେଣୀବଦ୍ଧ ଭାବରେ ଅସ ଏବଂ ଯେ ଅଜି ଜୟ ଲାଭ କରିବ ସେହି ସୁଫଳ ପ୍ରାପ୍ତ ହେବ ।"୬୪।

ସେମାନେ କହିଥିଲେ, "ହେ ମୂସା ! ତୁମ୍ଭେ ପ୍ରଥମେ (ତୁମ୍ଭର ଯଷ୍ଟି) ନିକ୍ଷେପକରିବ ଅଥବା ଅମ୍ଭେମାନେ ପ୍ରଥମେ ନିକ୍ଷେପ କରିବୁଁ ?"୬୫।

---

୫୫ । ଏଥିରୁ—ପୃଥିବୀରୁ; ମୃତ୍ତିକାରୁ । ମାଟିର ମନୁଷ୍ୟ ମାଟିରେ ମିଶିବ । ସ୍ଵର୍ଗଚ୍ୟୁତ ହେବା ସମୟରେ ଅମ୍ଭମାନଙ୍କ ଅଦି ପିତାମାତା (ଅଦମ ଓ ହିଓ୍ଵା)ଙ୍କୁ ଏହାହିଁ କୁହାଯାଇଥିଲା । ୭ମ ଅଧ୍ୟାୟ ୨୫ ଶ୍ଳୋକ ଦେଖ ।

୫୬ । ତାହାକୁ—ଫେର୍‌ଅଉନ୍‌କୁ । ଅମ୍ଭେ—ପରମେଶ୍ଵର, ମୂସାଙ୍କ କରିଅରେ ।

୬୩ । ଉତ୍କୃଷ୍ଟ ଅଗ୍ରର ପଦ୍ଧତି—ତୁମ୍ଭମାନଙ୍କ ଭଲ ଧର୍ମକୁ ଉଠାଇ ଦେବାକୁ ଚାହାନ୍ତି ।

ମୂସା କହିଥିଲେ, "ବରଂ ତୁମ୍ଭେମାନେ ପ୍ରଥମେ ନିକ୍ଷେପ କର;" ତାପରେ ସେମାନଙ୍କର ଯାଦୁ କିମ୍ବା ଦ୍ୱାରା ସେମାନଙ୍କର ରଜ୍ଜୁ ଓ ଯଷ୍ଟିମାନ (ସର୍ପସଦୃଶ) ବିଚରଣ କଲାପରି ବୋଧହେଲା ।୬୬।

ଯଦ୍ଦ୍ୱାରା ମୂସା ନିଜ ଅନ୍ତରରେ ଭୀତ ହୋଇଥିଲେ; ।୬୭।

ଅମ୍ଭେ କହିଥିଲୁଁ, "ତୁମ୍ଭେ ଭୀତ ହୁଅନା, ନିଶ୍ଚୟ ତୁମ୍ଭେହିଁ ଜୟଲାଭ କରିବ ।୬୮।

"ଏବଂ ତୁମ୍ଭର ଦକ୍ଷିଣ ହସ୍ତରେ ଯେଉଁ ଯଷ୍ଟି ଅଛି ତାକୁ ନିକ୍ଷେପ କର, ସେମାନେ ଯେଉଁ (ସର୍ପ) ନିର୍ମାଣ କରି ଅଛନ୍ତି ତାକୁ ଏହା ଗ୍ରାସ କରିନେବ; ନିଶ୍ଚୟ ସେମାନେ କେବଳ ଯାଦୁର କୌଶଳ ଦ୍ୱାରା ଏହା ରଚନା କରି ଅଛନ୍ତି, ଏବଂ ଯେ କୌଣସି ସ୍ଥାନରୁ ଆସୁ ପଛକେ, ଯାଦୁକର କଦାପି କୃତକାର୍ଯ୍ୟ ହେବନାହିଁ ।"୬୯।

ଏବଂ ଯାଦୁକରମାନେ ପରାସ୍ତ ହୋଇ ପ୍ରଣିପାତ କରିଥିଲେ ଏବଂ କହିଥିଲେ, "ଅମ୍ଭେମାନେ ହାରୁନ ଏବଂ ମୂସାଙ୍କର ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କଲୁଁ ।"୭୦।

ସେ କହିଥିଲା, "ଅମ୍ଭେ ତୁମ୍ଭମାନଙ୍କୁ ଆଦେଶ କରିବା ପୂର୍ବରୁ ତୁମ୍ଭେମାନେ ତାହା ଉପରେ ବିଶ୍ୱାସ କଲ; ନିଶ୍ଚୟ ସେ ତୁମ୍ଭମାନଙ୍କର ଗୁରୁ ଯେ ତୁମ୍ଭମାନଙ୍କୁ ଯାଦୁ ବିଦ୍ୟା ଶିକ୍ଷା ଦେଇଅଛି; ଅତଏବ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କର ହାତ ଓ ଗୋଡ଼ ସବୁ ବିପରୀତ ଭାବରେ କାଟିଦେବୁଁ ଏବଂ ନିଶ୍ଚୟ ତୁମ୍ଭମାନଙ୍କୁ ଖଜୁରୀଗଛର କାଣ୍ଡମାନଙ୍କ ଉପରେ ଝୁଲାଇ ଫାଶୀ ଦେବୁଁ ଏବଂ ସେତେବେଳେ ତୁମ୍ଭେମାନେ ଜାଣିପାରିବ ଯେ ଅମ୍ଭମାନଙ୍କ ମଧ୍ୟରେ କାହାର ଶାସ୍ତି କଠୋରତର ଓ ଅଧିକତର ସ୍ଥାୟୀ" ।୭୧।

ସେମାନେ କହିଥିଲେ, "ପ୍ରକାଶ୍ୟ ନିଦର୍ଶନମାନଙ୍କରୁ ଯାହା ଅମ୍ଭମାନଙ୍କ ନିକଟ ଆସିଅଛି ଏବଂ ଯେ ଅମ୍ଭମାନଙ୍କୁ ସୃଷ୍ଟି କରି ଅଛନ୍ତି, ତାଙ୍କ ଆଗରେ ଆମ୍ଭେମାନେ କଦାପି ତୁମ୍ଭକୁ ଆଧିପତ୍ୟ ଦେଇ ନ ପାରୁଁ; ତୁମ୍ଭେ ଯାହା ମୀମାଂସା କରିଅଛ ତାହାହିଁ ଆଦେଶ କର; ନିଶ୍ଚୟ ତୁମ୍ଭେ କେବଳ ମାତ୍ର ପାର୍ଥିବ ଜୀବନରେ ଆଦେଶ କରିବ ।୭୨।

"ନିଶ୍ଚୟ ଅମ୍ଭେମାନେ ନିଜ ପାଳନକର୍ତ୍ତାଙ୍କଠାରେ ବିଶ୍ୱାସ ସ୍ଥାପନ କରିଅଛୁଁ ଯେ ସେ ଅମ୍ଭମାନଙ୍କର ଅପରାଧମାନ ଏବଂ ତୁମ୍ଭେ ଅମ୍ଭମାନଙ୍କୁ ଯାହା କରିବାକୁ ବାଧ୍ୟ କରିଥିଲ ସେହି ଯାଦୁର ଦୋଷ କ୍ଷମା କରିବେ; ଏବଂ ପରମେଶ୍ୱର ଶ୍ରେଷ୍ଠତମ ଓ ନିତ୍ୟ ବିରାଜମାନ" ।୭୩।

ଯେକେହି ନିଜ ପାଳନକର୍ତ୍ତାଙ୍କ ନିକଟରେ ଅପରାଧୀରୂପେ ଉପସ୍ଥିତ ହେବ, ତେବେ ନିଶ୍ଚୟ ତାହାପାଇଁ ନରକ ରହିଅଛି, ସେଥିମଧ୍ୟରେ ସେ ମରିବ ନାହିଁ କିମ୍ବା ବଞ୍ଚିବ ନାହିଁ ।୭୪।

---

୬୬ । ଏଥିରୁ ଜଣାଯାଉଅଛି ଯେ ରଜ୍ଜୁ ଓ ଯଷ୍ଟି ବାସ୍ତବରେ ସର୍ପରେ ପରିଣତ ହୋଇ ନଥିଲା; ମାତ୍ର ଆଭ୍ୟନ୍ତରୀଣ କୌଶଳ ଓ ପ୍ରକ୍ରିୟାର ପ୍ରଭାବରେ ଏହା ସର୍ପପରି ଚଳିବାର ଦେଖାଯାଇଥିଲା । ଆଜିକାଲି ମଧ୍ୟ ଲୋକେ ଦୃଷ୍ଟି ବନ୍ଧନ କରି ଏପରି ନାନାପ୍ରକାର କୌଶଳ ଦେଖାଇ ମାଜିକ ବା ଭେଲିକ ବିଦ୍ୟାର ବ୍ୟବସାୟ ଚଳାଇଥାନ୍ତି ।

୭୧ । ସେ—ଫେରଅଉନ୍ । ତୁମ୍ଭମାନଙ୍କୁ—ଯାଦୁକରମାନଙ୍କୁ । ସେ—ମୂସା ।

୭୧ । ବିପରୀତ ଭାବରେ—ଡାହାଣ ହାତ ଓ ବାମ ଗୋଡ଼; ଡାହାଣ ଗୋଡ଼ ଓ ବାମ ହାତ—ଏପରି ଭାବରେ କାଟିବୁଁ ଯେପରିକି ଲୋକ ଅକର୍ମଣ୍ୟ ହୋଇଯିବ । ୭ମ ଅଧ୍ୟାୟ ୧୨୪ ଶ୍ଳୋକ ଦେଖ ।

୭୨ । ସେମାନେ—ପରାଜିତ ଯାଦୁକରମାନେ ।

୭୩ । ଯାହା କରିବାକୁ—ଯେଉଁ ମିଥ୍ୟା ଯାଦୁବିଦ୍ୟା ଶିଳନ କରିବାକୁ । ଯାଦୁ ବିଦ୍ୟା ଶିଳନା ଦ୍ୱାରା ଅମ୍ଭମାନଙ୍କ ଯେଉଁ ପାପ ହୋଇଅଛି ସେଥିରୁ ପରମେଶ୍ୱର ଅମ୍ଭମାନଙ୍କୁ କ୍ଷମା କରିବେ ।

ଏବଂ ଯେ ତାଙ୍କ ଅଗରେ ବିଶ୍ୱାସକାରୀରୂପେ ଉପସ୍ଥିତ ହେବ ଏବଂ ଅଭ୍ ମଧ୍ୟ ସତକାର୍ଯ୍ୟ କରିଥିବ, ତେବେ ତାହା ପାଇଁ ମହାନ ମର୍ଯ୍ୟାଦା ରହିଅଛି; ।୭୫।

ଶରସ୍ଥାୟୀ ସ୍ୱର୍ଗୋଦ୍ୟାନ· ଯାହାର ନିମ୍ନରେ ନଦୀମାନ ପ୍ରବାହିତ, ସେମାନେ ସେଥିରେ ସର୍ବଦା ବାସ କରିବେ; ଏବଂ ଯେ ନିଜକୁ ପବିତ୍ର କରିଅଛି ଏହାହିଁ ତାହାର ପୁରସ୍କାର ।୭୬।

## ୪ର୍ଥ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ମୂସାଙ୍କ ପ୍ରତି ପ୍ରତ୍ୟାଦେଶ କରିଥିଲୁଁ, "ତୁମ୍ଭେ ରାତାରାତି ଅମ୍ଭର ସେବକମାନଙ୍କୁ (ମିଶର ଦେଶରୁ) ନେଇ ଯାତ୍ରା କର; ତାପରେ ସମୁଦ୍ର ମଧ୍ୟରେ ସେମାନଙ୍କ ପାଇଁ ଶୁଖିଲା ବାଟ ଖୋଜି ବାହାର କର, ଧରି ପଡ଼ିଯିବାର ଅଶଙ୍କା କରନା କିମ୍ବା କୌଣସି ପ୍ରକାର ଭୟ କରନା" ।୭୭।

ତାପରେ ଫେରଅଉନ ନିଜ ସୈନ୍ୟଦଳ ସହିତ ସେମାନଙ୍କର ପଛେ ଗୋଡ଼ାଇ ଥିଲା; ତାପରେ ଯାହା ସେମାନଙ୍କୁ ଆବୃତ କରିବାକୁ ଥିଲା ସେହି ସମୁଦ୍ରହିଁ ସେମାନଙ୍କୁ ଆବୃତ କରି ନେଲା ।୭୮।

ଏବଂ ଫେରଅଉନ ନିଜ ସମ୍ପ୍ରଦାୟକୁ ବିପଥଗାମୀ କରିଥିଲା ଏବଂ ସୁପଥ ଦେଖାଇ ନଥିଲା ।୭୯।

ହେ ଇସ୍ରାଇଲ ବଂଶଧରମାନେ ! ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କୁ ତୁମ୍ଭମାନଙ୍କ ଶତ୍ରୁ (ଫେରଅଉନ) ହସ୍ତରୁ ରକ୍ଷା କରିଥିଲୁଁ ଏବଂ ଅମ୍ଭେ ତୁର ପର୍ବତର ମଙ୍ଗଳମୟ ପ୍ରାନ୍ତରରେ ତୁମ୍ଭମାନଙ୍କ ସହିତ ଅଙ୍ଗୀକାର କରିଥିଲୁଁ ଏବଂ ତୁମ୍ଭମାନଙ୍କ ଉପରେ ମନ୍ନା ଓ ସଲୱା ଅବତୀର୍ଣ୍ଣ କରିଥିଲୁଁ ।୮୦।

(ଏବଂ କହିଥିଲୁଁ) "ଅମ୍ଭେ ତୁମ୍ଭମାନଙ୍କୁ ଯେଉଁ ଜୀବିକା ଦେଇଅଛୁଁ ସେହି ବିଶୁଦ୍ଧ ବସ୍ତୁରୁ ଭକ୍ଷଣକର ଏବଂ ସେ ବିଷୟରେ ଅବାଧ୍ୟ ଆଚରଣ କରନା, ନଚେତ ତୁମ୍ଭମାନଙ୍କ ଉପରେ ଅମ୍ଭର କୋପ ଉପସ୍ଥିତ ହେବ; ଏବଂ ଯାହାପ୍ରତି ଅମ୍ଭର କୋପ ଉପସ୍ଥିତ ହୁଏ ନିଶ୍ଚୟ ସେ ଧ୍ୱଂସପ୍ରାପ୍ତ ହୁଏ ।୮୧।

"ଏବଂ ନିଶ୍ଚୟ ଅମ୍ଭେ ତାହାପାଇଁ କ୍ଷମାଦାତା, ଯେ କ୍ଷମା ପ୍ରାର୍ଥନା କରେ ଓ ସତ୍କାର୍ଯ୍ୟ କରେ, ତାପରେ ସୁପଥରେ ଗୃହୀତ ହୁଏ" ।୮୨।

"ଏବଂ ହେ ମୂସା ! ତୁମ୍ଭେ ନିଜ ସମ୍ପ୍ରଦାୟ ନିକଟରୁ କିପାଇଁ ଶୀଘ୍ର ଆଗମନ କରିଅଛ" ? ।୮୩।

ମୂସା କହିଥିଲେ, "ସେମାନେ ମଧ୍ୟ ଅମ୍ଭର ଅନୁସରଣରେ ଏଠାକୁ ଆସୁଅଛନ୍ତି; ଏବଂ ହେ ଅମ୍ଭର ପାଳନକର୍ତ୍ତା ! ଅମ୍ଭେ ଏଥିପାଇଁ ତୁମ୍ଭ ନିକଟ ଶୀଘ୍ର ଆସିଅଛୁଁ ଯେ ତୁମ୍ଭେ ସନ୍ତୁଷ୍ଟ ହେବ" ।୮୪।

---

୭୭ । ଦେଖ ୨ୟ ଅଧ୍ୟାୟ ୪୯—୫୦ ଶ୍ଳୋକ । ଅମ୍ଭର ସେବକମାନଙ୍କୁ—ଅତ୍ୟାଗୃରତ ଇସ୍ରାଇଲୀୟମାନଙ୍କୁ ।

୭୮ । ଦେଖ ଟୀକା ୭ମ ଅଧ୍ୟାୟ ଶ୍ଳୋ·୧୩୭କ ।

୮୦ ମନ୍ନା ଓ ସଲୱା ସମ୍ବନ୍ଧରେ ଦେଖ ୨ୟ ଅଧ୍ୟାୟ ୫୭ ଶ୍ଳୋକ ।
ଅଙ୍ଗୀକାର ସମ୍ବନ୍ଧରେ ଦେଖ ୨ୟ ଅଧ୍ୟାୟ ଶ୍ଳୋ୪୦କ ।

୮୩ । ପରମେଶ୍ୱରଙ୍କ ଆଦେଶକ୍ରମେ ମୂସା ଉପବାସ ଓ ମୌନବ୍ରତ ଅବଲମ୍ବନ କରିବା ପାଇଁ ତୁର ପର୍ବତକୁ ଯାଇଥିଲେ । ଦେଖ ଟୀକା ୭ମ ଅଧ୍ୟାୟ ଶ୍ଳୋ। ୧୪୨କ ।

ପରମେଶ୍ୱର କହିଥିଲେ, "ନିଶ୍ଚୟ ଆମ୍ଭେ ତୁମ୍ଭର ଅନୁପସ୍ଥିତିରେ ତୁମ୍ଭର ସମ୍ପ୍ରଦାୟକୁ ପରୀକ୍ଷା କରିଥିଲୁଁ ଏବଂ ସାମେରୀ ସେମାନଙ୍କୁ ପଥଭ୍ରଷ୍ଟ କରିଅଛି" ।୮୫।

ତାପରେ ମୂସା କ୍ରୋଧରେ ଓ ଦୁଃଖରେ ନିଜ ସମ୍ପ୍ରଦାୟ ନିକଟକୁ ଫେରି ଆସିଥିଲେ; ସେ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମ୍ଭମାନଙ୍କର ପାଳନକର୍ତ୍ତା କଅଣ ତୁମ୍ଭମାନଙ୍କ ସହିତ ଉତ୍ତମ ପ୍ରତିଶ୍ରୁତିରେ ଅଙ୍ଗୀକାରବଦ୍ଧ ହୋଇ ନଥିଲେ ? ତେବେ କଅଣ ତୁମ୍ଭମାନଙ୍କ ପକ୍ଷରେ ସେହି ସମୟ ଅତୀତ ହୋଇଗଲା ଅଥବା ତୁମ୍ଭେମାନେ କଅଣ ଇଚ୍ଛା କଲ ଯେ ତୁମ୍ଭମାନଙ୍କ ଉପରେ ତୁମ୍ଭମାନଙ୍କର ପାଳନକର୍ତ୍ତାଙ୍କର କୋପ ଉପସ୍ଥିତ ହେଉ, ସେଥିପାଇଁ ତୁମ୍ଭେମାନେ ଆମ୍ଭ ସହିତ ଯେଉଁ ଅଙ୍ଗୀକାର କରିଥିଲ ତାକୁ ଭଙ୍ଗ କଲ" ? ।୮୬।

ସେମାନେ କହିଥିଲେ, "ଆମ୍ଭେମାନେ ସ୍ୱଇଚ୍ଛାରେ ତୁମ୍ଭ ସହିତ ଅଙ୍ଗୀକାର ଭଙ୍ଗ କରିନାହୁଁ; ବରଂ ଆମ୍ଭେମାନେ ଏକ ସମ୍ପ୍ରଦାୟର ଅଳଙ୍କାରର ଭାର ବହନ କରିଥିଲୁଁ, ତାପରେ ଆମ୍ଭେମାନେ ତାହାକୁ ଅଗ୍ନିରେ ନିକ୍ଷେପ କରିଥିଲୁଁ, ବାସ୍ତବରେ ସାମେରୀ ଏହିପରି କରିବାକୁ କହିଥିଲା ।୮୭।

"ତାପରେ ସେ ସେମାନଙ୍କ ପାଇଁ ଗୋଟାଏ ଗୋବତ୍ସର ମୂର୍ତ୍ତି ବାହାର କରିଥିଲା, ଯେ କି ଶବ୍ଦ କରୁଥିଲା ସୁତରାଂ ସେମାନେ କହିଥିଲେ, 'ଏହାହିଁ ତୁମ୍ଭମାନଙ୍କର ଉପାସ୍ୟ ଓ ମୂସାର ଉପାସ୍ୟ; ସେ ତ ଭୁଲିଗଲେ" ।୮୮।

ତେବେ କଅଣ ସେମାନେ ଲକ୍ଷ୍ୟ କରି ନଥିଲେ ଯେ ଏହା ସେମାନଙ୍କ କଥାର ପ୍ରତ୍ୟୁତ୍ତର ଦେଇ ପାରେନା ଏବଂ ଏହା ସେମାନଙ୍କର କୌଣସି ଲାଭ ଅଥବା କ୍ଷତି କରି ପାରେ ନା ? ।୮୯।

## ୫ମ ବିଭାଗ

ଏବଂ ନିଶ୍ଚୟ ହାରୁନ ପୂର୍ବରୁ ସେମାନଙ୍କୁ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଏହାଦ୍ୱାରା ତୁମ୍ଭମାନଙ୍କୁ କେବଳ ପରୀକ୍ଷା କରାଯାଉ ଅଛି; ଏବଂ ନିଶ୍ଚୟ ତୁମ୍ଭମାନଙ୍କର ପାଳନକର୍ତ୍ତାହିଁ ଦୟାମୟ, ଅତଏବ ତୁମ୍ଭେମାନେ ଆମ୍ଭର ଅନୁସରଣ କର ଏବଂ ଆମ୍ଭର ଆଦେଶ ପାଳନ କର" ।୯୦।

---

୮୫ । ମୂସା ୩୦ ଦିନ ତୁର ପର୍ବତ ଉପରେ ବ୍ରତ ପାଳନ କରିବେ ବୋଲି ତାଙ୍କର ସମ୍ପ୍ରଦାୟକୁ କହି ଯାଇଥିଲେ । ମାତ୍ର ୩୦ ଦିନ ପରେ ସେ ନ ଫେରିବାରୁ 'ସାମେରୀ' ନାମକ ଏକ କପଟ ବିଶ୍ୱାସୀ ଲୋକ ସେମାନଙ୍କୁ କୁମନ୍ତ୍ରଣା ଦେଇ ଏକ ଗୋବତ୍ସ ମୂର୍ତ୍ତି ନିର୍ମାଣ କରି ତାହାର ପୂଜା କରିବା ନିମନ୍ତେ ସେମାନଙ୍କୁ ପ୍ରବର୍ତ୍ତିତ କରାଇଥିଲା ।

୮୬ । ପରମେଶ୍ୱରଙ୍କ ଅଙ୍ଗୀକାର—ଇସ୍ରାଇଲୀୟମାନଙ୍କୁ ଫେରଅଉନର ଅତ୍ୟାଚାରରୁ ରକ୍ଷା କରିବା । ଆମ୍ଭ ସହିତ ଯେଉଁ ଅଙ୍ଗୀକାର—ମୂସାଙ୍କ ଆଦେଶ ପାଳନ କରି ପରମେଶ୍ୱରଙ୍କ ଏକତ୍ୱରେ ବିଶ୍ୱାସ ସ୍ଥାପନ କରିବା ପାଇଁ ଇସ୍ରାୟେଲୀୟମାନଙ୍କ ଅଙ୍ଗୀକାର । ଏହି ଅଧ୍ୟାୟର ୮୦ ଶ୍ଳୋକ ଏବଂ ୨ୟ ଅଧ୍ୟାୟର ୬୩ ଶ୍ଳୋକ ଦେଖ ।

୮୭ । ସେମାନେ ସ୍ୱଇଚ୍ଛାରେ ଏହା କରି ନ ଥିଲେ । ବରଂ ସାମେରୀର କୁମନ୍ତ୍ରଣାରେ ପଡ଼ି ଏପରି କରିଥିଲେ । ଭାର ବହନ କରିଥିଲୁ—ଫେରଅଉନର ଲୋକମାନଙ୍କ ଯେଉଁ ସୁନା ରୁପାର ଅଳଙ୍କାର ସବୁ ନେଇଆସିଥିଲୁଁ । ସେମାନଙ୍କ ପାଇଁ—ସମ୍ପ୍ରଦାୟର ଲୋକମାନଙ୍କ ପାଇଁ ।

୮୮ । ସେ—ସାମେରୀ । ସେମାନେ କହିଥିଲେ—ସମ୍ପ୍ରଦାୟର ଲୋକମାନେ ପରସ୍ପର ମଧ୍ୟରେ କହିଥିଲେ ।

୮୯ । ଏହି ଶ୍ଳୋକ ପରମେଶ୍ୱରଙ୍କ ଉକ୍ତି । ଏହା=ମୂର୍ତ୍ତି ।

୯୦ । ପୂର୍ବରୁ—ମୂସାଙ୍କ ଫେରିଆସିବା ପୂର୍ବରୁ ।

ସେମାନେ କହିଥିଲେ; "ଆମ୍ଭମାନଙ୍କ ନିକଟ ମୂସା ଫେରିଆସିବା ପର୍ଯ୍ୟନ୍ତ ଆମ୍ଭେମାନେ ଏଥିପ୍ରତି ଅନୁରକ୍ତ ରହିବୁ ।" ।୯୧।

ସେ କହିଥିଲେ, "ହେ ହାରୁନ । ଯେତେବେଳେ ତୁମ୍ଭେ ଏମାନଙ୍କୁ ପଥଭ୍ରଷ୍ଟ ହେବାର ଦେଖିଲ, ସେତେବେଳେ କିଏ ତୁମ୍ଭକୁ ବାଧା ଦେଇଥିଲା ।୯୨।

"ଯେ ତୁମ୍ଭେ ଆମ୍ଭର ଅନୁସରଣ କଲନାହିଁ ? ତେବେ କଣ ତୁମ୍ଭେ ଆମ୍ଭର ଆଦେଶ ଅଗ୍ରାହ୍ୟ କରିଅଛ ?" ।୯୩।

ସେ କହିଥିଲେ, "ହେ ଆମ୍ଭର ମାତୃନନ୍ଦନ । ତୁମ୍ଭେ ଆମ୍ଭର ଦାଢ଼ି ମୁଣ୍ଡବାଳ ଧରି ଟାଣନା; ନିଶ୍ଚୟ ଆମ୍ଭେ ଏଥିପାଇଁ ଆଶଙ୍କା କରିଥିଲୁଁ ଯେ କାଳେ ତୁମ୍ଭେ କହିବ, 'ତୁମ୍ଭେ ଇସ୍ରାଇଲ ବଂଶଧରମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରିଅଛ ଏବଂ ଆମ୍ଭର କଥାର ଅପେକ୍ଷା କଲ ନାହିଁ ।" ୯୪।

ମୂସା କହିଥିଲେ, "ହେ ସାମେରୀ । ତୁମ୍ଭେ କାହିଁକି ଏପରି କଲ ?" ୯୫।

ସାମେରୀ କହିଥିଲା, "ସେମାନେ ଯାହା ଦେଖି ନ ଥିଲେ ଆମ୍ଭେ ତାହା ଦେଖିଥିଲୁଁ; ତାପରେ ଆମ୍ଭେ ପ୍ରେରିତ ପୁରୁଷଙ୍କ ପାଦ ଚିହ୍ନରୁ କେତେକ ଧୂଳି ନେଇ ରଖିଥିଲୁଁ, ତାପରେ ତାହାକୁ ଆମ୍ଭେ ( ଗୋବତ୍ସ ମୂର୍ତ୍ତି ଉପରେ ) ନିକ୍ଷେପ କରିଥିଲୁଁ; ଏହିପରି ଆମ୍ଭର ପ୍ରବୃତ୍ତି ଆମ୍ଭକୁ ତୃପ୍ତି ଦାନ କରିଥିଲା ।" ୯୬।

ମୂସା କହିଥିଲେ, "ତେବେ ତୁମ୍ଭେ ଚାଲିଯାଅ; ନିଶ୍ଚୟ ତୁମ୍ଭେ ତୁମ୍ଭର ଇହଜୀବନରେ କହିବ ଯେ ଆମ୍ଭକୁ ସ୍ପର୍ଶ କରନା; ଏବଂ ତୁମ୍ଭ ପାଇଁ (ପରକାଳର ଶାସ୍ତି) ନିର୍ଦ୍ଧାରିତ ରହିଅଛି ଯେ ତାହାର କଦାପି ବ୍ୟତିକ୍ରମ ଘଟିବ ନାହିଁ; ଏବଂ ତୁମ୍ଭେ ଯାହାର ଅନୁରକ୍ତ ହୋଇଥିଲ ତୁମ୍ଭର ସେହି ଉପାସ୍ୟ ଆଡ଼କୁ ଲକ୍ଷ୍ୟକର,

---

୯୧ । ଅନୁରକ୍ତ ରହିବୁ—ଏହି ଗୋବତ୍ସ ମୂର୍ତ୍ତିର ଉପାସନା କରୁଥିବୁ ।

୯୨ । ସେ—ମୂସା (ଫେରିଆସିଲା ପରେ) ।

୯୩ । ଅନୁସରଣ କଲନାହିଁ—ତୁମ୍ଭେ ଆମ୍ଭନିକଟକୁ ଯାଇ ଏ ବିଷୟ କାହିଁକି ଜଣାଇଲ ନାହିଁ ?

୯୪ । ସେ—ହାରୁନ । ଦେଖ ୭ମ ଅଧ୍ୟାୟ ୧୫୦ ଶ୍ଳୋକ ।
ଅପେକ୍ଷା କଲନାହିଁ—ହାରୁନଙ୍କ କୈଫିୟତ; 'ଯଦି ଆମ୍ଭେ ସେମାନଙ୍କୁ ଛାଡ଼ିଦେଇ ଏ ବିଷୟ ତୁମ୍ଭକୁ ଜଣାଇବା ପାଇଁ ତୁମ୍ଭପାଖକୁ ଯାଇଥାନ୍ତୁ ତେବେ ସେମାନେ ଆମ୍ଭ ଅନୁପସ୍ଥିତିରେ ଦଳ ଦଳରେ ବିଭକ୍ତ ହୋଇ ପରସ୍ପର, ଦ୍ୱନ୍ଦ୍ୱ ଓ କଳହ ସୃଷ୍ଟି କରିଥାନ୍ତେ; ଆମ୍ଭେ ଏହି ଆଶଙ୍କାରେ ରହିଲୁଁ ।'

୯୬ । ସେମାନେ—ଲୋକମାନେ ।
ଏହି ଶ୍ଳୋକରେ ମୂସାଙ୍କ ପ୍ରଶ୍ନରେ ସାମେରୀର ଉତ୍ତର ଦିଆଯାଇଅଛି । ଏହାର ଭାବାର୍ଥ ସମ୍ବନ୍ଧରେ ଟୀକାକାରମାନଙ୍କ ମଧ୍ୟରେ ମତଭେଦ ଅଛି । କେତେକଙ୍କ ମତରେ ସାମେରୀ କହିଥିଲା, "ଆମ୍ଭେ ସ୍ୱର୍ଗଦୂତ ଜିବରେଇଲଙ୍କୁ ଘୋଡ଼ାରେ ଚଢ଼ି ଆସିବାର ଦେଖିଥିଲୁଁ ଏବଂ ତାଙ୍କ ଘୋଡାର ପଦଚିହ୍ନରୁ କେତେକ ମୃତ୍ତିକା ସଂଗ୍ରହ କରି ରଖିଥିଲୁଁ । ଆମ୍ଭର ହୃଦୟରେ ଏହି ଭାବ ଜାଗ୍ରତ ହୋଇଥିଲା ଯେ ଏହି ମୃତ୍ତିକାକୁ ସ୍ପର୍ଶ କଲେ ବିଶେଷ ଫଳ ଲାଭ ହେବ । ସେଥିପାଇଁ ଗୋବତ୍ସର ମୂର୍ତ୍ତି ନିର୍ମାଣ ସମୟରେ ଆମ୍ଭେ ଏହି ମୃତ୍ତିକାକୁ ସେଥିରେ ନିକ୍ଷେପ କରି ତାର ପୂଜା କରିବା ପାଇଁ ପ୍ରବର୍ତ୍ତନା ଦେଇଥିଲୁଁ ।" ଅନ୍ୟ ଟୀକାକାରମାନଙ୍କ ମତରେ ସାମେରୀ କହିଥିଲା, "ଆମ୍ଭେ ପ୍ରେରିତ ପୁରୁଷ ମୂସାଙ୍କ ନିୟମାବଳୀ ଭଲରୂପେ ଅବଗତ ଥିଲୁଁ, କିନ୍ତୁ ଆମ୍ଭେ ସେଥିରୁ ଅଂଶିକ ଭାବରେ ଗ୍ରହଣ କରିଥିଲୁଁ ଏବଂ ପରେ ତାକୁ ମଧ୍ୟ ପରିତ୍ୟାଗ କରିଥିଲୁଁ । ସୁତରାଂ ଆମ୍ଭର କୁପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ଆମ୍ଭେ ଗୋବତ୍ସ ପୂଜା ପ୍ରଚଳଣ ପ୍ରବର୍ତ୍ତନା ଦେଇଥିଲୁଁ ।"

ଅମ୍ଭେ ଏହିକ୍ଷଣି ଏହାକୁ ପୋଡ଼ି ଦେବୁଁ, ତାପରେ ନିଶ୍ଚୟ ଏହାକୁ ନଦୀ ମଧ୍ୟରେ ବିକ୍ଷିପ୍ତ ଭାବରେ ନିକ୍ଷେପ କରି ଦେବୁ ।୯୭।

"ଏକମାତ୍ର ପରମେଶ୍ୱରହିଁ ତୁମ୍ଭମାନଙ୍କର ଉପାସ୍ୟ; ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ତାଙ୍କର ଜ୍ଞାନ ସର୍ବବିଷୟରେ ପ୍ରସାରିତ ହୋଇଅଛି" ।୯୮।

ହେ ମୋହମ୍ମଦ, ଏହିପରି ଅମ୍ଭେ ତୁମ୍ଭପ୍ରତି ସେହି ସମ୍ବାଦମାନଙ୍କରୁ କିଛି କିଛି ବର୍ଣ୍ଣନା କରୁଅଛୁଁ ଯାହା ପୂର୍ବେ ଅତୀତ ହୋଇଅଛି; ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭକୁ ନିଜ ନିକଟରୁ ସ୍ମାରକ ଗ୍ରନ୍ଥ ପ୍ରଦାନ କରିଅଛୁଁ ।୯୯।

ଯେଉଁମାନେ ସେଥିରୁ ବିମୁଖ ହେବେ, ବାସ୍ତବରେ ସେମାନେ ପୁନରୁତ୍ଥାନ ଦିବସରେ ଭାର ବହନ କରିବେ ।୧୦୦।

ତନ୍ମଧ୍ୟରେ (ଭାରବାହୀ ଅବସ୍ଥାରେ) ସର୍ବଦା ବାସ କରିବେ; ଏବଂ ପୁନରୁତ୍ଥାନ ଦିବସରେ ଏହା ସେମାନଙ୍କ ପାଇଁ ମନ୍ଦ ଭାର ହେବ ।୧୦୧।

ଯେଉଁ ଦିନ ଭେରୀ ଧ୍ୱନି କରା ହେବ ଏବଂ ସେହିଦିନ ଅମ୍ଭେ ଅପରାଧୀମାନଙ୍କୁ ଏକତ୍ରିତ କରିବୁଁ; ଯେଉଁମାନଙ୍କ ଚକ୍ଷୁ ଭୟରେ ନୀଳବର୍ଣ୍ଣ ହୋଇ ଯାଇଥିବ ।୧୦୨।

ସେମାନେ ଗୋପନରେ ପରସ୍ପର କଥାବାର୍ତ୍ତା ହେବେ, "ତୁମ୍ଭେମାନେ ପୃଥିବୀରେ ଦଶଦିନରୁ ଅଧିକ ରହିନାହଁ" ।୧୦୩।

ଯେତେବେଳେ ସେମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ବୁଦ୍ଧିମାନ ଲୋକ କହିବ, "ନା ତୁମ୍ଭେମାନେ ଏକ ଦିନରୁ ଅଧିକ ରହିନାହଁ"; ସେମାନେ ଯାହା କହୁଥିବେ, ତାହା ଅମ୍ଭେ ଭଲ ରୂପେ ଜାଣୁ ।୧୦୪।

## ୬ଷ୍ଠ ବିଭାଗ

ଏବଂ ସେମାନେ ତୁମ୍ଭକୁ ପର୍ବତମାନଙ୍କ ସମ୍ବନ୍ଧରେ ପ୍ରଶ୍ନ କରୁଅଛନ୍ତି, ଅତଏବ ତୁମ୍ଭେ କୁହ, "ଅମ୍ଭର ପାଳନକର୍ତ୍ତା ଏମାନଙ୍କୁ ମୂଳରୁ ଉଡ଼ାଇ ଦେବେ ।୧୦୫।

---

୯୭ । ମହାପୁରୁଷ ମୂସାଙ୍କ ଅଭିଶାପରେ ସାମେରୀ ପାଗଳ ପ୍ରାୟ ହୋଇ ମାନବ ସମାଜଦ୍ୱାରା ଘୃଣ୍ୟ ଓ ଅସ୍ପୃଶ୍ୟ ସ୍ୱରୂପରେ ଜୀବନର ଅବଶିଷ୍ଟାଂଶ ଯାପନ କରିଥିଲା ଏବଂ ପାଗଳ ଅବସ୍ଥାରେ ପ୍ରଳାପ କରୁଥିଲା, "ଅମ୍ଭକୁ ସ୍ପର୍ଶ କରନା ।"

୯୮ । ଏହି ଶ୍ଳୋକରେ ମୂସାଙ୍କ ବିବରଣ ଶେଷ ହେଲା । ଏହି ବିଭାଗର ପରବର୍ତ୍ତୀ ଶ୍ଳୋକମାନଙ୍କରେ ପରମେଶ୍ୱର ଅବିଶ୍ୱାସକାରୀମାନଙ୍କର ଶୋଚନୀୟ ପରିଣାମ ବିଷୟ ଉଲ୍ଲେଖ କରିଅଛନ୍ତି ।

୯୯ । ସ୍ମାରକ ଗ୍ରନ୍ଥ—ପବିତ୍ର କୋରାନ ।

୧୦୦ । ଭାର ବହନ କରିବେ—ଶାସ୍ତି ଭୋଗ କରିବେ ।

୧୦୧ । ତନ୍ମଧ୍ୟରେ—ନରକର ଶାସ୍ତି ମଧ୍ୟରେ ।
ମନ୍ଦ ଭାର—କଠୋର ଶାସ୍ତି ।

୧୦୩-୧୦୪ । ସେ ଦିନର ଶାସ୍ତିର କଠୋରତା ହେତୁ ଅପରାଧୀମାନେ ପରଲୋକ ତୁଳନାରେ ଇହଜୀବନର ସମୟକୁ ଅତି ଅଳ୍ପ ମନେ କରିବେ ।

୧୦୫-୧୦୭ । ଅବିଶ୍ୱାସକାରୀମାନେ ପ୍ରଶ୍ନ କରିଥିଲେ ଯେ ଶେଷ ବିଚାର ଦିନ ଏହି ଉଚ୍ଚ ପର୍ବତମାନଙ୍କର ଅବସ୍ଥା କଅଣ ହେବ । ତାହାର ଉତ୍ତରରେ ପରମେଶ୍ୱର ଆଦେଶ କରୁଅଛନ୍ତି କି ସେ ଦିନ ଉଚ୍ଚ ପର୍ବତମାନ ବିନଷ୍ଟ ହୋଇ ଯିବ ଏବଂ ପୃଥିବୀ ସମତଳ ହୋଇଯିବ । ତାହାକୁ—ପୃଥିବୀକୁ ।

"ତାପରେ ସେ ତାହାକୁ ଉନ୍ମୁକ୍ତ ସମତଳ କରି ଦେବେ ।୧୦୬।

"ତୁମ୍ଭେ ସେଥିରେ ଖାଲ ଢିପ ଦେଖି ପାରିବ ନାହିଁ ।"୧୦୭।

ସେ ଦିନ ସେମାନେ ଆହ୍ୱାନକାରୀର ପିଛା ଅନୁସରଣ କରିବେ, ତାଙ୍କ କୌଣସି ବକ୍ରତା ଦେଖାଇବେ ନାହିଁ; ଏବଂ ଦୟାମୟଙ୍କ ସମ୍ମୁଖରେ ସମସ୍ତ ଶବ୍ଦ ନିସ୍ତବ୍ଧ ହୋଇଯିବ; ସେତେବେଳେ ତୁମ୍ଭେ କ୍ଷୀଣ ସ୍ୱର ଛଡ଼ା ଆଉ କିଛି ଶୁଣିବ ନାହିଁ ।୧୦୮।

ସେ ଦିନ ଦୟାମୟ ଯାହାକୁ ଆଦେଶ କରିବେ ଏବଂ ଯାହାର ବାକ୍ୟରେ ସେ ସନ୍ତୁଷ୍ଟ ତାଙ୍କ ବ୍ୟତୀତ ଅନ୍ୟ କାହାରି ସୁପାରିସ ଫଳପ୍ରଦ ହେବ ନାହିଁ ।୧୦୯।

ଯାହା ସେମାନଙ୍କ ସମ୍ମୁଖରେ ଅଛି ଓ ଯାହା ସେମାନଙ୍କ ପଶ୍ଚାତରେ ଅଛି, ତାହା ସେ ଅବଗତ ଅଛନ୍ତି ଏବଂ ସେମାନେ ତାଙ୍କ ଜ୍ଞାନର ଧାରଣା କରିପାରନ୍ତି ନାହିଁ ।୧୧୦।

ଏବଂ ଚିରଜୀବୀ ଓ ନିତ୍ୟ ବିରାଜମାନ ପରମେଶ୍ୱରଙ୍କ ଆଗରେ ସମସ୍ତଙ୍କ ମୁହଁ ନଇଁ ପଡ଼ିବ ଏବଂ ଯେ ଅତ୍ୟାଚାର କରିଅଛି ସେ ହତଗ୍ରସ୍ତ ହେବ ।୧୧୧।

ଏବଂ ଯେ ସତ୍‌କାର୍ଯ୍ୟମାନ କରିଅଛି ଏବଂ ସେ ବିଶ୍ୱାସକାରୀ ମଧ୍ୟ ଅଛି, ତେବେ ତାହାର କୌଣସି କ୍ଷତି ଅଥବା (ପୁରସ୍କାର) ହ୍ରାସ ହେବାର ଆଶଙ୍କା ନାହିଁ ।୧୧୨।

ଏବଂ ଏହିପରି ଆମ୍ଭେ ଏହାକୁ ଆରବୀ କୋରାନ ରୂପେ ଅବତୀର୍ଣ୍ଣ କରିଅଛୁଁ ଏବଂ ଏଥିରେ ଆମ୍ଭେ ସତର୍କକାରୀ ବିଷୟମାନ ବର୍ଣ୍ଣନା କରିଅଛୁଁ, ଯେପରି ସେମାନେ ସଯତ୍ନ ହେବେ, ଅଥବା ଏହା ସେମାନଙ୍କପାଇଁ ଉପଦେଶଜନକ ହେବ ।୧୧୩।

ଅତଏବ ସେହି ସତ୍ୟ ସନାତନ ଅଧିପତି ପରମେଶ୍ୱରହିଁ ଅତି ଉଚ୍ଚ; ଏବଂ ତୁମ୍ଭପ୍ରତି ଏହାର ପ୍ରତ୍ୟାଦେଶ ସମ୍ପୂର୍ଣ୍ଣ ହେବା ପୂର୍ବେ କୋରାନ ପାଠ ସମ୍ବନ୍ଧରେ ସତ୍ୱରତା କରନା; ଏବଂ ତୁମ୍ଭେ କୁହ, "ହେ ପ୍ରଭୁ ପାଳନକର୍ତ୍ତା ! ଆମ୍ଭର ଜ୍ଞାନ ବଢ଼ାଇ ଦିଅ ।"୧୧୪।

ଏବଂ ନିଶ୍ଚୟ ଆମ୍ଭେ ଏଥିପୂର୍ବେ ଆଦମଙ୍କଠାରୁ ଅଙ୍ଗୀକାର ନେଇ ଥିଲୁଁ; କିନ୍ତୁ ସେ ଏହାକୁ ଭୁଲି ଯାଇଥିଲେ ଏବଂ ଆମ୍ଭେ ତାଙ୍କଠାରେ କୌଣସି ଦୃଢ଼ ସଙ୍କଳ୍ପ ପାଇ ନ ଥିଲୁଁ ।୧୧୫।

---

୧୦୮ । ଆହ୍ୱାନକାରୀ—ଶେଷ ବିଚାର ଦିନ ଭେରୀ ଧ୍ୱନି ଦ୍ୱାରା ସମସ୍ତଙ୍କୁ ଆହ୍ୱାନ କରୁଥିବା ସ୍ୱର୍ଗଦୂତ 'ଇସ୍ରାଫିଲ୍' । ସେମାନେ ପୁନର୍ଜୀବିତ ହେଲେ ଏଣେତେଣେ ନ ବୁଲି ସିଧା ସଳଖ ତାଙ୍କ ଆଡ଼କୁ ଗଲେ ଯିବେ ।

୧୦୯ ସୁପାରିସ । ୨ୟ ଅଧ୍ୟାୟ ୨୫୫ ଶ୍ଳୋକ ଦେଖ ।

୧୧୦ । କୌଣସି ପ୍ରତ୍ୟାଦେଶ ସମ୍ପୂର୍ଣ୍ଣରୂପେ ଅବତୀର୍ଣ୍ଣ ହେବା ପୂର୍ବରୁ ଶୀଘ୍ର ଶୀଘ୍ର ତାହା ପାଠ କରି ଲୋକମାନଙ୍କୁ ଶୁଣାଇବା ପାଇଁ ନିଷେଧ କରାଯାଇଅଛି । ବରଂ କୌଣସି ପ୍ରତ୍ୟାଦେଶ ସମ୍ପୂର୍ଣ୍ଣରୂପେ ଅବତୀର୍ଣ୍ଣ ହେଲାପରେ ତାହାର ଯଥାର୍ଥ ଭଲରୂପେ ବୁଝି ଧୀର ସ୍ଥିର ଭାବରେ ଲୋକମାନଙ୍କ ଆଗରେ ପ୍ରକାଶ କରିବା ପାଇଁ ଆଦେଶ କରାଯାଇଅଛି ଏବଂ ସେ ବିଷୟରେ ସମ୍ପୂର୍ଣ୍ଣରୂପେ ଜ୍ଞାନ ଦେବା ପାଇଁ ପରମେଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ ଆଦେଶ କରାଯାଇଅଛି ।

୧୧୫ । ନିଷିଦ୍ଧ ବୃକ୍ଷର ଫଳ ଭକ୍ଷଣ ନ କରିବା ପାଇଁ ଆଦମଙ୍କୁ ଆଦେଶ ଦିଆଯାଇଥିଲା । ମାତ୍ର ସେ ଏ ଆଦେଶ ଭୁଲି-ଯାଇଥିଲେ ଏବଂ ଫଳ ଭକ୍ଷଣ କରିଥିଲେ । ପରବର୍ତ୍ତୀ ଶ୍ଳୋକମାନ ଦେଖ ।

## ୭ମ ବିଭାଗ

ଏବଂ ଯେତେବେଳେ ଅମ୍ଭେ ସ୍ୱର୍ଗଦୂତମାନଙ୍କୁ କହିଥିଲୁଁ "ତୁମ୍ଭେମାନେ ଅଦମଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କର", ସେତେବେଳେ ଇବଲିସ ଛଡ଼ା ସେମାନେ ସମସ୍ତେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେ, ସେ ଅସ୍ୱୀକାର କରିଥିଲା ।୧୧୬।

ତାପରେ ଅମ୍ଭେ କହିଥିଲୁଁ, "ହେ ଅଦମ ! ନିଶ୍ଚୟ ଏ ତୁମ୍ଭର ଓ ତୁମ୍ଭ ପତ୍ନୀର ଶତ୍ରୁ; ସୁତରାଂ ସେ ଯେପରି ତୁମ୍ଭ ଦୁହିଁଙ୍କୁ ସ୍ୱର୍ଗୋଦ୍ୟାନରୁ ବହିର୍ଗତ ନ କରେ, ଯଦ୍ଦ୍ୱାରା ତୁମ୍ଭେମାନେ ଦୁଃଖ ଭୋଗ କରିବ ।୧୧୭।

"ନିଶ୍ଚୟ ଏହା ମଧ୍ୟରେ ତୁମ୍ଭେ କ୍ଷୁଧାର୍ତ୍ତ ଅଥବା ଅନାବୃତ ହେବ ନାହିଁ" ।୧୧୮।

"ଏବଂ ଏହା ମଧ୍ୟରେ ତୁମ୍ଭେ ତୃଷାର୍ତ୍ତ ଅଥବା ରୌଦ୍ରତପ୍ତ ହେବ ନାହିଁ" ।୧୧୯।

ତ ପରେ ସଏତାନ ତାଙ୍କୁ କୁପରାମର୍ଶ ଦେଇ କହିଥିଲା, "ହେ ଅଦମ ! ଅମ୍ଭେ କଅଣ ତୁମ୍ଭଙ୍କୁ ଅମର ବୃକ୍ଷ ଓ ଅକ୍ଷୟ ରାଜତ୍ୱ ଲଭିବା ପଥ ବତାଇ ଦେବୁଁ ?"୧୨୦।

ତାପରେ ସେମାନେ ଉଭୟେ ସେଥିରୁ ଭକ୍ଷଣ କରିଥିଲେ, ପରେ ସେମାନଙ୍କର ଗୁପ୍ତ ଅଙ୍ଗ ଅନାବୃତ ହୋଇଗଲା ଏବଂ ସେମାନେ ଉଦ୍ୟାନର ବୃକ୍ଷପତ୍ର ଦ୍ୱାରା ନିଜ ନିଜକୁ ଆବୃତ କରିବାକୁ ଲାଗିଲେ; ଏବଂ ଅଦମ ନିଜ ପାଳନକର୍ତ୍ତାଙ୍କର ଆଦେଶ ଲଙ୍ଘନ କଲେ, ସେଥିପାଇଁ ସେ ବିଭ୍ରାନ୍ତ ହୋଇଥିଲେ ।୧୨୧।

ତାପରେ ତାଙ୍କର ପାଳନକର୍ତ୍ତା ତାଙ୍କୁ ଗ୍ରହଣ କରିଥିଲେ, ପରେ ତାଙ୍କ ଅନୁତାପ ଗ୍ରହଣ କରି କ୍ଷମା କରିଥିଲେ ଏବଂ ତାଙ୍କୁ ପଥ ପ୍ରଦର୍ଶନ କରିଥିଲେ ।୧୨୨।

ପରମେଶ୍ୱର କହିଥିଲେ, "ତୁମ୍ଭେମାନେ ଉଭୟେ ଏକତ୍ରରେ ଏଠାରୁ ବାହାରି ଯାଅ, ତୁମ୍ଭେମାନେ ପରସ୍ପର ଶତ୍ରୁ; ତା ପରେ ଯେତେବେଳେ ଅମ୍ଭଠାରୁ ତୁମ୍ଭମାନଙ୍କ ପାଖକୁ ସଦୁପଦେଶ ଆସିବ, ସେତେବେଳେ ଯେ ଅମ୍ଭର ସଦୁପଦେଶ ଅନୁସରଣ କରିବ, ବାସ୍ତବରେ ସେ ବିଭ୍ରାନ୍ତ ହେବ ନାହିଁ ଓ ପରିଶ୍ରାନ୍ତ ହେବ ନାହିଁ ।୧୨୩।

ଏବଂ ଯେ ଅମ୍ଭର ସ୍ମରଣରୁ ବିମୁଖ ହେବ, ତେବେ ନିଶ୍ଚୟ ତାହାର ଜୀବନ ସଙ୍କଟମୟ ହେବ ଏବଂ ନିଶ୍ଚୟ ଅମ୍ଭେ ତାହାକୁ ପୁନରୁତ୍ଥାନ ଦିବସରେ ଅନ୍ଧ ରୂପେ ଉଠାଇବୁ ।"୧୨୪।

ସେ କହିବ, "ହେ ଅମ୍ଭର ପାଳନକର୍ତ୍ତା ! ଅମ୍ଭଙ୍କୁ କାହିଁକି ଅନ୍ଧ ରୂପେ ଉଠାଇଅଛ ଏବଂ ଅମ୍ଭେ ନିଶ୍ଚୟ ଚକ୍ଷୁଷ୍ମାନ ଥିଲୁଁ ?"୧୨୫।

ପରମେଶ୍ୱର କହିବେ, "ଏହିପରି ତୁମ୍ଭପ୍ରତି ଅମ୍ଭର ନିଦର୍ଶନମାନ ଉପସ୍ଥିତ ହୋଇଥିଲା, କିନ୍ତୁ ତୁମ୍ଭେ ବିସ୍ମୃତ ହୋଇଥିଲ; ଏବଂ ସେହିପରି ତୁମ୍ଭେ ମଧ୍ୟ ଆଜି ପରିତ୍ୟକ୍ତ ହେବ ।"୧୨୬।

---

୧୧୮ । ଅନାବୃତ (ଲ-ତାଅରା) ଶବ୍ଦଦ୍ୱାରା ଅନୁମିତ ହୁଏ ଅଦମ ଓ ହଉଆ ଉଲଙ୍ଗ ନଥିଲେ ।

୧୧୯ । ରୌଦ୍ରତପ୍ତ—ସୂର୍ଯ୍ୟ କିରଣରେ କଷ୍ଟ ପାଇବା ।

୧୨୧ । ସେମାନେ ଉଭୟେ—ଅଦମ ଏବଂ ତାଙ୍କ ସ୍ତ୍ରୀ ହଉଆ ।

୧୨୩ । ତୁମ୍ଭେମାନେ ଉଭୟେ—ଅଦମ ଏବଂ ସଏତାନ । ଦେଖ ୨ୟ ଅଧ୍ୟାୟ ୩୮ ଶ୍ଳୋକ ଏବଂ ୭ ମ ଅଧ୍ୟାୟ ୨୪ ଶ୍ଳୋକ ।

୧୨୪ । ସଙ୍କଟମୟ—ଦୁଃଖପୂର୍ଣ୍ଣ ।

୧୨୫ । ସେ—ଯେ ପରମେଶ୍ୱରଙ୍କୁ ଭୁଲି ବିପଥଗାମୀ ହୋଇଥିବ, ସୁତରାଂ ଶେଷ ବିଚାର ଦିନ ଅନ୍ଧ ହୋଇ ଉଠିବ ।

୧୨୬ । ପୃଥିବୀରେ ଚକ୍ଷୁ ଥାଇ ମଧ୍ୟ ଯେଉଁ ଲୋକ ଅନ୍ଧପରି ପରମେଶ୍ୱରଙ୍କ ବିରାଟ ସୃଷ୍ଟି କୌଶଳ ଦେଖି ତାଙ୍କୁ ଚିହ୍ନି ପାରିଲା ନାହିଁ, ପରଲୋକରେ ସେ ଲୋକ ଅନ୍ଧପରି କଷ୍ଟ ଭୋଗ କରିବ ।

ଏବଂ ଯେ ଅପବ୍ୟୟ କରେ ଓ ନିଜ ପାଳନକର୍ତ୍ତାଙ୍କର ନିଦର୍ଶନମାନଙ୍କରେ ବିଶ୍ୱାସ ସ୍ଥାପନ କରେନା, ଅମ୍ଭେ ଏହିପରି ତାକୁ ପ୍ରତିଫଳ ପ୍ରଦାନ କରିଥାଉଁ, ଏବଂ ପରକାଳର ଶାସ୍ତି ଅଧିକ କଠୋରତର ଓ ଚିରସ୍ଥାୟୀ ।୧୨୭।

ତେବେ କଅଣ ସେମାନେ ଏହାଦ୍ୱାରା ଉପଦେଶ ଗ୍ରହଣ କରନ୍ତି ନାହିଁ ଯେ ଅମ୍ଭେ ସେମାନଙ୍କ ପୂର୍ବେ ଏହିପରି କେତେ ସମ୍ପ୍ରଦାୟକୁ ଧ୍ୱଂସ କରି ଦେଇଅଛୁଁ, ଯାହାର ବାସସ୍ଥାନ ମଧ୍ୟ ଦେଇ ସେମାନେ ଗମନାଗମନ କରନ୍ତି; ନିଶ୍ଚୟ ଏଥିରେ ଉପଦେଶଗ୍ରାହୀମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୧୨୮।

## ୮ମ ବିଭାଗ

ଏବଂ ତୁମ୍ଭର ପାଳନକର୍ତ୍ତାଙ୍କଠାରୁ (ଅବସର ଦାନର) ଯଦି ଗୋଟିଏ ହୁକୁମ ପୂର୍ବରୁ ଦିଆଯାଇ ନଥାନ୍ତା ଏବଂ ସମୟ ନିର୍ଦ୍ଧାରିତ ହୋଇ ନଥାନ୍ତା, ତେବେ ନିଶ୍ଚୟ ସେମାନଙ୍କ ନିକଟକୁ ଶାସ୍ତି ଅଦିଯାଇ ଥାଆନ୍ତା ।୧୨୯।

ତାପରେ ସେମାନେ ଯାହା କହନ୍ତି, ସେଥିପ୍ରତି ଧୈର୍ଯ୍ୟଧାରଣ କର, ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ଏବଂ ତାହା ଅସ୍ତଗତ ହେବା ପୂର୍ବରୁ ପ୍ରଶଂସାସହ ତୁମ୍ଭର ପାଳନକର୍ତ୍ତାଙ୍କର ମହିମା କୀର୍ତ୍ତନ କର; ଏବଂ ରାତ୍ରି କାଳରେ ମହିମା ବର୍ଣ୍ଣନା କର ଏବଂ ଦିବା ଭାଗରେ ମଧ୍ୟ, ଯଦ୍ଦ୍ୱାରା ତୁମ୍ଭେ ତୃପ୍ତିଲାଭ କରିବ ।୧୩୦।

ଏବଂ ତୁମ୍ଭେ ସେହିଅଡ଼କୁ ତୁମ୍ଭର ଦୁଇ ଆଖି ପକାଅନା ଯାହା ଅମ୍ଭେ ସେମାନଙ୍କୁ ପାର୍ଥିବ ଜୀବନରେ ବିବିଧ ସମୃଦ୍ଧି ଦାନ କରିଅଛୁଁ, ଯେ ଅମ୍ଭେ ସେମାନଙ୍କୁ ତଦ୍ଦ୍ୱାରା ପରୀକ୍ଷା କରିବୁ; ଏବଂ ତୁମ୍ଭର ପାଳନକର୍ତ୍ତାଙ୍କର ପ୍ରଦତ୍ତ ଜୀବିକାହିଁ ଉତ୍କୃଷ୍ଟତର ଓ ଚିରସ୍ଥାୟୀ ।୧୩୧।

---

୧୨୮ । ଯେଉଁ ସମ୍ପ୍ରଦାୟମାନେ ଧ୍ୱଂସପ୍ରାପ୍ତ ହୋଇଯାଇଅଛନ୍ତି, ମକ୍କାବାସୀ ଅବିଶ୍ୱାସୀମାନେ ସେମାନଙ୍କ ଦେଶରେ ବୁଲିବୁଲି ସେହି ନଗରମାନଙ୍କ ଭଗ୍ନାବଶେଷ ଓ ଧ୍ୱଂସ ଚିହ୍ନମାନ ଦେଖିଥାଆନ୍ତି, ଅଥଚ ସେଥିରୁ ଶିକ୍ଷା ଲାଭ କରି ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ କରନ୍ତି ନାହିଁ ।

୧୨୯ । ମହାପୁରୁଷ ମୋହମ୍ମଦଙ୍କ ଅବିର୍ଭାବ ପରେ ଅବିଶ୍ୱାସକାରୀମାନଙ୍କୁ ସତ୍ୱର ଶାସ୍ତି ନଦେଇ ସେମାନଙ୍କୁ ଅବକାଶ ଦିଆଯିବାର ହୁକୁମ (ଗୋଟିଏ ବାକ୍ୟ) ପରମେଶ୍ୱର ଦେଇଅଛନ୍ତି, ଯେପରିକି ସେମାନେ ବୁଝିସୁଝି ବିଶ୍ୱାସ ସ୍ଥାପନ କରିବେ । ଯଦି ସେମାନେ ବିଶ୍ୱାସ ନକରି ମରିଯାଆନ୍ତି ତେବେ ଶେଷ ବିଚାର ଦିନ ସେମାନଙ୍କର ବିଚାର ହୋଇ ସେମାନଙ୍କୁ ଶାସ୍ତି ଦିଆଯିବ ଏବଂ ସେଥିପାଇଁ ସମୟ ନିର୍ଦ୍ଦିଷ୍ଟ ହୋଇଅଛି । ନଚେତ୍ ଅପରାଧୀମାନେ ଏହି ପୃଥିବୀରେ ସେମାନଙ୍କ ଅପରାଧ ପାଇଁ ଧ୍ୱଂସ ପ୍ରାପ୍ତ ହୁଅନ୍ତେ । କିନ୍ତୁ ପରମେଶ୍ୱର ସେମାନଙ୍କୁ ଅବସର ଦେଇ-ଅଛନ୍ତି ।

୧୩୦ । ଏହି ଶ୍ଳୋକରେ ଦୈନିକ ପାଞ୍ଚଥର ଅରାଧନା କରିବାପାଇଁ ଆଦେଶ କରାଯାଇଅଛି । ସୂର୍ଯ୍ୟୋଦୟ ପୂର୍ବରୁ 'ଫଜର', ସୂର୍ଯ୍ୟାସ୍ତ ପୂର୍ବରୁ 'ଅସର', ରାତ୍ରି କାଳରେ 'ମଗରିବ୍' ଓ 'ଏଶା' ଏବଂ ଦିବା ଭାଗରେ 'ଜୋହର' ନମାଜ ପଢ଼ିବା ପାଇଁ ଆଦେଶ କରାଯାଇଅଛି ।

୧୩୧ । ଅମ୍ଭେ ଅବିଶ୍ୱାସକାରୀମାନଙ୍କୁ ପାର୍ଥିବ ଧନ ଦେଇ ସେମାନଙ୍କ ପାର୍ଥିବ ଜୀବନ ଶୋଭାଯୁକ୍ତ କରିଅଛୁଁ । ତଦ୍ଦ୍ୱାରା ସେମାନଙ୍କ ପରୀକ୍ଷା ହେବ । ହେ ମୋହମ୍ମଦ, ତୁମ୍ଭେ ସେମାନଙ୍କ ଧନ ଦୌଲତ ପ୍ରତି ଦୃଷ୍ଟି ପକାଇ ତାହାର ସୌନ୍ଦର୍ଯ୍ୟରେ ବିମୋହିତ ଓ ଚମତ୍କୃତ ହୁଅନା ।

ଏବଂ ତୁମ୍ଭର ପରିବାରର ଲୋକମାନଙ୍କୁ ଅରାଧନା ସକାଶେ ଆଦେଶ କର ଏବଂ ତାହା ନିୟମିତରୂପେ ପାଳନକର; ଆମ୍ଭେ ତୁମ୍ଭଙ୍କୁ ଜୀବିକା ସକାଶେ ପ୍ରଶ୍ନ କରୁ ନାହୁଁ; ଆମ୍ଭେ ତୁମ୍ଭଙ୍କୁ ଜୀବିକା ଦାନ କରୁଁ; ଏବଂ ଧର୍ମଭୀରୁମାନଙ୍କର ପରିଣାମ ସୁଫଳ ।୧୩୨।

ଏବଂ ସେମାନେ କହନ୍ତି, "ସେ କାହିଁକି ନିଜ ପାଳନକର୍ତ୍ତାଙ୍କଠାରୁ ଆମ୍ଭମାନଙ୍କ ନିକଟ କୌଣସି ନିଦର୍ଶନ ଆଣୁ ନାହାନ୍ତି" ? ଯାହା ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କରେ ରହିଅଛି, ତାହାର ପ୍ରକାଶ୍ୟ ପ୍ରମାଣ କିଅଣ ସେମାନଙ୍କ ନିକଟରେ ଉପସ୍ଥିତ ହୋଇନାହିଁ ?୧୩୩।

ଏବଂ ଯଦି ଆମ୍ଭେ ସେମାନଙ୍କୁ ଏହା ପୂର୍ବରୁ ଶାସ୍ତି ସହିତ ଧ୍ୱଂସ କରି ଦେଇଥାନ୍ତୁ; ନିଶ୍ଚୟ ସେମାନେ କହିଥାନ୍ତେ, "ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ତୁମ୍ଭେ କାହିଁକି ଆମ୍ଭମାନଙ୍କପାଖ ପ୍ରେରିତପୁରୁଷ ପ୍ରେରଣ କଲ ନାହିଁ, ଯଦ୍ଦ୍ୱାରା ଆମ୍ଭେମାନେ ଲାଞ୍ଛିତ ଓ ଲଜ୍ଜିତ ହେବା ପୂର୍ବରୁ ତୁମ୍ଭର ଅନୁସରଣ କରିଥାନ୍ତୁ ?" ୧୩୪।

ତୁମ୍ଭେ କୁହ, "ସମସ୍ତେ ଅପେକ୍ଷା କରୁଅଛନ୍ତି । ଅତଏବ ତୁମ୍ଭେମାନେ ମଧ୍ୟ ଅପେକ୍ଷା କର, ତତ୍ପରେ ଶୀଘ୍ର ତୁମ୍ଭେମାନେ ଜାଣି ପାରିବ ଯେ କିଏ ସରଳ ପଥ ଅନୁସରଣକାରୀ, ଏବଂ କିଏ ସୁପଥଗାମୀ" ।୧୩୫।

—*—

---

୧୩୦ । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋ୧୨୯କ ।
ଏହା ପୂର୍ବରୁ—ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ପୂର୍ବରୁ ।

—o—

# ସପ୍ତଦଶ ଭାଗ

## ୬୯ଶ ଅଧ୍ୟାୟ

ନାମ—ଅଲ୍ ଅମ୍ବିୟା (ଧର୍ମପ୍ରବର୍ତ୍ତିକଗଣ) । ମକ୍କାରେ ଅବତୀର୍ଣ୍ଣ । ଏଥିରେ ୭ ଗୋଟି ବିଭାଗ ଏବଂ ୧୧୨ ଗୋଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ମାନବମଣ୍ଡଳୀ ପାଇଁ ସେମାନଙ୍କ ହିସାବ ନିକଟବର୍ତ୍ତୀ ହେଉ ଅଛି ଏବଂ ସେମାନେ ଅମନଯୋଗିତା ମଧ୍ୟରେ ବୁଡ଼ି ରହି ଏ ବିଷୟରେ ଚିନ୍ତାରୁ ଫେରିଯାଉଅଛନ୍ତି । ୧ ।

ସେମାନଙ୍କର ପାଳନକର୍ତ୍ତାଙ୍କଠାରୁ ସେମାନଙ୍କ ନିକଟ ଏପରି କୌଣସି ନୂତନ ଉପଦେଶ ଉପସ୍ଥିତ ହେଉନାହିଁ ଯାହାକୁ ସେମାନେ କୌତୁକ ଛଳରେ ଶ୍ରବଣ କରୁନାହାନ୍ତି ।୨।

ସେମାନଙ୍କର ହୃଦୟ ସବୁ ଅମନଯୋଗୀ ରହିଅ..; ଏବଂ ଅତ୍ୟାଗୃହୀମାନେ ଗୋପନରେ ପରାମର୍ଶ କରୁଅଛନ୍ତି ଯେ, "ଏ ମୋହମ୍ମଦ ତୁମ୍ଭମାନଙ୍କ ପରି ଜଣେ ମନୁଷ୍ୟ ଛଡ଼ା ଆଉକିଛି ନୁହନ୍ତି; ତେବେ କଅଣ ତୁମ୍ଭେମାନେ ଦେଖି ଦେଖି ଯାଦୁର ବଶବର୍ତ୍ତୀ ହେଉଅଛ ?" ୩ ।

ମୋହମ୍ମଦ କହିଥିଲେ, "ଆମ୍ଭର ପାଳନ କର୍ତ୍ତା ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହା କଥୋପକଥନ ହୁଏ ତାହା ଅବଗତ ଅଛନ୍ତି ଏବଂ ସେହି ଶ୍ରବଣକାରୀ ମହାଜ୍ଞାନୀ ।" ।

ସେମାନେ କହିଥିଲେ, "ଏହାତ ବରଂ ସ୍ୱପ୍ନଗୁଡ଼ିକର ସମଷ୍ଟି ! ବରଂ ସେ ନିଜେ ଏହା ରଚନା କରିଅଛନ୍ତି ! ବରଂ ସେ ଜଣେ କବି । ଅତଏବ ସେ ଆମ୍ଭମାନଙ୍କ ନିକଟ ଏପରି କୌଣସି ନିଦର୍ଶନ ଆଣନ୍ତୁ ଯାହା ପୂର୍ବବର୍ତ୍ତୀ (ପ୍ରେରିତ ପୁରୁଷ) ମାନଙ୍କ ନିକଟ ପ୍ରେରିତ ହୋଇଥିଲା । ୫ ।

---

ନାମକରଣ—ଏହି ଅଧ୍ୟାୟରେ ପରମେଶ୍ୱର କେତେଜଣ ପୂର୍ବବର୍ତ୍ତୀ ଖ୍ୟାତନାମା ଧର୍ମପ୍ରବର୍ତ୍ତିକମାନଙ୍କର ବିଷୟ ସଂକ୍ଷେପରେ ବର୍ଣ୍ଣନା କରିଅଛନ୍ତି ଏବଂ ଅବିଶ୍ୱାସକାରୀ ବିଧର୍ମୀ ମକ୍କାବାସୀମାନେ ମହାପୁରୁଷ ମୋହମ୍ମଦଙ୍କ ପ୍ରେରିତତ୍ୱ ଓ ଧର୍ମପ୍ରବର୍ତ୍ତିକତା ବିରୁଦ୍ଧରେ ଉତ୍‌ଥାପନ କରିଥିବା କେତେକ ଅଯଥା ଆପତ୍ତିମାନ ଖଣ୍ଡନ କରି-ଅଛନ୍ତି । ଏଥିପାଇଁ ଏହି ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ସେମାନଙ୍କ ହିସାବ—ଅପରାଧୀମାନଙ୍କଠାରୁ ସେମାନଙ୍କର ହିସାବ ଗ୍ରହଣ କରିବା ଓ ସେମାନଙ୍କୁ ଶାସ୍ତି ଦେବାର ସମୟ ଅର୍ଥାତ୍ ଶେଷ ବିଚାର ଦିନ ।

ଚିନ୍ତାରୁ ଫେରିଯାଉଅଛନ୍ତି—ଏ ବିଷୟରେ ମୋଟେ କିଛି ଚିନ୍ତା କରୁନାହାନ୍ତି ।

୪ । ସେମାନଙ୍କ ଗୁପ୍ତ ପରାମର୍ଶ ବିଷୟ ଜାଣିପାରି ମହାପୁରୁଷ ମୋହମ୍ମଦ ଏହା କହିଥିଲେ ।

୫ । ସେମାନେ—ଅବିଶ୍ୱାସକାରୀ ବିଧର୍ମୀ ଲୋକମାନେ ।

ଏହା—ଏହି କୋରାନ

ସ୍ୱପର ସମଷ୍ଟି=ମୋହମ୍ମଦ ସ୍ୱପ୍ନରେ ଯେଉଁ ବିଷୟସବୁ ଦେଖନ୍ତି ଏହା ତାହାର ସମଷ୍ଟି ଅଟେ ।

ସେମାନଙ୍କ ପୂର୍ବେ କୌଣସି ନଗର ଯାହାକୁ **ଅମ୍ଭେ** ଧ୍ୱଂସ କରିଅଛୁଁ ନିଦର୍ଶନ ଦେଖି ବିଶ୍ୱାସ କରିନାହିଁ; ତାହାହେଲେ ସେମାନେ କଅଣ ବିଶ୍ୱାସ କରିବେ ? ୬ ।

ଏବଂ ହେ ମୋହମ୍ମଦ, ତୁମ୍ଭ ପୂର୍ବେ **ଅମ୍ଭେ** ମନୁଷ୍ୟ ଛଡ଼ା ଅନ୍ୟ କାହାକୁ ପ୍ରେରଣ କରିନାହୁଁ, ଯେଉଁମାନଙ୍କ ପ୍ରତି ଅମ୍ଭେ ପ୍ରତ୍ୟାଦେଶ ଦେଇଥିଲୁଁ; ଅତଏବ ତୁମ୍ଭେମାନେ ସ୍ମାରକ ଗ୍ରନ୍ଥର ଅନୁଗାମୀମାନଙ୍କୁ ପଚାରି, ଯଦି ତୁମ୍ଭେମାନେ ଏ କଥା ନଜାଣିଥାଅ । ୭ ।

ଏବଂ **ଅମ୍ଭେ** ସେମାନଙ୍କୁ ଏପରି ଦେହବିଶିଷ୍ଟ କରିନଥିଲୁଁ ଯେ ସେମାନେ ଖାଦ୍ୟ ଭକ୍ଷଣ କରୁ-ନଥିଲେ ଏବଂ ସେମାନେ ଚିରସ୍ଥାୟୀ ମଧ୍ୟ ନଥିଲେ । ୮ ।

ତାପରେ ଅମ୍ଭେ ସେମାନଙ୍କ ସହିତ **ଅମ୍ଭର ଅଙ୍ଗୀକାର** ପୂର୍ଣ୍ଣ କରିଥିଲୁଁ: ତାପରେ ଅମ୍ଭେ ସେମାନଙ୍କୁ ଏବଂ ଯାହାକୁ ଇଚ୍ଛା ତାକୁ ମୁକ୍ତି ଦାନ କରିଥିଲୁଁ ଏବଂ ଅପରାଧୀମାନଙ୍କୁ ଧ୍ୱଂସ କରିଦେଇଥିଲୁଁ । ୯ ।

ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କପ୍ରତି ଏପରି ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁଁ ଯାହା ମଧ୍ୟରେ ତୁମ୍ଭମାନଙ୍କ **ପାଇଁ** ଉପଦେଶ ରହିଅଛି; ତେବେ **ସୁଦ୍ଧା** କଅଣ ତୁମ୍ଭେମାନେ ବୁଝିପାରୁନାହଁ ? ୧୦ ।

## ୨ୟ ବିଭାଗ

ଏପରି କେତେ ନଗର **ଅମ୍ଭେ** ଧ୍ୱଂସ କରିଅଛୁଁ ଯେଉଁଠାର ଲୋକମାନେ ଅତ୍ୟାଚାରୀ ଥିଲେ ଏବଂ ସେମାନଙ୍କ ପରେ ଅମ୍ଭେ ଅନ୍ୟ ସମ୍ପ୍ରଦାୟ ସୃଷ୍ଟି କରିଅଛୁଁ । ୧୧ ।

ତାପରେ ଯେତେବେଳେ ସେମାନେ **ଅମ୍ଭର** ଶାସ୍ତି ଅନୁଭବ କରିଥିଲେ, ସେତେବେଳେ ସେମାନେ ସେ ଶାସ୍ତିରୁ ପଳାଇବାର ଚେଷ୍ଟା କରିଥିଲେ । ୧୨ ।

---

୬ । ପରମେଶ୍ୱର କହୁଅଛନ୍ତି, "ଅଲୌକିକ ନିଦର୍ଶନ ପ୍ରକାଶ କରିବା ବୃଥା । କାରଣ ଏଥିପୂର୍ବେ ଅଲୌକିକ ନିଦର୍ଶନ ଉପସ୍ଥିତ ହେବା ପରେ ମଧ୍ୟ **ଅବିଶ୍ୱାସକାରୀମାନେ ବିଶ୍ୱାସ କରିନଥିଲେ**, ସୁତରାଂ ସେମାନଙ୍କୁ ଧ୍ୱଂସ କରାଯାଇ-ଥିଲା । ବର୍ତ୍ତମାନ ମଧ୍ୟ **ଅଲୌକିକ** ନିଦର୍ଶନ ଉପସ୍ଥିତ ହେଲେ **ମଧ୍ୟ ଅବିଶ୍ୱାସକାରୀମାନେ ବିଶ୍ୱାସ** କରିବେ ନାହିଁ ।"

୭ । **ପରମେଶ୍ୱର କୌଣସି ଯୁଗରେ ମନୁଷ୍ୟ** ଛଡ଼ା ଅନ୍ୟ କାହାକୁ ମନୁଷ୍ୟମାନଙ୍କର ଉପଦେଷ୍ଟା ସ୍ୱରୂପ ପ୍ରେରଣ କରିନାହାନ୍ତି । ଯେଉଁମାନେ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥମାନ **ଅନୁସରଣ** କରୁଅଛନ୍ତି ସେମାନେ ମଧ୍ୟ ଏହା ଭଲରୂପେ ଜାଣନ୍ତି ।"

୮ । ପୂର୍ବବର୍ତ୍ତୀ ଧର୍ମ ଉପଦେଷ୍ଟାମାନେ ସାଧାରଣ ମନୁଷ୍ୟମାନଙ୍କ ପରି ଖାଦ୍ୟ ଖାଉଥିଲେ ଏବଂ ସାଧାରଣ ମନୁଷ୍ୟ-ମାନଙ୍କ ପରି ସେମାନେ ମୃତ୍ୟୁ ପ୍ରାପ୍ତ ହୋଇଥିଲେ ।

୯ । ସେମାନଙ୍କ ସହିତ—ପ୍ରେରିତପୁରୁଷ ଧର୍ମଉପଦେଷ୍ଟାମାନଙ୍କ ସହିତ । ଯେଉଁମାନେ ପ୍ରେରିତ ପୁରୁଷମାନଙ୍କ ଉପରେ ବିଶ୍ୱାସ କରି ସତ୍‌କାର୍ଯ୍ୟ କରିଥିଲେ ପରମେଶ୍ୱର ସେମାନଙ୍କୁ ରକ୍ଷା କରିଥିଲେ ଏବଂ ଯେଉଁମାନେ ଅବିଶ୍ୱାସ କରି ବିରୁଦ୍ଧାଚରଣ କରିଥିଲେ ପରମେଶ୍ୱର ସେମାନଙ୍କୁ ଧ୍ୱଂସ କରିଦେଇଥିଲେ ।

୧୦ । ଗ୍ରନ୍ଥ—ପବିତ୍ର କୋରାନ ।

୧୩ । ଏହି ଶ୍ଳୋକରେ କଥିତ ପରମେଶ୍ୱରଙ୍କ ବ୍ୟଙ୍ଗୋକ୍ତି ଶୁଣି ସେମାନଙ୍କ ପ୍ଲୀହା ପାଣି ହୋଇଯାଇଥିଲା ଏବଂ ୧୪ଶ ଶ୍ଳୋକରେ ବର୍ଣ୍ଣିତ ଚିତ୍କାର କରିବାକୁ ଲାଗିଥିଲେ ।

୧୨ । ୧୩ । ପୂର୍ବବର୍ତ୍ତୀ ଅବିଶ୍ୱାସୀ ଓ ଅବାଧ୍ୟ ଲୋକମାନେ ପ୍ରେରିତ ପୁରୁଷମାନଙ୍କ ଉପରେ ବିଶ୍ୱାସ ନକରି ପରମେଶ୍ୱରଙ୍କ ଶାସ୍ତି ଉପସ୍ଥିତ ହେବାପାଇଁ ହଠ କରିବାରୁ ଯେତେବେଳେ ଶାସ୍ତି ପ୍ରକୃତରେ ଉପସ୍ଥିତ ହେଲା ସେତେବେଳେ

ପରମେଶ୍ୱର କହୁଥିଲେ "ତୁମ୍ଭେମାନେ ପଳାୟନ କରନା, ଏବଂ ଯେଉଁଠାରେ ତୁମ୍ଭେମାନେ ସୁଖ-ଭୋଗ ଓ ଅବସ୍ଥାନ କରୁଥିଲ ତୁମ୍ଭେମାନେ ସେହିଅଡ଼କୁ ଫେରିଯାଅ, କାରଣ ହୁଏତ ତୁମ୍ଭମାନଙ୍କୁ ପ୍ରଶ୍ନ କରାହେବ ।" ୧୩ ।

ସେମାନେ କହୁଥିଲେ, "ଆମ୍ଭମାନଙ୍କର ସର୍ବନାଶ ! ନିଶ୍ଚୟ ଆମ୍ଭେମାନେ ଅତ୍ୟାଚାରୀ ଥିଲୁଁ" ।୧୪।

ଆମ୍ଭେ ସେମାନଙ୍କୁ ସମୂଳେ କର୍ତ୍ତିତ ଶସ୍ୟ କ୍ଷେତ୍ର ଏବଂ ନିର୍ବାପିତ ପାଉଁଶ ପରି ନିପାତ ନ କରିବା ପର୍ଯ୍ୟନ୍ତ ସେମାନଙ୍କର ଏହି ଚିତ୍କାର ବନ୍ଦ ହୋଇ ନଥିଲା । ୧୫ ।

ଏବଂ ଆମ୍ଭେ ଆକାଶମଣ୍ଡଳ ଓ ଭୂମଣ୍ଡଳକୁ ଏବଂ ସେମାନଙ୍କ ମଧ୍ୟରେ ଥିବା ବିଷୟମାନଙ୍କୁ ବୃଥା କ୍ରୀଡ଼ା ପାଇଁ ସୃଷ୍ଟି କରିନାହୁଁ । ୧୬ ।

ଯଦି ଆମ୍ଭେ ଖେଳନା ନିର୍ମ୍ମାଣ କରିବାକୁ ଇଚ୍ଛା କରିଥାନ୍ତୁ ତେବେ ନିଶ୍ଚୟ ଆମ୍ଭେ ନିଜ ପାଖରୁ ତାହା ନିର୍ମ୍ମାଣ କରିଥାନ୍ତୁ, ଯଦି ଏହା କରିବାର ଆବଶ୍ୟକ ହୁଅନ୍ତା । ୧୭ ।

ବରଂ ଆମ୍ଭେ ଅସତ୍ୟ ଉପରେ ସତ୍ୟକୁ ନିକ୍ଷେପ କରୁଁ ଯେ ତାହାର ମସ୍ତକ ଭଙ୍ଗ କରେ, ତାପରେ ତାହା ଅନ୍ତର୍ହିତ ହୋଇଯାଏ; ଏବଂ ତୁମ୍ଭେମାନେ ଯାହା ବର୍ଣ୍ଣନା କରୁଅଛ ସେଥିପାଇଁ ତୁମ୍ଭମାନଙ୍କର ସର୍ବନାଶ । ୧୮ ।

ଏବଂ ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହା ଅଛି ତାହା ତାଙ୍କର; ଏବଂ ଯେଉଁମାନେ ତାଙ୍କ ନିକଟରେ ଅଛନ୍ତି ସେମାନେ ତାଙ୍କ ଉପାସନା ହେତୁ ଅହଙ୍କାର କରନ୍ତି ନାହିଁ ଏବଂ ଉପାସନାରେ କ୍ଲାନ୍ତ ମଧ୍ୟ ହୁଅନ୍ତି ନାହିଁ ।୧୯।

ସେହିମାନେ ରାତ୍ରିରେ ଓ ଦିନରେ ତାଙ୍କ ମହିମା କୀର୍ତ୍ତନ କରନ୍ତି ଏବଂ କଦାପି କ୍ଲାନ୍ତ ହୁଅନ୍ତି ନାହିଁ । ୨୦ ।

ତେବେ କଣ ସେମାନେ ପୃଥିବୀରୁ ଉପାସ୍ୟମାନଙ୍କୁ ଗ୍ରହଣ କରିଅଛନ୍ତି ଯେଉଁମାନେ ମୃତକୁ ଜୀବିତ କରିପାରନ୍ତି ? ୨୧ ।

---

ସେମାନେ ସେଥିରୁ ରକ୍ଷା ପାଇବା ପାଇଁ ପଳାୟନ କରିବାକୁ ଚେଷ୍ଟା କଲେ । ସେତେବେଳେ ଐଶୀ ବାଣୀ ହେଲା, "ତୁମ୍ଭେମାନେ ପଳାୟନ କର ଏଥିରୁ ରକ୍ଷା ପାଇପାରିବ ନାହିଁ । ଯେଉଁ ଶାସ୍ତି ଉପସ୍ଥିତ ହେବାପାଇଁ ତୁମ୍ଭେମାନେ ହଠ କରୁଥିଲ, ତାହା ଉପସ୍ଥିତ ହୋଇଅଛି । ତୁମ୍ଭେମାନେ ନିଶ୍ଚୟ ନିଜ ନିଜ ଅପରାଧର ଶାସ୍ତି ଭୋଗ କରିବ ।"

୧୪ । ୧୫ । ସେତେବେଳେ ସେମାନେ ଅନୁତାପ କରିଥିଲେ, ମାତ୍ର ତଦ୍ଦ୍ୱାରା କିଛି ଲାଭ ହୋଇନଥିଲା । ସେମାନେ ସମ୍ପୂର୍ଣ୍ଣରୂପେ ଧ୍ୱଂସ ପ୍ରାପ୍ତ ହୋଇଥିଲେ ।

୧୬ । ୧୭ । ପରମେଶ୍ୱର ଏହି ବିଶ୍ୱ ସଂସାରକୁ ଲକ୍ଷ୍ୟହୀନ କ୍ରୀଡ଼ା କୌତୁକ ପାଇଁ ସୃଷ୍ଟି କରିନାହାନ୍ତି । ଯଦି ପରମେଶ୍ୱରଙ୍କ ସେପରି ଇଚ୍ଛା ଥାଆନ୍ତା ତେବେ କେତେ ବିଶ୍ୱ ସଂସାର ତାଙ୍କର ଇଙ୍ଗିତରେ ସୃଷ୍ଟ ଓ ଧ୍ୱଂସ ହେଉଥାନ୍ତା । ସଂସାରକୁ ଏପରି ଶୃଙ୍ଖଳାବଦ୍ଧ ଓ ନିୟମାଧୀନ କରିବାର ଆବଶ୍ୟକ ହୁଅନ୍ତା ନାହିଁ ।

୧୮ । ସଂସାରକୁ ସୃଷ୍ଟି କରିବାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ସତ୍ୟର ପ୍ରତିଷ୍ଠା ଏବଂ ମିଥ୍ୟାର ବିନାଶ ।

ଯଦି ଆକାଶମଣ୍ଡଳ ଓ ପୃଥିବୀ ଏ ଦୁହିଁଙ୍କ ମଧ୍ୟରେ ପରମେଶ୍ବରଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ ଥାଆନ୍ତେ ତେବେ ନିଶ୍ଚୟ ସେମାନଙ୍କ ମଧ୍ୟରେ ଅଶାନ୍ତି ଉପସ୍ଥିତ ହୁଅନ୍ତା, ଅତଏବ ସେମାନେ ଯାହା ଆରୋପ କରନ୍ତି ସିଂହାସନର ଅଧିକାରୀ ସେଥିରୁ ପବିତ୍ର । ୨୨ ।

ସେ ଯାହା କରନ୍ତି ସେ ବିଷୟରେ ପ୍ରଶ୍ନ ହେବ ନାହିଁ; ଏବଂ ସେହିମାନଙ୍କୁହିଁ ସେମାନଙ୍କ କର୍ମ ବିଷୟରେ ପ୍ରଶ୍ନ କରାହେବ । ୨୩ ।

ତେବେ କଅଣ ସେମାନେ ତାଙ୍କ ପରିବର୍ତ୍ତିରେ ଅନ୍ୟ ଉପାସ୍ୟ ଗ୍ରହଣ କରିଅଛନ୍ତି ? ତୁମ୍ଭେ କୁହ, "ତୁମ୍ଭମାନଙ୍କର ସନ୍ତୋଷ ଜନକ ପ୍ରମାଣ ଆଣ; ଯେଉଁମାନେ ଆମ୍ଭ ସଙ୍ଗରେ ଅଛନ୍ତି ଏହା ସେମାନଙ୍କ ପାଇଁ ଉପଦେଶ ଅଟେ ଏବଂ ଯେଉଁମାନେ ଆମ୍ଭର ପୂର୍ବବର୍ତ୍ତୀ ସେମାନଙ୍କ ପାଇଁ ମଧ୍ୟ ଏହା ଉପଦେଶଥିଲା", କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟକୁ ଜାଣନ୍ତି ନାହିଁ, ସେଥିପାଇଁ ସେମାନେ ( ସତ୍ୟରୁ ) ବିମୁଖ ହୋଇ ଥାଆନ୍ତି ।୨୪।

ଏବଂ ହେ ମୋହମ୍ମଦ ଆମ୍ଭେ ତୁମ୍ଭର ପୂର୍ବେ ଏପରି କୌଣସି ପ୍ରେରିତପୁରୁଷଙ୍କୁ ପ୍ରେରଣ କରିନାହୁଁ ଯାହାଙ୍କୁ ଆମ୍ଭେ ପ୍ରତ୍ୟାଦେଶ କରିନାହୁଁ ଯେ ନିଶ୍ଚୟ ଆମ୍ଭ ବ୍ୟତୀତ ଅନ୍ୟ ଉପାସ୍ୟ ନାହିଁ, ଅତଏବ ଆମ୍ଭରହିଁ ଉପାସନା କର ।୨୫।

ଏବଂ ସେମାନେ କହନ୍ତି ଦୟାମୟ ପରମେଶ୍ବର ସନ୍ତାନ ଗ୍ରହଣ କରିଅଛନ୍ତି", ସେ (ଏ ବିଷୟରେ) ପବିତ୍ର; ବରଂ ସେମାନେ (ତାଙ୍କର) ସମ୍ମାନିତ ସେବକ ମାତ୍ର ।୨୬।

ପରମେଶ୍ବରଙ୍କ ଆଦେଶ ବ୍ୟତୀତ ସେମାନେ କିଛି କହନ୍ତି ନାହିଁ ଏବଂ ତାଙ୍କର ଆଦେଶ ଅନୁଯାୟୀ ସେମାନେ କାର୍ଯ୍ୟ କରନ୍ତି । ୨୭।

---

୨୨ । ସେଥିରୁ ପବିତ୍ର—ଏକମାତ୍ର ପରମେଶ୍ବରଙ୍କ ଛଡ଼ା ଆଉ କେହି ଉପାସ୍ୟ ନାହାନ୍ତି ।
ବିଶ୍ୱ ସଂସାରର ସୃଷ୍ଟି ସ୍ଥିତି ଲୟ ସକାଶେ ଏକମାତ୍ର ପରମେଶ୍ବରଙ୍କ ଛଡ଼ା ଯଦି ଅନ୍ୟ ଅଧିକାରୀମାନେ ଥାଆନ୍ତେ ତେବେ ସଂସାରରେ ଶୃଙ୍ଖଳା ପରିବର୍ତ୍ତରେ ଅଶାନ୍ତି ଉପସ୍ଥିତ ହୁଅନ୍ତା । ଦେଖ ଟୀକା ୧୭ ଅଧ୍ୟାୟ ୪୨-୪୪ ଶ୍ଳୋକ ।

୨୪ । ଉପଦେଶ ଥିଲା—ପବିତ୍ର କୋରାନ ପୂର୍ବରୁ ଯେଉଁସବୁ ଧର୍ମଗ୍ରନ୍ଥ ଅବତୀର୍ଣ୍ଣ ହୋଇଥିଲା ସେ ସବୁଥିରେ ପରମେଶ୍ବରଙ୍କ ଏକତ୍ବ ଓ ଅଦ୍ୱିତୀୟତାର ଶିକ୍ଷା ରହିଥିଲା । ବର୍ତ୍ତମାନ ପବିତ୍ର କୋରାନ ସେହି ଏକତ୍ବବାଦର ଶିକ୍ଷା ଓ ଉପଦେଶ ଦେଉଅଛି ।
ଯେଉଁମାନେ ଆମ୍ଭ ସଙ୍ଗରେ ଅଛନ୍ତି—ମହାପୁରୁଷ ମୋହମ୍ମଦଙ୍କ ସମସାମୟିକ ଲୋକମାନଙ୍କ ପାଇଁ ।

୨୬ । ସେମାନେ କହନ୍ତି—ଅବିଶ୍ୱାସକାରୀ ଇହୁଦୀ ଓ ଖ୍ରୀଷ୍ଟାନମାନେ ।
ବରଂ ସେମାନେ—ଅର୍ଥାତ୍ ଯେଉଁମାନଙ୍କୁ ଇହୁଦୀ ଓ ଖ୍ରୀଷ୍ଟାନମାନେ ପରମେଶ୍ବରଙ୍କ ସନ୍ତାନ ବୋଲି ପ୍ରକାଶ କରୁଅଛନ୍ତି ।

୨୭ । ସେମାନେ ପରମେଶ୍ବରଙ୍କ ଆଦେଶ ବ୍ୟତୀତ କୌଣସି କଥା ପ୍ରକାଶ କରନ୍ତି ନାହିଁ, ବରଂ ତାଙ୍କର ଆଦେଶ ଅନୁଯାୟୀ କାର୍ଯ୍ୟ କରନ୍ତି ।

ଯାହା ସେମାନଙ୍କ ସମ୍ମୁଖରେ ଏବଂ ଯାହା ସେମାନଙ୍କ ପଶ୍ଚାତରେ ଅଛି ତାହା ସେ ଅବଗତ ଅଛନ୍ତି; ଏବଂ ସେ ଯାହାପ୍ରତି ସନ୍ତୁଷ୍ଟ ତାଙ୍କ ବ୍ୟତୀତ ଅନ୍ୟ କାହାରି ସୁପାରିସ ସେମାନେ କରିପାରନ୍ତି ନାହିଁ ଏବଂ ସେମାନେ ତାଙ୍କରି ଭକ୍ତି ଭୟରେ କମ୍ପିତ ହୁଅନ୍ତି ।୨୮।

ସେମାନଙ୍କ ମଧ୍ୟରୁ ଯଦି କେହି କହିବେ "ତାଙ୍କ ପରିବର୍ତ୍ତରେ ଅମ୍ଭେହିଁ ଉପାସ୍ୟ" ତେବେ ଅମ୍ଭେ ତାହାକୁ ପ୍ରତିଫଳରେ ନରକ ପ୍ରଦାନ କରିବୁଁ, ଅତ୍ୟାଚାରୀମାନଙ୍କୁ ଅମ୍ଭେ ଏହିପରି ପ୍ରତିଫଳ ପ୍ରଦାନ କରି ଥାଉଁ ।୨୯।

## ୩ୟ ବିଭାଗ

ତେବେ କଅଣ ଅବିଶ୍ୱାସକାରୀମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ଅକାଶ ମଣ୍ଡଳ ଓ ଭୂମଣ୍ଡଳ ବନ୍ଦ ହୋଇ ଯାଇଥିଲା, ତାପରେ ଅମ୍ଭେ ଉଭୟକୁ ଖୋଲି ଦେଇଅଛୁଁ ? ଏବଂ ପ୍ରତ୍ୟେକ ପ୍ରାଣଧାରୀ ଜୀବକୁ ଜଳରୁ ସୃଷ୍ଟି କରିଅଛୁଁ, ତେବେ ସୁଦ୍ଧା କଅଣ ସେମାନେ ବିଶ୍ୱାସ କରିବେ ନାହିଁ ?୩୦।

ଏବଂ ଅମ୍ଭେ ଏଥିପାଇଁ ଭୂପୃଷ୍ଠରେ ସୁଦୃଢ଼ ପର୍ବତମାନଙ୍କୁ ସୃଷ୍ଟି କରିଅଛୁଁ ଯେ ଏହା ସେମାନଙ୍କ ସହିତ ଅନ୍ଦୋଳିତ ନ ହେବ, ଏବଂ ଅମ୍ଭେ ତନ୍ମଧ୍ୟରେ ପ୍ରଶସ୍ତ ପଥମାନ ନିର୍ମାଣ କରି ଦେଇଅଛୁଁ ଯେପରି ସେମାନେ ସୁପଥରେ ଚାଳିତ ହେବେ ।୩୧।

ଏବଂ ଅମ୍ଭେ ଅକାଶକୁ ସୁରକ୍ଷିତ ଛାଦ ସ୍ୱରୂପ ସୃଷ୍ଟି କରିଅଛୁଁ; ଏବଂ ସେମାନେ ଏହାର ନିଦର୍ଶନମାନଙ୍କରୁ ବିମୁଖ ହୋଇ ଅଛନ୍ତି ।୩୨।

ଏବଂ ସେହି ରାତି ଓ ଦିନ ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ସୃଷ୍ଟି କରି ଅଛନ୍ତି ସମସ୍ତେ ନିର୍ଦ୍ଦିଷ୍ଟ କକ୍ଷରେ ପରିଭ୍ରମଣ କରୁ ଅଛନ୍ତି ।୩୩।

---

୨୮ । ପରମେଶ୍ୱରଙ୍କ ଆଦେଶ ବ୍ୟତୀତ ସେମାନେ କାହାରି ସୁପାରିସ କରିପାରିବେ ନାହିଁ ।
ସୁପାରିସ—ଯେଉଁମାନେ ସୁପାରିସ ପ୍ରାପ୍ତି ପାଇଁ ଯୋଗ୍ୟତା ଅର୍ଜନ କରିଅଛନ୍ତି, କେବଳ ସେହିମାନଙ୍କ ପାଇଁ ପରମେଶ୍ୱର ସୁପାରିସର ଅନୁମତି ଦେବେ । ୨ୟ ଅଧ୍ୟାୟ ୨୫୫ ଶ୍ଳୋକ ଦେଖ ।

୨୯ । ଯଦି କୌଣସି ଉପଦେଷ୍ଟା ଲୋକମାନଙ୍କୁ ଏପରି ଶିକ୍ଷା ଦିଅନ୍ତି କି 'ପରମେଶ୍ୱରଙ୍କୁ ପରିତ୍ୟାଗ କରି ଅମ୍ଭର ଉପାସନା କର' ସେ ଉପଦେଷ୍ଟା ନୁହନ୍ତି, ବରଂ ଭଣ୍ଡ ଓ ନାରକୀ ।

୩୦ । ଅକାଶମଣ୍ଡଳ ଓ ଭୂମଣ୍ଡଳ ବନ୍ଦ ହେବା ଅର୍ଥ ଅକାଶରୁ ଜଳବୃଷ୍ଟି ବନ୍ଦ ହେବା ଏବଂ ତାହାର ଫଳରେ ଅନାବୃଷ୍ଟି ହେତୁ ପୃଥିବୀରୁ ଶସ୍ୟ ଉତ୍ପନ୍ନ ବନ୍ଦ ହୋଇ ଦୁର୍ଭିକ୍ଷ ହେବା । ଅକାଶ ଓ ଭୂମଣ୍ଡଳ ଖୋଲିଦେବା ଅର୍ଥ ଅକାଶରୁ ସୁବୃଷ୍ଟି ହୋଇ ପୃଥିବୀରେ ଭଲ ଶସ୍ୟ ଉତ୍ପନ୍ନ ହେବାଦ୍ୱାରା ଲୋକମାନଙ୍କର ସୁଖ ବୃଦ୍ଧି ହେବା । ମହାପୁରୁଷ ମୋହମ୍ମଦଙ୍କ ଅବିର୍ଭାବ ପୂର୍ବେ ଅରବ ଦେଶରେ ବହୁ ବର୍ଷବ୍ୟାପୀ ଅନାବୃଷ୍ଟି ଓ ଦୁର୍ଭିକ୍ଷ ହୋଇ ଲୋକମାନେ କଷ୍ଟ ଭୋଗ କରୁଥିଲେ । ତାଙ୍କର ଅବିର୍ଭାବ ପରେ ପରମେଶ୍ୱରଙ୍କ କୃପାରୁ ଅନାବୃଷ୍ଟି ଓ ଦୁର୍ଭିକ୍ଷ ଦୂର ହୋଇ ଲୋକମାନେ ସୁଖ ଭୋଗ କରିବାକୁ ଲାଗିଲେ । ଏହା ଐତିହାସିକ ସତ୍ୟ ଅଟେ ।

୩୧ । ଭୂପୃଷ୍ଠରେ ପର୍ବତ ସ୍ଥାପନ ବିଷୟରେ ୧୬ ଅଧ୍ୟାୟ; ୧୫ ଶ୍ଳୋକ ଓ ତହିଁର ଟୀକା ଦେଖ ।

୩୨ । ସୁରକ୍ଷିତ ଛାଦ—ଛାଦରୁ ପତନରୁ ରକ୍ଷା କରାଯାଇଅଛି, ଏ ଛାଦ କେବେହେଁ ପଡ଼ିଯିବ ନାହିଁ ।

୩୩ । ପରିଭ୍ରମଣ କରୁଅଛନ୍ତି—୩୬ ଅଧ୍ୟାୟର ୪୦ ଶ୍ଳୋକ ଦେଖ ।
ଚନ୍ଦ୍ର, ସୂର୍ଯ୍ୟ, ତାରା ପ୍ରଭୃତି ଯାବତୀୟ ଜ୍ୟୋତିଷ୍କ ଗତିଶୀଳ ଅଟନ୍ତି ।

ଏବଂ ଅମ୍ଭେ ତୁମ୍ଭ ପୂର୍ବେ କୌଣସି ମନୁଷ୍ୟଙ୍କୁ ଚିରସ୍ଥାୟୀ କରିନାହୁଁ, ତାପରେ ଯଦି ତୁମ୍ଭେ ମୃତ୍ୟୁ ଲାଭକର ତେବେ କଅଣ ସେମାନେ ଚିରକାଳ ବାସ କରିବେ ? ୩୪ ।

ପ୍ରତ୍ୟେକ ଜୀବ ମୃତ୍ୟୁର ଆସ୍ୱାଦ ଗ୍ରହଣ କରିବ, ଏବଂ ଅମ୍ଭେ ତୁମ୍ଭମାନଙ୍କୁ ଭଲ ଓ ମନ୍ଦର କଷଟି ଦ୍ୱାରା ପରୀକ୍ଷା କରିଥାଉ, ଏବଂ ତୁମ୍ଭମାନଙ୍କୁ ଅମ୍ଭର ଅଡ଼କୁ ଫେରି ଆସିବାକୁ ହେବ ।୩୫।

ଏବଂ ଯେତେବେଳେ ଅବିଶ୍ୱାସକାରୀମାନେ ତୁମ୍ଭଙ୍କୁ ଦେଖନ୍ତି ସେତେବେଳେ ସେମାନେ ତୁମ୍ଭଙ୍କୁ ବିଦ୍ରୂପ ନକରି ଛାଡ଼ନ୍ତି ନାହିଁ (ଏବଂ ଏପରି କହନ୍ତି) "ଏ ଲୋକ କଅଣ ସେହି ଯେ ତୁମ୍ଭମାନଙ୍କର ଉପାସ୍ୟମାନଙ୍କ (ଅସାରତା) ସମ୍ବନ୍ଧରେ ବର୍ଣ୍ଣନା କରିଥାଏ ?" ବରଂ ସେହିମାନେହିଁ ଦୟାମୟଙ୍କ ସମ୍ବନ୍ଧରେ ଯାହା ବର୍ଣ୍ଣନା କରାଯାଏ ତାହା ପ୍ରତି ମିଥ୍ୟାରୋପ କରିଥାନ୍ତି ।୩୬।

ମନୁଷ୍ୟ ସତ୍ୱରତା ସହିତ ସୃଷ୍ଟ ହୋଇ ଅଛି; ଅମ୍ଭେ ଶୀଘ୍ର ତୁମ୍ଭମାନଙ୍କୁ ଅମ୍ଭର ନିଦର୍ଶନମାନ ଦେଖାଇବୁଁ, ଅତଏବ ତୁମ୍ଭେମାନେ ସତ୍ୱରତା କରନା ।୩୭।

ଏବଂ ସେମାନେ କହନ୍ତି, "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ ତେବେ କେବେ ଏହି ପ୍ରତିଶ୍ରୁତି ଘଟିବ ?"୩୮ ।

ଯଦି ଅବିଶ୍ୱାସକାରୀମାନେ ସେହି ସମୟ ଜାଣନ୍ତେ ଯେତେବେଳେ ସେମାନେ ନିଜ ଆଗରୁ କିମ୍ବା ନିଜ ପଛଆଡ଼ୁ ନରକର ଅଗ୍ନିକୁ ଏଡ଼େଇ ପାରିବେ ନାହିଁ ଏବଂ ସେମାନେ ସାହାଯ୍ୟ ମଧ୍ୟ ପାଇବେ ନାହିଁ, ତେବେ ସେମାନେ ଶାସ୍ତି ପାଇଁ ଜଲ୍‌ଦି କରନ୍ତେ ନାହିଁ ।୩୯।

ବରଂ ସେହି ସମୟ ସେମାନଙ୍କ ନିକଟ ଅକସ୍ମାତ ଉପସ୍ଥିତ ହେବ, ସେତେବେଳେ ସେମାନେ ସ୍ତମ୍ଭିତ ହୋଇଯିବେ; ତାପରେ ସେମାନେ ତାହା ଏଡ଼େଇ ପାରିବେ ନାହିଁ ଏବଂ ସେମାନେ ଅବକାଶ ମଧ୍ୟ ପାଇବେ ନାହିଁ ।୪୦।

ଏବଂ ନିଶ୍ଚୟ ତୁମ୍ଭ ପୂର୍ବେ ମଧ୍ୟ ପ୍ରେରିତ ପୁରୁଷମାନଙ୍କ ସହିତ ବିଦ୍ରୂପ କରା ହୋଇଥିଲା; ତାପରେ ସେମାନଙ୍କ ମଧ୍ୟରେ ଯେଉଁମାନେ ବିଦ୍ରୂପ କରୁଥିଲେ, ସେମାନେ ଯେଉଁ ବିଷୟରେ ବିଦ୍ରୂପ କରୁଥିଲେ ସେହି ବିଦ୍ରୂପ ସେମାନଙ୍କୁ ଘେରି ନେଇଥିଲା ।୪୧।

## ୪ ର୍ଥ ବିଭାଗ ।

ତୁମ୍ଭେ କୁହ, "ଦୟାମୟଙ୍କ କୋପରୁ କିଏ ତୁମ୍ଭମାନଙ୍କୁ ରାତିରେ ଓ ଦିନରେ ରକ୍ଷା କରୁଅଛି" ? ବରଂ ସେମାନେ ନିଜ ପାଳନକର୍ତ୍ତାଙ୍କ ସ୍ମରଣରୁ ବିମୁଖ ହେଉ ଅଛନ୍ତି ।୪୨

ସେମାନଙ୍କ ପାଇଁ କଅଣ ଏପରି ଉପାସ୍ୟମାନେ ଅଛନ୍ତି ଯେ ସେମାନଙ୍କୁ ଅମ୍ଭ ଶାସ୍ତିରୁ ରକ୍ଷା କରୁଅଛନ୍ତି ? ସେମାନେତ ନିଜକୁ ରକ୍ଷା କରି ପାରିବେ ନାହିଁ ଏବଂ ସେମାନେ ଅମ୍ଭଠାରୁ ମଧ୍ୟ ରକ୍ଷା ପାଇ ପାରିବେ ନାହିଁ ।୪୩।

---

୩୭ । ମନୁଷ୍ୟ ସ୍ୱଭାବତଃ ଅଧୀର ।

୪୧ । ସେମାନେ ଯେଉଁ ଶାସ୍ତି ବିଷୟରେ ଉପହାସ କରୁଥିଲେ ସେହି ଶାସ୍ତି ସେମାନଙ୍କୁ ଘେରି ନେଇଥିଲା ।

ବରଂ ଅମ୍ଭେ ସେମାନଙ୍କୁ ଓ ସେମାନଙ୍କର ପୂର୍ବପୁରୁଷମାନଙ୍କୁ ସୁଖ ସମ୍ପଦ ଦାନ କରିଥିଲୁଁ ଯେପର୍ଯ୍ୟନ୍ତ କି ସେମାନଙ୍କର ପରମାୟୁ ଶେଷ ହୋଇଥିଲା; ତେବେ ସୁଦ୍ଧା ସେମାନେ କଅଣ ଲକ୍ଷ୍ୟ କରୁନାହାନ୍ତି ଯେ ଅମ୍ଭେ ପୃଥିବୀକୁ ତାହାର ପ୍ରାନ୍ତମାନଙ୍କରୁ ସଙ୍କୁଚିତ କରି ଆଣୁଅଛୁଁ ? ତାପରେ ସେମାନେ କଅଣ ପରାକାନ୍ତ ହେବେ ? ।୪୪।

ତୁମ୍ଭେ କୁହ, "ଅମ୍ଭେ ତୁମ୍ଭମାନଙ୍କୁ କେବଳ ପ୍ରତ୍ୟାଦେଶ ଦ୍ୱାରା ଭୟ ପ୍ରଦର୍ଶନ କରୁଅଛୁଁ", ଏବଂ ଯେତେବେଳେ ଭୟ ପ୍ରଦର୍ଶନ କରାହୁଏ, ସେତେବେଳେ କାଲକୁ ଡ଼ାକିଲେ ମଧ୍ୟ ସେ ଶୁଣି ପାରେନା ।୪୫।

ଏବଂ ଯଦି ତୁମ୍ଭର ପାଳନକର୍ତ୍ତାଙ୍କର ଶାସ୍ତିରୁ ଗୋଟିଏ ଫୁତ୍କାର ସେମାନଙ୍କୁ ସ୍ପର୍ଶ କରେ, ତେବେ ସେମାନେ ନିଶ୍ଚୟ କହିବେ; "ଅମ୍ଭମାନଙ୍କର ସର୍ବନାଶ । ନିଶ୍ଚୟ ଅମ୍ଭେମାନେ ଅତ୍ୟାଗ୍ରହୀ ଥିଲୁଁ" । ।୪୬।

ଏବଂ ପୁନରୁତ୍‌ଥାନ ଦିବସରେ ଅମ୍ଭେ ନ୍ୟାୟର ତୁଳାଦଣ୍ଡ ସ୍ଥାପନ କରିବୁଁ, ସେତେବେଳେ କେହି ଅତ୍ୟାଗ୍ରହୀତ ହେବେ ନାହିଁ; ଏବଂ ଯଦି ତାହା ସୋରିଷ ପରିମାଣରେ ମଧ୍ୟ ହୁଏ ତେବେ ତାକୁ ମଧ୍ୟ ଅମ୍ଭେ (ହିସାବରେ) ଆଣିବୁ ଏବଂ ଅମ୍ଭେହିଁ ହିସାବ ଗ୍ରହଣକାରୀ ରୂପେ ଯଥେଷ୍ଟ ।୪୭।

ଏବଂ ନିଶ୍ଚୟ ଅମ୍ଭେ ମୂସା ଓ ହାରୁନଙ୍କୁ ପ୍ରଭେଦକାରୀ ଗ୍ରନ୍ଥ ଓ ଅଲୋକ ଏବଂ ଧର୍ମଭୀରୁ ମାନଙ୍କପାଇଁ ଉପଦେଶ ଦେଇଥିଲୁଁ; ।୪୮।

ଯେଉଁମାନେ ଅଦୃଶ୍ୟ ବିଷୟରେ ନିଜ ପାଳନକର୍ତ୍ତାଙ୍କୁ ଭକ୍ତି ଭୟ କରନ୍ତି, ଏବଂ ସେହିମାନେହିଁ ସେହି ସମୟ ସମ୍ବନ୍ଧରେ, ଭୀତ ହୋଇ ଥାଅନ୍ତି ।୪୯।

ଏବଂ ଏହାହିଁ ମଙ୍ଗଳମୟ ଉପଦେଶ ଯାହା ଅମ୍ଭେ ଅବତୀର୍ଣ୍ଣ କରିଅଛୁଁ, ତେବେ ସୁଦ୍ଧା କଅଣ ତୁମ୍ଭେମାନେ ଏହାକୁ ଅଗ୍ରାହ୍ୟ କରିବ ? ।୫୦।

## ୫ମ ବିଭାଗ ।

ଏବଂ ନିଶ୍ଚୟ ଅମ୍ଭେ ଇବ୍ରାହିମଙ୍କୁ ପୂର୍ବରୁ ସରଳ ପଥ ଦେଇଥିଲୁଁ ଏବଂ ଅମ୍ଭେ ତାଙ୍କ ସମ୍ବନ୍ଧରେ ଭଲରୂପେ ଅବଗତ ଥିଲୁଁ ।୫୧।

---

୪୪ । ପୃଥିବୀକୁ ସଙ୍କୁଚିତ କରି ଆଣୁଅଛୁଁ—ଅର୍ଥାତ୍ ସତ୍ୟ ସନାତନ ଇସଲାମ ଧର୍ମର କ୍ରମଶଃ ଉନ୍ନତି ହେତୁ ଅବିଶ୍ୱାସକାରୀ ବିଧର୍ମୀମାନଙ୍କ ପ୍ରଭାବ ଓ ପ୍ରତିପତ୍ତି ପୃଥିବୀରେ କ୍ରମଶଃ କମି ହୋଇଆସୁଅଛି ।

୪୬ । ଫୁତ୍କାର—ଅଣୁମାତ୍ର ।

୪୭ । କେହି ଅତ୍ୟାଗ୍ରହୀତ ହେବେ ନାହିଁ—କାହାର ନ୍ୟାଯ୍ୟ ପୁରସ୍କାର କମ କରି ଦିଆଯିବ ନାହିଁ କିମ୍ବା କାହାର ଶାସ୍ତି ଅନ୍ୟାୟ ଭାବରେ ବଢ଼ାଇ ଦିଆଯିବ ନାହିଁ ।

୪୮ । ମୂସା ଓ ତାଙ୍କ ଭାଇ ହାରୁନଙ୍କୁ ତିନୋଟି ବିଷୟ ଦିଆଯାଇ ଥିବାର ଏଠାରେ ଉଲ୍ଲେଖ ଅଛି । (୧) ସତ୍ୟ ଓ ମିଥ୍ୟା ମଧ୍ୟରେ ପ୍ରଭେଦକାରୀ ଗ୍ରନ୍ଥ ତଓରାତ; (୨) ସେହି ଗ୍ରନ୍ଥରେ ଧର୍ମଭୀରୁମାନଙ୍କ ପାଇଁ ଅଲୋକ ଥିଲା ଏବଂ (୩) ଉପଦେଶ ଥିଲା ।

୫୦ । ମହାପୁରୁଷ ମୂସାଙ୍କୁ ଯେପରି ଧର୍ମଗ୍ରନ୍ଥ ତଓରାତ୍ ଦିଆଯାଇଥିଲା ମହାପୁରୁଷ ମୋହମ୍ମଦଙ୍କୁ ମଧ୍ୟ ସେହିପରି ଧର୍ମଗ୍ରନ୍ଥ କୋରାନ ଦିଆଯାଇଅଛି ।

୫୧ । ଅବଗତ ଥିଲୁଁ—ଅମ୍ଭେ ଜାଣିଥିଲୁ ଯେ ଇବ୍ରାହିମ ସରଳ ପଥ ଗ୍ରହଣ ପାଇଁ ଉପଯୁକ୍ତ ଥିଲେ ।

ଯେତେବେଳେ ସେ ତାଙ୍କର ପିତା ଏବଂ ତାଙ୍କର ସମ୍ପ୍ରଦାୟକୁ କହିଥିଲେ, "ଏଗୁଡ଼ିକ କାହାର ପ୍ରତିମୂର୍ତ୍ତି ଯାହା ପ୍ରତି ତୁମ୍ଭେମାନେ ଅନୁରକ୍ତ ହୋଇଅଛ ?" ।୫୨।

ସେମାନେ କହିଥିଲେ, "ଅମ୍ଭେମାନେ ଅମ୍ଭମାନଙ୍କର ପୂର୍ବ ପୁରୁଷମାନଙ୍କୁ ଏମାନଙ୍କର ଉପାସନା କରିବାର ପାଇଥିଲୁଁ" ।୫୩।

ଇବ୍ରାହିମ କହିଥିଲେ, "ନିଶ୍ଚୟ ତୁମ୍ଭେମାନେ ଓ ତୁମ୍ଭମାନଙ୍କର ପୂର୍ବପୁରୁଷମାନେ ସ୍ପଷ୍ଟ ଭ୍ରାନ୍ତିରେ ରହିଅଛ" ।୫୪।

ସେମାନେ କହିଥିଲେ, "ତୁମ୍ଭେ କଅଣ ଅମ୍ଭମାନଙ୍କ ନିକଟ ସତ୍ୟ ଅଣିଅଛ ଅଥବା ତୁମ୍ଭେ କୌତୁକ କରୁଅଛ" ? ।୫୫।

ଇବ୍ରାହିମ କହିଥିଲେ, "(ଏହା କୌତୁକର ବିଷୟ ନୁହେ) ବରଂ ତୁମ୍ଭମାନଙ୍କର ପାଳନକର୍ତ୍ତାହିଁ ଅକାଶ ମଣ୍ଡଳ ଓ ଭୂମଣ୍ଡଳର ପ୍ରଭୁ ଯେ ସେମାନଙ୍କୁ ସୃଷ୍ଟି କରିଅଛନ୍ତି, ଏବଂ ଅମ୍ଭେ ଏହିବିଷୟରେ ସାକ୍ଷୀମାନଙ୍କ ଅନ୍ତର୍ଗତ" ।୫୬।

"ଏବଂ ପରମେଶ୍ୱରଙ୍କ ଶପଥ । ତୁମ୍ଭେମାନେ ପିଠି ଫେରାଇ ଚାଲିଗଲା ପରେ ଅମ୍ଭେ ନିଶ୍ଚୟ ତୁମ୍ଭମାନଙ୍କର ପ୍ରତିମାମାନଙ୍କର ସମ୍ବନ୍ଧରେ ଗୋଟାଏ କୌଶଳ କରିବୁଁ" ।୫୭।

ତାପରେ ସେ ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ପ୍ରତିମାକୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେଇଥିଲେ, ଯେପରି ସେମାନେ ତାଙ୍କପ୍ରତି ଫେରିବେ ।୫୮।

ସେମାନେ (ଫେରିଅସି) କହିଥିଲେ, "କିଏ ଅମ୍ଭମାନଙ୍କର ଉପାସ୍ୟ ପ୍ରତିମାମାନଙ୍କୁ ଏପରି କରିଅଛି ! ନିଶ୍ଚୟ ସେ ଅତ୍ୟାଚାରୀମାନଙ୍କ ଅନ୍ତର୍ଗତ" ।୫୯।

ସେମାନେ କହିଥିଲେ "ଅମ୍ଭେମାନେ ଜଣେ ଯୁବକକୁ ଏ ପ୍ରତିମାମାନଙ୍କ ସମ୍ବନ୍ଧରେ ଆଲୋଚନା କରିବାର ଶୁଣିଅଛୁଁ, ତାଙ୍କୁ ଇବ୍ରାହିମ ବୋଲି କହନ୍ତି" ।୬୦।

ସେମାନେ କହିଥିଲେ, "ଅତଏବ ତାଙ୍କୁ ଲୋକମାନଙ୍କ ଅଗକୁ ନେଇ ଅସ ଯେପରି ସେମାନେ ସାକ୍ଷ୍ୟ ପ୍ରଦାନ କରି ପାରିବେ" ।୬୧।

ସେମାନେ (ଇବ୍ରାହିମଙ୍କୁ) କହିଥିଲେ, "ହେ ଇବ୍ରାହିମ ! ତୁମ୍ଭେ କଅଣ ଅମ୍ଭମାନଙ୍କର ଉପାସ୍ୟ-ମାନଙ୍କୁ ଏପରି କରିଅଛ ?" ।୬୨।

ଇବ୍ରାହିମ କହିଥିଲେ, "ଅବଶ୍ୟ କେହି (ଜଣେ, ଏ କାଣ୍ଡ କରିଅଛି; ଏହି ଯେ ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ପ୍ରତିମା ରହିଅଛି, ଯଦି ଏମାନେ କଥା କହି ପାରନ୍ତି ତେବେ ଏହିମାନଙ୍କୁ ପଚାର" ।୬୩।

ସେତେବେଳେ ସେମାନେ ନିଜ ଅଡ଼କୁ ପ୍ରତ୍ୟାବର୍ତ୍ତିତ ହୋଇଥିଲେ ଏବଂ କହିଥିଲେ, "ନିଶ୍ଚୟ ତୁମ୍ଭେମାନେହିଁ ଅତ୍ୟାଚାରୀ ।୬୦।

---

୫୬ । ସେମାନଙ୍କୁ—ଅକାଶମଣ୍ଡଳ ଓ ଭୂମଣ୍ଡଳକୁ ।

୫୮ । ତାଙ୍କପ୍ରତି—ଇବ୍ରାହିମଙ୍କ ପ୍ରତି ।
ଫେରିବେ—ଏ ବିଷୟରେ ତାଙ୍କୁ ପ୍ରଶ୍ନ କରିବେ ।

୬୪ । ସେମାନେ ନିଜଅଡ଼କୁ ପ୍ରତ୍ୟାବର୍ତ୍ତିତ ହୋଇଥିଲେ—ନିଜର ମୂର୍ଖତା ଓ ପ୍ରତିମା ପୂଜାର ଅସାରତା ବୁଝି-ପାରିଥିଲେ ।

ତାପରେ ସେମାନେ ଲଜ୍ଜାରେ ନିଜ ନିଜ ମସ୍ତକ ଅବନତ କରି କହିଥିଲେ; "ତୁମ୍ଭେ ତ ନିଶ୍ଚୟ ଜାଣ ଯେ ଏମାନେ କଥା କହି ପାରନ୍ତି ନାହିଁ" ।୬୫।

ଇବ୍ରାହିମ କହିଥିଲେ, "ତେବେ କଅଣ ତୁମ୍ଭେମାନେ ପରମେଶ୍ୱରଙ୍କୁ ଛାଡ଼ି ଏହିମାନଙ୍କର ଉପାସନା କରୁଅଛ ଯେଉଁମାନେ ତୁମ୍ଭମାନଙ୍କର କୌଣସି ଲାଭ ବା ତୁମ୍ଭମାନଙ୍କର କୌଣସି କ୍ଷତି କରି ପାରନ୍ତି ନାହିଁ ? ।୬୬।

"ଧିକ ତୁମ୍ଭମାନଙ୍କୁ ! ଏବଂ ପରମେଶ୍ୱରଙ୍କ ପରିବର୍ତ୍ତିରେ ତୁମ୍ଭେମାନେ ଯେଉଁମାନଙ୍କର ଉପାସନା କରୁଅଛ ସେମାନଙ୍କୁ ଧିକ ! ତଥାପି କଅଣ ତୁମ୍ଭେମାନେ ବୁଝି ପାରୁନାହଁ ?" ।୬୭।

ସେମାନେ କହିଥିଲେ, ଏହାଙ୍କୁ ଦଗ୍ଧ କର ଏବଂ ନିଜ ଉପାସ୍ୟମାନଙ୍କୁ ସାହାଯ୍ୟ କର, ଯଦି ତୁମ୍ଭେମାନେ କିଛି କରିବାକୁ ଚାହଁ" ।୬୮।

ଅମ୍ଭେ କହିଥିଲୁଁ, "ହେ ଅଗ୍ନି ! ଶୀତଳ ହୁଅ ଏବଂ ଇବ୍ରାହିମଙ୍କୁ ଶାନ୍ତି ଦାନ କର" । ।୬୯।

ଏବଂ ସେମାନେ ତାଙ୍କ ସହିତ ଚକ୍ରାନ୍ତ କରିବାକୁ ଇଚ୍ଛାକରିଥିଲେ, କିନ୍ତୁ ଅମ୍ଭେ ସେମାନଙ୍କୁ କ୍ଷତିଗ୍ରସ୍ତ କରି ଦେଇଥିଲୁଁ ।୭୦।

ଏବଂ ଅମ୍ଭେ ତାହାଙ୍କୁ ଓ ତାଙ୍କ ପ୍ରାତୁଷ୍ପୁତ୍ର ଲୁତ୍‌ଙ୍କୁ ଉଦ୍ଧାର କରି ସେହି ଦେଶକୁ ନେଇ ଆସିଥିଲୁଁ, ଯାହାକୁ ଅମ୍ଭେ ବିଶ୍ୱଜଗତ ପାଇଁ ସୌଭାଗ୍ୟଶାଳୀ କରିଅଛୁଁ ।୭୧।

ଏବଂ ଅମ୍ଭେ ତାହାଙ୍କୁ (ପୁତ୍ରରୂପେ) ଇସହାକଙ୍କୁ, ଏବଂ (ପୌତ୍ରରୂପେ) ୟାକୁବଙ୍କୁ ଦେଇଥିଲୁଁ ଏବଂ ପ୍ରତ୍ୟେକଙ୍କୁ ଅମ୍ଭେ ସତ୍‌କର୍ମଶୀଳ କରିଥିଲୁଁ ।୭୨।

ଏବଂ ସେମାନଙ୍କୁ ନେତା କରିଦେଇ ଥିଲୁଁ, ସେମାନେ ଅମ୍ଭର ଆଦେଶ ଅନୁଯାୟୀ ପଥପ୍ରଦର୍ଶନ କରୁଥିଲେ, ଏବଂ ସେମାନଙ୍କ ପ୍ରତି ସତ୍‌କାର୍ଯ୍ୟ କରିବାକୁ ଓ ଆରାଧନା ପ୍ରତିଷ୍ଠିତ କରିବାକୁ ଓ ଜକାତ୍ ଦେବାକୁ ପ୍ରତ୍ୟାଦେଶ କରିଥିଲୁଁ ଏବଂ ସେମାନେ ଅମ୍ଭର ଉପାସନା କରୁଥିଲେ ।୭୩।

---

ନିଶ୍ଚୟ ତୁମ୍ଭେମାନେ ହିଁ ଅତ୍ୟାଚାରୀ=ସେମାନେ ଆପଣା ଭିତରେ କହିବାକୁ ଲାଗିଲେ ଯେ ଯେ କଥା କହି-ପାରେ ନାହିଁ ଏବଂ କିଛି ଶୁଣେନାହିଁ ତାକୁ ପୂଜାକରି ତୁମ୍ଭେମାନେ ହିଁ ନିଜପ୍ରତି ଅତ୍ୟାଚାର କରିଅଛ । ୬୫ ଶ୍ଳୋକ ଦେଖ ।

୬୮ । ସେମାନେ କହିଥିଲେ—ଇବ୍ରାହିମଙ୍କ ସଙ୍ଗେ ତର୍କରେ ପରାଜିତ ହୋଇ ରାଗରେ କହିଥିଲେ ।
ଉପାସ୍ୟମାନଙ୍କୁ ସାହାଯ୍ୟ କର—ଉପାସ୍ୟମାନଙ୍କର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବା ପାଇଁ ଅପରାଧୀକୁ ଦଣ୍ଡ ଦିଅ ।

୬୯ । ଇବ୍ରାହିମଙ୍କ ଶତ୍ରୁମାନେ ତାଙ୍କୁ ଅଗ୍ନିରେ ଦଗ୍ଧ କରିବା ପାଇଁ ଏକ ବୃହତ ଅଗ୍ନିକୁଣ୍ଡ ପ୍ରସ୍ତୁତ କରି ସେଥିରେ ଅଗ୍ନି ପ୍ରଜ୍ୱଳିତ କରି ତାଙ୍କୁ ସେଥିରେ ନିକ୍ଷେପ କରିଥିଲେ । ମାତ୍ର ପରମେଶ୍ୱରଙ୍କ ଆଦେଶରେ ଅଗ୍ନି ତାଙ୍କୁ ଦଗ୍ଧ ନକରି ସୁଶୀତଳ ଫୁଲ ବଗିଚାରେ ପରିଣତ ହୋଇଥିଲା ।

୭୦ । କ୍ଷତିଗ୍ରସ୍ତ କରିଦେଇଥିଲୁଁ—ସେମାନଙ୍କ ଚେଷ୍ଟା ବ୍ୟର୍ଥ କରିଦେଇଥିଲୁଁ ।

୭୧ । ସେହି ଦେଶ—ସିରିଆ ଦେଶ । ସୌଭାଗ୍ୟଶାଳୀ=ବହୁ ନଦନଦୀ ଓ ବୃକ୍ଷଲତା ପୂର୍ଣ୍ଣ ।

ଏବଂ ଅମ୍ଭେ ଲୁତ୍‌କୁ ବିଚାର ଶକ୍ତି ଓ ଜ୍ଞାନ ଦେଇଥିଲୁଁ, ଏବଂ ତାଙ୍କୁ ସେହି ନଗରରୁ ଉଦ୍ଧାର କରିଥିଲୁଁ ଯେଉଁଠାରେ ଅସତ୍ କାର୍ଯ୍ୟ ଅନୁଷ୍ଠିତ ହେଉଥିଲା, ନିଶ୍ଚୟ ସେମାନେ ଅସତ୍ ଓ ଦୁଷ୍କାର୍ଯ୍ୟକାରୀ ସମ୍ପ୍ରଦାୟ ଥିଲେ । ୭୪ ।

ଏବଂ ଅମ୍ଭେ ତାହାଙ୍କୁ ଅମ୍ଭର ଅନୁଗ୍ରହରେ ପ୍ରବେଶ କରାଇଥିଲୁଁ, ନିଶ୍ଚୟ ସେ ସତ୍‌କର୍ମଶୀଳମାନଙ୍କର ଅନ୍ତର୍ଗତ ଥିଲେ ।୭୫।

## ୬ଷ୍ଠ ବିଭାଗ

ଏବଂ ନୁହ ଯେତେବେଳେ ଏଥି ପୂର୍ବେ ଅମ୍ଭକୁ ଡାକିଥିଲେ ସେତେବେଳେ ଅମ୍ଭେ ତାହାର ଉତ୍ତର ଦେଇଥିଲୁଁ, ତାପରେ ଅମ୍ଭେ ତାହାଙ୍କୁ ଓ ତାଙ୍କର ପରିବାର ବର୍ଗଙ୍କୁ ବିଷମ ବିପଦରୁ ଉଦ୍ଧାର କରିଥିଲୁ ।୭୬।

ଏବଂ ଅମ୍ଭେ ତାହାଙ୍କୁ ସେହି ସମ୍ପ୍ରଦାୟ ବିରୁଦ୍ଧରେ ସାହାଯ୍ୟ କରିଥିଲୁଁ ଯେଉଁମାନେ ଅମ୍ଭର ନିଦର୍ଶନାମାନଙ୍କ ପ୍ରତି ମିଥ୍ୟାରୋପ କରୁଥିଲେ, ନିଶ୍ଚୟ ସେମାନେ ଦୁଷ୍କାର୍ଯ୍ୟକାରୀ ସମ୍ପ୍ରଦାୟ ଥିଲେ, ତାପରେ ଅମ୍ଭେ ସେମାନଙ୍କର ସମସ୍ତଙ୍କୁ ଜଳମଗ୍ନ କରି ଦେଇଥିଲୁଁ ।୭୭।

ଏବଂ ସ୍ମରଣ କର, ଦାଉଦ୍ ଓ ସୋଲେମାନ ଯେତେବେଳେ ଶସ୍ୟକ୍ଷେତ୍ର ସମ୍ବନ୍ଧରେ ବିଚାର କରୁଥିଲେ କାରଣ ସେଥିରେ କେତେକ ଲୋକଙ୍କର ଛେଳି ପଲ୍ଲ ରାତିରେ ଚରିଥିଲେ ଏବଂ ସେମାନଙ୍କର ମୀମାଂସା ସମ୍ବନ୍ଧରେ ଅମ୍ଭେହିଁ ସାକ୍ଷୀଥିଲୁଁ ।୭୮।

ତାପରେ ଅମ୍ଭେ ଏହା ସୋଲେମାନଙ୍କୁ ବୁଝାଇ ଦେଇଥିଲୁଁ, ଏବଂ ସେମାନଙ୍କର ପ୍ରତ୍ୟେକଙ୍କୁ ଅମ୍ଭେ ବିଚାର ଶକ୍ତି ଓ ଜ୍ଞାନ ଦେଇଥିଲୁଁ, ଏବଂ ମହିମା କୀର୍ତ୍ତନକାରୀ ପର୍ବତମାଳା ଓ ପକ୍ଷୀମାନଙ୍କୁ ଦାଉଦଙ୍କର ଅଜ୍ଞାଧୀନ କରିଥିଲୁଁ, ଏବଂ ଅମ୍ଭେହିଁ ଏହା କରିଥିଲୁଁ ।୭୯।

---

୭୪ । ମହାପୁରୁଷ ଲୁତଙ୍କ ସମ୍ବନ୍ଧରେ ୭ ଅଧ୍ୟାୟ ୮୦-୮୪ ଶ୍ଳୋକ; ୧୧ ଅଧ୍ୟାୟ ୭୭-୮୨ ଶ୍ଳୋକ ଏବଂ ୧୫ ଅଧ୍ୟାୟର ୬୧-୭୪ ଶ୍ଳୋକମାନ ଦେଖ ।

୭୬ । ଏଥିପୂର୍ବେ=ଇବ୍ରାହିମଙ୍କ ବହୁଶତାବ୍ଦୀ ପୂର୍ବରୁ ନୁହଙ୍କ ଅବିର୍ଭାବ ହୋଇଥିଲା ।

୭୭ । ମହାପୁରୁଷ ନୁହଙ୍କ ବିଶେଷ ବିବରଣ ପାଇଁ ୧୧ ଅଧ୍ୟାୟ ୨୫-୪୮ ଶ୍ଳୋକମାନ ଦେଖ ।

୭୮ । ଜଣେ ମେଷପାଳକର ମେଷମାନେ ରାତିରେ ଜଣେ ଲୋକର ଅଙ୍ଗୁର ଉଦ୍ୟାନରେ ପ୍ରବେଶ କରି ତାହା ନଷ୍ଟ କରିଦେଲେ । ଉଦ୍ୟାନର ଅଧିକାରୀ ଦାଉଦଙ୍କ ନିକଟରେ ଆପତ୍ତି କରିବାରୁ ସେ ବିଚାର କରି ଉଦ୍ୟାନର ଅଧିକାରୀକୁ କ୍ଷତିପୂରଣ ସ୍ୱରୂପ ମେଷପାଳକର ସମସ୍ତ ମେଷ ପଲ୍ଲ ପ୍ରଦାନ କଲେ । ସୋଲେମାନ ଏହା ଶ୍ରବଣ କରି ମତ ପ୍ରକାଶ କଲେକି ଏହି ନିଷ୍ପତ୍ତି ନ୍ୟାୟସଙ୍ଗତ ହେଲାନାହିଁ । ତହୁଁ ଦାଉଦ ତାଙ୍କୁ ଡାକି ଏ ବିଷୟରେ ତାଙ୍କର ମତ ଲୋଡ଼ିଲେ । ସୋଲେମାନ କହିଲେ, ଅଙ୍ଗୁର ଉଦ୍ୟାନକୁ ମେଷପାଳକକୁ ଦିଆଯାଉ । ସେ ଯତ୍ନ କରି ତାକୁ ପୂର୍ବ ଅବସ୍ଥାକୁ ଆଣିବା ପର୍ଯ୍ୟନ୍ତ ତାହା ଜିମାରେ ଉଦ୍ୟାନ ରହିବ ଏବଂ ତାହା ପରେ ସେ ଉଦ୍ୟାନର ଅଧିକାରୀକୁ ଫେରାଇ ଦେବ । ସେପର୍ଯ୍ୟନ୍ତ ମେଷପାଳକର ମେଷପଲ୍ଲ ଉଦ୍ୟାନର ଅଧିକାରୀ ଜିମାରେ ରହିବ ଏବଂ ସେ ଯତ୍ନ ସହିତ ତାହା ପାଳନ କରିବ ଓ ତାହାର ଲଭ୍ୟାଂଶ ଭୋଗ କରିବ ଏବଂ ଉଦ୍ୟାନ ପାଇବା ପରେ ମେଷପଲ୍ଲକୁ ଫେରାଇ ଦେବ । ଏହାଦ୍ୱାରା ଉଭୟ ପକ୍ଷ କେହି କ୍ଷତିଗ୍ରସ୍ତ ହେବେ ନାହିଁ । ଏହି ମୀମାଂସାରେ ଉଭୟ ପକ୍ଷ ସ୍ୱୀକୃତ ହୋଇଥିଲେ ଏବଂ ଦାଉଦ ମଧ୍ୟ ସ୍ୱୀକୃତ ହୋଇଥିଲେ ।

୭୯ । ପର୍ବତ ଓ ପକ୍ଷୀମାନେ ଦାଉଦଙ୍କର ଆଜ୍ଞାକାରୀ ଥିଲେ ।

ଏବଂ ଅମ୍ଭେ ତାହାଙ୍କୁ ତୁମ୍ଭମାନଙ୍କ ପାଇଁ ବର୍ମ୍ମ ପ୍ରସ୍ତୁତ କରିବା ପ୍ରଣାଳୀ ଶିକ୍ଷା ଦେଇଥିଲୁଁ, ଯାହା ତୁମ୍ଭମାନଙ୍କୁ ଯୁଦ୍ଧ ବିଗ୍ରହରେ ରକ୍ଷା କରିବ, ତାହାହେଲେ ତୁମ୍ଭେମାନେ କଅଣ କୃତଜ୍ଞ ହେବ ? ୮୦ ।

ଏବଂ ଅମ୍ଭେ ସୋଲେମାନଙ୍କ ପାଇଁ ଝଞ୍ଜା ବାୟୁକୁ ତାଙ୍କ ଅଜ୍ଞାଧୀନ କରିଥିଲୁଁ ଯେ ତାହା ତାଙ୍କର ଅଦେଶରେ ସେହି ଭୂଭାଗ ଅଡ଼କୁ ପ୍ରବାହିତ ହେବ ଯାହାକୁ ଅମ୍ଭେ ସୌଭାଗ୍ୟ ଦାନ କରିଥିଲୁଁ, ଏବଂ ଅମ୍ଭେହିଁ ସର୍ବ ବିଷୟରେ ମହାଜ୍ଞାନୀ ।୮୧।

ଏବଂ ସଏତାନମାନଙ୍କ ମଧ୍ୟରୁ ଯେଉଁମାନେ ତାଙ୍କ ପାଇଁ ସମୁଦ୍ରରେ ଖୋଜା ମାରୁ ଥିଲେ ଏବଂ ଏହାଛଡ଼ା ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ କରୁଥିଲେ (ସେମାନଙ୍କୁ ମଧ୍ୟ ତାଙ୍କ ଅଜ୍ଞାଧୀନ କରିଥିଲୁ), ଅମ୍ଭେ ସେମାନଙ୍କ ଉପରେ ରକ୍ଷା କାରିଥିଲୁଁ ।୮୨।

ଏବଂ ଅୟୁବ୍ ଯେତେବେଳେ ନିଜ ପାଳନକର୍ତ୍ତାଙ୍କୁ ଡାକି ଥିଲେ "ଅମ୍ଭକୁ ରୋଗ ଯନ୍ତ୍ରଣା ସ୍ପର୍ଶ କରିଅଛି ଏବଂ ତୁମ୍ଭେହିଁ ଦୟାଶୀଳମାନଙ୍କ ମଧ୍ୟରେ ଅଧିକତର ଦୟାଶୀଳ" ।୮୩।

ସେତେବେଳେ ଅମ୍ଭେ ତାହାର ଉତ୍ତର ଦେଇଥିଲୁଁ, ପରେ ତାଙ୍କ ଠାରେ ଯାହା ରୋଗ ଯନ୍ତ୍ରଣା ଥିଲା ତାକୁ ଅମ୍ଭେ ଦୂର କରି ଦେଇଥିଲୁଁ, ଏବଂ ଅମ୍ଭେ ତାଙ୍କୁ ତାଙ୍କର ପରିବାରବର୍ଗ ଏବଂ ତାହା ସହିତ ନିଜ କରୁଣାରୁ ତଦନୁରୂପ ଦେଇଥିଲୁଁ ଏବଂ ଏହା ସେବକମାନଙ୍କ ପାଇଁ ସ୍ମରଣୀୟ ।୮୪।

---

୮୦ । ଯୁଦ୍ଧରେ ବର୍ମ୍ମ ବ୍ୟବହାର କରିବାର ପ୍ରଥା ପ୍ରଥମେ ମହାପୁରୁଷ ଦାଉଦଙ୍କ ସମୟରେ ପ୍ରଚଳିତ ହୋଇଥିଲା ।

୮୧ । ଭୂଭାଗ ଯାହାକୁ ସୌଭାଗ୍ୟ ଦାନ କରିଥିଲୁଁ—ଅର୍ଥାତ୍ ସୋଲେମାନଙ୍କ ରାଜ୍ୟ ସିରିଆ ଦେଶ । ଟୀକାକାରମାନଙ୍କ ମତରେ ସୋଲେମାନ ଏବଂ ତାଙ୍କର ଅନୁଚରମାନେ ବାୟୁଦ୍ୱାରା ପରିଚାଳିତ ବ୍ୟୋମଯାନ ସାହାଯ୍ୟରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଅସିବା କରୁଥିଲେ ।

୮୨ । ମହାପୁରୁଷ ସୋଲେମାନ କେତେକ ଦୁର୍ଦ୍ଦାନ୍ତ ଲୋକମାନଙ୍କୁ କରାୟତ୍ତ କରି ସେମାନଙ୍କ ଦ୍ୱାରା ସମୁଦ୍ରରେ ବୁଡ଼ି ମୁକ୍ତା ସଂଗ୍ରହ କରାଇବା ଏବଂ ଅନ୍ୟାନ୍ୟ ଅସାଧ କାର୍ଯ୍ୟମାନ କରାଉଥିଲେ । ଏବଂ ପରମେଶ୍ୱରଙ୍କ ଅଦେଶରେ ସେହି ଦୁର୍ଦ୍ଦାନ୍ତ ଲୋକମାନେ ତାଙ୍କର ଅଜ୍ଞାବହ ହୋଇ ରହିଥିଲେ । ଅମ୍ଭେ—ପରମେଶ୍ୱର

୮୩-୮୪ । ଏହି ଦୁଇ ଶ୍ଳୋକରେ ମହାପୁରୁଷ ଅୟୁବଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ସେ ଜଣେ ପରମ ଧାର୍ମ୍ମିକ ଓ ପରମେଶ୍ୱରଙ୍କ ଭକ୍ତ ଥିଲେ ଏବଂ ପାର୍ଥିବ ସୁଖ ସମ୍ପଦ ଓ ସନ୍ତାନ ସନ୍ତତିରେ ମଧ୍ୟ ଭାଗ୍ୟବାନ ଥିଲେ । ଥରେ ସଏତାନ ପରମେଶ୍ୱରଙ୍କଠାରେ ଅପତ୍ତି କଲା ଯେ ଅୟୁବ ପାର୍ଥିବ ସମ୍ପଦରେ ଭାଗ୍ୟବାନ ହୋଇଥିବାରୁ ସେ ପରମେଶ୍ୱରଙ୍କଠାରେ କୃତଜ୍ଞ ହୋଇଅଛନ୍ତି; ପାର୍ଥିବ ସମ୍ପଦ ନଷ୍ଟ ହୋଇଗଲେ ସେ କୃତଜ୍ଞ ହୋଇ ରହିବେ ନାହିଁ । ପରମେଶ୍ୱର କହିଲେ, ଅମର ପ୍ରକୃତ ଭକ୍ତ ଦୁଃଖ କଷ୍ଟ ମଧ୍ୟରେ ସୁଦ୍ଧା ଅମର କୃତଜ୍ଞ ହୋଇ ରହିବ । ଏହା ପରୀକ୍ଷା ଦ୍ୱାରା ପ୍ରମାଣ କରାଇବା ନିମନ୍ତେ ସେ ଅୟୁବଙ୍କ ପାର୍ଥିବ ଧନ ସମ୍ପତ୍ତି ଓ ସନ୍ତାନସନ୍ତତିଙ୍କୁ ହରଣ କରିନେଲେ । ଏଥିରେ ଅୟୁବ ଅକୃତଜ୍ଞ ନହୋଇ ପରମେଶ୍ୱରଙ୍କ ପ୍ରତି ଅଧିକ ଅକୃଷ୍ଟ ହେବାକୁ ଲାଗିଲେ । ତାପରେ ପରମେଶ୍ୱର ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ହରଣ କରି ନେଇ ତାଙ୍କ ସର୍ବାଙ୍ଗ ଶରୀରରେ କ୍ଷତ ରୋଗ ଜାତ କରାଇଲେ ଏପରିକି ସେଥିରେ ପୋକସବୁ ପଡ଼ିଗଲେ । ଏ ସମୟରେ ତାଙ୍କର ପତିପ୍ରାଣା ପତ୍ନୀ ବିବି ରହିମା ତାଙ୍କର ଏକମାତ୍ର ସହଚରୀ ଭାବରେ ରହି ତାଙ୍କର ସେବା ସୁଶ୍ରୂଷା କରିବାକୁ ଲାଗିଲେ । ଏତେଦୂର କଷ୍ଟ ଭୋଗ କରି ମଧ୍ୟ ଅୟୁବଙ୍କ ହୃଦୟରେ ପରମେଶ୍ୱରଙ୍କ ପ୍ରତି ତିଳେମାତ୍ର ବିରାଗ ଭାବ ଜାତ ହୋଇ ନଥିଲା । ଯେତେବେଳେ ତାଙ୍କର ରୋଗ ଯନ୍ତ୍ରଣା ଧୈର୍ଯ୍ୟର ସୀମା ଲଙ୍ଘନ କରିବାକୁ ଲାଗିଲା ସେ ସେଥିରୁ ମୁକ୍ତ କରିବା-ପାଇଁ ପରମେଶ୍ୱରଙ୍କୁ ପ୍ରାର୍ଥନା କଲେ । ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବାର ଜାଣି ପରମେଶ୍ୱର ତାଙ୍କୁ

ଏବଂ ଇସମାଇଲ ଓ ଇଦରିସ ଓ ଜୁଲ୍ କଫଲ୍, ସମସ୍ତେ ଧୈର୍ଯ୍ୟଶୀଳମାନଙ୍କର ଅନ୍ତର୍ଗତ ଥିଲେ ।୮୫।

ଏବଂ ଅମ୍ଭେ ସେମାନଙ୍କୁ ନିଜ ଅନୁଗ୍ରହ ମଧ୍ୟରେ ପ୍ରବେଶ କରାଇଥିଲୁଁ, ନିଶ୍ଚୟ ସେମାନେ ସତ୍କର୍ମଶୀଳମାନଙ୍କର ଅନ୍ତର୍ଗତ ଥିଲେ ।୮୬।

ଏବଂ ଜଲ୍ନୁନ୍ (ଙ୍କ ବିଷୟ ମନେକର) ଯେତେବେଳେ ସେ କ୍ରୋଧଭରେ ଗମନ କରିଥିଲେ, ସେତେବେଳେ ସେ ଅନୁମାନ କରିଥିଲେ ଯେ ଅମ୍ଭେ କଦାପି ତାଙ୍କ ଉପରେ ଶକ୍ତିଶାଳୀ ହେବୁ ନାହିଁ, ସେତେବେଳେ ସେ ଅନ୍ଧକାର ମଧ୍ୟରେ ଡାକିଥିଲେ "ତୁମ୍ଭ ବ୍ୟତୀତ ଅନ୍ୟ ଉପାସ୍ୟ ନାହିଁ, ତୁମ୍ଭେହିଁ ପବିତ୍ରତମ, ନିଶ୍ଚୟ ଅମ୍ଭେ ଅତ୍ୟାଚାରୀମାନଙ୍କର ଅନ୍ତର୍ଗତ ଥିଲୁଁ" ।୮୭।

ଅତଏବ ଅମ୍ଭେ ତାହାର ଉତ୍ତର ଦେଇଥିଲୁଁ ଏବଂ ଅମ୍ଭେ ତାଙ୍କୁ ଦୁଃଖରୁ ମୁକ୍ତ କରିଥିଲୁଁ ଏବଂ ଏହି ପରି ଅମ୍ଭେ ବିଶ୍ୱାସକାରୀମାନଙ୍କୁ ମୁକ୍ତ ଦେଇଥାଉଁ ।୮୮।

ଏବଂ ଜକରିୟା (ଙ୍କ ବିଷୟ ମନେ କର) ଯେତେବେଳେ ସେ ନିଜ ପାଳନ କର୍ତ୍ତାଙ୍କୁ ଡାକିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ଅମ୍ଭକୁ ଏକାକୀ ପରିତ୍ୟାଗ କରନା ଏବଂ ତୁମ୍ଭେହିଁ ଶ୍ରେଷ୍ଠତମ ଉତ୍ତରାଧିକାରୀ ।" ୮୯।

ଅତଏବ ଅମ୍ଭେ ତାହାର ଉତ୍ତର ଦେଇଥିଲୁଁ, ଏବଂ ତାଙ୍କ ପାଇଁ ତାଙ୍କ ସ୍ତ୍ରୀଙ୍କୁ ବନ୍ଧ୍ୟା ମୁକ୍ତ କରି ତାଙ୍କୁ (ପୁତ୍ରରୂପେ) ୟେହୟାଙ୍କୁ ପ୍ରଦାନ କରିଥିଲୁଁ । ନିଶ୍ଚୟ ସେମାନେ କଲ୍ୟାଣ ସାଧନ ପାଇଁ ପରସ୍ପର କଳହ କରୁଥିଲେ ଏବଂ ସେମାନେ ଆଗ୍ରହ ଓ ଭୟ ସହିତ ଅମ୍ଭକୁ ଡାକୁଥିଲେ ଏବଂ ସେମାନେ ଅମ୍ଭର ଉଦ୍ଦେଶ୍ୟରେ ବିନୀତ ରହୁଥିଲେ ।୯୦।

ଏବଂ ସେହି ସ୍ତ୍ରୀଲୋକ (ମରିୟମଙ୍କ ବିଷୟ ମନେକର) ଯେ ନିଜର ସତୀତ୍ୱ ରକ୍ଷା କରିଥିଲେ, ତାପରେ ଅମ୍ଭେ ତାଙ୍କ ମଧ୍ୟରେ ନିଜ ଆତ୍ମା ମଧ୍ୟରୁ ଫୁତ୍କାର କରିଥିଲୁଁ ଏବଂ ଅମ୍ଭେ ତାହାଙ୍କୁ ଓ ତାଙ୍କର ପୁତ୍ର ଇସାଙ୍କୁ ସମସ୍ତ ଜଗତ ପାଇଁ ନିଦର୍ଶନ କରିଥିଲୁଁ ।୯୧।

---

ରୋଗ ଯନ୍ତ୍ରଣାରୁ ମୁକ୍ତ କରି ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ଓ ପାର୍ଥିବ ଧନ ସମ୍ପତ୍ତି ଓ ସନ୍ତାନସନ୍ତତି ପୁନରାୟ ଦାନ କରି ତାଙ୍କୁ ସୁଖୀ କରାଇଥିଲେ । ଏହି ବିବରଣରୁ ପରମେଶ୍ୱରଙ୍କ ଖାଣ୍ଟି ଭକ୍ତମାନଙ୍କୁ ଶିକ୍ଷା ଲାଭ କରିବା ଆବଶ୍ୟକ । ୩୮ ଅଧ୍ୟାୟର ୪୧ରୁ ୪୪ ଶ୍ଳୋକ ଦେଖ ।

ନିଜ କରୁଣାରୁ ଉଦାହରଣ—ପରମେଶ୍ୱର ମହାପୁରୁଷ ଅୟୂବଙ୍କ ପରିବାର ସଂଖ୍ୟା ପୂର୍ବର ଦ୍ୱିଗୁଣ କରି ଦେଇଥିଲେ ।

୮୫ । ଜୁଲ୍‌କଫଲ୍‌ଙ୍କ ନାମ ଏହି ଶ୍ଳୋକରେ ଏବଂ ୩୮ ଅଧ୍ୟାୟ ଶ୍ଳୋ ୪୮ରେ ଦିଆଯାଇଅଛି । ତାଙ୍କର ବିଶେଷ ବିବରଣ ଦିଆଯାଇନାହିଁ ।

୮୭ । 'ଜଲ୍ନୁନ୍' ମହାପୁରୁଷ ୟୁନୁସ୍‌ଙ୍କୁ କୁହାଯାଇଅଛି । ୩୭ ଅଧ୍ୟାୟ ଶ୍ଳୋ ୧୩୯ରୁ ୧୪୮ରେ ତାଙ୍କର ବିଶେଷ ବିବରଣ ଦିଆଯାଇଅଛି ।

ଅନ୍ଧକାର ମଧ୍ୟରେ—ମାଛର ଗର୍ଭରେ ।

ନୁନ ଅର୍ଥ ମତ୍ସ୍ୟ । ମହାପୁରୁଷ ୟୁନୁସଙ୍କୁ ମତ୍ସ୍ୟ ଗ୍ରାସ କରିଥିଲା ବୋଲି ତାଙ୍କୁ ଜଲ୍ନୁନ ବା ମତ୍ସ୍ୟାଧାରୀ ବ୍ୟକ୍ତି କୁହାଯାଉଥିଲା ।

ନିଶ୍ଚୟ ତୁମ୍ଭମାନଙ୍କର ସମ୍ପ୍ରଦାୟ,ଏକ ସମ୍ପ୍ରଦାୟ ଅଟେ, ଏବଂ ଆମ୍ଭେହିଁ ତୁମ୍ଭମାନଙ୍କର ପାଳନକର୍ତ୍ତା, ଅମ୍ଭଙ୍କୁହିଁ ଉପାସନା କର ।୯୨।

ଏବଂ ସେମାନେ ପରସ୍ପର ସେମାନଙ୍କର କାର୍ଯ୍ୟ ଛେଦନ କରି ଅଛନ୍ତି, ସମସ୍ତଙ୍କୁ ଅମ୍ଭର ଆଡ଼କୁ ଫେରିଯିବାକୁ ହେବ ।୯୩।

## ୭ମ ବିଭାଗ

ତାପରେ ଯେ ସତକର୍ମ୍ମ କରେ ଏବଂ ବିଶ୍ୱାସକାରୀ ମଧ୍ଯ ହୁଏ ତାହାର ପରିଶ୍ରମ ଅସ୍ୱୀକୃତ ହେବନାହିଁ; ଏବଂ ନିଶ୍ଚୟ ଆମ୍ଭେହିଁ ତାହାପାଇଁ ଏହା ଲେଖି ରଖିଛୁ ।୯୪।

ଏବଂ ଯେଉଁ ନଗରମାନଙ୍କୁ ଅମ୍ଭେ ଧ୍ୱଂସ କରିଅଛୁଁ ସେମାନଙ୍କ ପକ୍ଷରେ ଏହା ନିଶ୍ଚିତ ଯେ ସେମାନେ ପୃଥିବୀକୁ ଫେରିବେ ନାହିଁ ।୯୫।

ଏପରିକି ଯେତେବେଳେ ୟାଜୁଜ୍ ଓ ମାଜୁଜଙ୍କୁ ମୁକ୍ତ କରାହେବ ଏବଂ ଯେତେବେଳେ ସେମାନେ ପ୍ରତ୍ୟେକ ଉଚ୍ଚ ସ୍ଥାନରୁ ଧାବିତ ହେବେ ।୯୬।

ଏବଂ ସତ୍ୟ ଅଙ୍ଗୀକାର ନିକଟବର୍ତ୍ତୀ ହେବ, ସେତେବେଳେ ଅବିଶ୍ୱାସକାରୀମାନଙ୍କ ଚକ୍ଷୁରୁ ବିସ୍ମୟ ବିସ୍ଫାରିତ ହେବ, ସେମାନେ କହିବେ "ଧିକ ଅମ୍ଭମାନଙ୍କୁ। ନିଶ୍ଚୟ ଅମ୍ଭେମାନେ ଏ ବିଷୟରେ ଅମନଯୋଗୀ ଥିଲୁଁ; ବରଂ ଅମ୍ଭେମାନେ ଅତ୍ୟାଚାରୀ ଥିଲୁଁ" ।୯୭।

---

୮୯ । ୨କାରୀ—ନିଃସନ୍ତାନ ଅବସ୍ଥାରେ ।

୯୧ । ଏହି ଶ୍ଳୋକରେ ମହାପୁରୁଷ ଇସା ଏବଂ ତାଙ୍କର ମାତା ବିବି ମରିୟମଙ୍କ ବିଷୟ ଉଲ୍ଲେଖ କରାଯାଇଅଛି । ସେମାନଙ୍କ ବିଶେଷ ବିବରଣ ୧୯ ଅଧ୍ୟାୟ ଶ୍ଳୋ୧୬ରୁ ୩୪କରେ ଦିଆଯାଇଅଛି ।

୯୨ । ଏହି ଶ୍ଳୋକରେ ପରମେଶ୍ୱର ଅବିଶ୍ୱାସକାରୀ ଇହୁଦୀ ଓ ଖ୍ରୀଷ୍ଟାନମାନଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି, "ଯେଉଁ ଖ୍ୟାତନାମା ଧର୍ମ୍ମ ପ୍ରବର୍ତ୍ତକମାନଙ୍କ ବିଷୟ ଉଲ୍ଲେଖ କରିଗଲି ସେମାନେ ସମସ୍ତେ ଇସ୍ରାଇଲ୍ ବଂଶଧରମାନଙ୍କ ମଧ୍ୟରେ ଧର୍ମ୍ମପ୍ରବର୍ତ୍ତକ ଥିଲେ । ସେମାନେ ସମସ୍ତେ ପରମେଶ୍ୱରଙ୍କ କୃତଜ୍ଞ ଓ ଅନୁଗତ ସେବକ ଥିଲେ । ତୁମ୍ଭେ-ମାନେ ସେହି ସମ୍ପ୍ରଦାୟର ଲୋକ ହୋଇ ଅବାଧ୍ୟ ହେବା ଉଚିତ ନୁହେ । ତୁମ୍ଭେମାନେ ମଧ୍ୟ ଅମ୍ଭର ଅନୁଗତ ହେବା ଆବଶ୍ୟକ ।"

୯୩ । ମାତ୍ର ସେମାନେ ପରସ୍ପର ବିରୁଦ୍ଧାଚରଣ କରି ବିପଥଗାମୀ ହୋଇଅଛନ୍ତି, ସୁତରାଂ ପରଲୋକରେ ସେମାନେ ଶାସ୍ତି ଭୋଗ କରିବେ ।

୯୫ । ୯୬ । ଯେଉଁ ନଗରମାନ ପରମେଶ୍ୱରଙ୍କ ଶାସ୍ତି ସ୍ୱରୂପ ଧ୍ୱଂସ କରାଯାଇଅଛି ସେହି ଧ୍ୱଂସପ୍ରାପ୍ତ ନଗରବାସୀମାନଙ୍କ ପକ୍ଷରେ ପୁନର୍ବାର ଏହି ପୃଥିବୀକୁ ଫେରି ଆସିବା ସମ୍ଭବପର ନୁହେ । ଏପରିକି ଯେତେବେଳେ ୟାଜୁଜ ଓ ମାଜୁଜ ସମ୍ପ୍ରଦାୟ ପ୍ରବଳ ପ୍ରତାପରେ ବାହାରି ପୃଥିବୀରେ ଆପଣାର ପ୍ରଭାବ ବିସ୍ତାର କରିବେ, ସେମାନେ ବି ମୃତ୍ୟୁର ଅଧୀନ ଏବଂ ମୃତ୍ୟୁ ପରେ ଆଉ ଏ ପୃଥିବୀକୁ ଫେରିବେ ନାହିଁ । ୧୮ ଅଧ୍ୟାୟର ୯୪-୯୮ ଶ୍ଳୋକର ଟୀକା ଦେଖ ।

୯୭ । ଅମନଯୋଗୀ ଥିଲୁଁ—ପୁନରୁତ୍ଥାନ ବିଷୟର ସମ୍ବାଦ ଅମ୍ଭମାନଙ୍କ ନିକଟ ପହଞ୍ଚି ଥିଲା, ମାତ୍ର ଅମ୍ଭେମାନେ ବିଶ୍ୱାସ କରିନଥିଲୁଁ ।

ନିଶ୍ଚୟ ତୁମ୍ଭେମାନେ ଏବଂ ପରମେଶ୍ୱରଙ୍କ ବ୍ୟତୀତ ତୁମ୍ଭେମାନେ ଯେଉଁମାନଙ୍କର ଉପାସନା କର ସେମାନେ ମଧ୍ୟ ନରକର ଜାଳେଣି କାଠ, ତାହାର ସମ୍ମୁଖରେ ତୁମ୍ଭମାନଙ୍କୁ ଉପସ୍ଥିତ ହେବାକୁ ହେବ । ୯୮ ।

ଯଦି ସେମାନେ ପ୍ରକୃତ ଉପାସ୍ୟ ହୋଇଥାନ୍ତେ ତେବେ ତାହାର ନିକଟବର୍ତ୍ତୀ ହୁଅନ୍ତେ ନାହିଁ; ଏବଂ ସେମାନେ ସେଥି ମଧ୍ୟରେ ସର୍ବଦା ବାସ କରିବେ ।୯୯।

ସେଥିମଧ୍ୟରେ ସେମାନଙ୍କର ଆର୍ତ୍ତନାଦ ହେଉଥିବ ଏବଂ ସେଥିମଧ୍ୟରେ ସେମାନେ କିଛି ଶ୍ରବଣ କରି ପାରିବେ ନାହିଁ ।୧୦୦।

ନିଶ୍ଚୟ ଯେଉଁମାନଙ୍କ ପାଇଁ ଆମ୍ଭ ନିକଟରୁ କଲ୍ୟାଣ ଅଗ୍ରବର୍ତ୍ତୀ ହୋଇଅଛି ସେହିମାନେହିଁ ସେଥିରୁ ଦୂରରେ ରହିବେ ।୧୦୧।

ସେମାନେ ତାହାର କ୍ଷୀଣ ଶବ୍ଦ ମଧ୍ୟ ଶ୍ରବଣ କରି ପାରିବେ ନାହିଁ ଏବଂ ସେମାନଙ୍କର ଆତ୍ମା ଯାହା ଚାହୁଁଥିଲା ସେଥିରେହିଁ ସେମାନେ ସର୍ବଦା ବାସ କରିବେ ।୧୦୨।

ସେହି ମହା ଭୟରେ ସେମାନେ ଦୁଃଖିତ ହେବେ ନାହିଁ ଏବଂ ସ୍ୱର୍ଗଦୂତମାନେ ସେମାନଙ୍କ ସହିତ ସାକ୍ଷାତକରି କହିବେ, "ଏହାହିଁ ତୁମ୍ଭମାନଙ୍କର ସେହି ସୁଦିନ ଯେଉଁ ବିଷୟରେ ତୁମ୍ଭମାନଙ୍କୁ ପ୍ରତିଶ୍ରୁତି ଦିଆ ଯାଇଥିଲା" ।୧୦୩।

ସେଦିନ ଆମ୍ଭେ ଆକାଶ ମଣ୍ଡଳକୁ ଗୁଡ଼ାଇ ନେବୁ ଯେପରି ଲିଖିତ କାଗଜମାନ ଗୁଡ଼ାଅହୁଏ; ଯେପରି ଆମ୍ଭେ ପ୍ରଥମଥର ସୃଷ୍ଟି କରିଥିଲୁଁ, ସେହିପରି ଏହା ପରେ ମଧ୍ୟ ସୃଷ୍ଟି କରିବୁଁ । ଏହାହିଁ ଆମ୍ଭର ପ୍ରତିଶ୍ରୁତି, ନିଶ୍ଚୟ ଆମ୍ଭେ ଏହା ସଂଘଟନ କାରୀ ।୧୦୪।

ଏବଂ ନିଶ୍ଚୟ ତଓରାତ ଗ୍ରନ୍ଥ ପରେ (ଦାଉଦଙ୍କ) ଧର୍ମ ଗ୍ରନ୍ଥରେ ମଧ୍ୟ ଆମ୍ଭେ ଲିପିବଦ୍ଧ କରିଦେଇ ଥିଲୁଁ ଯେ ଆମ୍ଭର ସତ୍‌କର୍ମଶୀଳ ସେବକମାନେହିଁ ପୃଥିବୀର ଉତ୍ତରାଧିକାରୀ ହେବେ ।୧୦୫।

ନିଶ୍ଚୟ ଏଥିରେ ଆଜ୍ଞାପାଳନକାରୀ ସମ୍ପ୍ରଦାୟ ପାଇଁ ସୁସମ୍ବାଦ ରହିଅଛି ।୧୦୬।

ଏବଂ ହେ ମହମ୍ମଦ, ଆମ୍ଭେ ତୁମ୍ଭଙ୍କୁ ସମସ୍ତ ଜଗତ ପାଇଁ କଲ୍ୟାଣ ଛଡ଼ା ପ୍ରେରଣ କରିନାହୁଁ ।୧୦୭।

---

୧୦୧ । କଲ୍ୟାଣ ଅଗ୍ରବର୍ତ୍ତୀ ହୋଇଅଛି—ଯେଉଁମାନେ ଅନୁଗ୍ରହ ଓ କଲ୍ୟାଣ ପ୍ରାପ୍ତ ହୋଇଅଛନ୍ତି ।
ସେଥିରୁ ଦୂରରେ ରହିବେ—ନରକାଗ୍ନିରୁ ଦୂରରେ ରହିବେ ।

୧୦୪ । ଶେଷ ବିଚାରର ପୂର୍ବେ ବିଶ୍ୱ ସଂସାରର ମହାପ୍ରଳୟ ଉପସ୍ଥିତ ହେବ ଏବଂ ତାପରେ ନୂତନ ସୃଷ୍ଟି ହେବ ।

୧୦୫ । ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥ ଅର୍ଥାତ୍ ତଓରାତ, ଇନଜିଲ ଓ ଜବୁରରେ ଏବଂ ପରବର୍ତ୍ତୀ ଧର୍ମଗ୍ରନ୍ଥ କୋରାନରେ ପରମେଶ୍ୱର ସ୍ପଷ୍ଟ ଭାବରେ ବର୍ଣ୍ଣନା କରି ଅଛନ୍ତି ଯେ ପରମେଶ୍ୱରଙ୍କ ସତ୍‌କର୍ମଶୀଳ ସେବକମାନେ ପୃଥିବୀର ଉତ୍ତରାଧିକାରୀ ହେବେ ଅର୍ଥାତ୍ ପୃଥିବୀ ଧ୍ୱଂସ ହେବାପରେ ପରଲୋକରେ ସେହିମାନେ ସୌଭାଗ୍ୟଶାଳୀ ହେବେ ।

୧୦୬ । ଏଥିରେ—ଶେଷ ଧର୍ମଗ୍ରନ୍ଥ କୋରାନରେ ।

୧୦୭ । ମହାପୁରୁଷ ମୋହମ୍ମଦ ସମସ୍ତ ଜଗତ ପାଇଁ ପରମେଶ୍ୱରଙ୍କ ଅପାର ଦୟାର ଅବତାର ସ୍ୱରୂପ ପ୍ରେରିତ ହୋଇ-ଅଛନ୍ତି । ବିଶ୍ୱବାସୀମାନେ ପରମେଶ୍ୱରଙ୍କୁ ଭୁଲିଯାଇ ବିପଥଗାମୀ ହୋଇ ନିଜର ଧ୍ୱଂସ ଆଡ଼କୁ ଧାବିତ ହେଉ-ଥିଲେ; ସେମାନଙ୍କୁ ସତ୍‌ପଥ ଦେଖାଇ ପରମେଶ୍ୱରଙ୍କ ଆଡ଼କୁ ଫେରାଇ ଆଣିବା ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବର ଉଦ୍ଦେଶ୍ୟ ଅଟେ । ଯେଉଁମାନେ ତାଙ୍କର ଉପଦେଶ ଗ୍ରହଣ କରି ତାଙ୍କର ଆଦର୍ଶ ଅବଲମ୍ବନ

ତୁମ୍ଭେ କୁହ, "ଆମ୍ଭେ ଏହାଛଡ଼ା ପ୍ରତ୍ୟାଦିଷ୍ଟ ହୋଇନାହୁଁ ଯେ ସେହି ଏକମାତ୍ର ଉପାସ୍ୟହିଁ ତୁମ୍ଭ-ମାନଙ୍କର ଆରାଧ୍ୟ; ତାହା ହେଲେ କଅଣ ତୁମ୍ଭେମାନେ ଆଜ୍ଞାବହ ହେବ ?" ୧୦୮।

ତାପରେ ଯଦି ସେମାନେ ଫେରି ଯାଆନ୍ତି ତେବେ ତୁମ୍ଭେ କୁହ, "ଆମ୍ଭେ ତୁମ୍ଭମାନଙ୍କୁ ଯଥେଷ୍ଟ ସତର୍କ କରି ଦେଇଅଛୁଁ; ଏବଂ ତୁମ୍ଭମାନଙ୍କୁ ଯେଉଁ ପ୍ରତିଶ୍ରୁତି ଦିଆଯାଇଅଛି ତାହା ନିକଟତର କିମ୍ବା ଦୂରତର ସେବିଷୟ ଆମ୍ଭେ ଜାଣୁନା ।୧୦୯।

"ନିଶ୍ଚୟ ତୁମ୍ଭେମାନେ ଯାହା ପ୍ରକାଶ୍ୟରେ କଥା କୁହ ତାହା ସେ ଅବଗତ ଅଛନ୍ତି ଏବଂ ତୁମ୍ଭେମାନେ ଯାହା ଗୋପନ କର ତାହା ମଧ୍ୟ ସେ ଅବଗତ ଅଛନ୍ତି ।୧୧୦।

"ଏବଂ ଏହା ଯଦି ତୁମ୍ଭମାନଙ୍କ ପାଇଁ ପରୀକ୍ଷା ଏବଂ ଅଳ୍ପ ସମୟ ପାଇଁ ସୁଖ ସମ୍ପଦ ହୋଇଥାଏ, ତାହା ଆମ୍ଭେ ଜାଣୁନା"।୧୧୧।

ସେ କହିଥିଲେ, "ହେ ଆମ୍ଭର ପାଳନ କର୍ତ୍ତା ! ତୁମ୍ଭେ ସତ୍ୟରୂପେ ମୀମାଂସା କରିଦିଅ; ଏବଂ ଆମ୍ଭମାନଙ୍କର ପାଳନକର୍ତ୍ତା ଦୟାମୟ; ତୁମ୍ଭେମାନେ ତାଙ୍କ ସମ୍ବନ୍ଧରେ ଯାହା ବର୍ଣ୍ଣନା କର ଆମ୍ଭେ ସେଥିରୁ ରକ୍ଷା ପାଇବା ପାଇଁ ତାଙ୍କର ନିକଟ ସାହାଯ୍ୟ ପ୍ରାର୍ଥନା କରୁଅଛୁଁ ।୧୧୨।

---

କରିବେ ସେମାନଙ୍କର ସମୃଦ୍ଧ କଲ୍ୟାଣ ଅର୍ଥାତ୍ ଇହକାଳ ଓ ପରକାଳର ମଙ୍ଗଳ ଛଡ଼ା କୌଣସି ପ୍ରକାର ଅମଙ୍ଗଳର ଆଶଙ୍କା ନାହିଁ ।

୧୦୯ । ଫେରିଯାଆନ୍ତି—ପରମେଶ୍ୱରଙ୍କ ଏକତ୍ୱରେ ବିଶ୍ୱାସ କରନ୍ତି ନାହିଁ ।
ପ୍ରତିଶ୍ରୁତି ଦିଆଯାଇଅଛି—ଶେଷ ବିଚାର ଦିନ ଉପସ୍ଥିତ ହେବ ବୋଲି ପରମେଶ୍ୱର ଅଙ୍ଗୀକାର କରିଅଛନ୍ତି ।

୧୧୧ । ଏହା—ଅବସର ପ୍ରଦାନ ଅର୍ଥାତ୍ ଶାସ୍ତି ଆଗମନରେ ବିଳମ୍ବ ।
ପରୀକ୍ଷା—ଏହି ଅବସର ମଧ୍ୟରେ ସେମାନେ ଅନୁତାପ କରି ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରୁଛନ୍ତି କି ନା ।

୧୧୨ । ସେ—ମହାପୁରୁଷ ମୋହମ୍ମଦ ! ତୁମ୍ଭେମାନେ—ଅବିଶ୍ୱାସକାରୀମାନେ ।
ତାଙ୍କ ସମ୍ବନ୍ଧରେ ଯାହା ବର୍ଣ୍ଣନା କର—ପରମେଶ୍ୱରଙ୍କ ପ୍ରତି ଯେଉଁସବୁ ମିଥ୍ୟା ଆରୋପ କର ।



## ୨୨ଶ ଅଧ୍ୟାୟ

ନାମ ଅଲ୍‌ହଜ୍ଜ (ହଜ୍ଜବ୍ରତ ପାଳନ)
ମକ୍କାରେ ଅବତୀର୍ଣ୍ଣ । ଏଥିରେ ୧୦ ଟି ବିଭାଗ ଏବଂ ମୋଟ ୭୮ ଟି ଶ୍ଳୋକ ଅଛି
ଦୟାମୟ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ହେ ମାନବଜାତି ! ତୁମ୍ଭେମାନେ ଆମ୍ଭମାନଙ୍କର ପାଳନକର୍ତ୍ତାଙ୍କୁ ଭୟକର; ନିଶ୍ଚୟ ସେହି ସମୟର କମ୍ପନ ଅତି ଗୁରୁତର ବିଷୟ ।୧।

ସେଦିନ ତୁମ୍ଭେ ଏହା ଦେଖିବ ଯେ ପ୍ରତ୍ୟେକ ସ୍ତନ୍ୟଦାୟିନୀ ତାହାର ସ୍ତନ୍ୟ ପାୟୀମାନଙ୍କୁ ଭୁଲି ପଳାଇବେ ଏବଂ ପ୍ରତ୍ୟେକ ଗର୍ଭବତୀ ନିଜ ଗର୍ଭପାତ କରିଦେବେ ଏବଂ ତୁମ୍ଭେ ମାନବମଣ୍ଡଳୀକୁ ଉନ୍ମତ୍ତ ଅବସ୍ଥାରେ ଦେଖିବ ଅଥଚ ସେମାନେ ଉନ୍ମତ୍ତ ନଥିବେ, କିନ୍ତୁ ପରମେଶ୍ୱରଙ୍କ ଶାସ୍ତି କଠୋରତର ଥିବ ।୨।

ଏବଂ ମାନବ ମଣ୍ଡଳୀ ମଧ୍ୟରେ ଏପରି କେତେକେ ଅଛନ୍ତି ଯେଉଁମାନେ କୌଣସି ଜ୍ଞାନ ବ୍ୟତୀତ ପରମେଶ୍ୱରଙ୍କ ସମ୍ବନ୍ଧରେ ତର୍କ କରନ୍ତି ଏବଂ ସେମାନେ ଅବାଧ୍ୟ ସଇତାନମାନଙ୍କ ଅନୁସରଣ କରନ୍ତି ।୩।

ସେମାନଙ୍କ ସମ୍ବନ୍ଧରେ ଲିପିବଦ୍ଧ ହୋଇଅଛି ଯେ ଯେକେହି ସେମାନଙ୍କର ଅନୁରକ୍ତ ହେବ ତେବେ ନିଶ୍ଚୟ ସେମାନେ ତାହାକୁ ବିଭ୍ରାନ୍ତ କରିବେ ଏବଂ ତାହାକୁ ଅଗ୍ନିଶିଖାର ଶାସ୍ତି ଆଡ଼କୁ ପରିଚାଳିତ କରିବେ ।୪।

---

ନାମକରଣ—ଏହି ଅଧ୍ୟାୟର ୨୭ ଶ୍ଳୋକରେ କାବା ମନ୍ଦିର ପ୍ରଦକ୍ଷିଣ କରି ହଜ୍ଜବ୍ରତ ପାଳନ କରିବା ପାଇଁ ଆଦେଶ ହୋଇଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ସେହି ସମୟ—ପୁନରୁତ୍‌ଥାନର ସମୟ ।

୨ । ସେଦିନ—ଶେଷ ବିଚାର ଦିନ ।
ଶେଷ ବିଚାର ଦିନ ପାଇଁ ପୁନରୁତ୍‌ଥାନର ସମୟ କିପରି ଭୟାବହ ଏବଂ ଦୁଃଖପୂର୍ଣ୍ଣ ତାହା ଏହି ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ।
ଉନ୍ମତ୍ତ—ଅଜ୍ଞାନାବସ୍ଥ ।

୩ । ସଇତାନମାନଙ୍କ—ଦୁଷ୍ଟପ୍ରକୃତି ଲୋକମାନଙ୍କ ।

୪ । ଲିପିବଦ୍ଧ ହୋଇଅଛି—ମୀମାଂସା କରାଯାଇଅଛି ।

ହେ ମାନବଗଣ ! ଯଦି ତୁମ୍ଭେମାନେ ପୁନରୁତ୍‌ଥାନ ସମ୍ବନ୍ଧରେ ସନ୍ଦେହକର ତେବେ ସ୍ମରଣରଖ ନିଶ୍ଚୟ ଅମ୍ଭେ ଏଥିପାଇଁ (ପ୍ରଥମେ) ତୁମ୍ଭମାନଙ୍କୁ ମୃତ୍ତିକାରୁ, ତାପରେ ଶୁକ୍ରରୁ, ତାପରେ ରକ୍ତପିଣ୍ଡରୁ, ତାପରେ ମାଂସପିଣ୍ଡରୁ ପୂର୍ଣ୍ଣାକୃତ ଓ ଅପୂର୍ଣ୍ଣାକୃତ ସୃଷ୍ଟି କରିଅଛୁଁ ଯେ ଅମ୍ଭେ ତୁମ୍ଭମାନଙ୍କୁ (ଅମ୍ଭର କ୍ଷମତା)ସୁପ୍ରକାଶିତ କରୁଁ, ଏବଂ ଅମ୍ଭେ ଯାହାକୁ ଇଚ୍ଛା ତାକୁ ନିର୍ଦ୍ଦିଷ୍ଟକାଳ ପର୍ଯ୍ୟନ୍ତ ଜରାୟୁ ମଧ୍ୟରେ ରଖୁଁ ତାପରେ ଅମ୍ଭେ ତାହାକୁ ଶିଶୁରୂପେ ବହିର୍ଗତକରୁଁ, ଯେପରି ତୁମ୍ଭେମାନେ ନିଜ ଯୌବନରେ ଉପସ୍ଥିତ ହେବ; ଏବଂ ତୁମ୍ଭମାନଙ୍କ ମଧ୍ୟରୁ କେହି କେହି (ଯୌବନରେ ଓ ଶୈଶବରେ) ମୃତ୍ୟୁ ଲାଭ କରନ୍ତି ଏବଂ ତୁମ୍ଭମାନଙ୍କ ମଧ୍ୟରୁ କେହି କେହି ଅକର୍ମଣ୍ୟ ଜୀବନ ଆଡ଼କୁ ଅଣାଯାଆନ୍ତି ଏପରିକି ସେମାନେ ଯାହା ଜାଣିଥିଲେ ସେସବୁ ଭୁଲି ଯାଆନ୍ତି; ଏବଂ ତୁମ୍ଭେମାନେ ଭୂମିକୁ ଶୁଷ୍କ ଅନୁର୍ବର ଦେଖୁଅଛ, କିନ୍ତୁ ଯେତେବେଳେ ଅମ୍ଭେ ତାହା ଉପରେ ଜଳ ବର୍ଷଣ କରୁଁ ସେତେବେଳେ ଏହା ସରସ ହୋଇ ଫୁଲି ଉଠେ ଏବଂ ନାନା ମନୋହର (ଯୁଗଳ) ତରୁଲତା ଉତ୍ପାଦନ କରେ ।୬।

ଏହା (ପ୍ରମାଣ କରୁଅଛୁ) ଯେ ନିଶ୍ଚୟ ପରମେଶ୍ୱରହିଁ ସତ୍ୟ ଏବଂ ନିଶ୍ଚୟ ସେ ମୃତକୁ ଜୀବିତ କରୁ-ଅଛନ୍ତି ଏବଂ ନିଶ୍ଚୟ ସେ ସମସ୍ତ ବିଷୟ ଉପରେ ଶକ୍ତିଶାଳୀ ।୭।

ଏବଂ ନିଶ୍ଚୟ ସେହି ସମୟ ଆସିବ ଏଥିରେ କୌଣସି ସନ୍ଦେହ ନାହିଁ; ଏବଂ ନିଶ୍ଚୟ କବର-ମାନଙ୍କରେ ଯେଉଁମାନେ ଅଛନ୍ତି ପରମେଶ୍ୱର ସେମାନଙ୍କୁ ପୁନରୁତ୍‌ଥାନ କରିବେ ।୭।

ଏବଂ ମାନବ ମଣ୍ଡଳୀ ମଧ୍ୟରେ ଏପରି ମଧ୍ୟ କେତେକେ ଅଛନ୍ତି ଯେଉଁମାନେ କୌଣସି ଜ୍ଞାନ ଏବଂ ଉପଦେଶ ଅଥବା ଜ୍ୟୋତିର୍ମୟ ଗ୍ରନ୍ଥବ୍ୟତୀତ ପରମେଶ୍ୱରଙ୍କ ସମ୍ବନ୍ଧରେ ତର୍କ କରନ୍ତି ।୮।

ଗର୍ବରେ ନିଜ ମୁହଁ ଫେରାଇ ନେଇ, ଯେପରିକି ସେମାନେ ଅନ୍ୟମାନଙ୍କୁ ପରମେଶ୍ୱରଙ୍କ (ସତ୍ୟ) ପଥରୁ ବିପଥଗାମୀ କରିବେ; ସେମାନଙ୍କପାଇଁ ଇହକାଳରେ ଲାଞ୍ଛନା ରହିଅଛି ଏବଂ ପୁନରୁତ୍‌ଥାନ ଦିବସରେ ଅମ୍ଭେ ସେମାନଙ୍କୁ ପ୍ରଜ୍ଜ୍ୱଳିତ ଅଗ୍ନିର ଶାସ୍ତି ଆସ୍ୱାଦନ କରାଇବୁଁ ।୯।

ସେମାନଙ୍କୁ କୁହାଯିବ, "ଏହା ଏହି ହେତୁ ଯେ ତୁମ୍ଭମାନଙ୍କର ହସ୍ତଦ୍ୱୟ ଯାହା ପୂର୍ବେ ପ୍ରେରଣ କରିଅଛି ଏବଂ ଯେହେତୁ ପରମେଶ୍ୱର ନିଜ ଲୋକମାନଙ୍କ ପ୍ରତି କିଛି ମାତ୍ର ଅବିଚାର କରିବେ ନାହିଁ" ।୧୦।

---

୫ । ୬ । ଯେଉଁମାନେ ଶେଷ ବିଚାର ଦିନ ପାଇଁ ମୃତ୍ୟୁପରେ ପୁନର୍ଜୀବନ ଲାଭ ସମ୍ବନ୍ଧରେ ସନ୍ଦେହ କରନ୍ତି ସେମାନେ ମନୁଷ୍ୟର ମାତୃ ଗର୍ଭରେ କ୍ରମ ବିକାଶ ଏବଂ ତାହାର ଜନ୍ମ, କ୍ରମବୃଦ୍ଧି ଓ ମୃତ୍ୟୁ ବିଷୟରେ ଚିନ୍ତା କଲେ ଏବଂ ମୃତବତ୍ ଅନୁର୍ବର ଭୂମିକୁ ଜଳ ବର୍ଷଣଦ୍ୱାରା ପରମେଶ୍ୱର କିପରି ସଜୀବ ଓ ଫଳପୁଷ୍ପମଣ୍ଡିତ କରନ୍ତି ସେ ବିଷୟ ଚିନ୍ତା କଲେ ଜାଣିପାରିବେ ଯେ ଏହା ପରମେଶ୍ୱରଙ୍କ ଶକ୍ତିର ବହିର୍ଭୂତ ନୁହେଁ ।
ଅକର୍ମଣ୍ୟ ଜୀବନ—ନିତାନ୍ତ ବୃଦ୍ଧାବସ୍ଥା

୭ । କବର – ମୃତ୍ୟୁପରେ ମାନବ ଶରୀର ଯେଉଁଠାରେ ପୋତା ହୁଏ କିମ୍ବା ସମାଧି ଦିଆଯାଏ ।

୯ । ଅମ୍ଭେ - ଅର୍ଥାତ ପରମେଶ୍ୱର ।

୧୦ । ପରମେଶ୍ୱର ପରଲୋକରେ କାହାରି ପ୍ରତି ଅନ୍ୟାୟ କରିବେ ନାହିଁ । ଯେ ଯେତେଦୂର ଇହଲୋକରେ କର୍ମ-ଫଳ ଅର୍ଜନ କରିଥିବେ ପରଲୋକରେ ତାହା ଭୋଗ କରିବେ ।

## ୨ୟ ବଭାଗ

ଏବଂ ମାନବ ମଣ୍ଡଳୀ ମଧ୍ୟରେ ଏପର ମଧ୍ୟ କେହ ଅଛ ଯେ ସନ୍ଦେହ ସହତ ପରମେଶ୍ୱରଙ୍କ ଉପାସନା କରେ; ସେଥିରେ ଯଦ ତାହାର ମଙ୍ଗଳ ହୁଏ ତେବେ ସେ ଆଶ୍ୱସ୍ତ ହୁଏ ଏବଂ ଯଦ ସେ ଦୁଃଖରେ ପତତ ହୁଏ ତେବେ ସେ ଏକାବେଳକେ ମୁହଁ ଫେରାଇ ଚାଲ୍ୟାଏ; ସେ ଇହକାଳ ଓ ପରକାଳରେ କ୍ଷତଗ୍ରସ୍ତ ହେବ, ଏହାହିଁ ସ୍ପଷ୍ଟତର କ୍ଷତ ।୧୧।

ସେମାନେ ପରମେଶ୍ୱରଙ୍କ ପରବର୍ତ୍ତିରେ ତାହାକୁ ଅହ୍ୱାନ କରନ୍ତି ଯେ ତାହାର କୌଣସି କ୍ଷତ ଅଥବା କୌଣସି ଲଭ କରପାରେନା; ଏହାହିଁ ସୁଦୂରଭ୍ରାନ୍ତି ।୧୨।

ସେମାନେ ତାହାକୁ ଅହ୍ୱାନ କରନ୍ତି ଯାହାର କ୍ଷତ ତାହାର ଲଭ ଅପେକ୍ଷା ନିକଟତର; ଏପର ଅଭଭାବକ ମନ୍ଦ ଏବଂ ଏପର ସହଯୋଗ ମଧ୍ୟ ମନ୍ଦ ଅଟେ । ୧୩ ।

ଯେଉଁମାନେ ବଶ୍ୱାସ ସ୍ଥାପନ କରଅଛନ୍ତି ଏବଂ ସତ୍‌କାର୍ଯ୍ୟ କରନ୍ତି, ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ସ୍ୱର୍ଗୋଦ୍ୟାନରେ ପ୍ରବେଶ କରାଇବେ, ଯାହାର ନିମ୍ନରେ ନଦୀମାନ ପ୍ରବାହତ; ନିଶ୍ଚୟ ପରମେଶ୍ୱର ଯାହା ଇଚ୍ଛା କରନ୍ତି ତାହା କରଥାଆନ୍ତି । ୧୪ ।

ଯଦ କେହ ଧାରଣା କରେ ଯେ ଇହକାଳ ଓ ପରକାଳରେ ପରମେଶ୍ୱର ତାଙ୍କୁ ସାହାଯ୍ୟ କରବେ ନାହିଁ, ତେବେ ସେ ଆକାଶକୁ ଗୋଟିଏ ରଜ୍ଜୁ ବସ୍ତାରତ କରୁ ତାପରେ ସେ ଏହାକୁ କର୍ତ୍ତନ କରବାର ଚେଷ୍ଟା କରୁ । ତାପରେ ସେ ଦେଖ ଯେ ତାହାର ଚକ୍ରାନ୍ତ ତାହାର ଅସନ୍ତୋଷ ଜନକ ବସ୍ତୁକୁ କେତେଦୂର ବନ୍ଦ କର ପାରୁଛ । ୧୫ ।

ଏବଂ ଏହାପର ଅମ୍ଭେ ଏହାକୁ ପ୍ରକାଶ୍ୟ ନିଦର୍ଶନମାନଙ୍କ ସ୍ୱରୂପ ଅବତୀର୍ଣ୍ଣ କରଅଛୁଁ ଏବଂ ଏତଦ୍ଦ୍ୱାରା ପରମେଶ୍ୱର ଯାହାକୁ ଇଚ୍ଛା ପଥ ପ୍ରଦର୍ଶନ କରନ୍ତି । ୧୬ ।

---

୧୧ । ଏହ ଶ୍ଳୋକରେ କ୍ଷୀଣ ବଶ୍ୱାସୀ ସନ୍ଦେହଯୁକ୍ତ ଲୋକମାନଙ୍କ ବଷୟ ବର୍ଣ୍ଣିତ ହୋଇଅଛ ।

୧୩ । ପରମେଶ୍ୱରଙ୍କ ବ୍ୟତୀତ ଯେଉଁମାନଙ୍କୁ ପରମେଶ୍ୱରଙ୍କ ଅଂଶୀଦାର ସ୍ୱରୂପ ଉପାସନା କରାଯାଏ, ସେହ ଉପାସ୍ୟମାନଙ୍କର ଦ୍ୱାରା କୌଣସି ଲଭ ହୁଏ ନାହିଁ, ବରଂ ପରଲୋକରେ ସେମାନେ କ୍ଷତଗ୍ରସ୍ତ ହେବେ । ଅଂଶୀ ଉପାସ୍ୟ ସ୍ଥିର କରବା ଦ୍ୱାରା ଉପାସ୍ୟ ଓ ଉପାସକ ଉଭୟଙ୍କର ଲଭ ପରବର୍ତ୍ତିରେ କ୍ଷତ ଅଧିକ ।

୧୫ । ତାଙ୍କୁ—ମହାପୁରୁଷ ମୋହମ୍ମଦଙ୍କୁ, ଏହାକୁ—ପରମେଶ୍ୱରଙ୍କ ସାହାଯ୍ୟକୁ; ଅସନ୍ତୋଷଜନକ ବସ୍ତୁ—ପରମେଶ୍ୱରଙ୍କ ସାହାଯ୍ୟ ।

ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସବୁ ବଷୟରେ ସାହାଯ୍ୟ କରୁଥିବାରୁ ଅବଶ୍ୱାସକାରୀ ବଧର୍ମୀ ଲୋକମାନେ କ୍ରୋଧରେ ଜରଜର ହୋଇ ତାଙ୍କୁ ପରମେଶ୍ୱରଙ୍କ ସାହାଯ୍ୟରୁ ବଞ୍ଚିତ କରବାପାଇଁ ନାନାପ୍ରକାର ଚକ୍ରାନ୍ତ କରୁଥିଲେ । ଏଥିପାଇଁ ପରମେଶ୍ୱର କହୁଅଛନ୍ତି କ ସେମାନେ ଦଉଡ଼ା ସାହାଯ୍ୟରେ ଆକାଶ ଉପରକୁ ଉଠି ସେଠାରୁ ଆସୁଥିବା ସାହାଯ୍ୟକୁ ବନ୍ଦ କରାଇବାର ଚେଷ୍ଟା କଲେ, କମ୍ବା ଛାତରେ ଦଉଡ଼ା ଟାଙ୍ଗିଇ ତାଦ୍ୱାରା ଅତ୍ମହତ୍ୟା କଲେ ମଧ୍ୟ କମ୍ବା ଯେତେପ୍ରକାର ଚକ୍ରାନ୍ତ କଲେ ମଧ୍ୟ ତାଙ୍କୁ ପରମେଶ୍ୱରଙ୍କ ସାହାଯ୍ୟ ଲଭରୁ ବଞ୍ଚିତ କରପାରବେ ନାହିଁ ।

୧୬ । ଏହାକୁ—ପବତ୍ର କୋରାନ ଗ୍ରନ୍ଥକୁ ।

ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଏବଂ ଯେଉଁମାନେ ଇହୁଦୀ ଓ ସାବେଇନ ଓ ଖ୍ରୀଷ୍ଟାନ ଓ ମଜୁସୀ ଏବଂ ଯେଉଁମାନେ ଅଂଶୀବାଦୀ, ନିଶ୍ଚୟ ପରମେଶ୍ୱର ପୁନରୁତ୍‌ଥାନ ଦିବସରେ ସେମାନଙ୍କ ମଧ୍ୟରେ ମୀମାଂସା କରିଦେବେ; ନିଶ୍ଚୟ ପରମେଶ୍ୱର ସମସ୍ତ ବିଷୟ ଉପରେ ସାକ୍ଷୀ । ୧୭ ।

ତୁମ୍ଭେ କଅଣ ଲକ୍ଷ୍ୟ କରୁନାହଁ ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହା ଅଛି ଏବଂ ସୂର୍ଯ୍ୟ ଓ ଚନ୍ଦ୍ର ଓ ନକ୍ଷତ୍ରମାନେ ଏବଂ ପର୍ବତମାନେ ଓ ବୃକ୍ଷମାନେ ଓ ଜୀବଜନ୍ତୁମାନେ ଏବଂ ମନୁଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ପରମେଶ୍ୱରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରୁଅଛନ୍ତି ? ଏବଂ ସେମାନଙ୍କ ମଧ୍ୟରୁ ଅନେକଙ୍କ ଉପରେ ସେମାନଙ୍କ ଅବାଧ୍ୟତା ଯୋଗୁ ଶାସ୍ତି ସାବ୍ୟସ୍ତ ହୋଇଅଛି; ପରମେଶ୍ୱର ଯାହାକୁ ଲାଞ୍ଛିତ କରନ୍ତି ତାକୁ କେହି ସମ୍ମାନିତ କରିପାରେନା; ନିଶ୍ଚୟ ପରମେଶ୍ୱର ଯାହା ଇଚ୍ଛା କରନ୍ତି ତାହା କରିଥାଆନ୍ତି । ୧୮ ।

ଏହିମାନେ ଦୁଇଟି ବିରୋଧୀ ଦଳ, ଯେଉଁମାନେ ସେମାନଙ୍କର ପାଳନକର୍ତ୍ତାଙ୍କ ସମ୍ବନ୍ଧରେ ତର୍କ କରନ୍ତି; ତାପରେ ଯେଉଁମାନେ ଅବିଶ୍ୱାସ କରିଅଛନ୍ତି ସେମାନଙ୍କ ପାଇଁ ଅଗ୍ନିର ବସ୍ତ୍ର ପ୍ରସ୍ତୁତ ହୋଇଅଛି; ସେମାନଙ୍କ ମସ୍ତକ ଉପରେ ଗରମ ଜଳ ନିକ୍ଷେପ କରାହେବ,— ୧୯ ।

ଯଦ୍ଦ୍ୱାରା ସେମାନଙ୍କ ଉଦରସ୍ଥ ପଦାର୍ଥ ଓ ସେମାନଙ୍କର ଦେହର ଚର୍ମ ବିଗଳିତ ହୋଇଯିବ; ୨୦ ।

ଏବଂ ସେମାନଙ୍କ ପାଇଁ ଲୁହାର ମୁଦଗର ରହିଅଛି । ୨୧ ।

ଯେତେବେଳେ ସେମାନେ ସେଥିରୁ ଦୁଃଖ ଯନ୍ତ୍ରଣାରେ ବାହାରି ଯିବାକୁ ଚେଷ୍ଟା କରିବେ, ସେତେବେଳେ ସେମାନଙ୍କୁ ତାହାରି ମଧ୍ୟକୁ ଫେରାଇ ଦିଆଯିବ; ଏବଂ କୁହାଯିବ "ତୁମ୍ଭେମାନେ ପ୍ରଜ୍ୱଳିତ ଅଗ୍ନିର ଶାସ୍ତି ଆସ୍ୱାଦନ କର ।" ୨୨ ।

### ୩ୟ ବିଭାଗ

ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ସ୍ୱର୍ଗୋଦ୍ୟାନରେ ପ୍ରବେଶ କରାଇବେ, ଯାହାର ନିମ୍ନରେ ନଦୀମାନ ପ୍ରବାହିତ, ସେଠାରେ ସେମାନଙ୍କୁ ସ୍ୱର୍ଣ୍ଣ କଙ୍କଣ ଓ ମୁକ୍ତାହାରଦ୍ୱାରା ସୁଶୋଭିତ କରାହେବ ଏବଂ ସେଠାରେ ସେମାନଙ୍କର ବସ୍ତ୍ର ରେଶମ ନିର୍ମିତ ହେବ । ୨୩ ।

ଯେହେତୁ ସେମାନେ ଇହଜୀବନରେ ପବିତ୍ର ବାକ୍ୟ ଆଡ଼କୁ ଆକୃଷ୍ଟ ହୋଇଥିଲେ ଏବଂ ସେମାନେ ପ୍ରଶଂସିତ ପଥ ଆଡ଼କୁ ଚାଳିତ ହୋଇଥିଲେ । ୨୪ ।

---

୧୭ । ମଜୁସୀ—ଅଗ୍ନି ପୂଜକ ସମ୍ପ୍ରଦାୟ ।
ବିଭିନ୍ନ ଧର୍ମ ମତର ସତ୍ୟତା ସମ୍ବନ୍ଧରେ ପରମେଶ୍ୱର ଶେଷ ବିଚାର ଦିନ ମୀମାଂସା କରିବେ । ଯେ ଯେପରି ପ୍ରତିଫଳ ପାଇବାର ଯୋଗ୍ୟ ସେ ସେହିପରି ପ୍ରତିଫଳ ପାଇବ ।

୧୮ । ଏହି ଶ୍ଳୋକ ପାଠ ଓ ଶ୍ରବଣ ସଙ୍ଗେ ସଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ କରିବା ବିଧେୟ । ଜୀବ ଓ ବିବେକହୀନ ବସ୍ତୁର ସାଷ୍ଟାଙ୍ଗ ପ୍ରଣିପାତ ଅର୍ଥ ଏହି ଯେ ଏମାନେ ସମସ୍ତେ ପରମେଶ୍ୱରଙ୍କ ବଶୀଭୂତ ଅଟନ୍ତି; ଏବଂ ଯାହାକୁ ଯେଉଁ କାର୍ଯ୍ୟରେ ନିର୍ଦ୍ଦିଷ୍ଟ କରିଦିଆ ଯାଇଅଛି, ସେ ସେ କାର୍ଯ୍ୟରେ ବ୍ୟାପୃତ ଅଛି ।

୧୯ । ଦୁଇଟି ବିରୋଧୀ ଦଳ—ପରମେଶ୍ୱରଙ୍କପ୍ରତି ବିଶ୍ୱାସକାରୀ ଏବଂ ସେମାନଙ୍କ ବିପରୀତ ମତାବଲମ୍ବୀ ଅବିଶ୍ୱାସକାରୀ ।

୨୨ । ସେଥିରୁ—ନର୍କ ଯନ୍ତ୍ରଣାରୁ ।

୨୪ । ବିଶ୍ୱାସକାରୀମାନେ ପାର୍ଥିବ ଜୀବନରେ ପବିତ୍ର ବାକ୍ୟ ଅର୍ଥାତ୍ ଇସଲାମ ଧର୍ମର ମୂଳମନ୍ତ୍ର ପ୍ରତି ଆକୃଷ୍ଟ ହୋଇ ପ୍ରଶଂସିତ ପଥ ଅର୍ଥାତ୍ ଇସଲାମ ଧର୍ମ ଗ୍ରହଣ କରିଥିଲେ । ତାହାର ପୁରସ୍କାର ସ୍ୱରୂପ ସେମାନଙ୍କୁ ଶ୍ଳୋ ୨୩ର ବର୍ଣ୍ଣିତ ସୁଖ ସମ୍ପଦ ଦିଆଯିବ ।

ନିଶ୍ଚୟ ଯେଉଁମାନେ ଅବିଶ୍ୱାସ କରିଅଛନ୍ତି ଏବଂ ପରମେଶ୍ୱରଙ୍କ ପଥ ଓ ସେହି ପବିତ୍ର ମସଜିଦରୁ (ଲୋକମାନଙ୍କୁ) ପ୍ରତିରୋଧ କରନ୍ତି, ଯାହାକୁ ଅମ୍ଭେ ସେଠାର ଅଧିବାସୀ ଓ ଅଭ୍ୟାଗତ ଲୋକମାନଙ୍କ ପାଇଁ ସମତୁଲ୍ୟ କରିଅଛୁଁ; ଏବଂ ଯେ କେହି ସେଠାରେ ଅତ୍ୟାଚାର କରିବାକୁ ଉଦ୍ୟତ ହେବେ ଅମ୍ଭେ ସେହି-ମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଅସ୍ୱାଦନ କରାଇବୁଁ । ୨୫ ।

## ୪ର୍ଥ ବିଭାଗ

ଏବଂ ଯେତେବେଳେ ଅମ୍ଭେ ଇବ୍ରାହିମଙ୍କ ପାଇଁ ସେହି ପବିତ୍ର କାବା ଗୃହର ସ୍ଥାନ ନିର୍ଦ୍ଦେଶ କରି ଦେଇଥିଲୁଁ ଏବଂ କହିଥିଲୁ "ଅମ୍ଭ ସହିତ କୌଣସି ବିଷୟକୁ ଅଂଶୀ କରନା ଏବଂ ପ୍ରଦକ୍ଷିଣକାରୀ ମାନଙ୍କ ପାଇଁ ଓ (ଅରାଧନା ପାଇଁ) ଦଣ୍ଡାୟମାନ ବ୍ୟକ୍ତିମାନଙ୍କ ପାଇଁ ଓ ମସ୍ତକ ଅବନତକାରୀ ଓ ସାଷ୍ଟାଙ୍ଗ ପ୍ରଣିପାତକାରୀ-ମାନଙ୍କ ପାଇଁ ଅମ୍ଭର ଗୃହକୁ ପବିତ୍ର ରଖ । ୨୬ ।

"ଏବଂ ମାନବମାନଙ୍କ ମଧ୍ୟରେ ହଜ୍ ସମ୍ବନ୍ଧରେ ଘୋଷଣା କର; ସେମାନେ ତୁମ୍ଭ ନିକଟ ପଦ ବ୍ରଜରେ ଓ କ୍ଷୀଣକାୟ ଉଷ୍ଟ୍ର ଉପରେ ସମସ୍ତ ସୁଦୂର ପଥରୁ ଅଗମନ କରିବେ । ୨୭ ।

"ଯେପରି ସେମାନେ ନିଜର ଉପକାର ପାଇଁ ଉପସ୍ଥିତ ହେବେ ଏବଂ ନିର୍ଦ୍ଦିଷ୍ଟ ଦିବସମାନଙ୍କରେ, ସେ ସେମାନଙ୍କୁ ଗୃହ ପାଳିତ ପଶୁମାନଙ୍କରୁ ଯାହା ଦାନ କରିଅଛନ୍ତି, ଯେପରି ସେମାନେ ତାହା ଉପରେ ପରମେଶ୍ୱରଙ୍କ ନାମ ଉଚ୍ଚାରଣ କରିବେ, ତାପରେ ସେଥିରୁ ଭକ୍ଷଣ କରିବେ ଏବଂ ଅଭାବଗ୍ରସ୍ତ ଓ ହୀନ ଦରିଦ୍ରଙ୍କୁ ଭକ୍ଷଣ କରାଇବେ ।୨୮।

"ତାପରେ ଯେପରି ସେମାନେ ସେମାନଙ୍କର ଅପରିଚ୍ଛନ୍ନତା ଦୂର କରିବେ ଏବଂ ସେମାନଙ୍କର ବ୍ରତ ସମ୍ପୂର୍ଣ୍ଣ କରିବେ ଏବଂ ସେହି ପ୍ରାଚୀନତମ ଗୃହକୁ ପ୍ରଦକ୍ଷିଣ କରିବେ" ।୨୯।

ଏହିପରି (ହଜ୍ଜବ୍ରତ ପାଳିତ ହୁଏ) ଏବଂ ଯେ ପରମେଶ୍ୱରଙ୍କ ପବିତ୍ର ଅଦେଶମାନଙ୍କୁ ସମ୍ମାନ କରେ ତେବେ ତାହା ତାହାର ପାଳନକର୍ତ୍ତାଙ୍କ ନିକଟରେ ତାହା ପାଇଁ ମଙ୍ଗଳ ଜନକ; ଏବଂ ତୁମ୍ଭମାନଙ୍କ ପ୍ରତି ଯାହା ନିଷେଧ କରାହୋଇଅଛି ତାହା ବ୍ୟତୀତ ଅନ୍ୟ ସମସ୍ତ ଗୃହ ପାଳିତ ପଶୁମାନେ ତୁମ୍ଭମାନଙ୍କ ପାଇଁ ବୈଧ ହୋଇ ଅଛନ୍ତି, ଅତଏବ ପ୍ରତିମାମାନଙ୍କର ଅପବିତ୍ରତା ପରିତ୍ୟାଗ କର ଏବଂ ଅସତ୍ୟ ବାକ୍ୟାବଳୀ ଛାଡ଼ିଦିଅ ।୩୦।

---

୨୫ । ବିଧର୍ମୀ ମକ୍କାବାସୀମାନେ ମୁସଲମାନମାନଙ୍କୁ କାବା ମନ୍ଦିରରେ ଉପାସନା କରିବାକୁ ପ୍ରତିରୋଧ କରିଥିଲେ । ଏହାର ଶାସ୍ତି ସ୍ୱରୂପ ସେମାନଙ୍କର ପତନ ଓ ପାର୍ଥିବ ଲାଞ୍ଛନାର ଭବିଷ୍ୟତ ବାଣୀ ଏହି ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ।

୨୬-୨୯ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ଇବ୍ରାହିମଙ୍କ ଦ୍ୱାରା ପବିତ୍ର କାବା ମନ୍ଦିରର ପ୍ରଥମ ସ୍ଥାପନ ଏବଂ ତାହାକୁ ପ୍ରଦକ୍ଷିଣ କରିବା ପାଇଁ ଲୋକମାନଙ୍କ ମଧ୍ୟରେ ଘୋଷଣା ଏବଂ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସେଠାରେ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଗୃହପାଳିତ ପଶୁମାନଙ୍କୁ ବଧ କରି ହୀନ ଦରିଦ୍ର ଲୋକମାନଙ୍କୁ ଭକ୍ଷଣ କରାଇବା ଏବଂ କାବା ମନ୍ଦିରର ପବିତ୍ରତା ଓ ପ୍ରଦକ୍ଷିଣକାରୀମାନଙ୍କର ଶାରୀରିକ ଓ ମାନସିକ ପବିତ୍ରତା ପାଳନ କରିବା ପାଇଁ ଅଦେଶ କରିଥିବା ବିଷୟ ପ୍ରକାଶ କରିଅଛନ୍ତି ।

୩୦ । ମହାପୁରୁଷ ଇବ୍ରାହିମଙ୍କ ସମୟରେ କାବା ମନ୍ଦିର ପ୍ରଦକ୍ଷିଣ କରି ହଜ୍ଜବ୍ରତ ପାଳନ କରିବା ପାଇଁ ପ୍ରଥମେ ଅଦେଶ କରାଯାଇଥିବା ବିଷୟ ସ୍ମରଣ କରାଇ ଦେଇ ପରମେଶ୍ୱର ଏହି ଶ୍ଳୋକରେ ମହାପୁରୁଷ ମୋହମ୍ମଦଙ୍କ ଅନୁଚର-ମାନଙ୍କୁ ସେହିବ୍ରତ ପାଳନ କରିବା ପାଇଁ ଅଦେଶ କରିଅଛନ୍ତି ।

ପରମେଶ୍ୱରଙ୍କ ଉପରେ ସୁଦୃଢ଼ ବିଶ୍ୱାସୀମାନେ ତାଙ୍କ ସହିତ ଅଂଶୀସ୍ଥାପନକାରୀ ନୁହନ୍ତି; ଏବଂ ଯେ ପରମେଶ୍ୱରଙ୍କ ସହିତ ଅଂଶୀସ୍ଥାପନ କରେ, ତେବେ ସେ ଯେପରି ଆକାଶରୁ ପତିତ ହୁଏ, ତାପରେ ପକ୍ଷୀମାନେ ତାକୁ ବୋହି ନିଅନ୍ତି ଅଥବା ଝଞ୍ଜାବାୟୁ ତାହାକୁ ଦୂରବର୍ତ୍ତୀ ସ୍ଥାନରେ ନିକ୍ଷେପ କରିଦିଏ ।୩୧।

ତାହାର ଦଶା ଏହିପରି; ଏବଂ ଯେ ପରମେଶ୍ୱରଙ୍କ ସ୍ମୃତିଚିହ୍ନମାନଙ୍କର ସମ୍ମାନ କରେ, ତେବେ ନିଶ୍ଚୟ ତାହା ଅନ୍ତରର ସଂଯମର ପରିଚାୟକ ।୩୨।

ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ତୁମ୍ଭମାନଙ୍କ ପାଇଁ ସେଥିରେ ଉପକାର ଅଛି, ତାପରେ ପ୍ରାଚୀନତମ-ଭବନ ସେମାନଙ୍କର ଉତ୍ସର୍ଗର ସ୍ଥାନ ଅଟେ ।୩୩।

## ୫ମ ବିଭାଗ

ଏବଂ ଆମ୍ଭେ ପ୍ରତ୍ୟେକ ଧର୍ମ ସମ୍ପ୍ରଦାୟ ପାଇଁ ଧର୍ମାନୁଷ୍ଠାନ ନିର୍ଦ୍ଧାରଣ କରି ଦେଇଅଛୁଁ ଯେ ସେ ଗୃହପାଳିତ ପଶୁମାନଙ୍କ ମଧ୍ୟରୁ ସେମାନଙ୍କୁ ଯାହା ଦେଇଅଛନ୍ତି ତାହା ଉପରେ (ବଧ କରିବା ସମୟରେ) ଯେପରି ସେମାନେ ପରମେଶ୍ୱରଙ୍କ ନାମ ଉଚ୍ଚାରଣ କରିବେ; ବାସ୍ତବରେ ସେହି ଏକମାତ୍ର ଉପାସ୍ୟହିଁ ତୁମ୍ଭମାନଙ୍କର ଉପାସ୍ୟ, ଅତଏବ ତାଙ୍କରି ଉଦ୍ଦେଶ୍ୟରେ ଆତ୍ମସମର୍ପଣ କର; ଏବଂ ସେହି ବିନୀତ ଲୋକମାନଙ୍କୁ ସ୍ୱର୍ଗର ସୁସମ୍ବାଦ ପ୍ରଦାନ କର, ।୩୪।

ଯେଉଁମାନଙ୍କର ହୃଦୟ ପରମେଶ୍ୱରଙ୍କୁ ସ୍ମରଣ କଲାବେଳେ ଭକ୍ତି ଭୟରେ କମ୍ପିତ ହୁଏ, ଏବଂ ଦୁଃଖ ଯନ୍ତ୍ରଣାରେ ଧୈର୍ଯ୍ୟଶୀଳମାନଙ୍କୁ ଏବଂ ଆରାଧନା ପ୍ରତିଷ୍ଠାକାରୀମାନଙ୍କୁ, ଏବଂ ଆମ୍ଭେ ସେମାନଙ୍କୁ ଯାହା ଦାନ କରିଅଛୁଁ ସେଥିରୁ ଦାନକାରୀମାନଙ୍କୁ ।୩୫।

ଏବଂ ଆମ୍ଭେ (କୋରବାନୀ) ଉଷ୍ଟ୍ରମାନଙ୍କୁ ପରମେଶ୍ୱରଙ୍କ ନିଦର୍ଶନ ସ୍ୱରୂପ ତୁମ୍ଭମାନଙ୍କ ପାଇଁ ସୃଷ୍ଟି କରିଅଛୁଁ, ସେଥିରେ ତୁମ୍ଭମାନଙ୍କ ପାଇଁ ମଙ୍ଗଳ ରହିଅଛି; ଅତଏବ ସେମାନେ (ବଧ ପାଇଁ ଦଣ୍ଡାୟମାନ ହୋଇଥିବା ଅବସ୍ଥାରେ ସେମାନଙ୍କ ଉପରେ ପରମେଶ୍ୱରଙ୍କ ନାମ ଉଚ୍ଚାରଣ କର; ତାପରେ ଯେତେବେଳେ ସେମାନେ ବଧ ହୋଇ ଭୂପତିତ ହେବେ ସେତେବେଳେ ତୁମ୍ଭେମାନେ ସେମାନଙ୍କୁ ଭକ୍ଷଣ କର ଏବଂ ସନ୍ତୁଷ୍ଟ

---

ଅସତ୍ୟ ବାକ୍ୟାବଳୀ—ମକ୍କାବାସୀ ପୌତ୍ତଳିକମାନେ ହଜ୍ଜବ୍ରତ ପାଳନ ସମୟରେ ପରମେଶ୍ୱରଙ୍କ ନାମ ସହିତ ଅଂଶୀ ଉପାସ୍ୟମାନଙ୍କ ନାମ ଉଚ୍ଚାରଣ କରୁଥିଲେ । ତାହା ପରିତ୍ୟାଗ କରିବା ପାଇଁ ଆଦେଶ କରାଯାଇଅଛି ।

୩୧ । ଅଂଶୀବାଦୀର ଜୀବନ ବ୍ୟର୍ଥ ହେବ, ତାହା ଉଦାହରଣ ଦ୍ୱାରା ବୁଝାଇ ଦିଆଯାଇଅଛି ।

୩୨ । ପରମେଶ୍ୱରଙ୍କ ସ୍ମୃତି ଚିହ୍ନ—କାବା ମନ୍ଦିର—ଦେଖ ଏହି ଅଧ୍ୟାୟ ଶ୍ଳୋ୨୬-୨୮ ।

୩୩ । ପ୍ରାଚୀନତମ ଭବନ=କାବା ମନ୍ଦିର ।

ହଜ୍ଜ ସମୟରେ ବାଣିଜ୍ୟ ବ୍ୟବସାୟ ଦ୍ୱାରା ଲୋକମାନଙ୍କର ଉପକାର ହୁଏ ।

୩୪ । ମୁସଲମାନମାନଙ୍କୁ ଗୃହପାଳିତ ପଶୁରୁ ଉତ୍ସର୍ଗ ବା କୋରବାନୀ କରିବା ପାଇଁ ଯେଉଁ ଆଦେଶ କରାଯାଇଅଛି ଏହା କୌଣସି ନୂତନ ଅନୁଷ୍ଠାନ ନୁହେଁ । ଏହା ପୂର୍ବବର୍ତ୍ତୀ ଧର୍ମ ସମ୍ପ୍ରଦାୟମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଏହାର ପ୍ରକୃତ ଉଦ୍ଦେଶ୍ୟ ଗୃହପାଳିତ ପଶୁମାନଙ୍କୁ ପରମେଶ୍ୱରଙ୍କ ନାମରେ ଉତ୍ସର୍ଗ କରି ତାହାକୁ ବଧ କରି ଦୀନ ଦରିଦ୍ର ଲୋକମାନଙ୍କୁ ଭକ୍ଷଣ କରାଇବା ଦ୍ୱାରା ପୁଣ୍ୟ ଅର୍ଜ୍ଜନ କରିବା । ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ଆତ୍ମସମର୍ପଣ କରିବା ଏହାର ଚରମ ଲକ୍ଷ୍ୟ ଅଟେ ।

ଦରିଦ୍ରମାନଙ୍କୁ ଏବଂ ଭିକ୍ଷୁକମାନଙ୍କୁ ଭକ୍ଷଣ କରାଅ; ଏହିପରି ଆମ୍ଭେ ସେମାନଙ୍କୁ ତୁମ୍ଭମାନଙ୍କର ଅଧିନସ୍ତାଧୀନ କରିଅଛୁଁ ଯେପରି ତୁମ୍ଭେମାନେ କୃତଜ୍ଞ ହେବ ।୩୬।

ସେମାନଙ୍କର ମାଂସ ଅଥବା ସେମାନଙ୍କର ରକ୍ତ କଦାପି ପରମେଶ୍ୱରଙ୍କ ନିକଟ ଉପସ୍ଥିତ ହୁଏନାହିଁ ବରଂ ତୁମ୍ଭମାନଙ୍କର ସଂଯମହିଁ ତାଙ୍କ ନିକଟ ଉପସ୍ଥିତ ହୋଇଥାଏ; ଏହିପରି ସେ ସେମାନଙ୍କୁ ତୁମ୍ଭମାନଙ୍କର ଅଧିନସ୍ତାଧୀନ କରିଅଛନ୍ତି ଯେପରି ତୁମ୍ଭେମାନେ ପରମେଶ୍ୱରଙ୍କ ମହିମା କୀର୍ତ୍ତନ କର, କାରଣ ସେ ତୁମ୍ଭମାନଙ୍କୁ ପଥ ଦେଖାଇ ଅଛନ୍ତି; ଏବଂ ପୁଣ୍ୟବାନମାନଙ୍କୁ ସ୍ୱର୍ଗରେ ସୁସମ୍ବାଦ ଦିଅ ।୩୭।

ନିଶ୍ଚୟ ପରମେଶ୍ୱର ବିଶ୍ୱାସସ୍ଥାପନକାରୀମାନଙ୍କଠାରୁ ବିପଦ ଦୂରୀଭୂତ କରି ଥାଆନ୍ତି; ନିଶ୍ଚୟ ପରମେଶ୍ୱର ଅକୃତଜ୍ଞ ଓ ଅବିଶ୍ୱାସକାରୀମାନଙ୍କୁ ଭଲ ପାଆନ୍ତି ନାହିଁ ।୩୮।

## ୬ଷ୍ଠ ବିଭାଗ

ଯେଉଁମାନଙ୍କୁ (ଯୁଦ୍ଧରେ) ଆକ୍ରମଣ କରାହୁଏ ସେମାନଙ୍କୁ (ଆତ୍ମରକ୍ଷାର୍ଥ ଯୁଦ୍ଧ କରିବାକୁ) ଅନୁମତି ଦିଆ ଯାଉଅଛି, କାରଣ ସେମାନେ ଅତ୍ୟାଚାରିତ ହୋଇଅଛନ୍ତି; ଏବଂ ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ସାହାଯ୍ୟ କରିବାକୁ ଶକ୍ତିଶାଳୀ, ।୩୯।

ଯେଉଁମାନେ ନିଜ ଗୃହରୁ ଅନ୍ୟାୟ ଭାବରେ ବିତାଡ଼ିତ ହୋଇଅଛନ୍ତି, କାରଣ ସେମାନେ କହିଥିଲେ "ପରମେଶ୍ୱରହିଁ ଆମ୍ଭମାନଙ୍କର ପାଳନକର୍ତ୍ତା"; ଏବଂ ଯଦି ପରମେଶ୍ୱର ମାନବମଣ୍ଡଳୀର ଏକଦଳ ଦ୍ୱାରା ଅନ୍ୟ ଦଳର (ଅତ୍ୟାଚାରକୁ) ଦମନ ନ କରନ୍ତେ ତେବେ ସେହି ମଠ ଗିର୍ଜା, ମନ୍ଦିର ଓ ମସଜିଦମାନ, ଯେଉଁଠାରେ ପରମେଶ୍ୱରଙ୍କ ନାମ ଅଧିକ ପରିମାଣରେ ସ୍ମରଣ କରାଯାଏ, ଧ୍ୱଂସ ହୋଇ ଯାଆନ୍ତା; ଏବଂ

---

୩୬ । ଏହି ଶ୍ଳୋକରେ ଉଷ୍ଟ୍ରକୁ କେଉଁ ପ୍ରଣାଳୀରେ କୋରବାନୀ ବା ଉତ୍ସର୍ଗ କରିବାକୁ ହେବ ଏବଂ କେଉଁମାନଙ୍କୁ ଭକ୍ଷଣ କରାଇବାକୁ ହେବ ତାହା ବର୍ଣ୍ଣିତ ହୋଇଅଛି ।
ସନ୍ତୁଷ୍ଟ ଦରିଦ୍ର—ଯେଉଁମାନେ ଦରିଦ୍ରତାକୁ ସ୍ୱଇଚ୍ଛାରେ ବରଣ କରିଅଛନ୍ତି, ସେମାନେ ଭିକ୍ଷା କରନ୍ତି ନାହିଁ, ବରଂ ପରମେଶ୍ୱର ଯାହା ଦିଅନ୍ତି ସେଥିରେ ସନ୍ତୁଷ୍ଟ ରହନ୍ତି ।
କୋରବାନୀର ଆଦେଶ ସଙ୍କ ପ୍ରଥମେ ହାଜୀ ବା ହଜବ୍ରତ ପାଳନକାରୀମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିଲା; ପରେ ସେହି ଆଦେଶ ସାଧାରଣ ମୁସଲମାନମାନଙ୍କ ମଧ୍ୟରେ ପାଳନୀୟ କରିଦିଆ ଯାଇଅଛି ।

୩୭ । ଏହି ଶ୍ଳୋକରେ ପଶୁ ଉତ୍ସର୍ଗ (କୋରବାନୀ)ର ପ୍ରକୃତ ଉଦ୍ଦେଶ୍ୟ ବର୍ଣ୍ଣିତ ହୋଇଅଛି । ପଶୁ ଉତ୍ସର୍ଗ ବାହ୍ୟିକ ଅନୁଷ୍ଠାନ ଅଟେ । ଆମ୍ଭମାନଙ୍କ ମଧ୍ୟରେ ପଶୁବତ୍ ଯେଉଁ ରିପୁ ଅଛି ତାହାକୁହିଁ ସଂହାର ବା ଦମନକରା କୋରବାନୀର ଅନ୍ତର୍ନିହିତ ଲକ୍ଷ୍ୟ ଅଟେ ।
ଉତ୍ସର୍ଗୀକୃତ ଯେ ପଶୁର ମାଂସ ବା ରକ୍ତ ପରମେଶ୍ୱରଙ୍କଠାରେ ପହୁଞ୍ଚେ ନାହିଁ ଅର୍ଥାତ୍ ପରମେଶ୍ୱର ପଶୁର ମାଂସ ଓ ରକ୍ତ ଗ୍ରହଣ କରନ୍ତି ନାହିଁ; ମାତ୍ର ହୃଦୟର ପବିତ୍ରତା ଗ୍ରହଣ କରନ୍ତି । କୋରବାନୀ ସମ୍ବନ୍ଧରେ ୩୭ ଅଧ୍ୟାୟର ୧୦୦-୧୦୮ ଶ୍ଳୋକ ଓ ତହିଁର ଟୀକା ଦେଖ ।

୩୯ । ଅବିଶ୍ୱାସକାରୀ ବିଧର୍ମୀ ମକ୍କାବାସୀମାନଙ୍କ ଅତ୍ୟାଚାରରୁ ଆତ୍ମରକ୍ଷା କରିବା ପାଇଁ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ପରମେଶ୍ୱର ମୁସଲମାନମାନଙ୍କୁ ଆଦେଶ କରିଅଛନ୍ତି ।

ପରମେଶ୍ୱର ଅବଶ୍ୟ ତାହାକୁ ସାହାଯ୍ୟ କରିବେ ଯେ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବ; ନିଶ୍ଚୟ ପରମେଶ୍ୱର ମହା ପରାକ୍ରାନ୍ତ ।୪୦।

ଯଦି ଅମ୍ଭେ ସେମାନଙ୍କୁ ପୃଥିବୀରେ ସୁପ୍ରତିଷ୍ଠିତ କରୁଁ ତେବେ ସେମାନେ ଆରାଧନା ପ୍ରତିଷ୍ଠିତ କରିବେ ଓ ଜକାତ୍ ପ୍ରଦାନ କରିବେ ଏବଂ ସେମାନେ ସତ୍‌କାର୍ଯ୍ୟରେ ଆଦେଶ ଓ ଅସତ୍‌କାର୍ଯ୍ୟରେ ନିଷେଧ କରିବେ ଏବଂ କାର୍ଯ୍ୟମାନଙ୍କର ପରିଣାମ ପରମେଶ୍ୱରଙ୍କ ହାତରେ ଅଛି ।୪୧।

ଏବଂ ହେ ମୋହମ୍ମଦ ଯଦି ସେମାନେ ତୁମ୍ଭ ପ୍ରତି ମିଥ୍ୟାରୋପ କରନ୍ତି, ତେବେ ସେମାନଙ୍କ ପୂର୍ବେ ମଧ୍ୟ ନୂହ-ସମ୍ପ୍ରଦାୟ ଏବଂ ଆଦ୍ ଓ ସମୁଦ୍ ସମ୍ପ୍ରଦାୟ (ସେମାନଙ୍କ ପ୍ରେରିତପୁରୁଷଙ୍କ ପ୍ରତି) ମିଥ୍ୟାରୋପ କରିଥିଲେ; ।୪୨।

ଏବଂ ଇବ୍ରାହିମଙ୍କର ଓ ଲୁତ୍‌ଙ୍କର ସମ୍ପ୍ରଦାୟ ମଧ୍ୟ; ।୪୩।

ଏବଂ ମଦାୟେନ ବାସୀମାନେ ମଧ୍ୟ; ଏବଂ ମୂସାଙ୍କ ପ୍ରତି ମଧ୍ୟ ମିଥ୍ୟାରୋପ କରା ହୋଇଥିଲା; କିନ୍ତୁ ଅମ୍ଭେ ଅବିଶ୍ୱାସକାରୀମାନଙ୍କୁ ଅବକାଶ ଦେଇଥିଲୁଁ, ତାପରେ ଅମ୍ଭେ ସେମାନଙ୍କୁ ଧୃତ କରିଥିଲୁଁ, ସେତେବେଳେ ଆମ୍ଭର ଶାସ୍ତି କିପରି ହୋଇଥିଲା । ।୪୪।

ଏହିପରି କେତେ ନଗର ଅଛି ଯାହାକୁ ଅମ୍ଭେ ଧ୍ୱଂସ କରିଅଛୁଁ, କାରଣ ସେ ନଗରବାସୀମାନେ ଅତ୍ୟାଚାରୀ ଥିଲେ, ତାପରେ ସବୁ ଛାଦ ଉପରୁ ତଳେ ପଡି ଯାଇଥିଲେ, ଏବଂ ଅନେକ କୂପ ଓ ଉଚ୍ଚ ପ୍ରାସାଦମାନ ଅଜୀର୍ଣ୍ଣ ଅବସ୍ଥାରେ ରହିଅଛି ।୪୫।

ତେବେ କଅଣ ସେମାନେ ପୃଥିବୀ ମଧ୍ୟରେ ଭ୍ରମଣ କରୁନାହାନ୍ତି ? ତାପରେ ସେମାନଙ୍କର କଅଣ ହୃଦୟମାନ ଅଛି ଯାହା ହୃଦୟଙ୍ଗମ କରିବ ଅଥବା କର୍ଣ୍ଣମାନ ଅଛି ଯାହା ଶ୍ରବଣ କରିବ ? କିନ୍ତୁ ସେମାନଙ୍କର ଚକ୍ଷୁସବୁ ନିଶ୍ଚୟ ଦୃଷ୍ଟିହୀନ ହୋଇନାହିଁ, ବରଂ ସେମାନଙ୍କ ବକ୍ଷ ମଧ୍ୟରେ ଥିବା ହୃଦୟମାନ ଅନ୍ଧ ହୋଇଅଛି ।୪୬।

---

୪୦ । ୩୯ ଶ୍ଳୋକ ବର୍ଣ୍ଣିତ ଯୁଦ୍ଧ କରିବା ଯୁକ୍ତିଯୁକ୍ତ ଅଟେ, କାରଣ ତାହା ନ ହେଲେ ବିଭିନ୍ନ ଯୁଗରେ ପରମେଶ୍ୱରଙ୍କ ଆଜ୍ଞାପାଳନକାରୀ ଭକ୍ତମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଉପାସନା ମନ୍ଦିରମାନ ବିଧର୍ମୀ ଅତ୍ୟାଚାରୀମାନଙ୍କ ଦ୍ୱାରା ଧ୍ୱଂସ ପ୍ରାପ୍ତ ହୋଇ ଯାଇଥାନ୍ତା ଏବଂ ପରମେଶ୍ୱରଙ୍କ ନାମ ସ୍ମରଣ କରିବା ପାଇଁ କେହି ବାକି ରହି ନଥାନ୍ତେ । ୨ୟ ଅଧ୍ୟାୟ ୨୫୧ ଶ୍ଳୋକ ଓ ତହିଁର ଟୀକା ଦେଖ ।

୪୧ । ଧର୍ମପ୍ରାଣ ପରମେଶ୍ୱରଙ୍କ ଭକ୍ତମାନେ ଶକ୍ତିଶାଳୀ ହେଲେ ସେମାନେ ପୃଥିବୀରେ ସତ୍‌କାର୍ଯ୍ୟ ଓ ସତ୍ ଅନୁଷ୍ଠାନମାନ ପ୍ରତିଷ୍ଠିତ କରିବେ, ଏଥିପାଇଁ ପରମେଶ୍ୱର ସେମାନଙ୍କୁ ସାହାଯ୍ୟ କରି ଶକ୍ତିଶାଳୀ କରିଦିଅନ୍ତି ।
ସେମାନଙ୍କୁ = ବିଶ୍ୱାସକାରୀମାନଙ୍କୁ

୪୨-୪୪ । ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ଆଶ୍ୱାସନା ଦେଇ କହୁଅଛନ୍ତି, "ଯଦି ବିଧର୍ମୀ ଲୋକମାନେ ତୁମ୍ଭକୁ ମିଥ୍ୟାବାଦୀ ମନେ କରୁଅଛନ୍ତି, ସେଥିପାଇଁ ତୁମ୍ଭର ଦୁଃଖିତ ହେବା ଉଚିତ ନୁହେଁ । କାରଣ ଏଥିପୂର୍ବେ ମଧ୍ୟ ପୂର୍ବବର୍ତ୍ତୀ ଧର୍ମପ୍ରବର୍ତ୍ତକମାନଙ୍କୁ ଲୋକମାନେ ମିଥ୍ୟାବାଦୀ ମନେ କରି ବିରୁଦ୍ଧାଚରଣ କରିଥିଲେ । ପରମେଶ୍ୱର ପ୍ରଥମେ ସେମାନଙ୍କୁ ଅବକାଶ ଦେଇ ପରେ ସେମାନଙ୍କୁ ଧ୍ୱଂସ କରିଦେଇଥିଲେ ।"

୪୫-୪୬ । ପୂର୍ବେ ଯେଉଁ ଘଟଣାମାନ ଘଟିଯାଇଅଛି ଏବଂ ଯାହାର ନିଦର୍ଶନମାନ ରହିଅଛି, ତାହା ଦେଖି ଲୋକମାନଙ୍କୁ ଶିକ୍ଷା ଲାଭ କରିବା ଆବଶ୍ୟକ । ମାତ୍ର ସେମାନେ ତାହା ନକରି ପ୍ରେରିତ ପୁରୁଷମାନଙ୍କ ବିରୁଦ୍ଧାଚରଣ କରୁଅଛନ୍ତି କାରଣ ବଦ୍ଧମୂଳ ହଠକାରିତା ହେତୁ ସେମାନଙ୍କ ହୃଦୟ କଠିନ ହୋଇଅଛି ଏବଂ ସତ୍ୟ ଗ୍ରହଣ କରିବାର ଶକ୍ତି ହରାଇଅଛି ।

ଏବଂ ସେମାନେ ତୁମ୍ଭ ନିକଟ ଶାସ୍ତି ସମ୍ବନ୍ଧରେ ସତ୍ୱରତା କରୁଅଛନ୍ତି, କିନ୍ତୁ ପରମେଶ୍ୱର କଦାପି ତାଙ୍କର ଅଙ୍ଗୀକାର ଭଙ୍ଗ କରିବେ ନାହିଁ, ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରେ ଗୋଟିଏ ଦିବସ ତୁମ୍ଭମାନଙ୍କର ଗଣନାନୁଯାୟୀ ସହସ୍ର ବର୍ଷ ସଙ୍ଗେ ସମାନ ।୪୭।

ଏବଂ ଏପରି କେତେ ନଗର ଅଛି (ଯାହାର ଲୋକମାନଙ୍କୁ) ଆମ୍ଭେ ଅବକାଶ ଦେଇଥିଲୁଁ, ଅଥଚ ସେମାନେ ଅତ୍ୟାଚାରୀ ଥିଲେ, ତାପରେ ଆମ୍ଭେ ସେମାନଙ୍କୁ ଧୃତ କରିଥିଲୁଁ; ଏବଂ ଆମ୍ଭର ଆଡ଼କୁ ସେମାନଙ୍କୁ ଫେରି ଯିବାକୁ ହେବ ।୪୮।

## ୭ମ ବିଭାଗ

ତୁମ୍ଭେ କୁହ, "ହେ ମାନବଗଣ ! ଆମ୍ଭେ ତୁମ୍ଭମାନଙ୍କ ପାଇଁ ପ୍ରକାଶ୍ୟ ଭୟ ପ୍ରଦର୍ଶନକାରୀ ଛଡ଼ା ଅନ୍ୟକିଛି ନୋହୁଁ" ।୪୯।

ତାପରେ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି, ସେମାନଙ୍କ ପାଇଁ କ୍ଷମା ଓ ସମ୍ମାନଜନକ ଜୀବିକା ରହିଅଛି ।୫୦।

ଏବଂ ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କୁ ନିଷ୍ଫଳ କରିବାକୁ ଚେଷ୍ଟା କରନ୍ତି ସେହିମାନେହିଁ ନରକାଗ୍ନିର ଅଧିବାସୀ ।୫୧।

ଏବଂ ହେ ମୋହମ୍ମଦ ଆମ୍ଭେ ତୁମ୍ଭ ପୂର୍ବେ ଯେତେ ପ୍ରେରିତ ପୁରୁଷ କିମ୍ବା ଧର୍ମ ପ୍ରବର୍ତ୍ତକ ପ୍ରେରଣ କରି ଥିଲୁଁ ଯେତେବେଳେ ସେମାନେ ସଂକଳ୍ପ କରୁଥିଲେ ସଏତାନ ସେମାନଙ୍କ ସଙ୍କଳ୍ପ ମଧ୍ୟରେ ବିଘ୍ନ ଘଟାଉଥିଲା; କିନ୍ତୁ ସଏତାନ ଯାହା ବିଘ୍ନ ଘଟାଉଥିଲା ପରମେଶ୍ୱର ତାହାକୁ ବିଦୂରିତ କରି ପରେ ନିଜ ନିଦର୍ଶନମାନଙ୍କୁ ପ୍ରତିଷ୍ଠିତ କରୁଥିଲେ ଏବଂ ପରମେଶ୍ୱର ମହାଜ୍ଞାନୀ ଓ ବିଜ୍ଞାନୀ ।୫୨।

ଏହିପରି ସଏତାନ ଯାହା ବିଘ୍ନ ଘଟାଉଥିଲା ସେ ତାହା ସେମାନଙ୍କ ପାଇଁ ପରୀକ୍ଷାସ୍ୱରୂପ କରିଥିଲେ ଯେଉଁମାନଙ୍କର ହୃଦୟ ରୋଗାକ୍ରାନ୍ତ ଏବଂ ଯେଉଁମାନଙ୍କ ହୃଦୟ କଠିନ, ଏବଂ ନିଶ୍ଚୟ ଅତ୍ୟାଚାରୀମାନେ ସୁଦୃଢ଼ ବିରୁଦ୍ଧାଚରଣ ମଧ୍ୟରେ ରହି ଅଛନ୍ତି ।୫୩।

---

୪୭ । ପରମେଶ୍ୱର ଅବାଧ୍ୟ ଲୋକମାନଙ୍କ ଶାସ୍ତି ପାଇଁ ଯେଉଁ ସମୟ ନିର୍ଦ୍ଦିଷ୍ଟ କରିଅଛନ୍ତି ତାହା ଅନ୍ୟଥା ହେବ ନାହିଁ । ଲୋକମାନଙ୍କ ନିକଟରେ ଯାହା ଅତି ଦୀର୍ଘକାଳ ବୋଲି ବୋଧହୁଏ ପରମେଶ୍ୱରଙ୍କ ନିକଟରେ ତାହା ଅତି ଅଳ୍ପ ସମୟ ।.

୫୨ । ଏହି ଶ୍ଳୋକରେ ପରମେଶ୍ୱର ବିଧର୍ମୀ ଅତ୍ୟାଚାରୀମାନଙ୍କର ଅତ୍ୟାଚାର ଓ କୁମନ୍ତ୍ରଣା ସମ୍ବନ୍ଧରେ ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ଦେଇ କହୁଅଛନ୍ତି କି ପ୍ରତିଯୁଗରେ ପ୍ରେରିତ ପୁରୁଷଙ୍କ ଆବିର୍ଭାବ ସମୟରେ ପାପାତ୍ମା ସଏତାନର ପ୍ରରୋଚନାରେ ଅବିଶ୍ୱାସକାରୀ ବିଧର୍ମୀ ଲୋକମାନେ ଧର୍ମପ୍ରବର୍ତ୍ତକମାନଙ୍କର ବିରୁଦ୍ଧାଚରଣ କରିଥାନ୍ତି । କିନ୍ତୁ ପରମେଶ୍ୱର ସେମାନଙ୍କର ଚକ୍ରାନ୍ତ ସବୁକୁ ବିଫଳ କରିଦେଇ ପ୍ରେରିତ ପୁରୁଷମାନଙ୍କୁ ଜୟଯୁକ୍ତ କରିଥାନ୍ତି । ସୁତରାଂ ଏଥିରେ ଦୁଃଖିତ ହେବାର କୌଣସି କାରଣ ନାହିଁ ।

୫୩ । ବରଂ ଏହାଦ୍ୱାରା ଖାଣ୍ଟି ଭକ୍ତମାନଙ୍କର ପରୀକ୍ଷା ହେଉଅଛି ।
ସେ—ପରମେଶ୍ୱର ।
ପରୀକ୍ଷାସ୍ୱରୂପ—ଧର୍ମପ୍ରବର୍ତ୍ତକଙ୍କ ବିରୁଦ୍ଧରେ ସଏତାନ ଯେଉଁ ସବୁ ଚକ୍ରାନ୍ତ କରିଥାଏ, ତାହା କ୍ଷୀଣ ବିଶ୍ୱାସୀ ଓ ଅବିଶ୍ୱାସୀମାନଙ୍କ ପାଇଁ ପରୀକ୍ଷା ସ୍ୱରୂପ ହୋଇଥାଏ ।

ଏବଂ ଯେଉଁମାନେ ଜ୍ଞାନ ଲାଭ କରି ଅଛନ୍ତି ସେମାନେ ଅବଗତ ଅଛନ୍ତି ଯେ ଏହା କୋରାନ ତୁମ୍ଭର ପାଳନ କର୍ତ୍ତାଙ୍କର ସତ୍ୟ ଗ୍ରନ୍ଥ ଯେପରି ସେମାନେ ଏଥିପ୍ରତି ବିଶ୍ୱାସ ସ୍ଥାପନ କରିବେ, ତାପରେ ସେମାନଙ୍କର ହୃଦୟ ତାଙ୍କର ଉଦ୍ଦେଶ୍ୟରେ ବିନୀତ ହେବ; ଏବଂ ନିଶ୍ଚୟ ପରମେଶ୍ୱର ବିଶ୍ୱାସକାରୀମାନଙ୍କୁ ସରଳ ପଥରେ ପଥ ଦେଖାଇ ଥାଆନ୍ତି ।୫୪।

ଏବଂ ଅକସ୍ମାତ ସେହି ସମୟ ସେମାନଙ୍କ ଅଗରେ ଉପସ୍ଥିତ ନହେବା ପର୍ଯ୍ୟନ୍ତ ଅଥବା ଧ୍ୱଂସକାରୀ ଦିବସର ଶାସ୍ତି ସେମାନଙ୍କ ନିକଟ ଉପସ୍ଥିତ ନହେବା ପର୍ଯ୍ୟନ୍ତ ଅବିଶ୍ୱାସକାରୀମାନେ କଦାପି ସେଥିରୁ ସନ୍ଦେହ ମୁକ୍ତ ହେବେ ନାହିଁ ।୫୫।

ସେହି ଦିନର ଆଧିପତ୍ୟ ପରମେଶ୍ୱରଙ୍କର ହେବ, ସେହି ସେମାନଙ୍କ ମଧ୍ୟରେ ବିଚାର କରିବେ, ଅତଏବ ଯେଉଁମାନେ ବିଶ୍ୱାସ ସ୍ଥାପନ ଓ ସତ୍କାର୍ଯ୍ୟ କରିଥିଲେ ସେହିମାନେହିଁ ସୁଖ ସମ୍ପଦ ପୂର୍ଣ୍ଣ ସ୍ୱର୍ଗୋଦ୍ୟାନରେ ବାସ କରିବେ ।୫୬।

ଏବଂ ଯେଉଁମାନେ ଅବିଶ୍ୱାସ କରିଥିଲେ ଏବଂ ଆମ୍ଭର ନିଦର୍ଶନମାନଙ୍କୁ ମିଥ୍ୟା ମନେ କରିଥିଲେ, ସେହିମାନଙ୍କ ପାଇଁ ଘୃଣିତ ଶାସ୍ତି ହେବ ।୫୭।

## ୮ମ ବିଭାଗ

ଏବଂ ଯେଉଁମାନେ ପରମେଶ୍ୱରଙ୍କ ପଥରେ ଦେଶ ତ୍ୟାଗ କରି ଅଛନ୍ତି, ତାପରେ ଯୁଦ୍ଧରେ ନିହତ ଅଥବା ବିନା ଯୁଦ୍ଧରେ ମୃତ ହୋଇ ଅଛନ୍ତି, ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ଉତ୍ତମ ଜୀବିକା ଦାନ କରିବେ, ନିଶ୍ଚୟ ପରମେଶ୍ୱର ସର୍ବୋତ୍କୃଷ୍ଟ ଜୀବିକା ଦାନକାରୀ ।୫୮।

ନିଶ୍ଚୟ ପରମେଶ୍ୱର ସେମାନଙ୍କୁ ଏପରି ପ୍ରବେଶ ସ୍ଥାନରେ ପ୍ରବେଶ କରାଇବେ ଯେ ସେମାନେ ସନ୍ତୁଷ୍ଟ ହୋଇଯିବେ ଏବଂ ନିଶ୍ଚୟ ପରମେଶ୍ୱର ମହାଜ୍ଞାନୀ ଓ ସହିଷ୍ଣୁ ।୫୯।

ଏହିପରି ହେବ ଏବଂ ଶତ୍ରୁଦ୍ୱାରା ତାହା ପ୍ରତି ଯେପରି ଦୁର୍ବ୍ୟବହାର କରାଯାଇ ଅଛି ସେ ତଦନୁରୂପ ପ୍ରତିଶୋଧ ଗ୍ରହଣ ପରେ, ଯଦି ଶତ୍ରୁ ଦ୍ୱାରା ପୁଣି ଉତ୍ପୀଡ଼ିତ ହୁଏ ତେବେ ପରମେଶ୍ୱର ଅବଶ୍ୟ ତାହାକୁ ସାହାଯ୍ୟ କରିବେ; ନିଶ୍ଚୟ ପରମେଶ୍ୱର ମାର୍ଜନାକାରୀ କ୍ଷମାଶୀଳ ।୬୦।

---

୫୫-୫୭ । ସନ୍ଦେହ ମୁକ୍ତ ହେବେ ନାହିଁ —ପବିତ୍ର କୋରାନର ସତ୍ୟତା ପ୍ରତି ସେମାନଙ୍କ ଯେଉଁ ସନ୍ଦେହ ଅଛି, ସେ ସନ୍ଦେହ ଦୂର କରିବେ ନାହିଁ ।
ଶେଷ ବିଚାର ଦିନର ଶାସ୍ତି ଉପସ୍ଥିତ ନହେବା ପର୍ଯ୍ୟନ୍ତ ଅବିଶ୍ୱାସକାରୀମାନେ ବିଶ୍ୱାସ ସ୍ଥାପନ କରିବେ ନାହିଁ । ମାତ୍ର ସେ ଦିନ ବିଶ୍ୱାସ କରିବା ଦ୍ୱାରା କୌଣସି ଫଳ ଲାଭ ହେବ ନାହିଁ, କାରଣ ତାହା କର୍ମଫଳ ଭୋଗ କରିବାର ଦିନ ଅଟେ, କର୍ମ କରିବାର ସମୟ ନୁହେଁ ।

୫୮ । ଏହି ଶ୍ଳୋକରେ ଦେଶତ୍ୟାଗୀ 'ମହାଜିର'ମାନଙ୍କର ଓ ପରମେଶ୍ୱରଙ୍କ ପଥରେ ନିହତ ହୋଇଥିବା 'ଶହିଦ'-ମାନଙ୍କ ପରଲୋକର ସୁଖ ବର୍ଣ୍ଣିତ ହୋଇଅଛି ।

୫୯ । ପ୍ରବେଶ ସ୍ଥାନ—ଅର୍ଥାତ୍ ସ୍ୱର୍ଗୋଦ୍ୟାନ ।

୬୦ । କୌଣସି ମୁସଲମାନ କୌଣସି ବିଧର୍ମୀ ଲୋକଦ୍ୱାରା ଅତ୍ୟାଚାରିତ ହେଲେ, ସେହି ଅତ୍ୟାଚାରର ଅନୁରୂପ ପ୍ରତିଶୋଧ ଗ୍ରହଣ କରିବା ପାଇଁ ପରମେଶ୍ୱର ଅନୁମତି ଦେଇଅଛନ୍ତି । ଏପରି ପ୍ରତିଶୋଧ ଗ୍ରହଣ ପରେ ବିଧର୍ମୀ

ଯେହେତୁ ପରମେଶ୍ୱର ରାତିକୁ ଦିବସରେ ପରିଣତ କରନ୍ତି ଏବଂ ଦିବସକୁ ରାତିରେ ପରିଣତ କରନ୍ତି ଏବଂ ନିଶ୍ଚୟ ପରମେଶ୍ୱର ଶ୍ରବଣକାରୀ ଓ ଦର୍ଶନକାରୀ ।୬୧।

ଯେହେତୁ ସେହି ପରମେଶ୍ୱରହିଁ ସତ୍ୟ; ଅତଏବ ତାଙ୍କ ପରିବର୍ତ୍ତିରେ ସେମାନେ ଯାହାକୁ ଆହ୍ୱାନ କରନ୍ତି ତାହା ଅସତ୍ୟ ଏବଂ ଯେହେତୁ ପରମେଶ୍ୱର ସମୁନ୍ନତ ଓ ମହାନ ।୬୨।

ତୁମ୍ଭେ କଅଣ ଲକ୍ଷ୍ୟ କରୁନାହଁ ଯେ ପରମେଶ୍ୱରହିଁ ଆକାଶରୁ ଜଳ ବର୍ଷଣ କରି ଥାଆନ୍ତି ଯଦ୍ଦ୍ୱାରା ଭୂତଳ ହରିତ୍‌ବର୍ଣ୍ଣ ହୁଏ ? ନିଶ୍ଚୟ ପରମେଶ୍ୱର ସୂକ୍ଷ୍ମଦର୍ଶୀ ଓ ସତର୍କ ।୬୩।

ଆକାଶମଣ୍ଡଳରେ ଯାହା କିଛି ଅଛି ଏବଂ ଭୂମଣ୍ଡଳରେ ଯାହା କିଛି ଅଛି ସବୁ ତାଙ୍କର; ଏବଂ ନିଶ୍ଚୟ ପରମେଶ୍ୱର ଅଭାବଶୂନ୍ୟ ଓ ସୁପ୍ରଶଂସିତ ।୬୪।

## ୯ମ ବିଭାଗ

ତୁମ୍ଭେ କଅଣ ଲକ୍ଷ୍ୟ କରୁନାହଁ ଯେ ପୃଥିବୀ ମଧ୍ୟରେ ଯାହାକିଛି ଅଛି ଏବଂ ଜଳଯାନମାନ ଯାହା ତାଙ୍କ ଆଦେଶରେ ସମୁଦ୍ର ମଧ୍ୟରେ ପରିଚାଳିତ ହୁଏ, ସେ ସବୁକୁ ତୁମ୍ଭମାନଙ୍କ ଆୟତ୍ତାଧୀନ କରିଅଛନ୍ତି ? ଏବଂ ସେ ଆକାଶମଣ୍ଡଳକୁ ଅଟକାଇ ରଖି ଅଛନ୍ତି ଯେପରି ତାହା ତାଙ୍କ ଆଦେଶ ବ୍ୟତୀତ ପୃଥିବୀ ଉପରେ ପତିତ ନହୁଏ; ନିଶ୍ଚୟ ପରମେଶ୍ୱର ମାନବମାନଙ୍କ ପ୍ରତି କ୍ଷମାଶୀଳ କରୁଣାମୟ ।୬୫।

ଏବଂ ସେହି ତୁମ୍ଭମାନଙ୍କୁ ଜୀବଦାନ କରି ଅଛନ୍ତି, ତାପରେ ତୁମ୍ଭମାନଙ୍କ ମୃତ୍ୟୁ ଘଟାଇବେ ପୁନର୍ବାର ତୁମ୍ଭମାନଙ୍କୁ ଜୀବିତ କରିବେ, ନିଶ୍ଚୟ ମାନବ ବଡ଼ ଅକୃତଜ୍ଞ ।୬୬।

ଆମ୍ଭେ ପ୍ରତ୍ୟେକ ଧର୍ମ୍ମ ସମ୍ପ୍ରଦାୟ ପାଇଁ ଧର୍ମ୍ମ ପଦ୍ଧତି ନିର୍ଦ୍ଧାରିତ କରିଦେଇ ଅଛୁଁ ଯାହା ସେମାନେ ପାଳନ କରନ୍ତି, ଅତଏବ ସେମାନେ ଯେପରି ଏ ବିଷୟରେ ତୁମ୍ଭ ସହିତ ବିରୋଧ ନକରନ୍ତି ଏବଂ ତୁମ୍ଭେ ନିଜ ପାଳନକର୍ତ୍ତାଙ୍କ ପ୍ରତି ସେମାନଙ୍କୁ ଆହ୍ୱାନ କର; ନିଶ୍ଚୟ ତୁମ୍ଭେ ସରଳ ସୁପଥରେ ରହିଅଛ ।୬୭।

ଏବଂ ଯଦି ସେମାନେ ତୁମ୍ଭ ସହିତ ବିରୋଧ କରନ୍ତି ତେବେ ତୁମ୍ଭେ କୁହ, "ତୁମ୍ଭେମାନେ ଯାହା କରୁଅଛ ପରମେଶ୍ୱର ତାହା ଭଲ ରୂପେ ଜାଣନ୍ତି ।୬୮।

"ତୁମ୍ଭେମାନେ ବର୍ତ୍ତମାନ ଯେଉଁ ବିଷୟରେ ବିରୋଧ କରୁଅଛ ପୁନରୁତ୍ଥାନ ଦିବସରେ ପରମେଶ୍ୱର ତାହା ତୁମ୍ଭମାନଙ୍କ ମଧ୍ୟରେ ମୀମାଂସା କରିଦେବେ" ।୬୯।

ତୁମ୍ଭେ କଅଣ ଜାଣନା ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହା କିଛି ଅଛି ପରମେଶ୍ୱର ତାହା ଅବଗତ ଅଛନ୍ତି ? ନିଶ୍ଚୟ ତାହା (ପରମେଶ୍ୱରଙ୍କ ଜ୍ଞାନ) ପୁସ୍ତକରେ ରହିଅଛି, ନିଶ୍ଚୟ ଏହା ପରମେଶ୍ୱରଙ୍କ ପକ୍ଷରେ ସହଜସାଧ୍ୟ ।୭୦।

---

ଲୋକ ଯଦି ପୁନର୍ବାର ଅତ୍ୟାଚାର କରେ ତେବେ ପରମେଶ୍ୱର ଅତ୍ୟାଚାରିତ ଲୋକକୁ ସାହାଯ୍ୟ କରିବେ । ଶ୍ଳୋକର ଶେଷାଂଶ "ନିଶ୍ଚୟ ପରମେଶ୍ୱର ମାର୍ଜ୍ଜନାକାରୀ କ୍ଷମାଶୀଳ" ଦ୍ୱାରା ସୂଚିତ ଦିଆଯାଇଅଛି ଯେ ତୁଲ୍ୟ ପ୍ରତିଶୋଧ ଗ୍ରହଣର ଅନୁମତି ଦିଆଯାଇଥିଲେ ମଧ୍ୟ ଯଦି ଅତ୍ୟାଚାରୀ ଶେଷ ଅନୁତପ୍ତ ହୋଇ କ୍ଷମା ମାଗେ, ତେବେ ତାକୁ କ୍ଷମା କରିବାହିଁ ଶ୍ରେୟସ୍କର ।

୬୮ । ଭଲରୂପେ ଜାଣନ୍ତି—ତୁମ୍ଭେମାନେ ଯେଉଁ ଅଯଥା ବିବାଦ ଓ ବିରୋଧ କରୁଅଛ, ପରମେଶ୍ୱର ତହିଁର ଯଥୋଚିତ ପ୍ରତିଫଳ ଦେବେ ।

୬୯ । ମୀମାଂସା କରିଦେବେ—ଏହି ଅଧ୍ୟାୟ ୧୭ ଶ୍ଳୋକ ଦେଖ ।

ଏବଂ ସେମାନେ ପରମେଶ୍ୱରଙ୍କ ପରିବର୍ତ୍ତିରେ ତାହାର ଉପାସନା କରନ୍ତି ଯାହା ସମ୍ବନ୍ଧରେ କୌଣସି ପ୍ରମାଣ ଅବତୀର୍ଣ୍ଣ ହୋଇନାହିଁ, ଏବଂ ଯାହା ସମ୍ବନ୍ଧରେ ସେମାନଙ୍କର କୌଣସି ଜ୍ଞାନ ନାହିଁ; ଏବଂ ଅତ୍ୟାଚାରୀମାନଙ୍କ ପାଇଁ କେହି ସାହାଯ୍ୟକାରୀ ନାହିଁ ।୭୧।

ଏବଂ ଯେତେବେଳେ ସେମାନଙ୍କ ନିକଟରେ ଆମ୍ଭର ପ୍ରକାଶ୍ୟ ନିଦର୍ଶନମାନ ପଠିତ ହୁଏ, ସେତେବେଳେ ତୁମ୍ଭେ ଅବିଶ୍ୱାସକାରୀମାନଙ୍କ ବଦନମଣ୍ଡଳରେ ଅସ୍ୱୀକୃତିର ଚିହ୍ନ ଦେଖିପାରିବ, ଯେଉଁମାନେ ସେମାନଙ୍କ ଆଗରେ ଆମ୍ଭର ନିଦର୍ଶନମାନ ପାଠ କରନ୍ତି, ସେମାନଙ୍କୁ ସେମାନେ ଆକ୍ରମଣ କରିବାକୁ ଉଦ୍ୟତ ହୁଅନ୍ତି;ତୁମ୍ଭେ କୁହ, "ଆମ୍ଭେ କଅଣ ତୁମ୍ଭମାନଙ୍କୁ ଏହା ଅପେକ୍ଷା ନିକୃଷ୍ଟତର ବିଷୟ ଜଣାଇବୁ ? ନରକାନଳ ! ପରମେଶ୍ୱର ଅବିଶ୍ୱାସକାରୀମାନଙ୍କୁ ତାହାହିଁ ଅଙ୍ଗୀକାର କରିଅଛନ୍ତି; ଏବଂ ତାହା ମନ୍ଦ ବାସସ୍ଥାନ" ।୭୨।

## ୧୦ମ ବିଭାଗ ।

ହେ ମାନବଗଣ ! ଗୋଟିଏ ଦୃଷ୍ଟାନ୍ତ ବର୍ଣ୍ଣନା କରି ଯାଉଅଛୁ, ଅତଏବ ତାହା ଶ୍ରବଣ କର; (ତାହା ଏହି ଯେ,) ନିଶ୍ଚୟ ପରମେଶ୍ୱରଙ୍କ ପରିବର୍ତ୍ତିରେ ତୁମ୍ଭେମାନେ ଯେଉଁମାନଙ୍କୁ ଆହ୍ୱାନ କର ସେମାନେ ଗୋଟିଏ ମାଛିକୁ ସୃଷ୍ଟି କରି ପାରିବେ ନାହିଁ, ଯଦିଚ ସେମାନେ ସମସ୍ତେ ସେଥିପାଇଁ ଏକତ୍ରିତ ହୁଅନ୍ତି; ଏବଂ ଯଦି ମାଛି ସେମାନଙ୍କ ଠାରୁ କିଛି ନେଇଯାଏ ତେବେ ସେମାନେ ତାହାଠାରୁ ତାହା ଫେରାଇ ଆଣି ପାରିବେ ନାହିଁ; ପ୍ରାର୍ଥୀ ଓ ପ୍ରାର୍ଥନାଶ୍ରବଣକାରୀ ଉଭୟେ ଶକ୍ତିହୀନ ।୭୩।

ସେମାନେ ପରମେଶ୍ୱରଙ୍କୁ ତାଙ୍କ ମର୍ଯ୍ୟାଦାର ଅନୁରୂପ ସମ୍ମାନ ଦେଖାନ୍ତି ନାହିଁ; ନିଶ୍ଚୟ ପରମେଶ୍ୱର ମହା ପରାକ୍ରାନ୍ତ ।୭୪।

ପରମେଶ୍ୱର ସ୍ୱର୍ଗଦୂତମାନଙ୍କ ମଧ୍ୟରୁ ଏବଂ ମନୁଷ୍ୟମାନଙ୍କ ମଧ୍ୟରୁ ମଧ୍ୟ ବାର୍ତ୍ତାବହ ମନୋନୀତ କରନ୍ତି; ନିଶ୍ଚୟ ପରମେଶ୍ୱର ଶ୍ରବଣକାରୀ ଓ ଦର୍ଶନକାରୀ ।୭୫।

ସେମାନଙ୍କ ସମ୍ମୁଖରେ ଯାହାଅଛି ଏବଂ ସେମାନଙ୍କ ପଶ୍ଚାତରେ ଯାହା ଅଛି ସେ ତାହା ଅବଗତ ଅଛନ୍ତି, ଏବଂ ପରମେଶ୍ୱରଙ୍କଅଭିମୁଖେ ସମସ୍ତ କୃତକର୍ମମାନ ପ୍ରତ୍ୟାବର୍ତ୍ତିତ ହୁଏ ।୭୬।

ହେ ବିଶ୍ୱାସକାରୀଗଣ ! ତୁମ୍ଭେମାନେ ମସ୍ତକ, ଅବନତ କର ଓ ସାଷ୍ଟାଙ୍ଗ ପ୍ରଣିପାତକର ଏବଂ ନିଜ ପାଳନକର୍ତ୍ତାଙ୍କର ଉପାସନା କର ଏବଂ ସତ୍‌କାର୍ଯ୍ୟକର, ଯେପରି ତୁମ୍ଭେମାନେ ସୁଫଳ ପ୍ରାପ୍ତ ହେବ ।୭୭।

ଏବଂ ତୁମ୍ଭେମାନେ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ଯେପରି ଯତ୍ନ କରିବା ଉଚିତ (ମନପ୍ରାଣ ଦେଇ) ସେହିପରି ଯତ୍ନକର; ସେ ତୁମ୍ଭମାନଙ୍କୁ ମନୋନୀତ କରିଅଛନ୍ତି ଏବଂ ତୁମ୍ଭମାନଙ୍କପାଇଁ ଧର୍ମରେ କୌଣସି

---

୭୩ । ଏହି ଶ୍ଳୋକରେ ଅଂଶୀ ଉପାସ୍ୟ ସ୍ଥିର କରିବାର ଅସାରତା ଉଦାହରଣ ଦ୍ୱାରା ବୁଝାଇ ଦିଆଯାଇଅଛି ।

୭୫ । ପରମେଶ୍ୱର ସ୍ୱର୍ଗ ଦୂତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ମନୋନୀତ କରି ତାଙ୍କ ଦ୍ୱାରା ପ୍ରେରିତ ପୁରୁଷମାନଙ୍କ ନିକଟକୁ ପ୍ରତ୍ୟାଦେଶ ପ୍ରେରଣ କରନ୍ତି ଏବଂ ମନୁଷ୍ୟମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ଧର୍ମପ୍ରବର୍ତ୍ତକ ମନୋନୀତ କରି ତାଙ୍କଦ୍ୱାରା ମନୁଷ୍ୟମାନଙ୍କୁ ଉପଦେଶ ପ୍ରଦାନ କରନ୍ତି । ଏହା ପରମେଶ୍ୱରଙ୍କ ସମ୍ପୂର୍ଣ୍ଣ ଇଚ୍ଛାଧୀନ; ଏଥିରେ ଅନ୍ୟ କାହାର ଅଧିକାର ନାହିଁ ।

୭୭ । ଏହି ଶ୍ଳୋକ ପାଠ ବା ଶ୍ରବଣ ପରେ ସଙ୍ଗେ ସଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ (ସେଜ୍‌ଦା) କରିବା ବିଧେୟ ।

ପ୍ରକାର ସଙ୍କୀର୍ଣ୍ଣତା ରଖିନାହାନ୍ତି; ଏହାହିଁ ତୁମ୍ଭମାନଙ୍କର ପୂର୍ବପୁରୁଷ ଇବ୍ରାହିମଙ୍କ ଧର୍ମ; ସେ ତୁମ୍ଭମାନଙ୍କୁ 'ମୁସଲିମ୍' ନାମରେ ଅଭିହିତ କରିଅଛନ୍ତି, ଏହାର ପୂର୍ବେ ଏବଂ ଏହି (କୋରାନ) ମଧ୍ୟରେ, ଯେପରି ପ୍ରେରିତ ପୁରୁଷ ତୁମ୍ଭମାନଙ୍କ ପାଇଁ ସାକ୍ଷୀ ହେବେ ଏବଂ ତୁମ୍ଭେମାନେ ମାନବମଣ୍ଡଳୀ ପାଇଁ ସାକ୍ଷୀ ହେବ; ଅତଏବ ତୁମ୍ଭେମାନେ ଅରାଧନା ପ୍ରତିଷ୍ଠିତ କର ଓ ଜକାତ୍ ପ୍ରଦାନ କର ଏବଂ ପରମେଶ୍ୱରଙ୍କୁ ଦୃଢ଼ ରୂପେ ଧାରଣ କର, ସେହି ତୁମ୍ଭମାନଙ୍କର ଅଭିଭାବକ; ଅତଏବ କିପରି ଉତ୍ତମ ଅଭିଭାବକ ଓ କିପରି ଉତ୍କୃଷ୍ଟ ସାହାଯ୍ୟକାରୀ । ।୭୮।



୭୭-୭୮ । ଏହି ଶ୍ଳୋକମାନଙ୍କରେ ବିଶ୍ୱାସକାରୀ ମୁସଲମାନମାନଙ୍କ ପ୍ରତି ଇସଲାମ ଧର୍ମର ଉନ୍ନତ ଅଦର୍ଶ ଓ ମସ୍ଲେମ ଜୀବନର ମହାନ ଲକ୍ଷ୍ୟ ସମ୍ବନ୍ଧରେ ଉପଦେଶ ପ୍ରଦାନ କରାଯାଇଅଛି ।

୭୮ । ସେ—ପରମେଶ୍ୱର । ତୁମ୍ଭେମାନେ—ବିଶ୍ୱାସକାରୀମାନେ ।
ସାକ୍ଷୀ ହେବ=୨ୟ ଅଧ୍ୟାୟର ୧୪୩ ଶ୍ଳୋକ ଦେଖ ।
ପ୍ରେରିତ ପୁରୁଷ—ମହାପୁରୁଷ ମୋହମ୍ମଦ ।



# ଅଷ୍ଟାଦଶ ଭାଗ

## ୨୩ ଶ ଅଧ୍ୟାୟ

ନାମ — ଅଲ୍‌ମୁମେନୁନ (ବିଶ୍ୱାସକାରୀଗଣ)

ମକ୍‌କାରେ ଅବତୀର୍ଣ୍ଣ । ଏଥିରେ ଗୋ ୬ ଟି ବିଭାଗ ଏବଂ ଗୋ ୧୧୮ ଟି ଶ୍ଲୋକ ଅଛି

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ନିଶ୍ଚୟ ବିଶ୍ୱାସକାରୀମାନେ ସୁଫଳ ପ୍ରାପ୍ତ ହୋଇ ଅଛନ୍ତି; ।୧।

ଯେଉଁମାନେ ଆପଣାର ଆରାଧନାରେ ବିନୀତ ହୁଅନ୍ତି, ।୨।

ଏବଂ ଯେଉଁମାନେ ବୃଥା ଆଳାପରୁ ଦୂରରେ ରହନ୍ତି, ।୩।

ଏବଂ ଯେଉଁମାନେ ଜକାତ୍ ଦିଅନ୍ତି, ।୪।

ଏବଂ ଯେଉଁମାନେ ନିଜର ଗୋପନୀୟ ଅଙ୍ଗକୁ ରକ୍ଷା କରନ୍ତି, ।୫।

ସେମାନଙ୍କର ବିବାହିତା ସ୍ତ୍ରୀ କିମ୍ବା ସେମାନଙ୍କର ଦକ୍ଷିଣ ହସ୍ତ ଯେଉଁମାନଙ୍କର ଅଧିକାରୀ ସେମାନଙ୍କ ସମ୍ମୁଖ ବ୍ୟତୀତ; ସେଥିପାଇଁ ସେମାନଙ୍କ କିଛି ଦୋଷ ହେବନାହିଁ ।୬।

କିନ୍ତୁ ଯେକେହି ଏହାର ବ୍ୟତିକ୍ରମ କରିବାକୁ ଇଚ୍ଛା କରିବେ ତେବେ ନିଶ୍ଚୟ ସେହିମାନେହିଁ ସୀମାଲଙ୍ଘନକାରୀ ।୭।

ଏବଂ ଯେଉଁମାନେ ସେମାନଙ୍କ ପାଖରେ ଥିବା ଅମାନତ ଓ ସେମାନଙ୍କ ଅଙ୍ଗୀକାର ବିଶ୍ୱାସ ସହିତ ରକ୍ଷା କରନ୍ତି ।୮।

---

ନାମକରଣ—ଏହି ଅଧ୍ୟାୟରେ ବିଶ୍ୱାସକାରୀ ମୁସଲମାନମାନଙ୍କ କର୍ତ୍ତବ୍ୟ ଏବଂ ସେମାନଙ୍କର ଇହଲୋକ ଓ ପରଲୋକର ସଫଳତା ଓ ପୁରସ୍କାରର ବିଷୟ ବର୍ଣ୍ଣିତ ହୋଇଥିବାରୁ ଏହି ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୫ । ୬ । ୭ । ଏହି ଶ୍ଲୋକମାନଙ୍କରେ ବିବାହିତା ସ୍ତ୍ରୀ କିମ୍ବା କ୍ରୀତଦାସୀ ଛଡ଼ା ଅନ୍ୟ କୌଣସି ସ୍ତ୍ରୀ ସହିତ ଯୌନ ସମ୍ପର୍କ ରଖିବା ପାଇଁ ଏବଂ ଅନ୍ୟ କୌଣସି ଅବୈଧ ଉପାୟରେ କାର୍ଯ୍ୟ ନଷ୍ଟ କରିବା ପାଇଁ ନିଷେଧ କରାଯାଇଅଛି ଏବଂ ସଂଯମ ଅବଲମ୍ବନ କରିବା ପାଇଁ ଆଦେଶ କରାଯାଇଅଛି । ଦକ୍ଷିଣ ହସ୍ତ ଯେଉଁମାନଙ୍କର ଅଧିକାରୀ—କ୍ରୀତଦାସୀ କିମ୍ବା ଯୁଦ୍ଧବନ୍ଦିନୀ । ସୀମାଲଙ୍ଘନକାରୀ ବୈଧ କାର୍ଯ୍ୟ ପରିତ୍ୟାଗ କରି ଅବୈଧ ଅତିକୁ ଗମନକାରୀ । କ୍ରୀତଦାସୀ କିମ୍ବା ଯୁଦ୍ଧ ବନ୍ଦିନୀ ସଙ୍ଗେ ବିବାହ କରିବାର ବିଧାନ ୦ର୍ଥ ଅଧ୍ୟାୟ ୩ । ୨୫ ଶ୍ଲୋକରେ ଦିଆଯାଇଅଛି । ସୁତରାଂ ୬ ଶ୍ଲୋକର ବିବାହିତା ସ୍ତ୍ରୀ ବିବାହିତା ସ୍ୱାଧୀନ ସ୍ତ୍ରୀ ଏବଂ ବିବାହିତା ଦାସୀ ଉଭୟକୁ ବୁଝାଉଅଛି । ମୌଲାନା ଅଶରଫଅଲ୍ଲୀଙ୍କ ମତ ଅନୁଯାୟୀ—"ଯେଉଁ ଦାସୀମାନେ ହିନ୍ଦୁସ୍ଥାନରେ ପାଯାଯାନ୍ତି ସେମାନେ ଇସଲାମ ବିଧାନାନୁମୋଦିତ ଦାସୀ ନୁହନ୍ତି । ନିୟମାନୁଯାୟୀ ବିବାହ ନକରି ଏମାନଙ୍କ ସହିତ ସହବାସ କରିବା ଅବୈଧ ଅଟେ ।" ବର୍ତ୍ତମାନ ପୃଥିବୀରୁ ଦାସତ୍ୱ ପ୍ରଥା ଲୋପ ପାଇଅଛି ।

ଏବଂ ଯେଉଁମାନେ ନିଜ ଅରାଧନା ଠିକରୂପେ ପ୍ରତିଷ୍ଠିତ କରନ୍ତି ।୯।

ସେହିମାନେହିଁ ଉତ୍ତରାଧିକାରୀ, ।୧୦।

ଯେଉଁମାନେ ସ୍ୱର୍ଗର ଉତ୍ତରାଧିକାରୀ ହେବେ, ସେଥିମଧ୍ୟରେ ସେମାନେ ସର୍ବଦା ବାସ କରିବେ ।୧୧।

ଏବଂ ନିଶ୍ଚୟ ଅମ୍ଭେ ମନୁଷ୍ୟକୁ ମୃତ୍ତିକାର ସାରାଂଶରୁ ସୃଷ୍ଟି କରିଅଛୁଁ, ।୧୨।

ତାପରେ ଅମ୍ଭେ ତାକୁ ଏକ ସୁରକ୍ଷିତ ସ୍ଥାନରେ ଶୁକ୍ରବିନ୍ଦୁରୂପେ ସ୍ଥାପନ କରିଅଛୁଁ, ।୧୩।

ତାପରେ ଶୁକ୍ରବିନ୍ଦୁକୁ ଅମ୍ଭେ ଘନୀଭୂତ ରକ୍ତ କରିଅଛୁଁ, ତାପରେ ଘନୀଭୂତ ରକ୍ତକୁ ମାଂସପିଣ୍ଡ କରିଅଛୁଁ, ତାପରେ ମାଂସ ପିଣ୍ଡରେ ଅସ୍ଥିପୁଞ୍ଜ କରିଅଛୁଁ, ତାପରେ ଅସ୍ଥିପୁଞ୍ଜକୁ ମାଂସ ମଣ୍ଡିତ କରିଅଛୁଁ, ଅବଶେଷରେ ଅମ୍ଭେ ତାହାକୁ ଚରମ ସୃଷ୍ଟିରେ ପରିଣତ କରିଅଛୁଁ; ଅତଏବ ଧନ୍ୟ ସେହି ପରମେଶ୍ୱର ଯେ ଶ୍ରେଷ୍ଠତମ ସୃଷ୍ଟିକର୍ତ୍ତା । ୧୪ ।

ଅବଶେଷରେ ତୁମ୍ଭେମାନେ ଏହାପରେ ନିଶ୍ଚୟ ମୃତ୍ୟୁ ଲାଭ କରିବ । ୧୫ ।

ତାପରେ ପୁନରୁତ୍ଥାନ ଦିବସରେ ନିଶ୍ଚୟ ତୁମ୍ଭେମାନେ ପୁନଃ ଜୀବିତ ହେବ । ୧୬ ।

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ଉପରେ ଆକାଶର ସପ୍ତସ୍ତର ନିର୍ମାଣ କରିଅଛୁଁ ଏବଂ ଅମ୍ଭେ ସୃଷ୍ଟି ସମ୍ବନ୍ଧରେ ଅମନଯୋଗୀ ନୋହୁଁ । ୧୭ ।

ଏବଂ ଅମ୍ଭେ ଆକାଶରୁ ପରିମିତ ଜଳବର୍ଷଣ କରୁଁ, ତାପରେ ଅମ୍ଭେ ତାହାକୁ ଭୂତଳରେ ସ୍ଥିର ଭାବରେ ରଖୁ, ଏବଂ ନିଶ୍ଚୟ ଅମ୍ଭେ ତାହାକୁ ଶୁଖାଇ ଦେବାକୁ ଶକ୍ତିଶାଳୀ । ୧୮ ।

ତାପରେ ଅମ୍ଭେ ତଦ୍ୱାରା ତୁମ୍ଭମାନଙ୍କ ପାଇଁ ଖର୍ଜୁର ଓ ଅଙ୍ଗୁରର ଉଦ୍ୟାନ ଉତ୍ପାଦନ କରୁଁ, ସେଥିରେ ତୁମ୍ଭମାନଙ୍କ ପାଇଁ ପ୍ରଚୁର ଫଳପୁଞ୍ଜ ରହିଅଛି ଏବଂ ସେଥିରୁ ତୁମ୍ଭେମାନେ ଭକ୍ଷଣ କର । ୧୯ ।

ଏବଂ ସିନାଇ ପର୍ବତରେ ଏକପ୍ରକାର ବୃକ୍ଷ ଜାତ କରୁଁ, ଯେଉଁଥିରୁ ଭକ୍ଷଣକାରୀମାନଙ୍କ ପାଇଁ ତୈଳ ଓ ବ୍ୟଞ୍ଜନ ପ୍ରସ୍ତୁତ ହୋଇଥାଏ । ୨୦ ।

ଏବଂ ନିଶ୍ଚୟ ଗୃହପାଳିତ ପଶୁମାନଙ୍କ ମଧ୍ୟରେ ତୁମ୍ଭମାନଙ୍କ ପାଇଁ ଶିକ୍ଷଣୀୟ ଦୃଷ୍ଟାନ୍ତ ରହିଅଛି; ଅମ୍ଭେ ତୁମ୍ଭମାନଙ୍କୁ ସେମାନଙ୍କ ଉଦର ମଧ୍ୟରେ ଯାହା ଅଛି ସେଥିରୁ ଦୁଗ୍ଧ ପାନ କରାଉଁ, ଏବଂ ସେମାନଙ୍କଠାରେ ତୁମ୍ଭମାନଙ୍କ ପାଇଁ ପ୍ରଚୁର ଉପକାର ରହିଅଛି, ଏବଂ ସେମାନଙ୍କ ମାଂସ ତୁମ୍ଭେମାନେ ଭକ୍ଷଣ କରିଥାଅ । ୨୧ ।

ଏବଂ ସେମାନଙ୍କ ଉପରେ ଏବଂ ନୌକାମାନଙ୍କ ଉପରେ ତୁମ୍ଭେମାନେ ଆରୋହଣ କରିଥାଅ ।୨୨।

---

୧୦ । ଉତ୍ତରାଧିକାରୀ—୨୧ ଅଧ୍ୟାୟର ୧୦୫ ଶ୍ଳୋକ ଦେଖ ।

୧୧ । ଉତ୍ତରାଧିକାରୀ ହେବେ –ଅର୍ଥାତ୍ ମାଲିକ ବା ଅଧିକାରୀ ହେବେ ।

୧୨-୧୬ । ଏହି ଶ୍ଳୋକମାନଙ୍କରେ ମାନବ ସୃଷ୍ଟିର କ୍ରମବିକାଶ, ତାହାର ମୃତ୍ୟୁ ଏବଂ ମୃତ୍ୟୁ ପରେ ପୁନଃ ଜୀବନ ଲାଭ ବିଷୟ ବର୍ଣ୍ଣିତ ହୋଇଅଛି ।

୧୭ । ଅମନଯୋଗୀ ନୋହୁଁ— ଅମ୍ଭେ ଯାହା ସୃଷ୍ଟି କରିଅଛୁ ତାହାକୁ ସାବଧାନ ସହିତ ରକ୍ଷା କରୁଅଛୁଁ ।

୨୦ । ସିନାଇ ବା ତୁର ପର୍ବତରେ ପ୍ରଚୁର ପରିମାଣରେ ଜଏତୁନ୍ ବୃକ୍ଷ ଉତ୍ପନ୍ନ ହୁଏ । ତାହାର ଫଳରୁ ତୈଳ (Olive oil) ପ୍ରସ୍ତୁତ ହୁଏ ଯାହା ଖାଦ୍ୟରୂପେ ବ୍ୟବହୃତ ହୁଏ, ଜାଳିବା କାର୍ଯ୍ୟରେ ମଧ୍ୟ ବ୍ୟବହୃତ ହୁଏ ଏବଂ ଔଷଧରୂପେ ବ୍ୟବହୃତ ହୁଏ ।

୨୧-୨୨ । ଏହି ଶ୍ଳୋକମାନଙ୍କରେ ମନୁଷ୍ୟମାନଙ୍କ ପ୍ରତି ପରମେଶ୍ୱରଙ୍କ ଅପାର କରୁଣା ବିଷୟ ବର୍ଣ୍ଣିତ ହୋଇଅଛି ।

## ୨ୟ ବିଭାଗ

ଏବଂ ନିଶ୍ଚୟ ଆମ୍ଭେ ନୂହଙ୍କୁ ତାଙ୍କର ସମ୍ପ୍ରଦାୟ ପ୍ରତି ପ୍ରେରଣ କରିଥିଲୁଁ, ସେ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ । ତୁମ୍ଭେମାନେ ପରମେଶ୍ୱରଙ୍କର ଉପାସନା କର, ତାଙ୍କ ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ ଉପାସ୍ୟ କେହି ନାହିଁ, ତାହାହେଲେ ତୁମ୍ଭେମାନେ କଅଣ ସଂଯତ ହେବନାହିଁ ?" ୨୩ ।

କିନ୍ତୁ ତାଙ୍କ ସମ୍ପ୍ରଦାୟର ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ ପ୍ରଧାନ ବ୍ୟକ୍ତିମାନେ ନିଜ ଲୋକମାନଙ୍କୁ କହିଥିଲେ, "ଏତ ତୁମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଆଉ କିଛି ନୁହନ୍ତି, ଯେ ତୁମ୍ଭମାନଙ୍କ ଉପରେ ପ୍ରାଧାନ୍ୟ ଲାଭ କରିବାକୁ ଇଚ୍ଛା କରୁଅଛନ୍ତି, ଏବଂ ଯଦି ପରମେଶ୍ୱର ଇଚ୍ଛା କରିଥାନ୍ତେ ତେବେ ନିଶ୍ଚୟ ସେ ସ୍ୱର୍ଗଦୂତମାନଙ୍କୁ ଅବତୀର୍ଣ୍ଣ କରିଥାନ୍ତେ, ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କଠାରୁ ଏକଥା ଶୁଣିନାହୁଁ ୨୪ ।

"ସେ ଜଣେ ପାଗଳ ଲୋକ ଛଡ଼ା ଅଉକିଛି ନୁହନ୍ତି, ଅତଏବ ତୁମ୍ଭେମାନେ ତାଙ୍କ ସହିତ କିଛିକାଳ ଅପେକ୍ଷା କର ।" । ୨୫ ।

ନୂହ କହିଥିଲେ, "ହେ ଆମ୍ଭର ପାଳନ କର୍ତ୍ତା । ସେମାନେ ଯେ ଆମ୍ଭପ୍ରତି ମିଥ୍ୟାରୋପ କରୁଅଛନ୍ତି, ସେ ବିଷୟରେ ଆମ୍ଭଙ୍କୁ ସାହାଯ୍ୟ କର" । ୨୬ ।

ତାପରେ ଆମ୍ଭେ ତାଙ୍କ ପ୍ରତି ଏହି ଆଦେଶ କରିଥିଲୁଁ "ଆମ୍ଭର ଦୃଷ୍ଟି ଆଗରେ ଓ ଆମ୍ଭର ଆଦେଶ ମତେ ଗୋଟିଏ ନୌକା ନିର୍ମାଣ କର, ତାପରେ ଯେତେବେଳେ ଆମ୍ଭର ଆଦେଶ ଉପସ୍ଥିତ ହେବ ଏବଂ ଜଳରାଶି ଉଚ୍ଛ୍ୱସିତ ହେବ, ସେତେବେଳେ ସର୍ବପ୍ରକାର ଯୁଗଳ ଦମ୍ପତି ଏବଂ ଯେଉଁମାନଙ୍କ ସମ୍ବନ୍ଧରେ ଧ୍ୱଂସର ଆଦେଶ କରାଯାଇଅଛି ସେମାନଙ୍କ ବ୍ୟତୀତ ତୁମ୍ଭର ପରିବାରମାନଙ୍କୁ ସେଥି ମଧ୍ୟକୁ ନେଇନେବ; ଏବଂ ଅତ୍ୟାଚାରୀମାନଙ୍କ ସମ୍ବନ୍ଧରେ ଆମ୍ଭଙ୍କୁ କିଛି କହିବ ନାହିଁ, ନିଶ୍ଚୟ ସେମାନେ ଜଳମଗ୍ନ ହେବେ । ୨୭ ।

"ତାପରେ ଯେତେବେଳେ ତୁମ୍ଭେ ତୁମ୍ଭର ସଙ୍ଗୀମାନଙ୍କ ସହିତ ନୌକା ଉପରେ ଆରୋହଣ କରିବ ସେତେବେଳେ କହିବ, 'ସମସ୍ତ ପ୍ରଶଂସା ପରମେଶ୍ୱରଙ୍କ ପାଇଁ ଯେ ଆମ୍ଭମାନଙ୍କୁ ଅତ୍ୟାଚାରୀ ସମ୍ପ୍ରଦାୟଠାରୁ ରକ୍ଷା କରିଅଛନ୍ତି' । ୨୮ ।

"ଏବଂ ନିଜେ କହିବ, 'ହେ ଆମ୍ଭର ପାଳନକର୍ତ୍ତା । ଆମ୍ଭଙ୍କୁ କଲ୍ୟାଣପ୍ରଦ ଅବତାରଣରେ ନୌକାରୁ ଅବତରଣ କରାଅ ଏବଂ ତୁମ୍ଭେହିଁ ସର୍ବଶ୍ରେଷ୍ଠ ଅବତରଣକାରୀ" । ୨୯ ।

ନିଶ୍ଚୟ ଏଥିରେ ନିଦର୍ଶନମାନ ରହିଅଛି ଏବଂ ନିଶ୍ଚୟ ଆମ୍ଭେହିଁ ପରୀକ୍ଷାକାରୀ ଥିଲୁଁ ।୩୦।

---

୨୩-୩୦ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ନୂହଙ୍କ ବିଷୟ ବର୍ଣ୍ଣନା କରି, ଏଥିରେ ବିଶ୍ୱାସକାରୀମାନଙ୍କ ପାଇଁ ଉପଦେଶ ଓ ପରୀକ୍ଷାର ବିଷୟ ଅଛି ବୋଲି ଉଲ୍ଲେଖ କରିଅଛନ୍ତି ।

ମହାପୁରୁଷ ନୂହଙ୍କ ବିଷୟ ୭ମ ଅଧ୍ୟାୟ ଶ୍ଳୋକ ୫୯ରୁ ୬୪କ ଏବଂ ୧୧ଶ ଅଧ୍ୟାୟ ଶ୍ଳୋ ୨୫ରୁ ୪୮କରେ ବର୍ଣ୍ଣିତ ହୋଇଅଛି ।

୨୯ । ମହାପ୍ଲାବନ ଶେଷ ପରେ ପୃଥିବୀ ପୃଷ୍ଠରେ ନିରାପଦ ଓ ମଙ୍ଗଳମୟ ସ୍ଥାନରେ ନୌକାରୁ ଅବତରଣ କରିବା ପାଇଁ ପରମେଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ ମହାପୁରୁଷ ନୂହଙ୍କୁ ଆଦେଶ କରାଯାଇଅଛି ।

ତାପରେ ଆମ୍ଭେ ସେମାନଙ୍କ ପଛରେ ଅନ୍ୟ ସମ୍ପ୍ରଦାୟ ସୃଷ୍ଟି କରିଥିଲୁଁ ।୩୧ ।

ତାପରେ ଆମ୍ଭେ ସେମାନଙ୍କ ବଂଶ ମଧ୍ୟରୁ ସେମାନଙ୍କ ନିକଟ ଜଣେ ପ୍ରେରିତ ପୁରୁଷ ପ୍ରେରଣ କରିଥିଲୁଁ (ଏହା କହିବା ପାଇଁ), ''ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର; ତାଙ୍କ ବ୍ୟତୀତ ତୁମ୍ଭମାନଙ୍କ ପାଇଁ ଅନ୍ୟ ଉପାସ୍ୟ କେହି ନାହିଁ । ତାହି ହେଲେ ତୁମ୍ଭେମାନେ କଅଣ ସଂଯତ ହେବ ନାହିଁ ?''୩୨।

## ୩ୟ ବିଭାଗ

ଏବଂ ତାଙ୍କ ସମ୍ପ୍ରଦାୟର ପ୍ରଧାନ ଲୋକମାନେ ଯେଉଁମାନେ ଅବିଶ୍ୱାସ କରିଥିଲେ ଏବଂ ପରଲୋକରେ ମିଳନ ସମ୍ବନ୍ଧରେ ମିଥ୍ୟାଜ୍ଞାନ କରିଥିଲେ ଏବଂ ଆମ୍ଭେ ଯେଉଁମାନଙ୍କୁ ପାର୍ଥିବ ଜୀବନରେ ସୁଖ ସମ୍ପଦ ଦାନ କରିଥିଲୁଁ ସେମାନେ (ନିଜ ଲୋକମାନଙ୍କୁ) କହିଥିଲେ, "ଏତ ତୁମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଅନ୍ୟ କିଛି ନୁହନ୍ତି, ତୁମ୍ଭେମାନେ ଯାହା ଭକ୍ଷଣ କର, ସେ ତ ତାହାହିଁ ଭକ୍ଷଣ କରନ୍ତି । ଏବଂ ତୁମ୍ଭେମାନେ ଯାହା ପାନ କର ସେତ ତାହାହିଁ ପାନ କରନ୍ତି ।୩୩।

"ଏବଂ ଯଦି ତୁମ୍ଭେମାନେ ତୁମ୍ଭମାନଙ୍କ ପରି ଜଣେ ମନୁଷ୍ୟର ଅନୁଗତ ହୁଅ ତେବେ ନିଶ୍ଚୟ ତୁମ୍ଭେମାନେ କ୍ଷତିଗ୍ରସ୍ତ ହେବ ।୩୪।

"ସେ କଅଣ ତୁମ୍ଭମାନଙ୍କୁ ଭୟ ଦେଖାଉଅଛନ୍ତି ଯେ ଯେତେବେଳେ ତୁମ୍ଭେମାନେ ମୃତ୍ୟୁଲାଭ କରିବ ଏବଂ ମୃତ୍ତିକା ଓ ଅସ୍ଥିପୁଞ୍ଜ ହୋଇଯିବ ତାପରେ ତୁମ୍ଭେମାନେ (କବରରୁ) ବାହାର କରାହେବ ? ୩୫ ।

"ତୁମ୍ଭେମାନେ ଯେଉଁ ବିଷୟରେ ଭୟ ପ୍ରଦର୍ଶିତ ହେଉଅଛ ତାହା ଅତି ଦୂରରେ, ବହୁ ଦୂରରେ ।୩୬।

''ଆମ୍ଭମାନଙ୍କର ଏହି ପାର୍ଥିବ ଜୀବନ ଛଡ଼ା ଅନ୍ୟ କିଛି (ଭବିଷ୍ୟତ ଜୀବନ) ନାହିଁ, ଯେଉଁଠାରେ ଆମ୍ଭେମାନେ ମୃତ୍ୟୁଲାଭ କରୁଅଛୁଁ ଏବଂ ଜୀବିତ ରହୁଅଛୁଁ; ଏବଂ ଆମ୍ଭେମାନେ ପୁନର୍ଜୀବିତ ହେବୁଁ ନାହିଁ । ୩୭ ।

"ସେତ ମନୁଷ୍ୟ ଛଡ଼ା ଅନ୍ୟ କିଛି ନୁହନ୍ତି । ପରମେଶ୍ୱରଙ୍କ ସମ୍ବନ୍ଧରେ ମିଥ୍ୟା ରଚନା କରିଅଛନ୍ତି ଏବଂ ଆମ୍ଭେମାନେ ତାହାଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରି ପାରିବୁଁ ନାହିଁ'' ।୩୮।

ପ୍ରେରିତ ପୁରୁଷ କହିଥିଲେ;''ହେ ଆମ୍ଭର ପାଳନକର୍ତ୍ତା । ସେମାନେ ଯେ ଆମ୍ଭ ପ୍ରତି ମିଥ୍ୟାରୋପ କରୁଅଛନ୍ତି ସେଥିରୁ ଆମ୍ଭକୁ ସାହାଯ୍ୟ କର'' ।୩୯।

ପରମେଶ୍ୱର କହିଥିଲେ, "ଅଳ୍ପ ସମୟ ମଧ୍ୟରେ ସେମାନେ ନିଶ୍ଚୟ ଅନୁତପ୍ତ ହେବେ" ।୪୦।

ତାପରେ ପ୍ରକୃତରେ ଏକ ଭୀଷଣ ଧ୍ୱନି ସେମାନଙ୍କୁ ଆକ୍ରମଣ କରିଥିଲା, ତାପରେ ଆମ୍ଭେ ସେମାନଙ୍କୁ ଶୁଖିଲା ଘାସର ଅଳିଆ ପରି (ବିଚୂର୍ଣ୍ଣ) କରିଦେଇଥିଲୁଁ ଯେ ଅତ୍ୟାଚାରୀ ସମ୍ପ୍ରଦାୟ ଦୂରୀଭୂତ ହେଉ ।୪୧।

---

୩୧-୪୨ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ନୂହଙ୍କ ପରବର୍ତ୍ତୀ ମହାପୁରୁଷ ହୁଦ ଏବଂ ମହାପୁରୁଷ ସ୍ୱାଲେହଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ସେମାନଙ୍କ ସମ୍ପ୍ରଦାୟ ଆଦ ଓ ସମୁଦର ଦୁଷ୍କାଚରଣ ଓ ଧ୍ୱଂସ ପ୍ରାପ୍ତିର ବିଷୟ ୭ମ ଅଧ୍ୟାୟ ଶ୍ଳୋକ୬୫ରୁ ୭୨କ ଏବଂ ୧୧ଶ ଅଧ୍ୟାୟ ଶ୍ଳୋକ୫୦ରୁ ୬୮କରେ ବର୍ଣ୍ଣିତ ହୋଇଅଛି ।

ତାପରେ ଆମ୍ଭେ ସେମାନଙ୍କ ପଛରେ ଅନ୍ୟ ସମ୍ପ୍ରଦାୟ ସବୁ ସୃଷ୍ଟି କରିଥିଲୁଁ ।୪୨।

କୌଣସି ଜାତି ତାହାର ନିର୍ଦ୍ଦିଷ୍ଟ କାଳରୁ ଆଗେଇ ପାରେ ନାହିଁ କିମ୍ବା ପଛେଇ ପାରେ ନାହିଁ ।୪୩।

ତାପରେ ଆମ୍ଭେ ଜଣେ ଜଣେ କରି ଆମ୍ଭର ପ୍ରେରିତ ପୁରୁଷମାନଙ୍କୁ ପ୍ରେରଣ କରିଥିଲୁଁ; ଯେତେବେଳେ କୌଣସି ସମ୍ପ୍ରଦାୟ ନିକଟକୁ ସେମାନଙ୍କର ପ୍ରେରିତପୁରୁଷ ଆସିଥିଲେ, ସେମାନେ ତାଙ୍କ ପ୍ରତି ମିଥ୍ୟାରୋପ କରିଥିଲେ, ସେଥିପାଇଁ ଆମ୍ଭେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କର ପଶ୍ଚାତରେ (ଧ୍ୱଂସ ମୁଖକୁ) ପଠାଇଥିଲୁଁ ଏବଂ ଆମ୍ଭେ ସେମାନଙ୍କ (ଦୁର୍ଦ୍ଦଶାକୁ) ଇତିହାସ ସ୍ୱରୂପ କରିଥିଲୁଁ; ଅତଏବ ଅବିଶ୍ୱାସକାରୀ ସମ୍ପ୍ରଦାୟ ଦୂରୀଭୂତ ହେଉ ।୪୪।

ତାପରେ ଆମ୍ଭେ ମୂସା ଓ ତାଙ୍କ ଭାଇ ହାରୁନଙ୍କୁ ଆମ୍ଭର ନିଦର୍ଶନମାନ ଓ ପ୍ରକାଶ୍ୟପ୍ରମାଣ ସହିତ ପ୍ରେରଣ କରିଥିଲୁଁ ।୪୫।

ଫେରଅଉନ୍ ଏବଂ ତାଙ୍କର ପ୍ରଧାନ ଲୋକମାନଙ୍କ ପ୍ରତି; କିନ୍ତୁ ସେମାନେ ଅହଙ୍କାର କରିଥିଲେ ଏବଂ ସେମାନେ ଦୁର୍ଦ୍ଦାନ୍ତ ସମ୍ପ୍ରଦାୟ ଥିଲେ ।୪୬।

ତାପରେ ସେମାନେ କହିଥିଲେ, "ଆମ୍ଭେମାନେ କଅଣ ଆମ୍ଭମାନଙ୍କ ପରି ଦୁଇଜଣ ମନୁଷ୍ୟ ପ୍ରତି ବିଶ୍ୱାସ ସ୍ଥାପନ କରିବୁଁ ଅଥଚ ସେମାନଙ୍କର ସମ୍ପ୍ରଦାୟ ଆମ୍ଭମାନଙ୍କର ଚାକରି କରୁଅଛନ୍ତି" ?।୪୭।

ସୁତରାଂ ସେମାନେ ସେ ଦୁହିଁଙ୍କ ପ୍ରତି ମିଥ୍ୟାରୋପ କରିଥିଲେ, ସେଥିପାଇଁ ସେମାନେ ଧ୍ୱଂସପ୍ରାପ୍ତ ହୋଇଥିଲେ ।୪୮।

ଏବଂ ନିଶ୍ଚୟ ଆମ୍ଭେ ମୂସାଙ୍କୁ ଗ୍ରନ୍ଥ ପ୍ରଦାନ କରିଥିଲୁଁ, ଯେପରି ସେମାନେ ସୁପଥ ପ୍ରାପ୍ତ ହେବେ ।୪୯।

ଏବଂ ଆମ୍ଭେ ମରିୟମ୍ ନନ୍ଦନ ଏବଂ ତାଙ୍କ ମାତାଙ୍କୁ ନିଦର୍ଶନ ସ୍ୱରୂପ କରିଥିଲୁଁ ଏବଂ ସେ ଦୁହିଁଙ୍କୁ ଏକ ଉଚ୍ଚଭୂମି ପ୍ରଦାନ କରିଥିଲୁଁ ଯାହା ସୁଜଳା ଓ ସୁଫଳା ଥିଲା ।୫୦।

---

୪୩ । ତାହାର ଧ୍ୱଂସର ସମୟ ନିର୍ଦ୍ଦିଷ୍ଟ ହୋଇଅଛି । ସେ ସମୟର ବ୍ୟତିକ୍ରମ ଘଟେ ନାହିଁ ।

୪୪ । ମହାପୁରୁଷ ନୂହ, ହୁଦ ଏବଂ ସ୍ୱାଲେହଙ୍କ ପରେ ଏବଂ ମୂସାଙ୍କ ପୂର୍ବେ ପରମେଶ୍ୱର ଜଣେ ଜଣେ କରି ପରମ୍ପରାକ୍ରମେ ଅନେକ ପ୍ରେରିତ ପୁରୁଷମାନଙ୍କୁ ପ୍ରେରଣ କରିଥିଲେ, ଯେପରିକି ପରବର୍ତ୍ତୀ ସମ୍ପ୍ରଦାୟ ପୂର୍ବବର୍ତ୍ତୀ ସମ୍ପ୍ରଦାୟର ବିରୁଦ୍ଧାଚରଣ ଓ ଧ୍ୱଂସ ପ୍ରାପ୍ତିରୁ ଶିକ୍ଷା ଲାଭ କରିବେ । ମାତ୍ର ଦୁର୍ଭାଗ୍ୟ ବଶତଃ ସେମାନେ କୌଣସି ଶିକ୍ଷା ଲାଭ କରି ନଥିଲେ, ସୁତରାଂ ଧ୍ୱଂସପ୍ରାପ୍ତ ହୋଇଥିଲେ ।

୪୫–୪୯ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ମୂସା ଏବଂ ହାରୁନଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ଏମାନଙ୍କ ସମ୍ବନ୍ଧରେ ବିଶେଷ ବିବରଣ ୨ୟ ଅଧ୍ୟାୟ ଶ୍ଳୋ ୪୯ରୁ ୭୧କ ଏବଂ ୭ମ ଅଧ୍ୟାୟ ଶ୍ଳୋ ୧୦୩ ରୁ ୧୫୭କରେ ବର୍ଣ୍ଣିତ ହୋଇଅଛି ।

୪୯ । ସେମାନେ—ଇସ୍ରାଇଲୀୟମାନେ ।

୫୦ । ଏହି ଶ୍ଳୋକରେ ମହାପୁରୁଷ ଈସାଙ୍କ ବିଷୟ ସଂକ୍ଷେପରେ ଉଲ୍ଲେଖ କରାଯାଇଅଛି । ତାଙ୍କ ସମ୍ବନ୍ଧରେ ବିଶେଷ ବିବରଣ ୧୯ ଅଧ୍ୟାୟ ଶ୍ଳୋ ୧୬ ରୁ ୩୪କରେ ବର୍ଣ୍ଣିତ ହୋଇଅଛି । ନିଦର୍ଶନ—ଈସାଙ୍କ ଅଲୌକିକ ଭାବରେ ଜନ୍ମ । ଉଚ୍ଚଭୂମି—ମିଶରର ଦେଶସ୍ଥିତ ନୀଳନଦୀ ତୀରବର୍ତ୍ତୀ ଏକ ଉଚ୍ଚ ଓ ଉର୍ବର ସ୍ଥାନ । ଅତ୍ୟାଚାରୀ ରାଜା ହେରୋଦଙ୍କଠାରୁ ରକ୍ଷା ପାଇବା ନିମନ୍ତେ ପରମେଶ୍ୱରଙ୍କ ଆଦେଶରେ ବିବି ମରିୟମ ଶିଶୁ ଈସାଙ୍କୁ ନେଇ ସେହିସ୍ଥାନକୁ ଗମନ କରିଥିଲେ ଏବଂ ଅତ୍ୟାଚାରୀ ରାଜାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ସ୍ଥାନରେ ବାସ କରିଥିଲେ ।

## ୪ର୍ଥ ବିଭାଗ

ହେ ପ୍ରେରିତ ପୁରୁଷମାନେ ! ବିଶୁଦ୍ଧ ବସ୍ତୁମାନଙ୍କରୁ ଭକ୍ଷଣକର ଏବଂ ସତ୍‌କାର୍ଯ୍ୟ କର; ନିଶ୍ଚୟ ତୁମ୍ଭେମାନେ ଯାହାକରୁଅଛ ତାହା ଅମ୍ଭେ ଅବଗତ ଅଛୁଁ ।୫୧।

ଏବଂ ନିଶ୍ଚୟ ତୁମ୍ଭମାନଙ୍କର ଏହି ଧର୍ମସମ୍ପ୍ରଦାୟ ଏକ ସମ୍ପ୍ରଦାୟଭୁକ୍ତ ଏବଂ ଅମ୍ଭେହିଁ ତୁମ୍ଭମାନଙ୍କର ପାଳନକର୍ତ୍ତା; ଅତଏବ ତୁମ୍ଭେମାନେ ଅମ୍ଭଙ୍କୁ ଭୟ କର ।୫୨।

ତାପରେ ସେମାନେ ଆପଣାଭିତରେ ଭିନ୍ନ ଭିନ୍ନ ଦଳରେ ବିଭକ୍ତ ହୋଇଯାଇଥିଲେ; ପ୍ରତ୍ୟେକ ଦଳ ନିକଟରେ ଯାହାଥିଲା ସେଥିରେ ସେମାନେ ସନ୍ତୁଷ୍ଟ ଥିଲେ ।୫୩।

ଅତଏବ ହେ ମୋହମ୍ମଦ ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ସେମାନଙ୍କୁ ସେମାନଙ୍କର ଅମନଯୋଗିତା ମଧ୍ୟରେ ଛାଡ଼ିଦିଅ ।୫୪।

ଅମ୍ଭେ ସେମାନଙ୍କୁ ଧନସମ୍ପତ୍ତି ଓ ସନ୍ତାନସନ୍ତତି ଦ୍ୱାରା ଯେ ସାହାଯ୍ୟ କରୁଅଛୁଁ ସେ ସମ୍ବନ୍ଧରେ ସେମାନେ କି ଧାରଣା କରୁଅଛନ୍ତି ? ୫୫।

ଅମ୍ଭେ କଅଣ ସେମାନଙ୍କ ମଙ୍ଗଳପାଇଁ ସତ୍ୱରତା କରୁଅଛୁଁ ? ନା, ବରଂ ସେମାନେ ବୁଝି ପାରୁନାହାନ୍ତି (ଯେ ଏହା ପରୀକ୍ଷା ଅଟେ) ।୫୬ ।

ନିଶ୍ଚୟ ଯେଉଁମାନେ ସେମାନଙ୍କର ପାଳନକର୍ତ୍ତାଙ୍କର ଭକ୍ତି ଓ ଭୟରୁ ପରମେଶ୍ୱରଙ୍କୁ ଭୟ କରନ୍ତି ।୫୭।

ଏବଂ ଯେଉଁମାନେ ସେମାନଙ୍କର ପାଳନକର୍ତ୍ତାଙ୍କର ନିଦର୍ଶନମାନଙ୍କରେ ବିଶ୍ୱାସ କରନ୍ତି, ।୫୮।

ଏବଂ ଯେଉଁମାନେ ସେମାନଙ୍କର ପାଳନକର୍ତ୍ତାଙ୍କ ସହିତ ଅଂଶୀସ୍ଥାପନ କରନ୍ତି ନାହିଁ; ।୫୯।

---

୫୧ । ପରମେଶ୍ୱର ଯେଉଁ ବିଶୁଦ୍ଧ ବସ୍ତୁମାନଙ୍କୁ ଭକ୍ଷଣ କରିବା ପାଇଁ ଅନୁମତି ଦେଇଅଛନ୍ତି ସେସବୁକୁ ଅବୈଧ ମନେକରି ପରିତ୍ୟାଗ କରିବାରେ କୌଣସି ପୁଣ୍ୟ ନାହିଁ, ବରଂ ଲୋକହିତକର ସତ୍‌କାର୍ଯ୍ୟ କରିବାରେ ପୁଣ୍ୟ ଅଛି । ଏହି ଶ୍ଳୋକ ଏବଂ ପରବର୍ତ୍ତୀ ୫୨ ଶ୍ଳୋକର ଉପଦେଶମାନ ପ୍ରତ୍ୟେକ ପ୍ରେରିତ ପୁରୁଷଙ୍କୁ ତାଙ୍କ ଧର୍ମ ପ୍ରଚାର-ବେଳେ ଦିଆଯାଇଥିଲା ।

୫୨ । ବିଶ୍ୱ ଜଗତର ପାଳନକର୍ତ୍ତା ପରମାତ୍ମା ପରମେଶ୍ୱର ଏକ, ସୁତରାଂ ସତ୍ୟ ସନାତନ ଧର୍ମ ଏକ ଛଡ଼ା ଭିନ୍ନ ଭିନ୍ନ ହୋଇ ନପାରେ । ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ଉପଦେଷ୍ଟାମାନେ ସେହି ସତ୍ୟ ସନାତନ ଧର୍ମ ପ୍ରଚାର କରିଥିଲେ ।

୫୩ । ମାତ୍ର ସେମାନଙ୍କର ତିରୋଧାନ ପରେ ସେମାନଙ୍କ ଅନୁଚରମାନେ ନିଜ ନିଜ କୁପ୍ରବୃତ୍ତି ଦ୍ୱାରା ପରିଚାଳିତ ହୋଇ ଭିନ୍ନ ଭିନ୍ନ ଦଳରେ ବିଭକ୍ତ ହୋଇଅଛନ୍ତି ।

୫୫ । ୫୬ । ଅବିଶ୍ୱାସକାରୀମାନଙ୍କୁ ପରମେଶ୍ୱର ଯେ ଧନ ସମ୍ପଦ ଓ ସନ୍ତାନ ସନ୍ତତି ଦେଇଅଛନ୍ତି ସେଥିରେ ସେମାନଙ୍କର ଏପରି ମନେକରିବା ଉଚିତ ନୁହେଁ ଯେ ପରମେଶ୍ୱର ସେମାନଙ୍କ ପ୍ରତି ସନ୍ତୁଷ୍ଟ ହୋଇ ସେମାନଙ୍କୁ ଏସବୁ ଶୀଘ୍ର ଶୀଘ୍ର ଦେଇଅଛନ୍ତି । ବରଂ ଏହାଦ୍ୱାରା ସେମାନଙ୍କୁ ପରୀକ୍ଷା କରାଯାଉଅଛି । ଏଥିରେ ସେମାନଙ୍କର କିଛି ଲାଭ ନାହିଁ, ବରଂ କ୍ଷତି ଅଛି ।

୫୭-୬୧ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱରଙ୍କର ପ୍ରକୃତ ଖାଣ୍ଟି ଭକ୍ତମାନଙ୍କର ଲକ୍ଷଣ ବର୍ଣ୍ଣିତ ହୋଇଅଛି ।
ସେହିମାନେ ପରମେଶ୍ୱରଙ୍କଠାରୁ ଶୀଘ୍ର ଶୀଘ୍ର ପୁରସ୍କାର ପାଇବାର ଉପଯୁକ୍ତ ।
ସେଥିପାଇଁ ଅଗ୍ରଗାମୀ—କଲ୍ୟାଣ ଲାଭପାଇଁ ପ୍ରଥମ ଅଟନ୍ତି ।

ଏବଂ ଯେଉଁମାନେ, ସେମାନଙ୍କର ହୃଦୟ ଏହି ଭୟରେ ଭୀତ ଥିବା ଅବସ୍ଥାରେ ଯେ ସେମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରିଯିବାକୁ ହେବ, ଯାହା ଦାନ କରିବାର ଦାନ କରନ୍ତି; ।୬୦।

ଏହିମାନେହିଁ ପ୍ରତ୍ୟେକ ମଙ୍ଗଳଜନକ କାର୍ଯ୍ୟରେ ସତ୍ୱରତା କରୁଅଛନ୍ତି ଏବଂ ଏହିମାନେହିଁ ସେଥିପାଇଁ ଅଗ୍ରଗାମୀ ।୬୧।

ଅମ୍ଭେ କୌଣସି ଜୀବକୁ ତାହାର ସାଧ୍ୟରୁ ଅଧିକ ଭାର ଦେଉ ନାହୁଁ ଏବଂ ଅମ୍ଭ ନିକଟରେ ଏକ ପୁସ୍ତକ ଅଛି ଯାହା ସତ୍ୟକଥା କହିଦିଏ ଏବଂ ସେମାନେ ଅତ୍ୟାଚାରିତ ହେବେ ନାହିଁ; ।୬୨।

କିନ୍ତୁ ସେମାନଙ୍କର ହୃଦୟ ଏ ସମ୍ବନ୍ଧରେ ଅଜ୍ଞତା ମଧ୍ୟରେ ରହିଅଛି ଏବଂ ଏହା ଛଡ଼ା ସେମାନଙ୍କର ଅନ୍ୟ କାର୍ଯ୍ୟମାନ ଅଛି, ଯାହା ସେମାନେ କରୁଅଛନ୍ତି ।୬୩।

ଏପରିକି ଯେତେବେଳେ ଅମ୍ଭେ ସେମାନଙ୍କ ମଧ୍ୟରୁ ସମ୍ପଦଶାଳୀ ଲୋକମାନଙ୍କୁ ଶାସ୍ତିଦ୍ୱାରା ଧରିବୁଁ, ସେତେବେଳେ ସେମାନେ ଅଭିନାଦ କରିବେ ।୬୪।

ସେମାନଙ୍କୁ କୁହାଯିବ "ଆଜି ତୁମ୍ଭେମାନେ ଅଭିନାଦ କରନା; ନିଶ୍ଚୟ ତୁମ୍ଭେମାନେ ଅମ୍ଭ ନିକଟରୁ କୌଣସି ସାହାଯ୍ୟ ପାଇବନାହିଁ । ୬୫ ।

"ନିଶ୍ଚୟ ଯେତେବେଳେ ଅମ୍ଭର ନିଦର୍ଶନମାନ ତୁମ୍ଭମାନଙ୍କ ଆଗରେ ପଠିତ ହେଉଥିଲା; ସେତେବେଳେ ତୁମ୍ଭେମାନେ ପଛଆଡ଼କୁ ଫେରି ଯାଉଥିଲ ।୬୬।

"ତୁମ୍ଭେମାନେ (କୋରାନ) ବିଷୟରେ ଅହଙ୍କାର ସହିତ ଅନର୍ଥକ ଗଳ୍ପ କରିବା ପାଇଁ ବାହାରେ ଯାଉଥିଲ" ।୬୭।

ତେବେ କଅଣ ସେମାନେ ସେହି ବାକ୍ୟ ସମ୍ବନ୍ଧରେ ଚିନ୍ତା କରୁନାହାନ୍ତି ଅଥବା ସେମାନଙ୍କ ନିକଟରେ ଯାହା ଉପସ୍ଥିତ ହୋଇଅଛି ସେମାନଙ୍କ ପୂର୍ବବର୍ତ୍ତୀ ପୂର୍ବପୁରୁଷମାନଙ୍କ ନିକଟ କଅଣ ତାହା ଉପସ୍ଥିତ ହୋଇନଥିଲା ? ।୬୮।

---

୬୨ । ଇସଲାମ ଧର୍ମର ବିଧିବିଧାନ ଲୋକମାନଙ୍କ ପକ୍ଷରେ କଷ୍ଟସାଧ୍ୟ ନୁହେଁ, ବରଂ ତାହା ସହଜସାଧ୍ୟ ଓ ସ୍ୱାଭାବିକ ।
ପୁସ୍ତକ—କର୍ମଗ୍ରନ୍ଥ । ମନୁଷ୍ୟମାନେ ଯେଉଁ କର୍ମମାନ କରୁଅଛନ୍ତି ତାହା ପୁସ୍ତକରେ ଲେଖାହୋଇ ପରି ପରମେଶ୍ୱରଙ୍କ ଜ୍ଞାନ ଭଣ୍ଡାରରେ ସଞ୍ଚିତ ହୋଇ ରହିଅଛି । ସୁତରାଂ ସେମାନଙ୍କୁ କର୍ମଫଳ ଦେବା ସମୟରେ ଲେଶ ମାତ୍ର ଅନ୍ୟାୟ କରାହେବ ନାହିଁ ।

୬୩ । ଅନ୍ୟ କାର୍ଯ୍ୟମାନ—ଯାହା ସେମାନେ ଜାଣିଶୁଣି କରୁଅଛନ୍ତି ଅର୍ଥାତ୍ ପରମେଶ୍ୱରଙ୍କ ସହିତ ଅଂଶୀ ସ୍ଥାପନ ଓ ପ୍ରେରିତ ପୁରୁଷମାନଙ୍କ ବିରୁଦ୍ଧାଚରଣ ।

୬୪ । ପରଲୋକରେ ଯେତେବେଳେ ଅବିଶ୍ୱାସକାରୀମାନଙ୍କୁ ଶାସ୍ତି ଦିଆଯିବ ସେତେବେଳେ ସେମାନେ ଅଭିନାଦ କରିବେ ।

୬୫ । କିନ୍ତୁ ସେତେବେଳେ ଅଭିନାଦ କରିବାରେ କୌଣସି ଲାଭ ହେବ ନାହିଁ ।

୬୬ । ୬୭ । କାରଣ ପାର୍ଥିବ ଜୀବନରେ ସେମାନେ ପରମେଶ୍ୱରଙ୍କ ନିଦର୍ଶନମାନଙ୍କ ପ୍ରତି ଅବହେଳା ଓ ଅବଜ୍ଞା କରୁଥିଲେ ।

୬୭ । ଅବିଶ୍ୱାସୀ ମକ୍କାବାସୀମାନେ କାବା ମନ୍ଦିରର ବାହାରେ ବସି ପବିତ୍ର କୋରାନ ସମ୍ବନ୍ଧରେ ନାନାପ୍ରକାର ଅନର୍ଥକ ଗଳ୍ପମାନ କରୁଥିଲେ ।

୬୮ । ସେହିବାକ୍ୟ—ପରମେଶ୍ୱରଙ୍କ ଆଦେଶ ବାଣୀ ।

ଅଥବା ସେମାନେ କଅଣ ନିଜ ପ୍ରେରିତପୁରୁଷଙ୍କୁ ଚିହ୍ନି ପାରି ନାହାନ୍ତି ଯେ ସେମାନେ ତାଙ୍କୁ ଅଗ୍ରାହ୍ୟ କରୁଅଛନ୍ତି ? ।୬୯।

ଅଥବା ସେମାନେ କଅଣ କହନ୍ତି ଯେ ସେ ପାଗଳ ? ବରଂ ସେ ସେମାନଙ୍କ ନିକଟ ସତ୍ୟ ସହିତ ଆସିଅଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟପ୍ରତି ତାଚ୍ଛଲ୍ୟ କରନ୍ତି ।୭୦।

ଏବଂ ଯଦି ସତ୍ୟ ସେମାନଙ୍କର କୁପ୍ରବୃତ୍ତିର ଅନୁସରଣ କରି ଆସିଥାନ୍ତା, ତେବେ ନିଶ୍ଚୟ ଆକାଶ-ମଣ୍ଡଳ ଓ ଭୂମଣ୍ଡଳ ଏବଂ ସେ ଉଭୟ ମଧ୍ୟରେ ଯାହାକିଛି ଅଛି ତାହା ବିଶୃଙ୍ଖଳ ହୋଇ ଯାଇଥାନ୍ତା; ବରଂ ଆମ୍ଭେ ସେମାନଙ୍କ ନିକଟ ସଦୁପଦେଶ ଆଣିଅଛୁଁ, କିନ୍ତୁ ସେମାନେ ସେହି ସଦୁପଦେଶରୁ ବିମୁଖ ହୋଇ ଅଛନ୍ତି ।୭୧।

ଅଥବା ତୁମ୍ଭେ କଅଣ (ପ୍ରଚାର ପାଇଁ) ସେମାନଙ୍କ ଠାରୁ ପ୍ରତିଦାନ ମାଗୁଅଛ ? ବରଂ ତୁମ୍ଭର ପାଳନକର୍ତ୍ତାଙ୍କର ପ୍ରତିଦାନହିଁ ଉତ୍କୃଷ୍ଟତର ଏବଂ ସେହି ଉତ୍ତମ ଜୀବିକା ପ୍ରଦାନକାରୀ ।୭୨।

ଏବଂ ନିଶ୍ଚୟ ତୁମ୍ଭେ ସେମାନଙ୍କୁ ସରଳ ସୁପଥ ଆଡ଼କୁ ଆହ୍ୱାନ କରୁଅଛ ।୭୩।

ଏବଂ ନିଶ୍ଚୟ ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ସେହି ସୁପଥରୁ ବିପଥ-ଗାମୀ ହୁଅନ୍ତି ।୭୪।

ଏବଂ ଯଦି ଆମ୍ଭେ ସେମାନଙ୍କ ପ୍ରତି ଅନୁଗ୍ରହ କରୁଁ ଏବଂ ସେମାନଙ୍କର ଯାହା ଦୁଃଖ ଅଛି ତାହା ଦୂର କରି ଦେଉଁ, ତଥାପି ସେମାନେ ସେମାନଙ୍କର ବିଦ୍ରୋହାଚରଣରେ ଅନ୍ଧ ଭାବରେ ଅବିଚଳିତ ରହିବେ ।୭୫।

ଏବଂ ନିଶ୍ଚୟ ଆମ୍ଭେ ସେମାନଙ୍କୁ ଶାସ୍ତି ସହିତ ଧରିଥିଲୁଁ, ତେବେ ସୁଦ୍ଧା ସେମାନେ ନିଜ ପାଳନକର୍ତ୍ତାଙ୍କର ଅନୁଗତ ହେଲେ ନାହିଁ ଅଥବା ସେମାନେ (ତାଙ୍କୁ) ମିନତି କଲେ ନାହିଁ ।୭୬।

---

୬୯ । ଅବିଶ୍ୱାସକାରୀ ବିଧର୍ମୀ ଲୋକମାନେ ମହାପୁରୁଷ ମୋହମ୍ମଦଙ୍କୁ ପ୍ରେରିତ ପୁରୁଷ ବୋଲି ଜାଣି ମଧ୍ୟ ଅହଙ୍କାର ବଶତଃ ତାହାଙ୍କୁ ଅଗ୍ରାହ୍ୟ କରୁଅଛନ୍ତି ।

୭୧ । ସଂସାରରେ ଓ ଲୋକସମାଜରେ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ କରିବା ନିମନ୍ତେ ପ୍ରେରିତ ପୁରୁଷ ପରମେଶ୍ୱରଙ୍କ-ଠାରୁ ସତ୍ୟ ସହିତ ଲୋକମାନଙ୍କ ଉପଦେଷ୍ଟାରୂପେ ଅବତୀର୍ଣ୍ଣ ହୁଅନ୍ତି । ସେ ଯଦି ଲୋକମାନଙ୍କ କୁପ୍ରବୃତ୍ତିର ଅନୁସରଣ କରି କାର୍ଯ୍ୟ କରନ୍ତି ତେବେ ସଂସାରରେ ଶାନ୍ତିଶୃଙ୍ଖଳା ରହିପାରିବ ନାହିଁ ।

୭୨ । ଲୋକମାନେ ପ୍ରେରିତ ପୁରୁଷଙ୍କ ଉପଦେଶ ଗ୍ରହଣ କଲେ କି ଅବା ନ କରନ୍ତୁ ସେଥିପାଇଁ ଦୁଃଖିତ ହେବାର କାରଣ ନାହିଁ । କାରଣ ସେ ପାର୍ଥିବ ପୁରସ୍କାର ଆଶାରେ ଏହା କରୁନାହାନ୍ତି । ତାଙ୍କର କାର୍ଯ୍ୟପାଇଁ ସେ ପରମେଶ୍ୱରଙ୍କ ଠାରୁ ପୁରସ୍କାର ପାଇବେ । ସୁତରାଂ ପରମେଶ୍ୱରଙ୍କ ଉପରେ ନିର୍ଭର କରି ପରମେଶ୍ୱରଙ୍କ ଆଦେଶ ଅନୁଯାୟୀ କାର୍ଯ୍ୟ କରିବା ଆବଶ୍ୟକ ।

୭୫ । ଅବିଶ୍ୱାସକାରୀମାନଙ୍କ ପ୍ରତି ଅନୁଗ୍ରହ କରି ସେମାନଙ୍କ ଦୁଃଖ କଷ୍ଟ ଦୂର କରିଦେଲେ ମଧ୍ୟ ସେମାନେ କୃତଜ୍ଞତା ପ୍ରକାଶ କରିବା ପରିବର୍ତ୍ତିରେ ବିଦ୍ରୋହାଚରଣରେ ଅବିଚଳିତ ରହନ୍ତି ।

୭୬ । ସେମାନଙ୍କ ପ୍ରତି ପାର୍ଥିବ ଶାସ୍ତି ବିଧାନ କଲେ ମଧ୍ୟ ସେମାନେ ପରମେଶ୍ୱରଙ୍କ ପ୍ରତି ଭୀତ, ଅନୁଗତ କିମ୍ବା ବିନୀତ ହୁଅନ୍ତି ନାହିଁ ।

ଏପରିକି ଯେତେବେଳେ ଆମ୍ଭେ ସେମାନଙ୍କ ପାଇଁ କଠୋରତର ଶାସ୍ତିର ଦ୍ୱାର ଖୋଲି ଦେବୁ ସେତେବେଳେ ସେମାନେ ସେଥିରେ ନିରାଶ ହୋଇ ପଡ଼ିବେ ।୭୭।

## ୫ମ ବିଭାଗ

ଏବଂ ସେହି ତୁମ୍ଭମାନଙ୍କ ପାଇଁ କର୍ଣ୍ଣ ଓ ଚକ୍ଷୁ ଓ ହୃଦୟମାନଙ୍କୁ ସୃଷ୍ଟି କରିଅଛନ୍ତି; ତୁମ୍ଭେମାନେ ଅତି ଅଳ୍ପ କୃତଜ୍ଞତା ସ୍ୱୀକାର କରିଥାଅ ।୭୮।

ଏବଂ ସେହି ତୁମ୍ଭମାନଙ୍କୁ ପୃଥିବୀରେ (ସବୁ ଆଡ଼େ) ପ୍ରସାରିତ କରିଅଛନ୍ତି, ଏବଂ ତୁମ୍ଭେମାନେ (ଶେଷ ବିଚାର ଦିନ) ତାଙ୍କରି ନିକଟରେ ଏକତ୍ରିତ ହେବ ।୭୯।

ଏବଂ ସେହି ତୁମ୍ଭମାନଙ୍କୁ ଜୀବନ ଓ ମରଣ ଦିଅନ୍ତି ଏବଂ ତାଙ୍କରି ଯୋଗୁ ଦିନ ଓ ରାତିର ପରିବର୍ତ୍ତନ ହୋଇଥାଏ; ତେବେ ପୁଣି କ'ଣ ତୁମ୍ଭେମାନେ ହୃଦୟଙ୍ଗମ କରିବ ନାହିଁ ? ।୮୦।

ବରଂ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନେ ଯେପରି କହୁଥିଲେ ସେମାନେ ମଧ୍ୟ ସେହିପରି କହୁଥାନ୍ତି ।୮୧।

ସେମାନେ କହନ୍ତି, "କ'ଣ ! ଯେତେବେଳେ ଆମ୍ଭେମାନେ ମରିଯିବୁଁ ଏବଂ ମୃତ୍ତିକା ଓ ଅସ୍ଥି ପୁଞ୍ଜ ହୋଇଯିବୁଁ ସେତେବେଳେ ପୁନର୍ବାର ଉତ୍ଥିତ ହେବୁଁ ? ।୮୨।

"ନିଶ୍ଚୟ ଆମ୍ଭମାନଙ୍କୁ ଏବଂ ଆମ୍ଭମାନଙ୍କ ପୂର୍ବେ ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କୁ ମଧ୍ୟ ଏହି ଅଙ୍ଗୀକାର କରାଯାଇ ଅଛି, ଏହା ପୁରାକାଳୀନ କାହାଣୀ ଛଡ଼ା ଆଉ କିଛି ନୁହେଁ" ।୮୩।

ତୁମ୍ଭେ କୁହ, "ପୃଥିବୀ ଓ ତନ୍ମଧ୍ୟରେ ଯାହା ଅଛି ତାହା କାହାର, ଯଦି ତୁମ୍ଭେମାନେ ଜାଣ ତେବେ କୁହ" ? ।୮୪।

ସେମାନେ ଶୀଘ୍ର କହିବେ, "ପରମେଶ୍ୱରଙ୍କ" ତୁମ୍ଭେ କୁହ, "ତେବେ କ'ଣ ତୁମ୍ଭେମାନେ ହୃଦୟଙ୍ଗମ କରୁନାହଁ ?" ।୮୫।

ତୁମ୍ଭେ କୁହ, "ସପ୍ତ ଆକାଶର ପ୍ରଭୁ କିଏ ଏବଂ ମହା ସିଂହାସନର ମାଲିକ କିଏ ?" ।୮୬।

ସେମାନେ ଶୀଘ୍ର ଉତ୍ତର ଦେବେ, "ପରମେଶ୍ୱର"; ତୁମ୍ଭେ କୁହ, "ତେବେ ପୁଣି କ'ଣ ତୁମ୍ଭେମାନେ ସଂଯତ ହେବ ନାହିଁ" ? ।୮୭।

---

୭୭ । କଠୋରତର ଶାସ୍ତି—ଏହି ପୃଥିବୀରେ କଠୋରତର ଶାସ୍ତି ଅଥବା ପରଲୋକର ଶାସ୍ତି ।
ସୁତରାଂ ସେମାନେ ଏହି ପୃଥିବୀରେ ଅଥବା ପରଲୋକରେ ନିଶ୍ଚୟ କଠୋର ଶାସ୍ତି ଭୋଗ କରିବେ ।

୭୮–୮୦ । ପରମେଶ୍ୱର ମନୁଷ୍ୟଙ୍କୁ ମନ ଓ ବିବେକ ଦେଇଅଛନ୍ତି ଏବଂ ପୃଥିବୀରେ ତାହାପ୍ରତି ଅନୁଗ୍ରହ କରୁଅଛନ୍ତି ଏବଂ ସେ ଜନ୍ମ ଓ ମୃତ୍ୟୁର ଅଧିକାରୀ । ସୁତରାଂ ଏବିଷୟମାନ ହୃଦୟଙ୍ଗମ କରି ପରମେଶ୍ୱରଙ୍କ ପ୍ରତି କୃତଜ୍ଞ ଓ ଅନୁଗତ ହେବା ଆବଶ୍ୟକ ।

୮୧ । ପୂର୍ବବର୍ତ୍ତୀ ଲୋକମାନେ ଯାହା କହିଥିଲେ ତାହା ୮୨ ଶ୍ଳୋକରେ ଅଛି ।

୮୨–୮୭ । ବିଶ୍ୱସଂସାରରେ ପରମେଶ୍ୱରଙ୍କ ଆଧିପତ୍ୟ ଏବଂ ତାଙ୍କର ମହାନ ଶକ୍ତିର ବିଷୟ ସ୍ୱୀକାର କଲାପରେ, ପରଲୋକରେ କର୍ମଫଳ ଭୋଗ ନିମନ୍ତେ ପୁନରୁତ୍ଥାନ ବିଷୟରେ ଅସ୍ୱୀକାର କରିବା ନିତାନ୍ତ ନିର୍ବୁଦ୍ଧିତାର କାର୍ଯ୍ୟ ।

ତୁମ୍ଭେ କୁହ, "କାହା ହାତରେ ସମସ୍ତ ବିଷୟର ଅଧିପତ୍ୟ ରହିଅଛି ଏବଂ କିଏ (ସମସ୍ତଙ୍କୁ) ରକ୍ଷା କରନ୍ତି ଏବଂ ତାଙ୍କ ବିପକ୍ଷରେ କେହି କାହାରିକୁ ରକ୍ଷା କରିପାରେନା; ଯଦି ତୁମ୍ଭେମାନେ ଜାଣ ତେବେ କୁହ" ? ।୮୮।

ସେମାନେ ଶୀଘ୍ର ଉତ୍ତର ଦେବେ; "ସବୁ ପରମେଶ୍ୱରଙ୍କ;" ତୁମ୍ଭେ କୁହ, "ତେବେ ତୁମ୍ଭେମାନେ କିପରି ମୋହଗ୍ରସ୍ତ ହେଉଅଛ" ? ।୮୯।

ବରଂ ଅମ୍ଭେ ସେମାନଙ୍କ ନିକଟ ସତ୍ୟ ଅଣିଅଛୁଁ ଏବଂ ନିଶ୍ଚୟ ସେମାନେ ଅସତ୍ୟବାଦୀ ।୯୦।

ପରମେଶ୍ୱର କାହାକୁ ସନ୍ତାନ ସ୍ୱରୂପ ଗ୍ରହଣ କରିନାହାନ୍ତି ଏବଂ ତାଙ୍କ ସହିତ ଅନ୍ୟ କେହି ଉପାସ୍ୟ ନାହିଁ: ତାହା ହୋଇଥିଲେ ପ୍ରତ୍ୟେକ ଉପାସ୍ୟ ଯାହା ସୃଷ୍ଟି କରିଅଛନ୍ତି ତାହା ସେ ନେଇ ଯାଆନ୍ତେ ଏବଂ ନିଶ୍ଚୟ ଜଣେ ଅନ୍ୟ ଉପରେ ପରାକ୍ରାନ୍ତ ହୁଅନ୍ତା; ପରମେଶ୍ୱର ପବିତ୍ର, ସେମାନେ ଯାହା ବର୍ଣ୍ଣନା କରୁଅଛନ୍ତି ସେ ସେଥିରୁ ମୁକ୍ତ ଅଟନ୍ତି ।୯୧।

ସେ ଅଦୃଶ୍ୟ ଏବଂ ଦୃଶ୍ୟ ସମସ୍ତ ବିଷୟର ମହାଜ୍ଞାନୀ, ସୁତରାଂ ସେମାନେ ଯାହା ଅଂଶୀ ସ୍ଥିର କରିଅଛନ୍ତି ସେଥିରୁ ସେ ସମୁନ୍ନତ ।୯୨।

## ଷଷ୍ଠ ବିଭାଗ

ତୁମ୍ଭେ କୁହ, "ହେ ଅମ୍ଭର ପାଳନକର୍ତ୍ତା ! ସେମାନେ ଯେଉଁ ଶାସ୍ତି ବିଷୟରେ ଅଙ୍ଗୀକୃତ ହୋଇଅଛନ୍ତି ଯଦି ତୁମ୍ଭେ ତାହା ଅମ୍ଭକୁ ଦେଖାଅ;—୯୩ ।

"ତେବେ, ହେ ଅମ୍ଭର ପାଳନକର୍ତ୍ତା ! ତୁମ୍ଭେ ଅମ୍ଭକୁ ଅତ୍ୟାଚାରୀ ସମ୍ପ୍ରଦାୟର ଅନ୍ତର୍ଗତ କରନା ।" ୯୪ ।

ଏବଂ ସେମାନେ ଯେଉଁ ବିଷୟରେ ଅଙ୍ଗୀକୃତ ହୋଇଅଛନ୍ତି, ନିଶ୍ଚୟ ଅମ୍ଭେ ତୁମ୍ଭକୁ ତାହା ଦେଖାଇବାକୁ ସକ୍ଷମ । ୯୫ ।

---

୯୦ । କାରଣ ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ମହାପୁରୁଷ ମହମ୍ମଦ ସତ୍ୟ ପ୍ରଚାର କରୁଅଛନ୍ତି; ତାହା ଅସତ୍ୟ ହୋଇ ନ ପାରେ ।

୯୧-୯୨ । ସେହି ପରମେଶ୍ୱର ବିଶ୍ୱ ସଂସାରର ସୃଷ୍ଟି ସ୍ଥିତି ଲୟର ଏକମାତ୍ର ଅଧିନାୟକ ଓ ନିୟନ୍ତା ଅଟନ୍ତି; ତାଙ୍କର କେହି ସନ୍ତାନ ନାହିଁ କିମ୍ବା ତାଙ୍କର କେହି ଅଂଶୀଦାର ନାହାନ୍ତି । ଯଦି ତାଙ୍କର କେହି ଅଂଶୀଦାର ଥାଆନ୍ତେ ତେବେ ବିଶ୍ୱସଂସାରରେ ଶୃଙ୍ଖଳା ରହିପାରନ୍ତା ନାହିଁ ।

୯୩-୯୫ । ସେମାନେ ଯେଉଁ ବିଷୟରେ ଅଙ୍ଗୀକୃତ ହୋଇଅଛନ୍ତି—ଅର୍ଥାତ୍ ଅବିଶ୍ୱାସକାରୀମାନଙ୍କ ପ୍ରତି କଠୋରତର ଶାସ୍ତି (ଦେଖ ଏହି ଅଧ୍ୟାୟ ଶ୍ଳୋ ୭୭) ।

ଯଦି ତୁମ୍ଭେ ତାହା ଅମ୍ଭକୁ ଦେଖାଅ—ଯଦି ତାହା ଏହି ପୃଥିବୀରେ ଏବଂ ମହାପୁରୁଷ ମୋହମ୍ମଦଙ୍କ ଜୀବଦ୍ଦଶାରେ ସଙ୍ଘଟିତ ହୁଏ ।

ମହାପୁରୁଷ ମୋହମ୍ମଦ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛନ୍ତି, "ହେ ପରମେଶ୍ୱର ! ଅବିଶ୍ୱାସକାରୀମାନଙ୍କ ପ୍ରତି ପ୍ରତିଶ୍ରୁତ କଠୋରତର ଶାସ୍ତି ଯଦି ପୃଥିବୀରେ ଏବଂ ଅମ୍ଭର ଜୀବିତାବସ୍ଥାରେ ଉପସ୍ଥିତ ହୁଏ ତେବେ ଅମ୍ଭକୁ ଏବଂ ଅମ୍ଭର ବିଶ୍ୱସ୍ତ ଅନୁଚରମାନଙ୍କୁ ସେହି ଶାସ୍ତିରୁ ରକ୍ଷା କର ।" ପରମେଶ୍ୱର ତାହାର ଉତ୍ତରରେ କହୁଅଛନ୍ତି, "ନିଶ୍ଚୟ ଅମ୍ଭେ ତୁମ୍ଭର ଜୀବିତାବସ୍ଥାରେ ଅଙ୍ଗୀକୃତ କଠୋରତର ଶାସ୍ତି ଉପସ୍ଥିତ କରିପାରୁଁ ।"

ସତ୍‌କାର୍ଯ୍ୟଦ୍ୱାରା ଅସତ୍ ବିଷୟକୁ ଦୂରୀଭୂତ କର; ସେମାନେ ଯାହା ବର୍ଣ୍ଣନା କରନ୍ତି ତାହା ଆମ୍ଭେ ଭଲରୂପେ ଜାଣୁଁ । ୯୬ ।

ଏବଂ ତୁମ୍ଭେ କୁହ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭେ ସଇତାନମାନଙ୍କର କୁପ୍ରରୋଚନାରୁ ତୁମ୍ଭର ଆଶ୍ରୟ ପ୍ରାର୍ଥନା କରୁଅଛୁଁ । ୯୭ ।

"ଏବଂ ହେ ଆମ୍ଭର ପାଳନକର୍ତ୍ତା । ଆମ୍ଭ ପାଖରେ ସେମାନଙ୍କର ଉପସ୍ଥିତିରୁ ମଧ୍ୟ ଆମ୍ଭେ ତୁମ୍ଭର ଆଶ୍ରୟ ପ୍ରାର୍ଥନା କରୁଅଛୁଁ" । ୯୮ ।

ଏପରିକି ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ନିକଟରେ ମୃତ୍ୟୁ ଉପସ୍ଥିତ ହୁଏ, ସେତେବେଳେ ସେ କହେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭକୁ ପୁନରାୟ ପୃଥିବୀକୁ ପ୍ରେରଣ କର;—୯୯ ।

"ଯେପରି ଆମ୍ଭେ ସେହି ସତ୍‌କାର୍ଯ୍ୟମାନ କରିପାରିବୁଁ ଯାହା ଆମ୍ଭେ ପରିତ୍ୟାଗ କରିଅଛୁଁ;" ଉତ୍ତର ମିଳିବ, "କଦାପି ନୁହେ, ଯାହା ସେ କହୁଅଛି ତାହା କେବଳ କଥା ମାତ୍ର;" ଏବଂ ପୁନରୁତ୍‌ଥାନ ଦିବସପର୍ଯ୍ୟନ୍ତ ସେମାନଙ୍କ ସମ୍ମୁଖରେ ଆବରଣ ରହିଅଛି । ୧୦୦ ।

ତାପରେ ଯେତେବେଳେ ଭେରୀ ଧ୍ୱନି କରାହେବ, ସେ ଦିନ ସେମାନଙ୍କ ମଧ୍ୟରେ ବନ୍ଧୁତା ରହିବ ନାହିଁ ଏବଂ କେହି କାହାକୁ ପଚାରିବେ ନାହିଁ । ୧୦୧ ।

ତାପରେ ଯେଉଁମାନଙ୍କର ସତ୍‌କାର୍ଯ୍ୟମାନ ଓଜନରେ ଭାରି ହେବ ସେହିମାନେହିଁ ସୁଫଳ ପ୍ରାପ୍ତ ହେବେ । ୧୦୨ ।

ଏବଂ ଯେଉଁମାନଙ୍କର ସତ୍‌କାର୍ଯ୍ୟମାନ ଓଜନରେ ହାଲୁକା ହେବ ସେହିମାନେହିଁ କ୍ଷତଗ୍ରସ୍ତ ହୋଇ ସର୍ବଦା ନରକରେ ବାସ କରିବେ । ୧୦୩ ।

ଅଗ୍ନି ସେମାନଙ୍କର ମୁଖମଣ୍ଡଳକୁ ଦଗ୍ଧ କରିଦେବ ଏବଂ ସେଥି ମଧ୍ୟରେ ସେମାନେ ବିବର୍ଣ୍ଣ ହୋଇଯିବେ । ୧୦୪ ।

ପରମେଶ୍ୱର ସେମାନଙ୍କୁ କହିବେ "ଆମ୍ଭର ନିଦର୍ଶନମାନ କଅଣ ତୁମ୍ଭମାନଙ୍କ ନିକଟରେ ପଠିତ ହୋଇନଥିଲା ? କିନ୍ତୁ ତୁମ୍ଭେମାନେ ସେ ସବୁ ପ୍ରତି ମିଥ୍ୟାରୋପ କରୁଥିଲ" ।୧୦୫ ।

ସେମାନେ କହିବେ, "ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ଆମ୍ଭମାନଙ୍କ ଉପରେ ଦୁର୍ଭାଗ୍ୟ ପରାକ୍ରାନ୍ତ ହୋଇଥିଲା ଏବଂ ଆମ୍ଭେମାନେ ପଥଭ୍ରଷ୍ଟ ସମ୍ପ୍ରଦାୟ ଥିଲୁଁ । ୧୦୬ ।

"ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ଏଥିରୁ ଆମ୍ଭମାନଙ୍କୁ ବାହାର କର; ଏହାପରେ ଯଦି ଆମ୍ଭେମାନେ ପୁନରାୟ ଲିପ୍ତ ହେଉଁ ତେବେ ନିଶ୍ଚୟ ଆମ୍ଭେମାନେ ଅତ୍ୟାଚାରୀ ହେବୁଁ" । ୧୦୭ ।

---

୯୬ । ଅଙ୍ଗୀକୃତ ଶାସ୍ତି ଉପସ୍ଥିତ ନହେବା ପର୍ଯ୍ୟନ୍ତ, ବିଧର୍ମୀମାନଙ୍କର ଅସତ୍ ବ୍ୟବହାର ପରିବର୍ତ୍ତରେ ସେମାନଙ୍କପ୍ରତି ସତ୍ ବ୍ୟବହାର କରିବା ପାଇଁ ଆଦେଶ କରାଯାଇଅଛି ।

୯୭-୯୮ । ଏହି ଶ୍ଳୋକମାନଙ୍କରେ ସଇତାନର କୁପ୍ରରୋଚନାରେ କ୍ରୋଧ ପରବଶ ହୋଇ ସେମାନଙ୍କ ପ୍ରତି ଅସତ୍ ବ୍ୟବହାର କରିବାକୁ ଏବଂ ପାପାତ୍ମା ସଇତାନ ଯେପରି ନିକଟବର୍ତ୍ତୀ ନହୁଏ ସେଥିପାଇଁ ପ୍ରାର୍ଥନା କରିବାକୁ ଆଦେଶ କରାଯାଇଅଛି ଯେପରିକି ପାପାତ୍ମା ସଇତାନ କୁପ୍ରରୋଚନା ଦେଇ ନପାରିବ ।

୯୯-୧୦୦ । ଏହି ଶ୍ଳୋକମାନଙ୍କର ଭାବ ଏହି ଯେ, ମନୁଷ୍ୟ ମରିଗଲା ପରେ ସେ ଆଉ ପାର୍ଥିବ ଜୀବନ ଲାଭ କରିପାରିବ ନାହିଁ । ମାତ୍ର ପୁନରୁତ୍‌ଥାନ ପରେ ସେ ପାରଲୌକିକ ଜୀବନ ଲାଭ କରିବ ।

ପରମେଶ୍ୱର କହିବେ, "ଏହାରି ମଧ୍ୟକୁ ଗୃଲିଯାଅ ଏବଂ ଅମ୍ଭ ସହିତ କଥା କୁହନା; ୧୦୮ ।

"ନିଶ୍ଚୟ ଅମ୍ଭର ସେବକମାନଙ୍କ ମଧ୍ୟରେ ଏକ ଦଳ ଥିଲେ ଯେଉଁମାନେ କହୁଥିଲେ, 'ହେ ଅମ୍ଭମାନଙ୍କର ପାଳନକର୍ତ୍ତା । ଅମ୍ଭେମାନେ ବିଶ୍ୱାସ ସ୍ଥାପନ କରିଅଛୁଁ, ଅତଏବ ଅମ୍ଭମାନଙ୍କୁ କ୍ଷମା କର ଏବଂ ଅମ୍ଭମାନଙ୍କୁ ଅନୁଗ୍ରହ ଦାନ କର ଏବଂ ତୁମ୍ଭେହିଁ ସର୍ବଶ୍ରେଷ୍ଠ ଅନୁଗ୍ରହକାରୀ' । ୧୦୯ ।

"କିନ୍ତୁ ତୁମ୍ଭେମାନେ ସେମାନଙ୍କୁ ବିଦ୍ରୂପ କରୁଥିଲ ଏପରିକି ତାହା ତୁମ୍ଭମାନଙ୍କୁ ଅମ୍ଭର ସ୍ମରଣରୁ ଭୁଲାଇ ଦେଇଥିଲା, ଏବଂ ତୁମ୍ଭେମାନେ ସେମାନଙ୍କ ପ୍ରତି ଉପହାସ କରିଥିଲ । ୧୧୦ ।

"ନିଶ୍ଚୟ ଆଜି ଅମ୍ଭେ ସେମାନଙ୍କୁ ସେମାନଙ୍କର ଧୈର୍ଯ୍ୟଶୀଳତାର ପୁରସ୍କାର ପ୍ରଦାନ କରିଅଛୁଁ, ଯେଉଁଥିରେ ସେମାନେ କୃତକାର୍ଯ୍ୟ ହୋଇଅଛନ୍ତି ।" ୧୧୧ ।

ପରମେଶ୍ୱର କହିବେ, "ତୁମ୍ଭେମାନେ କେତେ ବର୍ଷ ପୃଥିବୀରେ ବାସ କରିଥିଲ "? ୧୧୨ ।

ସେମାନେ କହିବେ, "ଅମ୍ଭେମାନେ ଦିନେ କିମ୍ବା ଦିନକରୁ କମ ବାସ କରିଥିଲୁଁ, କିନ୍ତୁ ଗଣନାକାରୀମାନଙ୍କୁ ପଚାର ।" ୧୧୩ ।

ପରମେଶ୍ୱର କହିବେ, "ତୁମ୍ଭେମାନେ ଅତି ଅଳ୍ପ ସମୟ ମାତ୍ର ରହିଥିଲ, ଯଦି ତୁମ୍ଭେମାନେ ଜାଣିପାରନ୍ତ । ୧୧୪ ।

"ତେବେ କଅଣ ତୁମ୍ଭେମାନେ ଧାରଣା କରିଥିଲ ଯେ ଅମ୍ଭେ ତୁମ୍ଭମାନଙ୍କୁ ଅନର୍ଥକ ସୃଷ୍ଟି କରିଥିଲୁଁ ଏବଂ ତୁମ୍ଭମାନଙ୍କୁ ଅମ୍ଭନିକଟ ଫେରିଆସିବାକୁ ହେବ ନାହିଁ" ? ୧୧୫ ।

ଅତଏବ ସତ୍ୟ ଅଧିପତି ପରମେଶ୍ୱରହିଁ ସମୁନ୍ନତ; ସେହି ସମ୍ମାନିତ ସିଂହାସନର ପ୍ରଭୁଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ । ୧୧୬ ।

●

---

୧୦୧-୧୦୮ । ଏହି ଶ୍ଳୋକମାନଙ୍କରେ ପରଲୋକରେ ଶେଷ ବିଚାର ପାଇଁ ପୁନରୁତ୍‌ଥାନ ଏବଂ କର୍ମଫଳ ଭୋଗର ବିଷୟ ବର୍ଣ୍ଣିତ ହୋଇଅଛି । ସେ ସମୟରେ ଅପରାଧୀମାନଙ୍କର ଅନୁତାପ ଦ୍ୱାରା କୌଣସି ଫଳ ଲାଭ ହେବ ନାହିଁ ।

୧୦୯-୧୧୧ । ଏହି ଶ୍ଳୋକମାନଙ୍କରେ ବିଶ୍ୱସକାରୀମାନଙ୍କ ପରଲୋକର ପୁରସ୍କାର ବିଷୟ ବର୍ଣ୍ଣିତ ହୋଇଅଛି ।

୧୧୩ । ଗଣନାକାରୀ=ସ୍ୱର୍ଗଦୂତମାନେ, ଯେଉଁମାନେ ଲୋକମାନଙ୍କ ପାପପୁଣ୍ୟ ଗଣନା କରି ଲେଖି ରଖିଅଛନ୍ତି ।

୧୧୨-୧୧୪ । ସେ ଦିନ ପରମେଶ୍ୱର ଅପରାଧୀ ଲୋକମାନଙ୍କୁ ପଚାରିବେ 'ତୁମ୍ଭେମାନେ ପୃଥିବୀରେ କେତେ ସମୟ ବାସ କରିଥିଲ ?' ସେଦିନର ଦୁଃଖ ଯନ୍ତ୍ରଣା ଓ ଶାସ୍ତିର କଠୋରତା ହେତୁ ସେମାନେ କହିବେ 'ଅତି ଅଳ୍ପ ସମୟ ।' ପରମେଶ୍ୱର କହିବେ, 'ବାସ୍ତବରେ ପରଲୋକ ତୁଳନାରେ ପାର୍ଥିବ ଜୀବନ ଅତି ଅଳ୍ପ ସମୟ ଅଟେ ।'

୧୧୫ । ମାତ୍ର ଦୁଃଖର ବିଷୟ ଏହି କ୍ଷଣସ୍ଥାୟୀ ଜୀବନ ମଧ୍ୟରେ ମନୁଷ୍ୟ ନିଜକୁ ପୃଥିବୀର ଚିରସ୍ଥାୟୀ ଅଧିବାସୀ ମନେ କରି ପରମେଶ୍ୱରଙ୍କ ପ୍ରତି ଅକୃତଜ୍ଞ ଓ ଅବାଧ୍ୟ ହୋଇ ପଡେ ଏବଂ ସେ ମନେ କରେ ଯେ ତାହାର ପାର୍ଥିବ କାର୍ଯ୍ୟପାଇଁ ସେ କାହାରି ନିକଟରେ ଦାୟୀ ନୁହେ ।

୧୧୬-୧୧୭ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ସ୍ପଷ୍ଟ ପ୍ରକାଶ କରିଅଛନ୍ତି ଯେ ମନୁଷ୍ୟମାନେ ସେମାନଙ୍କ ପାର୍ଥିବ ଜୀବନର କାର୍ଯ୍ୟମାନଙ୍କ ପାଇଁ ପରମେଶ୍ୱରଙ୍କଠାରେ ଦାୟୀ ଅଟନ୍ତି, କାରଣ ପରମେଶ୍ୱର ସେମାନଙ୍କୁ ବୃଥାରେ ସୃଷ୍ଟି କରି ନାହାନ୍ତି ଏବଂ ଯେଉଁମାନେ ପରମେଶ୍ୱରଙ୍କୁ ଅବିଶ୍ୱାସ କରିଅଛନ୍ତି ଅଥବା ତାଙ୍କ ସହିତ ଅଂଶୀଉପାସ୍ୟ ସ୍ଥିର କରିଅଛନ୍ତି ସେମାନେ ପରଲୋକରେ ନରକ ଯନ୍ତ୍ରଣା ଭୋଗ କରିବେ ।

ଏବଂ ଯେ କେହି ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟଙ୍କୁ ଆହ୍ୱାନ କରେ, ତେବେ ସେଥିପାଇଁ ତାହା ନିକଟରେ କୌଣସି ପ୍ରମାଣ ନାହିଁ; ଅତଏବ ତାହାର ହିସାବ ତାହାର ପାଳନକର୍ତ୍ତାଙ୍କ ନିକଟରେ ରହିଅଛି। ନିଶ୍ଚୟ ଅବିଶ୍ୱାସକାରୀମାନେ ସୁଫଳ ପ୍ରାପ୍ତ ହେବେ ନାହିଁ । ୧୧୭ ।

ଏବଂ ତୁମ୍ଭେ କୁହ, "ହେ ଆମ୍ଭର ପାଳନକର୍ତ୍ତା ! ତୁମ୍ଭେ କ୍ଷମା କର ଓ ଅନୁଗ୍ରହ ଦାନ କର ଏବଂ ତୁମ୍ଭେହିଁ ସର୍ବଶ୍ରେଷ୍ଠ ଅନୁଗ୍ରହକାରୀ" ।୧୧୮ ।

— — —

୧୧୮ । ଏହି ଶ୍ଳୋକରେ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ତଥା ତାଙ୍କର ଅନୁଚରମାନଙ୍କୁ ପରମେଶ୍ୱରଙ୍କଠାରୁ କ୍ଷମା ଓ ଅନୁଗ୍ରହ ପ୍ରାର୍ଥନା କରିବା ପାଇଁ ଆଦେଶ କରିଅଛନ୍ତି ।

—o—

## ୨୪ଶ ଅଧ୍ୟାୟ

ନାମ—ଅନ୍‌ନୁର (ଅଲୋକ) ।

ମଦିନାରେ ଅବତୀର୍ଣ୍ଣ । ଏଥିରେ ଗୋଟିଏ ବିଭାଗ ଏବଂ ୬୪ ଗୋଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ଏହି ଅଧ୍ୟାୟକୁ ଆମ୍ଭେ ଅବତୀର୍ଣ୍ଣ କରିଅଛୁଁ ଏବଂ ଏହାକୁ ଅବଶ୍ୟ କର୍ତ୍ତବ୍ୟ ବୋଲି ନିର୍ଦ୍ଧାରିତ କରିଅଛୁଁ ଏବଂ ଆମ୍ଭେ ଏଥିରେ ପ୍ରକାଶ୍ୟ ନିଦର୍ଶନମାନ ଅବତୀର୍ଣ୍ଣ କରିଅଛୁଁ ଯେପରି ତୁମ୍ଭେମାନେ ମନଯୋଗୀ ହେବ । ୧ ।

ବ୍ୟଭିଚାରିଣୀ ଓ ବ୍ୟଭିଚାରୀ ଏମାନଙ୍କର ପ୍ରତ୍ୟେକକୁ ଏକଶହ ବେତ ମାଡ଼ ଦିଅ; ଏବଂ ପରମେଶ୍ୱରଙ୍କ ଆଦେଶ ସମ୍ବନ୍ଧରେ ସେମାନଙ୍କ ପ୍ରତି ଯେପରି ତୁମ୍ଭମାନଙ୍କର ହୃଦୟରେ ମମତା ଜାତ ନହୁଏ, ଯଦି ତୁମ୍ଭେମାନେ ପରମେଶ୍ୱର ଓ ପରକାଳ ସମ୍ବନ୍ଧରେ ବିଶ୍ୱାସ ସ୍ଥାପନ କରିଥାଅ; ଏବଂ ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଏକ ଦଳ ଯେପରି ଉଭୟଙ୍କର ଶାସ୍ତି ଦେଖିବେ । ୨ ।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋକ୩୫ରେ ପରମେଶ୍ୱରଙ୍କୁ ଅଲୋକ ସହିତ ତୁଳନା କରାଯାଇ ଥିବାରୁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି । ଏହି ଶ୍ଳୋକରେ ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ମହାପୁରୁଷ ମୋହମ୍ମଦଙ୍କ ଦ୍ୱାରା ପ୍ରଚାରିତ ସତ୍ୟ ସନାତନ ଇସଲାମ ଧର୍ମ ସମଗ୍ର ସଂସାରରୁ ଅଧର୍ମ ଓ ଅସତ୍ୟ ଓ ଅନାଚାରର ଅନ୍ଧକାର ଦୂରୀଭୂତ କରି ଧର୍ମ ଓ ସତ୍ୟ ଓ ସଦାଚାରର ଅଲୋକ ବିସ୍ତାର କରିବ ବୋଲି ପ୍ରକାଶ କରାଯାଇଅଛି ।

୧ । ଏହି ଶ୍ଳୋକରେ ବିଶ୍ୱାସକାରୀ ମୁସଲମାନମାନଙ୍କ ପ୍ରତି, ନିଜର ଚରିତ୍ର ରକ୍ଷା ଓ ପବିତ୍ର ସାମାଜିକ ଜୀବନ ଯାପନ ପାଇଁ ଏହି ଅଧ୍ୟାୟରେ ଯେଉଁ ବିଧିବିଧାନମାନ ଦିଆଯାଇଅଛି ତାହା ଅବଶ୍ୟ କର୍ତ୍ତବ୍ୟ (ଫରଜ୍) ବୋଲି ନିର୍ଦ୍ଦେଶ କରାଯାଇଅଛି ।

୨ । ଏହି ଶ୍ଳୋକରେ ବ୍ୟଭିଚାରୀ ପୁରୁଷ ଓ ବ୍ୟଭିଚାରିଣୀ ସ୍ତ୍ରୀର ପ୍ରତ୍ୟେକକୁ ଏକ ଶହ ବେତ ମାଡ଼ର ଶାସ୍ତି ପ୍ରକାଶ୍ୟରେ ଲୋକମାନଙ୍କ ଆଗରେ ଦେବା ପାଇଁ ଆଦେଶ କରାଯାଇଅଛି ଯେପରି ଲୋକମାନେ ତଦ୍ୱାରା ଶିକ୍ଷା ଲାଭ କରିପାରିବେ । ମମତା ବଶତଃ ସେମାନଙ୍କ ଶାସ୍ତିରେ ଲାଘବ କରିବା ଅନ୍ୟାୟ । କୌଣସି ପୁରୁଷପକ୍ଷରେ ନିଜର ବିବାହିତା ସ୍ତ୍ରୀ ଛଡ଼ା ଅନ୍ୟ କୌଣସି ସ୍ତ୍ରୀ ସହିତ ଏବଂ କୌଣସି ସ୍ତ୍ରୀ ପକ୍ଷରେ ନିଜର ସ୍ୱାମୀ ଛଡ଼ା ଅନ୍ୟ କୌଣସି ପୁରୁଷ ସହିତ ଯୌନ ସମ୍ପର୍କ ରଖିବା ଯେ ଏକ ମାରାତ୍ମକ ଏବଂ ନିତାନ୍ତ ଘୃଣ୍ୟ ପାପକାର୍ଯ୍ୟ ଏହା ସମସ୍ତ ଲୋକମାନେ ସ୍ୱୀକାର କରିବେ । ପବିତ୍ର ଇସଲାମ ଧର୍ମ ଏହି ଘୃଣ୍ୟ ପାପକାର୍ଯ୍ୟରୁ ମାନବ ସମାଜକୁ ବହିର୍ଗତ କରିବା ପାଇଁ ଏହି କଠୋର ଶାସ୍ତି ବିଧାନ କରିଅଛି ।

ବ୍ୟଭିଚାରୀ ଅବଶ୍ୟ ବ୍ୟଭିଚାରିଣୀ କିମ୍ବା ଅଂଶୀବାଦିନୀ ବ୍ୟତୀତ ଅନ୍ୟ କାହାକୁ ବିବାହ କରିବ ନାହିଁ ଏବଂ ବ୍ୟଭିଚାରିଣୀ ଅବଶ୍ୟ ବ୍ୟଭିଚାରୀ ଅଥବା ଅଂଶୀବାଦୀ ବ୍ୟତୀତ ଅନ୍ୟ କାହାକୁ ବିବାହ କରିବ ନାହିଁ; ଏବଂ ଏହା ବିଶ୍ୱାସକାରୀମାନଙ୍କ ପ୍ରତି ଅବୈଧ କରାହୋଇଅଛି । ୩ ।

ଏବଂ ଯେଉଁମାନେ ସତୀ ସ୍ତ୍ରୀମାନଙ୍କ ପ୍ରତି ବ୍ୟଭିଚାରର ଅପବାଦ ଦିଅନ୍ତି ଏବଂ ସେଥିପାଇଁ ଚାରି-ଜଣ ସାକ୍ଷୀ ଦେଇ ନପାରନ୍ତି, ତେବେ ସେମାନଙ୍କୁ ଅଶି ବେତ ମାଡ଼ ଦିଅ ଏବଂ କଦାପି ସେମାନଙ୍କର ସାକ୍ଷ୍ୟ ଗ୍ରହଣ କରନା; ଏବଂ ଏହିମାନେହିଁ ଦୁଷ୍କର୍ମକାରୀ । ୪ ।

କିନ୍ତୁ ଯେଉଁମାନେ ଏହାପରେ ଅନୁତାପ କରି କ୍ଷମା ପ୍ରାର୍ଥନା କରନ୍ତି ଏବଂ ସଂଶୋଧିତ ହୁଅନ୍ତି ତେବେ ନିଶ୍ଚୟ ପରମେଶ୍ୱର କ୍ଷମାଶୀଳ କରୁଣାମୟ । ୫ ।

ଏବଂ ଯେଉଁମାନେ ନିଜ ପତ୍ନୀମାନଙ୍କୁ ଭ୍ରଷ୍ଟା ବୋଲି ଅପବାଦ ଦିଅନ୍ତି ଏବଂ ସେମାନଙ୍କର ନିଜ ବ୍ୟତୀତ ଅନ୍ୟ ସାକ୍ଷୀ ନଥାଏ ତେବେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଲୋକ ପରମେଶ୍ୱରଙ୍କ ରାଣ ଖାଇ ଚାରିଥର ସାକ୍ଷ୍ୟ ଦେବେ ଯେ ନିଶ୍ଚୟ ସେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ । ୬ ।

ଏବଂ ପଞ୍ଚମ ଥର କହିବ ଯେ ଯଦି ସେ ମିଥ୍ୟାବାଦୀ ଥାଏ, ତେବେ ତାହା ଉପରେ ପରମେଶ୍ୱରଙ୍କ ଅଭିଶାପ ପଡ଼ିବ । ୭ ।

ଏବଂ ସ୍ତ୍ରୀ ମଧ୍ୟ ଶାସ୍ତିରୁ ଅବ୍ୟାହତି ପାଇବ, ଯଦି ସେ ପରମେଶ୍ୱରଙ୍କ ରାଣ ଖାଇ ଚାରି ଥର ସାକ୍ଷ୍ୟ ଦିଏ ଯେ ନିଶ୍ଚୟ ସେହି ପୁରୁଷ ମିଥ୍ୟାବାଦୀମାନଙ୍କର ଅନ୍ତର୍ଗତ ।୮।

ଏବଂ ପଞ୍ଚମଥର କହେ ଯେ ଯଦି ସେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ ହୁଏ ତେବେ ତାହା ଉପରେ ପରମେଶ୍ୱରଙ୍କ ଶାସ୍ତି ଉପସ୍ଥିତ ହେବ ।୯।

---

୩ । ଯେଉଁ ପୁରୁଷ କିମ୍ବା ଯେଉଁ ସ୍ତ୍ରୀ ପ୍ରକାଶ୍ୟ ଭାବରେ ବ୍ୟଭିଚାରରେ ଲିପ୍ତ ଅଛି ତାହାକୁ ବିବାହ କରିବା ବିଶ୍ୱାସକାରୀ ଓ ବିଶ୍ୱାସକାରିଣୀ ମୁସଲମାନ ପକ୍ଷରେ ନିଷେଧ କରାଯାଇଅଛି । ମସ୍ଲେମ ସମାଜରୁ ବ୍ୟଭିଚାର ପାପ ଦୂରୀଭୂତ କରିବାର ଏହା ଅନ୍ୟ ଗୋଟିଏ ଉପାୟ ।

୪ । ସତୀ ସ୍ତ୍ରୀମାନଙ୍କୁ ବ୍ୟଭିଚାରର ମିଥ୍ୟା ଅପବାଦ ଦେବା ଯେ ନିତାନ୍ତ ନିନ୍ଦନୀୟ କାର୍ଯ୍ୟ ଏହା ସମସ୍ତେ ସ୍ୱୀକାର କରିବେ । ଏହିପରି ଅପବାଦର ସପକ୍ଷରେ ଚାରି ଜଣ ସାକ୍ଷୀ ଦର୍ଶାଇ ନପାରିଲେ, ଅପବାଦକାରୀକୁ ଅଶୀ ବେତ୍ରାଘାତର ଶାସ୍ତି ଦେବାପାଇଁ ଏବଂ ଭବିଷ୍ୟତରେ କୌଣସି ବିଷୟରେ ତାହାର ସାକ୍ଷ୍ୟ ଗ୍ରହଣ ନକରିବା ପାଇଁ ଆଦେଶ କରାଯାଇଅଛି । ସ୍ତ୍ରୀ ଜାତିର ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବା ପାଇଁ ପବିତ୍ର ଇସଲାମ ଧର୍ମରେ ଏହି ସୁନ୍ଦର ଓ କାର୍ଯ୍ୟକାରୀ ବିଧାନ କରାଯାଇଅଛି ।

୫ । ଅପବାଦକାରୀ (ସ୍ତ୍ରୀ ହେଉ ବା ପୁରୁଷ ହେଉ) ଯଦି ଅନୁତାପ କରି ପରମେଶ୍ୱରଙ୍କଠାରେ କ୍ଷମା ପ୍ରାର୍ଥନା କରେ ଏବଂ ଯାହାକୁ ଅପବାଦ ଦେଇଅଛି ତାହାଠାରେ ମଧ୍ୟ କ୍ଷମା ପ୍ରାର୍ଥନା କରି ତାହାର କ୍ଷମା ଲାଭ କରେ, ତେବେ ପରମେଶ୍ୱର ତାକୁ ପରଲୋକର ଶାସ୍ତିରୁ କ୍ଷମା ଦେବେ ।

୬-୯ । ପୁରୁଷ ଯଦି ନିଜ ସ୍ତ୍ରୀକୁ ବ୍ୟଭିଚାରିଣୀ ବୋଲି ଜାଣିପାରେ, ମାତ୍ର ତାହାର ସପକ୍ଷରେ ଚାରିଜଣ ସାକ୍ଷୀ ଦେଇ ନପାରେ, ସେପରି ଅବସ୍ଥାରେ ଉକ୍ତ ବିଷୟ ଶପଥ ଦ୍ୱାରା ମୀମାଂସା କରିବା ପାଇଁ ଆଦେଶ କରାଯାଇଅଛି । ପୁରୁଷ ଶପଥ କଲାପରେ ସେ ଅପବାଦର ଶାସ୍ତିରୁ ରକ୍ଷା ପାଇବ । ତାପରେ ସ୍ତ୍ରୀ ଯଦି ବ୍ୟଭିଚାର ସ୍ୱୀକାର କରେ ତେବେ ସେ ବ୍ୟଭିଚାରର ଶାସ୍ତି ଭୋଗ କରିବ । ଯଦି ସେ ଅସ୍ୱୀକାର କରେ ତେବେ ତାକୁ ମଧ୍ୟ ଶପଥ କରିବାକୁ ହେବ । ସ୍ତ୍ରୀ ଶପଥ କଲାପରେ ସେ ବ୍ୟଭିଚାରର ଶାସ୍ତିରୁ ରକ୍ଷାପାଇବ । ମାତ୍ର ଉଭୟଙ୍କ ମଧ୍ୟରେ ବିବାହ ବନ୍ଧନ ଛିନ୍ନ ହୋଇଯିବ ।

ଏବଂ ଯଦି ପରମେଶ୍ୱରଙ୍କ ଅନୁଗ୍ରହ ଓ ତାଙ୍କର କରୁଣା ତୁମ୍ଭମାନଙ୍କ ଉପରେ ନଥାନ୍ତା (ତୁମ୍ଭେମାନେ ଧ୍ୱଂସ ପାଇଥାନ୍ତ) ଏବଂ ନିଶ୍ଚୟ ପରମେଶ୍ୱର କ୍ଷମାଶୀଳ ଓ ବିଜ୍ଞାନୀ ।୧୦।

## ୨ୟ ବିଭାଗ

ନିଶ୍ଚୟ ଯେଉଁମାନେ (ବିବି ଆଏଶାଙ୍କ ସମ୍ବନ୍ଧରେ) ଏହି ମିଥ୍ୟା ଅପବାଦ ରଚନା କରି ଅଛନ୍ତି ସେମାନେ ତୁମ୍ଭମାନଙ୍କ ମଧ୍ୟରୁ ଏକ କ୍ଷୁଦ୍ର ଦଳ; ତୁମ୍ଭେମାନେ ଏହାକୁ ନିଜପାଇଁ ଅନିଷ୍ଟକର ମନେ କରନା, ବରଂ (ମିଥ୍ୟାପ୍ରମାଣିତ ହୋଇ) ଏହା ତୁମ୍ଭମାନଙ୍କ ପାଇଁ ମଙ୍ଗଳକର ହେବ; ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଏହି ଅପବାଦଜନିତ ପାପରୁ ଯାହା ଅର୍ଜ୍ଜନ କରିଅଛନ୍ତି ତାହାର ଫଳ ଭୋଗିବେ, ଏବଂ ସେମାନଙ୍କ ମଧ୍ୟରୁ ଯେ ନିଜ ଉପରେ ଏହାର ଗୁରୁଭାର ଗ୍ରହଣ କରିଅଛି ତାହାପାଇଁ କଠିନ ଶାସ୍ତି ରହିଅଛି ।୧୧।

---

୧୦ । ପୂର୍ବବର୍ତ୍ତୀ ଶ୍ଳୋକମାନଙ୍କରେ ବ୍ୟଭିଚାର ଓ ମିଥ୍ୟା ଅପବାଦର ଶାସ୍ତି ବିଷୟ ବର୍ଣ୍ଣନା କରି ପରମେଶ୍ୱର ଲୋକମାନଙ୍କୁ ଏହି ନିନ୍ଦନୀୟ ପାପ କାର୍ଯ୍ୟରୁ କ୍ଷାନ୍ତ ରହିବା ପାଇଁ ଆଦେଶ କରୁଅଛନ୍ତି । ତାହା ନ ହେଲେ ସେମାନେ ପରମେଶ୍ୱରଙ୍କ କୋପ ଦୃଷ୍ଟିରେ ପତିତ ହୋଇ ପାର୍ଥିବ ଜୀବନରେ ଶାସ୍ତି ଭୋଗ କରିବେ । ପ୍ରେରିତ ପୁରୁଷଙ୍କ ଉପଦେଶ ବାକ୍ୟାବଳୀ (ହଦିସ୍)ରୁ ପ୍ରକାଶ ମାନବ ସମାଜରେ ଏହି ପାପ କାର୍ଯ୍ୟ ବିସ୍ତାର ଲାଭ କଲେ ତାହାର ଶାସ୍ତି ସ୍ୱରୂପ ବିସୂଚିକା, ବସନ୍ତ, ପ୍ଲେଗ, ମାଲେରିଆ ପ୍ରଭୃତି ମହାମାରୀ ରୋଗମାନ ଏବଂ ଅନାବୃଷ୍ଟି, ଶସ୍ୟହାନି, ଦୁର୍ଭିକ୍ଷ, ଝଟିକା, ଜଳପ୍ଲାବନ, ଭୂମିକମ୍ପ, ଅଗ୍ନିଉତ୍ପାତ ପ୍ରଭୃତି ନୈସର୍ଗିକ ବିପଦମାନ ଉପସ୍ଥିତ ହୋଇ ମାନବଜାତି ଦୁର୍ଦ୍ଦଶାଗ୍ରସ୍ତ ହୋଇପଡ଼ନ୍ତି ।

୧୧-୧୭ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ମୋହମ୍ମଦଙ୍କ ପ୍ରିୟତମା ସ୍ତ୍ରୀ ବିବି ଆଏଶାଙ୍କୁ ମିଥ୍ୟା ଅପବାଦ ଦେଇ-ଥିବା ଲୋକମାନଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ମହାପୁରୁଷ ମୋହମ୍ମଦ ହିଜରି ୬ଷ୍ଠ ସାଲରେ ବନିମୋସ୍ତାଲିକ ସମ୍ପ୍ରଦାୟ ବିରୁଦ୍ଧରେ ଅଭିଯାନ ଯାତ୍ରା କରିଥିଲେ । ତାଙ୍କର ସ୍ତ୍ରୀ ବିବି ଆଏଶା ତାଙ୍କ ସଙ୍ଗରେ ଯାଇଥିଲେ । ସେଠାରୁ ମଦିନାକୁ ଫେରିବା ସମୟରେ ପ୍ରେରିତ ପୁରୁଷ ମଦିନାରୁ ଅଳ୍ପ ଦୂର ଗୋଟିଏ ସ୍ଥାନରେ ସଦଳବଳରେ ରାତ୍ରି ଯାପନ କରିଥିଲେ । ବିବି ଆଏଶାଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ଉଷ୍ଟ୍ରୀ ଥିଲା । ତାହା ଉପରେ ହାଉଦା ରଖାଯାଇ ସେଥିରେ ସେ ପର୍ଦ୍ଦା ସହିତ ଯାତ୍ରା କରୁଥିଲେ । ପ୍ରଭାତ ସମୟରେ ବ୍ୟକ୍ତିଗତ ପ୍ରୟୋଜନ ହେତୁ ବିବିଆଏଶା ଦଳରୁ ବାହାରକୁ ଯାଇଥିଲେ । ସେଠାରେ ଦୈବାତ୍ ତାଙ୍କ ବେକର ହାର ଛିଣ୍ଡିଯାଇ ତଳେ ପଡ଼ିଗଲା । ତାହା ଖୋଜିବାରେ ବିଳମ୍ବ ହେଲା । ଇତି ମଧ୍ୟରେ ଦଳର ଯାତ୍ରା ଆରମ୍ଭ ହୋଇଗଲା । ତାଙ୍କର ଉଷ୍ଟ୍ର ଚାଳକ ହାଉଦା ଉପରେ ପର୍ଦ୍ଦା ପଡ଼ିଥିବାର ଦେଖି ଅନୁମାନ କଲାକି ବିବି ଆଏଶା ହାଉଦା ମଧ୍ୟରେ ଅଛନ୍ତି । ସୁତରାଂ ସେ ହାଉଦାକୁ ଉଠାଇ ଉଷ୍ଟ୍ରୀର ପିଠି ଉପରେ ବାନ୍ଧି ଦେଇ ଉଷ୍ଟ୍ରୀକୁ ନେଇ ଯାତ୍ରା କଲା । ତାପରେ ବିବି ଆଏଶା ସେଠାରେ ଉପସ୍ଥିତ ହୋଇ ଦେଖିଲେ ଦଳଯାତ୍ରା କରିଅଛି ଏବଂ ସେଠାରେ କେହି ନାହିଁ । ସୁତରାଂ, ତାଙ୍କୁ ନପାଇ ତାଙ୍କୁ ଖୋଜିବା ପାଇଁ ଲୋକେ ନିଶ୍ଚୟ ଏହି ସ୍ଥାନକୁ ଆସିବେ ଏହା ଭାବି ସେ ସେହି ସ୍ଥାନରେ ବସି ରହିଲେ । କିଛି ସମୟ ପରେ ମହାପୁରୁଷ ମୋହମ୍ମଦଙ୍କ ବିଶ୍ୱସ୍ତ ଅନୁଚର ସଫ୍ୱାନ୍-ବିନ୍ ମାଅତଲ୍, ଯେକି ଦଳର ପଶ୍ଚାତରେ ପଡ଼ିଯାଇଥିବା ଜିନିଷ ପତ୍ରର ଅନୁସନ୍ଧାନ ନିମନ୍ତେ ଦଳରୁ କିଛିଦୂର ପଶ୍ଚାତରେ ରହୁଥିଲେ, ସେଠାରେ ଆସି ଉପସ୍ଥିତ ହେଲେ । ସେ ବିବି ଆଏଶାଙ୍କୁ ଚିହ୍ନିପାରି ବିଶେଷ ଦୁଃଖିତ ହେଲେ ଏବଂ ତାଙ୍କୁ ସମ୍ମାନ ସହିତ ନିଜ ଉଷ୍ଟ୍ର ଉପରେ ବସାଇ ଉଷ୍ଟ୍ରର ଦଉଡ଼ି ନିଜ ହାତରେ ଧରି ଚାଲି ଚାଲି ଯାଇ ଦଳରେ ପହଞ୍ଚି ବିବି ଆଏଶାଙ୍କୁ ମହାପୁରୁଷ ମୋହମ୍ମଦଙ୍କ ନିକଟରେ ଛାଡ଼ିଦେଇଥିଲେ ।

ଏବଂ ଯେତେବେଳେ ତୁମ୍ଭେମାନେ ଏହା ଶୁଣିଥିଲ, ସେତେବେଳେ ବିଶ୍ୱାସକାରୀ ଓ ବିଶ୍ୱାସକାରିଣୀମାନେ କାହିଁକି ଏହା ସେମାନଙ୍କ ପାଇଁ ଉତ୍ତମ ଧାରଣା କଲେ ନାହିଁ ଏବଂ କହିଲେ ନାହିଁ ଯେ ଏହା ପ୍ରକାଶ୍ୟ ମିଥ୍ୟା ଅପବାଦ ? ୧୨।

ଏ ବିଷୟରେ କାହିଁକି ସେମାନେ ଚାରିଜଣ ସାକ୍ଷୀ ଆଣିଲେ ନାହିଁ ? ତାପରେ ଯେତେବେଳେ ସେମାନେ ସାକ୍ଷୀମାନଙ୍କୁ ଆଣିନାହାନ୍ତି ସେତେବେଳେ ସେହିମାନେହିଁ ପରମେଶ୍ୱରଙ୍କ ଆଗରେ ମିଥ୍ୟାବାଦୀ ୧୩।

ଏବଂ ଯଦି ପାର୍ଥିବ ଜୀବନରେ ଓ ପରଲୋକରେ ତୁମ୍ଭମାନଙ୍କ ଉପରେ ପରମେଶ୍ୱରଙ୍କ ଅନୁଗ୍ରହ ଓ ତାଙ୍କର କରୁଣା ନଥାନ୍ତା, ତେବେ ନିଶ୍ଚୟ ତୁମ୍ଭେମାନେ ଯେଉଁ ବିଷୟରେ ଆଲୋଚନା କରୁଥିଲ ସେଥିପାଇଁ ତୁମ୍ଭମାନଙ୍କୁ ଗୁରୁତର ଶାସ୍ତି ସ୍ପର୍ଶକରି ଥାଆନ୍ତା ।୧୪।

ଯେତେବେଳେ ତୁମ୍ଭେମାନେ ନିଜ ନିଜ ଜିହ୍ୱାଦ୍ୱାରା ଏହା ଗ୍ରହଣ କରିଥିଲ ଏବଂ ଯେଉଁ ବିଷୟରେ ତୁମ୍ଭମାନଙ୍କର କୌଣସି ଜ୍ଞାନ ନାହିଁ ସେ ବିଷୟ ତୁମ୍ଭେମାନେ ନିଜ ନିଜ ମୁଖଦ୍ୱାରା କହୁଥିଲ ଏବଂ ତୁମ୍ଭେମାନେ ଏହାକୁ ସହଜ ବ୍ୟାପାର ମନେ କରିଥିଲ କିନ୍ତୁ ପରମେଶ୍ୱରଙ୍କ ନିକଟରେ ତାହା ଅତିଶୟ ଗୁରୁତର ।୧୫।

ଏବଂ ଯେତେବେଳେ ତୁମ୍ଭେମାନେ ଏହା ଶ୍ରବଣ କରିଥିଲ, ସେତେବେଳେ କାହିଁକି କହିଲ ନାହିଁ ଯେ "ଏପରି କଥା କହିବା ଅମ୍ଭମାନଙ୍କର ଉଚିତ ନୁହେ (ପରମେଶ୍ୱର) ତୁମ୍ଭେହିଁ ପବିତ୍ର ! ଏହା ତ ଗୁରୁତର ଅପବାଦ" ।୧୬।

ପରମେଶ୍ୱର ତୁମ୍ଭମାନଙ୍କୁ ଉପଦେଶ ଦେଉଅଛନ୍ତି ଯେ ତୁମ୍ଭେମାନେ ଆଉ କଦାପି ଏପରି କାର୍ଯ୍ୟ କରିବ ନାହିଁ, ଯଦି ତୁମ୍ଭେମାନେ ବିଶ୍ୱାସକାରୀ ହୁଅ ।୧୭।

ଏବଂ ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ନିଦର୍ଶନମାନ ଭଲରୂପେ ପ୍ରକାଶ କରୁଅଛନ୍ତି; ଏବଂ ପରମେଶ୍ୱର ମହାଜ୍ଞାନୀ ଓ ବିଜ୍ଞାନୀ ।୧୮।

---

ଏହି ଘଟଣାର ସୁବିଧା ନେଇ କପଟ ବିଶ୍ୱାସୀ ଦଳପତି ଅବଦୁଲ୍ ବିନ୍ ଓବେୟେ ବିବି ଆଏଶାଙ୍କ ବିରୁଦ୍ଧରେ ମିଥ୍ୟା ଅପବାଦ ରଟନା କରିବାକୁ ଲାଗିଲେ । ଏବଂ ବିଶ୍ୱାସକାରୀ ପୁରୁଷମାନଙ୍କ ମଧ୍ୟରୁ ହେସାନ୍ ଏବଂ ମେସତାହ୍ ନାମକ ଦୁଇବ୍ୟକ୍ତି ଏବଂ ବିଶ୍ୱାସକାରିଣୀ ସ୍ତ୍ରୀମାନଙ୍କ ମଧ୍ୟରୁ ହମନା ନାମକ ଏକ ସ୍ତ୍ରୀ ଅବଦୁଲ୍ଲର କଥାରେ ବିଶ୍ୱାସ କରି ଏହି ମିଥ୍ୟା ଅପବାଦ ରଟନାରେ ଯୋଗ ଦେଇଥିଲେ । ପ୍ରାୟ ଏକମାସ ପର୍ଯ୍ୟନ୍ତ ମହାପୁରୁଷ ମୋହମ୍ମଦ ଏବଂ ତାଙ୍କର ବିଶ୍ୱସ୍ତ ଅନୁଚରମାନେ ଏହି ମିଥ୍ୟା ଅପବାଦ ରଟନା ହେତୁ ବିଶେଷ ଦୁଃଖିତ ଓ ମ୍ରିୟମାଣ ଅନ୍ତରରେ ରହିଲେ । ତାପରେ ପରମେଶ୍ୱର ଏହି ଶ୍ଳୋକମାନ ଅବତୀର୍ଣ୍ଣ କରି ସତୀ ସାଧ୍ୱୀ ବିବି ଆଏଶାଙ୍କୁ ଏହି ମିଥ୍ୟା ଅପବାଦରୁ ମୁକ୍ତ କରିଥିଲେ ।

୧୧ । ଯେ ଗୁରୁଭାର ଗ୍ରହଣ କରିଅଛି—ଅର୍ଥାତ୍ କପଟ ବିଶ୍ୱାସୀ ଅବଦୁଲ୍ ବିନ୍ ଓବେୟ୍ ଏକ କ୍ଷୁଦ୍ର ଦଳ—ଅର୍ଥାତ୍ ମୋଟେ ଚାରିଜଣ ।

୧୩ । ଏହି ଅଧ୍ୟାୟ ୪ର୍ଥ ଶ୍ଳୋକ ଅନୁଯାୟୀ ଅପବାଦକାରୀମାନେ ୪ଜଣ ସାକ୍ଷୀ ଦେଇପାରିଲେ ନାହିଁ । ସୁତରାଂ ସେମାନେ ଦଣ୍ଡ ଭୋଗ କରିଥିଲେ ।

୧୪-୧୬ । ଏହି ମିଥ୍ୟା ଅପବାଦ ବିଷୟରେ ଯେଉଁମାନେ ଆଲୋଚନା କରୁଥିଲେ, ଏବଂ ଯେଉଁମାନେ ଏହାକୁ ଶ୍ରବଣ କରି ଏହା ମିଥ୍ୟା ବୋଲି ପ୍ରତିବାଦ କରିନଥିଲେ ବରଂ ମୌନ ଅବଲମ୍ବନ କରିଥିଲେ, ଏମାନେ ସମସ୍ତେ ଋଣୀ ଅଧିକରେ ଦୋଷୀ ଅଟନ୍ତି । ଏମାନେ ଅନୁତାପ କରି କ୍ଷମା ପ୍ରାର୍ଥନା କରିବାରୁ ପରମେଶ୍ୱର ଏମାନଙ୍କୁ କ୍ଷମା ଦେଇଅଛନ୍ତି । ନଚେତ ସେମାନଙ୍କ ପ୍ରତି ଘୁରୁତର ଶାସ୍ତି ଉପସ୍ଥିତ ହୋଇଥାନ୍ତା ।

୧୭ । ଭବିଷ୍ୟତରେ ଏପରି କାର୍ଯ୍ୟ ନକରିବା ପାଇଁ ସାବଧାନ କରାଯାଇଅଛି ।

ନିଶ୍ଚୟ ଯେଉଁମାନେ ଭଲ ମନେ କରନ୍ତି ଯେ ବିଶ୍ୱାସକାରୀମାନଙ୍କ ସମ୍ବନ୍ଧରେ ଅଶ୍ଳୀଳତା ପ୍ରଚାରିତ ହେଉ, ସେହିମାନଙ୍କ ପାଇଁ ଇହଲୋକ ଓ ପରଲୋକରେ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି, ଏବଂ ପରମେଶ୍ୱର ଏହା ଅବଗତ ଅଛନ୍ତି ଏବଂ ତୁମ୍ଭେମାନେ ଅବଗତ ନୁହ ।୧୯।

ଏବଂ ଯଦି ତୁମ୍ଭମାନଙ୍କ ପ୍ରତି ପରମେଶ୍ୱରଙ୍କ ଅନୁଗ୍ରହ ଓ କରୁଣା ନ ଥାନ୍ତା ତେବେ ତୁମ୍ଭେମାନେ ରକ୍ଷା ପାଇ ପାରିନଥାନ୍ତ; ମାତ୍ର ନିଶ୍ଚୟ ପରମେଶ୍ୱର ସ୍ନେହଶୀଳ କରୁଣାମୟ ଅଟନ୍ତି ।୨୦।

## ୩ୟ ବିଭାଗ

ହେ ବିଶ୍ୱାସକାରୀମାନେ ! ତୁମ୍ଭେମାନେ ସଇତାନର ପଦାଙ୍କ ଅନୁସରଣ କରନା; ଏବଂ ଯେ ସଇତାନର ପଦାଙ୍କ ଅନୁସରଣକରେ, ନିଶ୍ଚୟ ସେ ତାକୁ ଅଶ୍ଳୀଳତା ଓ ଦୁଷ୍କର୍ମ ସମ୍ବନ୍ଧରେ ଆଦେଶ କରିଥାଏ; ଏବଂ ଯଦି ତୁମ୍ଭମାନଙ୍କ ଉପରେ ପରମେଶ୍ୱରଙ୍କ ଅନୁଗ୍ରହ ଓ ତାଙ୍କର କରୁଣା ନଥାନ୍ତା ତେବେ ତୁମ୍ଭମାନଙ୍କ ମଧ୍ୟରୁ ଜଣେ ସୁଦ୍ଧା କଦାପି ସଂଶୋଧିତ ହୋଇ ପାରି ନଥାନ୍ତ; କିନ୍ତୁ ପରମେଶ୍ୱର ଯାହାକୁ ଇଚ୍ଛା ତାକୁ ସଂଶୋଧିତ କରି ଥାଆନ୍ତି ଏବଂ ପରମେଶ୍ୱର ଶ୍ରବଣକାରୀ ମହାଜ୍ଞାନୀ ।୨୧।

ଏବଂ ତୁମ୍ଭମାନଙ୍କ ମଧ୍ୟରୁ ଅନୁଗ୍ରହପ୍ରାପ୍ତ ଓ ଧନୀ ଲୋକମାନେ ଯେପରି ନିକଟ ଆତ୍ମୀୟ ଓ ଦୀନଦରିଦ୍ର ଓ ପରମେଶ୍ୱରଙ୍କ ପଥରେ ଦେଶ ତ୍ୟାଗକାରୀମାନଙ୍କୁ ଦାନକରିବାର ବିପକ୍ଷରେ ପ୍ରତିଜ୍ଞାବଦ୍ଧ ନହୁଅନ୍ତି, ଏବଂ ସେମାନଙ୍କୁ କ୍ଷମାକରିବା ଓ ମାର୍ଜ୍ଜନା କରିବା ଉଚିତ; ତୁମ୍ଭେମାନେ କଅଣ କାମନା କରନା ଯେ ପରମେଶ୍ୱର ତୁମ୍ଭମାନଙ୍କୁ କ୍ଷମାକରନ୍ତୁ ? ଏବଂ ପରମେଶ୍ୱର କ୍ଷମାଶୀଳ କରୁଣାମୟ ।୨୨।

---

୧୯ । ଅବଦୁଲ୍ଲା ବିନ୍ ଓ ବଏ ଓ ଅନ୍ୟ କପଟ ବିଶ୍ୱାସୀମାନେ ଅନୁତାପ ଓ କ୍ଷମା ପ୍ରାର୍ଥନା କଲେ ନାହିଁ କିମ୍ବା ଏହି ମିଥ୍ୟା ଅପବାଦ ପ୍ରଚାର କରିବାରୁ ବିରତ ହେଲେ ନାହିଁ । ସେମାନେ ଏଥିପାଇଁ ଇହଲୋକ ଓ ପରଲୋକରେ ଶାସ୍ତି ଭୋଗ କରିବେ ।

୨୦ । ପରମେଶ୍ୱର ନିଜ ଅନୁଗ୍ରହ ହେତୁ କପଟ ବିଶ୍ୱାସୀମାନଙ୍କ ପ୍ରତି ପାର୍ଥିବ ଜୀବନରେ ଶାସ୍ତି ଦେଇନଥିଲେ, କାରଣ ସେମାନେ ସମ୍ଭବତଃ ଅନୁତାପ କରି କ୍ଷମା ପ୍ରାର୍ଥନା କରିପାରନ୍ତି । ତାହା ଯଦି ନକରନ୍ତି ତେବେ ପରଲୋକରେ ନିଶ୍ଚୟ ଶାସ୍ତି ଭୋଗ କରିବେ ।

୨୧ । ଏହି ଶ୍ଳୋକରେ ପରମେଶ୍ୱର ସମସ୍ତ ବିଶ୍ୱାସକାରୀ ମୁସଲମାନମାନଙ୍କୁ ପାପାତ୍ମା ସଇତାନର ଅନୁସରଣ ନକରି, ନିଜ ନିଜ କୁପ୍ରବୃତ୍ତି ଦ୍ୱାରା ଚାଳିତ ନହୋଇ, ଅଶ୍ଳୀଳ ଓ ଦୁଷ୍କର୍ମମାନଙ୍କରୁ ନିଜ ନିଜକୁ ସଂଶୋଧିତ କରିବାପାଇଁ ଆଦେଶ କରିଅଛନ୍ତି । ସେ—ଅର୍ଥାତ୍ ସଇତାନ; ତାକୁ—ସଇତାନର ଅନୁସରଣକାରୀକୁ ।

୨୨ । ମେସତାହ ବିବି ଆଏଶାଙ୍କ ପିତା ହଜରତ ଅବୁବକରଙ୍କ ଜଣେ ନିକଟ ଆତ୍ମୀୟ ଏବଂ ଦେଶତ୍ୟାଗୀ ମୁସଲମାନ, ମାତ୍ର ଦରିଦ୍ର ଥିଲେ ଏବଂ ହଜରତ ଅବୁବକରଙ୍କ ଆଶ୍ରିତ ଥିଲେ । ମାତ୍ର ସେ ବିବି ଆଏଶାଙ୍କ ମିଥ୍ୟା ଅପବାଦରେ ଲିପ୍ତ ହେବାରୁ ହଜରତ ଅବୁବକର ପ୍ରତିଜ୍ଞା କରିଥିଲେ କି ଆଜି କଦାପି ତାଙ୍କୁ କୌଣସି ମତେ ସାହାଯ୍ୟ କରିବେ ନାହିଁ । ମାତ୍ର ବିବି ଆଏଶାଙ୍କ ନିର୍ଦ୍ଦୋଷିତା ଏବଂ ଚରିତ୍ରର ପବିତ୍ରତା ସମ୍ବନ୍ଧରେ ପରମେଶ୍ୱରଙ୍କ ପ୍ରତ୍ୟାଦେଶ ଅବତୀର୍ଣ୍ଣ ହେବା ପରେ ମେସତାହ ଅନୁତାପ କରି କ୍ଷମା ପ୍ରାର୍ଥନା କରିବାରୁ, ପରମେଶ୍ୱର ଏହି ଶ୍ଳୋକରେ ତାହା ପ୍ରତି କ୍ଷମା ଓ ଅନୁଗ୍ରହ ଦେଖାଇବା ପାଇଁ ଆଦେଶ କରିଅଛନ୍ତି । ଏହି ଶ୍ଳୋକ ଅବତୀର୍ଣ୍ଣ ହେଲା ପରେ ମହାପୁରୁଷ ମୋହମ୍ମଦ ଏବଂ ହଜରତ ଅବୁବକର ବିବି ଆଏଶାଙ୍କ ମିଥ୍ୟା ଅପବାଦରେ ଲିପ୍ତଥିବା ସମସ୍ତ ଲୋକମାନଙ୍କୁ କ୍ଷମା କରିଥିଲେ ।

ନିଶ୍ଚୟ ଯେଉଁମାନେ ସତୀ ସାଧ୍ୱୀ ବିଶ୍ୱାସକାରିଣୀମାନଙ୍କ ଅପବାଦ ଦିଅନ୍ତି, ସେମାନେ ଇହଲୋକ ଓ ପରଲୋକରେ ଅଭିଶପ୍ତ ହୋଇଅଛନ୍ତି ଏବଂ ସେମାନଙ୍କ ପାଇଁ ଗୁରୁତର ଶାସ୍ତି ରହିଅଛି ।୨୩। ସେମାନେ ଯାହା କରିଥିଲେ ସେଦିନ ସେ ବିଷୟରେ ସେମାନଙ୍କ ବିରୁଦ୍ଧରେ ସେମାନଙ୍କର ଜିହ୍ୱା ସବୁ ଓ ସେମାନଙ୍କର ହସ୍ତ ସବୁ ଓ ସେମାନଙ୍କର ପାଦ ସବୁ ସାକ୍ଷ୍ୟ ଦେବେ ।୨୪।

ସେଦିନ ପରମେଶ୍ୱର ସେମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ପ୍ରତିଫଳ ପୂର୍ଣ୍ଣମାତ୍ରାରେ ଦେବେ ଏବଂ ସେମାନେ ଜାଣିପାରିବେ ଯେ ନିଶ୍ଚୟ ପରମେଶ୍ୱରହିଁ ପ୍ରକାଶ୍ୟ ସତ୍ୟ ।୨୫।

ଅପବିତ୍ରା ନାରୀମାନେ ଅପବିତ୍ର ପୁରୁଷମାନଙ୍କ ପାଇଁ ଏବଂ ଅପବିତ୍ର ପୁରୁଷମାନେ ଅପବିତ୍ରା ନାରୀମାନଙ୍କ ପାଇଁ ଯୋଗ୍ୟ, ଏବଂ ପବିତ୍ରାନାରୀମାନେ ପବିତ୍ର ପୁରୁଷମାନଙ୍କ ପାଇଁ ଏବଂ ପବିତ୍ର ପୁରୁଷମାନେ ପବିତ୍ରା ନାରୀମାନଙ୍କ ପାଇଁ ଯୋଗ୍ୟ; ସେମାନେ ଯାହା କହନ୍ତି ଏମାନେ ସେଥିରୁ ବିମୁକ୍ତ, ଏମାନଙ୍କ ପାଇଁ କ୍ଷମା ଓ ସମ୍ମାନଜନକ ଜୀବିକା ରହିଅଛି ।୨୬।

## ୪ର୍ଥ ବିଭାଗ

ହେ ବିଶ୍ୱାସକାରୀମାନେ । ତୁମ୍ଭେମାନେ ନିଜ ଗୃହ ବ୍ୟତୀତ ଅନ୍ୟ ଲୋକର ଗୃହମାନଙ୍କରେ ସେମାନଙ୍କର ଅନୁମତି ଗ୍ରହଣ ନକରି ଏବଂ ଗୃହସ୍ଥମାନଙ୍କୁ ସଲାମ ନକରି ପ୍ରବେଶ କରନା, ଏହା ତୁମ୍ଭମାନଙ୍କ ପାଇଁ ମଙ୍ଗଳଜନକ ଯଦି ତୁମ୍ଭେମାନେ ମନଯୋଗୀ ହୁଅ ।୨୭।

---

ଏହି ଶ୍ଳୋକର ଶେଷ ଭାଗରେ ପରମେଶ୍ୱର ଆଦେଶ କରୁଅଛନ୍ତି, ଯେପରି ବିଶ୍ୱାସକାରୀମାନେ କୌଣସି ଅପରାଧ କଲାପରେ ପରମେଶ୍ୱରଙ୍କଠାରେ କ୍ଷମା ପ୍ରାର୍ଥନା କରନ୍ତି ଓ କ୍ଷମା ପାଇବାର ଆଶା କରନ୍ତି, ସେହିପରି ସେମାନଙ୍କ ପ୍ରତି ଯେଉଁମାନେ ଅପରାଧ କରି କ୍ଷମା ପ୍ରାର୍ଥନା କରନ୍ତି ସେମାନଙ୍କୁ କ୍ଷମା ଦେବା ଉଚିତ ।

୨୩ । ବିବିଅୟେଶଙ୍କ ନିର୍ଦ୍ଦୋଷିତା ଏବଂ ଚରିତ୍ରର ପବିତ୍ରତା ସମ୍ବନ୍ଧରେ ପରମେଶ୍ୱରଙ୍କ ପ୍ରତ୍ୟାଦେଶ ବାଣୀ ଅବତୀର୍ଣ୍ଣ ହେଲାପରେ ମଧ୍ୟ ଯେଉଁ କପଟ ବିଶ୍ୱାସୀମାନେ ଏହି ମିଥ୍ୟା ଅପବାଦ ରଚନାରୁ କ୍ଷାନ୍ତ ହେଲେନାହିଁ (ଦେଖ ଶ୍ଳୋ୧୧କ) ସେମାନେ ଇହଲୋକ ଓ ପରଲୋକରେ କଠୋର ଶାସ୍ତି ଭୋଗ କରିବେ ।

୨୪ । ପରଲୋକରେ ଶେଷ ବିଚାର ଦିନ ପରମେଶ୍ୱର ଏଥିପାଇଁ ସେମାନଙ୍କୁ କଠୋରତା ସହିତ ବିଚାର କରିବେ ।

୨୫ ପୂର୍ଣ୍ଣମାତ୍ରାରେ ପ୍ରତିଫଳ ଦେବେ—ଅର୍ଥାତ୍ ଗୁରୁତର ଶାସ୍ତି ପ୍ରଦାନ କରିବେ ।
ପ୍ରକାଶ୍ୟ ସତ୍ୟ—ଶେଷ ବିଚାର ଦିନ ପରମେଶ୍ୱର ସବୁ ପଦାର୍ଥ ତାହାର ପ୍ରକୃତ ଅବସ୍ଥାରେ ପ୍ରକାଶ କରିଦେବେ ।

୨୬ । ସେମାନେ ଯାହା କହନ୍ତି—ଅପବାଦକାରୀମାନେ ଯାହା କହନ୍ତି ।
ଏମାନେ—ପବିତ୍ରା ନାରୀ ଓ ପବିତ୍ର ପୁରୁଷମାନେ ।
ଏମାନଙ୍କ ପାଇଁ—ପବିତ୍ରା ନାରୀ ଓ ପବିତ୍ର ପୁରୁଷମାନଙ୍କ ପାଇଁ ।
ପରମେଶ୍ୱର ପବିତ୍ର ପୁରୁଷମାନଙ୍କ ପାଇଁ ପବିତ୍ରା ନାରୀମାନଙ୍କୁ ଏବଂ ପବିତ୍ରା ନାରୀମାନଙ୍କ ପାଇଁ ପବିତ୍ର ପୁରୁଷମାନଙ୍କୁ ସୃଷ୍ଟି କରିଅଛନ୍ତି । ମହାପୁରୁଷ ମୋହମ୍ମଦ ପବିତ୍ର ଚରିତ୍ରର ଲୋକ ଥିଲେ । ସୁତରାଂ ତାଙ୍କର ସ୍ତ୍ରୀମାନେ ମଧ୍ୟ ପବିତ୍ର ଚରିତ୍ରା ଥିଲେ । ଯେଉଁମାନେ ସେମାନଙ୍କ ସମ୍ବନ୍ଧରେ ମିଥ୍ୟା ଅପବାଦ ରଚନା କରନ୍ତି, ସେମାନେ ଧର୍ମଦ୍ରୋହୀ, ମହାପାପୀ ଏବଂ ଗୁରୁତର ଶାସ୍ତି ପାଇବାର ଉପଯୁକ୍ତ ।

୨୭ । ସଲାମ୍ କରିବା ଅର୍ଥାତ୍ ଶାନ୍ତି ସମ୍ଭାଷଣ କରିବା । ମୁସଲମାନମାନେ ପରସ୍ପର ମଧ୍ୟରେ ପ୍ରଥମ ସାକ୍ଷାତ୍ ସମୟରେ ଏହିପରି ଭାବରେ ଶାନ୍ତି ସମ୍ଭାଷଣ କରନ୍ତି—ଆଗନ୍ତୁକ ପ୍ରଥମେ କହେ, ଅସ୍‌ସଲାମୋ ଅଲୈକୁମ (ତୁମ୍ଭମାନଙ୍କ

ତାପରେ ଯଦି ସେଠାରେ କାହାକୁ ନପାଅ ତେବେ ତୁମ୍ଭମାନଙ୍କୁ ଅନୁମତି ନ ମିଳିବା ପର୍ଯ୍ୟନ୍ତ ସେଥିରେ ପ୍ରବେଶ କରନା, ଏହା ଯଦି ତୁମ୍ଭମାନଙ୍କୁ ଫେରିଯିବା ପାଇଁ କୁହାଯାଏ, ତେବେ ତୁମ୍ଭେମାନେ ଫେରି ଆସିବ, ଏହା ତୁମ୍ଭମାନଙ୍କ ପାଇଁ ପବିତ୍ରତର, ଏବଂ ତୁମ୍ଭେମାନେ ଯାହା କର ପରମେଶ୍ୱର ତାହା ଜାଣନ୍ତି ।୨୮।

ଯଦି ତୁମ୍ଭେମାନେ ଏପରି ବସତିହୀନ ଗୃହମାନଙ୍କରେ ପ୍ରବେଶ କର ଯେଉଁଥିରେ ତୁମ୍ଭମାନଙ୍କର ଦ୍ରବ୍ୟମାନ ରହିଅଛି ତାହା ତୁମ୍ଭମାନଙ୍କ ପାଇଁ ଅପରାଧ ନୁହେଁ, ଏବଂ ତୁମ୍ଭେମାନେ ଯାହା ପ୍ରକାଶ୍ୟରେ କର ଓ ଯାହା ଗୋପନରେ କର ପରମେଶ୍ୱର ତାହା ଜାଣନ୍ତି ।୨୯।

ତୁମ୍ଭେ ବିଶ୍ୱାସକାରୀ ପୁରୁଷମାନଙ୍କୁ କହିଦିଅ ସେମାନେ ଯେପରି ସେମାନଙ୍କର ଚକ୍ଷୁ ସବୁକୁ ଅବନତ କରିବେ ଏବଂ ନିଜ ନିଜ ଗୋପନୀୟ ଅଙ୍ଗ ସବୁକୁ ରକ୍ଷା କରିବେ, ଏହା ସେମାନଙ୍କ ପାଇଁ ପବିତ୍ରତର, ନିଶ୍ଚୟ ସେମାନେ ଯାହା କରି ଥାଆନ୍ତି ପରମେଶ୍ୱର ସେ ବିଷୟ ଜାଣନ୍ତି ।୩୦।

ଏବଂ ତୁମ୍ଭେ ବିଶ୍ୱାସକାରିଣୀ ସ୍ତ୍ରୀମାନଙ୍କୁ କହିଦିଅ, ସେମାନେ ମଧ୍ୟ ଯେପରି ସେମାନଙ୍କର ଚକ୍ଷୁ ସବୁକୁ ଅବନତ କରିବେ ଏବଂ ନିଜ ନିଜ ଗୋପନୀୟ ଅଙ୍ଗସବୁକୁ ରକ୍ଷା କରିବେ ଏବଂ ଯାହା ନିଜେ ପ୍ରକାଶିତ ହୁଏ ତାହାଛଡ଼ା ସେମାନେ ଯେପରି ନିଜର ବେଶଭୂଷା ପ୍ରକାଶ ନକରନ୍ତି, ଏବଂ ସେମାନେ ଯେପରି ନିଜ ନିଜ ବକ୍ଷ ଉପରେ ଆବରଣୀ ସ୍ଥାପନ କରନ୍ତି; ଏବଂ ସେମାନେ ଯେପରି ନିଜର ସ୍ୱାମୀ କିମ୍ବା ନିଜର ପିତା ଅଥବା ସେମାନଙ୍କର ସ୍ୱାମୀର ପିତା କିମ୍ବା ନିଜର ପୁତ୍ରମାନଙ୍କର କିମ୍ବା ସେମାନଙ୍କର ସ୍ୱାମୀର ସନ୍ତାନମାନଙ୍କର ଅଥବା ନିଜର ଭାଇମାନଙ୍କର କିମ୍ବା ସେମାନଙ୍କର ପୁତୁରାମାନଙ୍କର ଅଥବା ସେମାନଙ୍କର ଭଣଜାମାନଙ୍କର କିମ୍ବା ସେମାନଙ୍କର ଆତ୍ମୀୟାନାରୀମାନଙ୍କର ଅଥବା ସେମାନଙ୍କର ଅଧୀନା ଦାସୀମାନଙ୍କର କିମ୍ବା ଅଟେଙ୍କ ଦାସମାନଙ୍କର ଅଥବା ନାରୀମାନଙ୍କର ଗୋପନୀୟ ବିଷୟରେ ଅନଭିଜ୍ଞ ବାଳକମାନଙ୍କର ବ୍ୟତୀତ ଅନ୍ୟ କାହାରି ଆଗରେ ନିଜର ବେଶଭୂଷା ପ୍ରକାଶ କରିବେ ନାହିଁ, ଏବଂ ସେମାନେ ଯେପରି ଏପରି ଭାବରେ ସେମାନଙ୍କର ପଦକ୍ଷେପ ନ କରନ୍ତି ଯଦ୍ୱାରା ସେମାନଙ୍କର ଗୋପନୀୟ ଅଳଙ୍କାରମାନ ପ୍ରକାଶିତ ହେବ; ଏବଂ ହେ ବିଶ୍ୱାସକାରୀମାନେ । ତୁମ୍ଭେମାନେ ସମସ୍ତେ ପରମେଶ୍ୱରଙ୍କ ପ୍ରତି ମନଯୋଗୀ ହୁଅ ଯେପରି ତୁମ୍ଭେମାନେ ସୁଫଳ ଲାଭ କରିପାରିବ ।୩୧।

---

ଉପରେ ଶାନ୍ତି ବର୍ଷିତ ହେଉ;); ଉପସ୍ଥିତ ଥିବା ବ୍ୟକ୍ତିମାନେ ଉତ୍ତର ଦିଅନ୍ତି, ଅଲେକୋମୁସ୍ ସଲାମ୍ (ତୁମ୍ଭ-ଉପରେ ମଧ୍ୟ ଶାନ୍ତି ବର୍ଷିତ ହେଉ;) ।

ବିନାନୁମତିରେ ଅନ୍ୟ ଲୋକର ଗୃହ ମଧ୍ୟରେ ପ୍ରବେଶ କରିବା ନିଷେଧ ।

୨୮ । ଯଦି ଅନୁମତି ନମିଳେ କିମ୍ବା ଫେରିଯିବା ପାଇଁ କୁହାହୁଏ, ତେବେ ଗୃହ ମଧ୍ୟରେ ପ୍ରବେଶ ନକରି ଫେରି-ଆସିବା କର୍ତ୍ତବ୍ୟ ।

୨୯ । ବସତିହୀନ ଗୃହ—ଯାହା କୌଣସି ପରିବାରର ସ୍ତ୍ରୀଲୋକମାନଙ୍କ ରହିବା ପାଇଁ ନିର୍ଦ୍ଦିଷ୍ଟ କରାଯାଇନାହିଁ ଯଥା ଡାକ୍ତରଖାନା, ମୋସାଫିରଖାନା ଇତ୍ୟାଦି ।

୩୦ । ଏହି ଶ୍ଲୋକରେ ପରମେଶ୍ୱର ବିଶ୍ୱାସକାରୀ ମୁସଲମାନ ପୁରୁଷମାନଙ୍କୁ ସଂଯମ ଅବଲମ୍ବନ ପାଇଁ ଆଦେଶ କରିଅଛନ୍ତି ।

୩୧ । ଏହି ଶ୍ଲୋକରେ ପରମେଶ୍ୱର ବିଶ୍ୱାସକାରିଣୀ ମୁସଲମାନ ସ୍ତ୍ରୀମାନଙ୍କୁ ସଂଯମ ଅବଲମ୍ବନ କରିବା ପାଇଁ ଏବଂ ସେମାନଙ୍କ ପାଇଁ ଯେଉଁ ଲୋକମାନଙ୍କଠାରୁ ଏବଂ ଯେତେ ଦୂର ପର୍ଦ୍ଦା ଧରିବା ଆବଶ୍ୟକ ତାହା ଆଦେଶ କରିଅଛନ୍ତି ।

ଏବଂ ତୁମ୍ଭମାନଙ୍କ ମଧ୍ୟରେ ଅବିବାହିତ ମାନଙ୍କର ବିବାହ ସମ୍ପାଦନ କର ଏବଂ ତୁମ୍ଭମାନଙ୍କର ଦାସ ଓ ଦାସୀମାନଙ୍କ ମଧ୍ୟରେ ଯେଉଁମାନେ ଉପଯୁକ୍ତ ସେମାନଙ୍କର ମଧ୍ୟ; ଯଦି ସେମାନେ ଅଭାବଗ୍ରସ୍ତ ଥାଆନ୍ତି ତେବେ ପରମେଶ୍ୱର ନିଜ ଅନୁଗ୍ରହରେ ସେମାନଙ୍କୁ ଅଭାବମୁକ୍ତ କରିବେ ଏବଂ ପରମେଶ୍ୱର ମହାଦାନୀ ଓ ମହାଜ୍ଞାନୀ ।୩୨।

ଏବଂ ଯେଉଁମାନେ ବିବାହ କରିବାକୁ ଅକ୍ଷମ, ପରମେଶ୍ୱର ନିଜ ଅନୁଗ୍ରହରେ ସେମାନଙ୍କୁ ଅଭାବମୁକ୍ତ ନକରିବା ପର୍ଯ୍ୟନ୍ତ, ସେମାନେ ଚରିତ୍ର ରକ୍ଷା କରିବା ଉଚିତ, ଏବଂ ତୁମ୍ଭମାନଙ୍କର ଦକ୍ଷିଣହସ୍ତ ଯେଉଁମାନଙ୍କର ଅଧିକାରୀ ସେମାନଙ୍କ ମଧ୍ୟରୁ ଯେଉଁମାନେ ଲେଖା ନେବାକୁ ଚାହାନ୍ତି ତେବେ ସେମାନଙ୍କୁ

---

ପର୍ଦ୍ଦା କରିବାର ଉଦ୍ଦେଶ୍ୟ ସଂଯମ ଓ ଚରିତ୍ରର ପବିତ୍ରତା ରକ୍ଷା କରିବା । ଏହା ସ୍ତ୍ରୀ ଓ ପୁରୁଷ ଉଭୟଙ୍କ-ପ୍ରତି ଆଦେଶ କରାଯାଇଅଛି । ଯାହାଦ୍ୱାରା ସଂଯମ ଓ ଚରିତ୍ରର ପବିତ୍ରତା ନଷ୍ଟ ହେବାର ଆଶଙ୍କା ଅଛି ସେଥିରୁ କ୍ଷାନ୍ତ ରହିବା ପାଇଁ ଆଦେଶ କରାଯାଇଅଛି । ପୁରୁଷ ପକ୍ଷରେ ତାହାର ବିବାହିତା ସ୍ତ୍ରୀ ଛଡ଼ା ଅନ୍ୟ ସମସ୍ତ ସ୍ତ୍ରୀମାନଙ୍କ ପ୍ରତି ଲାଳସାପୂର୍ଣ୍ଣ ଦୃଷ୍ଟିପାତ କରିବା ନିଷେଧ ଏବଂ ଯେଉଁ ସ୍ତ୍ରୀମାନଙ୍କ ସହିତ ବିବାହ କରିବା ନିଷିଦ୍ଧ ସେମାନଙ୍କ ଛଡ଼ା ଅନ୍ୟ ସ୍ତ୍ରୀମାନଙ୍କ ସହିତ ଅସଂଯତ ଦୃଷ୍ଟି ବିନିମୟ ଓ ଅବାଧ ମିଳନ ନିଷେଧ । ସ୍ତ୍ରୀମାନଙ୍କ ପକ୍ଷରେ ନିଜ ସ୍ୱାମୀ ଛଡ଼ା ଅନ୍ୟ ପୁରୁଷମାନଙ୍କ ପ୍ରତି ଲାଳସାପୂର୍ଣ୍ଣ ଦୃଷ୍ଟିପାତ କରିବା ନିଷେଧ ଏବଂ ଯେଉଁ ପୁରୁଷମାନଙ୍କ ସହିତ ତାହାର ବିବାହ ହେବା ନିଷିଦ୍ଧ ସେମାନଙ୍କ ଛଡ଼ା ଅନ୍ୟ ପୁରୁଷମାନଙ୍କ ସହିତ ଅସଂଯତ ଦୃଷ୍ଟି ବିନିମୟ ଓ ଅବାଧ ମିଳନ ନିଷେଧ । ଏପର୍ଯ୍ୟନ୍ତ ସ୍ତ୍ରୀପୁରୁଷ ଉଭୟଙ୍କ ପକ୍ଷରେ ସମାନ ନିଷେଧ ଆରୋପ ହୋଇଅଛି । ଏହାଛଡ଼ା ସ୍ତ୍ରୀଲୋକମାନଙ୍କ ପାଇଁ କେତେକ ଅଧିକା ନିଷେଧ ଆରୋପ ଅଛି ଯଥା—

(୧) ନିଜର ବେଶଭୂଷା ଏହି ଶ୍ଳୋକରେ ଦିଆଯାଇଥିବା ଲୋକମାନଙ୍କ ଆଗରେ ପ୍ରକାଶ କରିପାରିବେ; ସେମାନଙ୍କ ଛଡ଼ା ଅନ୍ୟ କାହାରି ଆଗରେ ପ୍ରକାଶ କରିପାରିବେ ନାହିଁ ।

(୨) ଏହି ଲୋକମାନଙ୍କ ଆଗରେ ମଧ୍ୟ ବେଶଭୂଷାର ଯେଉଁ ଅଂଶ ନିଜେ ପ୍ରକାଶିତ ହୁଏ ତାହା ପ୍ରକାଶ କରିବେ । ମାତ୍ର ଅଯଥା ଅନାବଶ୍ୟକୀୟ ଭାବେ ସେମାନଙ୍କ ଆଗରେ ନିଜର ସୌନ୍ଦର୍ଯ୍ୟ ଦେଖାଇବା ପାଇଁ ବେଶଭୂଷ ପ୍ରକାଶ କରିପାରିବେ ନାହିଁ ।

(୩) ଘରୁ ବାହାରକୁ ଯିବାର ଆବଶ୍ୟକ ହେଲେ ମସ୍ତକର ଆବରଣୀକୁ ବକ୍ଷ ପର୍ଯ୍ୟନ୍ତ ଲମ୍ବାୟମାନ କରିବେ । ଅର୍ଥାତ୍ ଶାଢ଼ୀ, ଚଦର, କିମ୍ବା ବୋରକା ଦ୍ୱାରା ସର୍ବାଙ୍ଗ ଆବୃତ କରିବେ ଯେପରି ଅନ୍ୟ ପୁରୁଷମାନେ ସେମାନଙ୍କ ବେଶଭୂଷା ଦେଖି ପାରିବେ ନାହିଁ ।

(୪) ଚାଲିବା ସମୟରେ ଧୀର ଭାବରେ ପଦ ନିକ୍ଷେପ କରିବେ, ଯେପରି ବସ୍ତ୍ର ମଧ୍ୟରେ ଲୁଚିଥିବା ଅଳଙ୍କାର-ମାନ ଶବ୍ଦାୟମାନ ହୋଇ ଅନ୍ୟ ପୁରୁଷମାନଙ୍କ ଦୃଷ୍ଟି ଆକର୍ଷଣ କରିନପାରେ ।

ସ୍ତ୍ରୀଲୋକମାନଙ୍କ ପ୍ରତି ଏହି ଅଧିକା ନିଷେଧ ଆରୋପ କରିବାର ଉଦ୍ଦେଶ୍ୟ ଏହିକି ସେମାନେ ପ୍ରଲୋଭନର ଆଧାର ଏବଂ ଅନ୍ୟ ପୁରୁଷମାନଙ୍କ ସହିତ ଅବାଧ ମିଳନ ଓ ଗୃଧ୍ରଚକ୍ଷୁ ମିଳନଦ୍ୱାରା ଲୋକମାନଙ୍କ କୁପ୍ରବୃତ୍ତି ଉତ୍ତେଜିତ ଓ ଲାଳସା ଉଦ୍ଦୀପ୍ତ ହୋଇ ମାନବ ସମାଜରେ ବିଶୃଙ୍ଖଳା, ଅତ୍ୟାଚାର, ଅନାଚାର ବୃଦ୍ଧି ପ୍ରାପ୍ତ ହେବ । ମାତ୍ର ବର୍ତ୍ତମାନ ଯୁଗରେ ଭାରତୀୟ ମୁସଲମାନ ସମାଜରେ ସ୍ତ୍ରୀଲୋକମାନଙ୍କର ପର୍ଦ୍ଦା ନାମରେ ଯେଉଁ ଅସ୍ୱାଭାବିକ କଠୋର ଅବରୋଧ ପ୍ରଥା ପ୍ରଚଳିତ ଅଛି ତାହା ଇସଲାମ ଧର୍ମର ବିଧିବିଧାନ ଦ୍ୱାରା ଅନୁମୋଦିତ ନୁହେଁ ।

ଅଥର୍ବ ଦାସ—ନିତାନ୍ତ ବୃଦ୍ଧାବସ୍ଥା ହେତୁ ଶକ୍ତିହୀନ କ୍ରୀତଦାସ ।

୩୨ । ଅବିବାହିତମାନଙ୍କର—ଅର୍ଥାତ୍ ଯେଉଁ ପୁରୁଷ କୁମାର କିମ୍ବା ମୃତଦାର ଏବଂ ଯେଉଁ ସ୍ତ୍ରୀ କୁମାରୀ, ବିଧବା ଅଥବା ପରିତ୍ୟକ୍ତା । ଅଭାବକୁ ଡରି ବିବାହ ନକରିବା ଅନୁଚିତ । କାରଣ ବିବାହ କଲେ ପରମେଶ୍ୱର ନିଜ ଅନୁଗ୍ରହରୁ ବିବାହିତ ଦମ୍ପତିକୁ ଅଭାବ ମୁକ୍ତ କରିଦେବେ । ବିବାହର ଉଦ୍ଦେଶ୍ୟ ସମାଜରେ ରହି ପବିତ୍ର ଜୀବନ ଯାପନ କରିବା । ସୁତରାଂ ଅଭାବ ନଥାଇ ଅବିବାହିତ ଜୀବନ ଯାପନ କରିବା ଇସଲାମ ଧର୍ମ ଅନୁମୋଦିତ

ଲେଖା ଦେଇ ଦିଅ, ଯଦି ତୁମ୍ଭେମାନେ ଏତଦ୍ୱାରା ସେମାନଙ୍କର ମଙ୍ଗଳ ମନେକର, ଏବଂ ପରମେଶ୍ୱର ତୁମ୍ଭମାନଙ୍କୁ ଯେଉଁ ସମ୍ପଦ ଦେଇ ଅଛନ୍ତି ସେଥିରୁ ସେମାନଙ୍କୁ ଦାନକର, ଏବଂ ତୁମ୍ଭେମାନେ ପାର୍ଥିବ ଜୀବନର ତୁଚ୍ଛ ଉପକାର ଲାଭ ଉଦ୍ଦେଶ୍ୟରେ ନିଜର ତରୁଣୀ ଦାସୀମାନଙ୍କୁ ଅବୈଧବୃତ୍ତି ପାଇଁ ବାଧ୍ୟ କରନା, ଯଦି ସେମାନେ ସତୀତ୍ୱ ରକ୍ଷା କରିବାକୁ ଇଚ୍ଛା କରନ୍ତି, ଏବଂ ଯେ ସେମାନଙ୍କୁ ବାଧ୍ୟ କରିବ, ତେବେ ସେମାନଙ୍କର ବାଧ୍ୟ ହେବା ପରେ ନିଶ୍ଚୟ ପରମେଶ୍ୱର (ସେମାନଙ୍କପ୍ରତି) କ୍ଷମାଶୀଳ ଓ କରୁଣାମୟ ।୩୩।

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କପ୍ରତି ପ୍ରକାଶ୍ୟ ନିଦର୍ଶନମାନ ଏବଂ ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ବିଗତ ଲୋକମାନଙ୍କର ଦୃଷ୍ଟାନ୍ତ ଏବଂ ଧର୍ମଭୀରୁମାନଙ୍କ ପାଇଁ ସଦୁପଦେଶ ଅବତୀର୍ଣ୍ଣ କରିଅଛୁଁ ।୩୪।

## ୫ମ ବିଭାଗ

ପରମେଶ୍ୱର ଆକାଶ ମଣ୍ଡଳ ଓ ଭୂମଣ୍ଡଳର ଅଲୋକ ଅଟନ୍ତି; ତାଙ୍କର ଅଲୋକର ଉପମା ତାକ ଉପରେ ରଖା ଯାଇଥିବା ପ୍ରଦୀପପରି; ସେହି ପ୍ରଦୀପ ଏପରି କାଚ ମଧ୍ୟରେ ଅବସ୍ଥିତ ଯାହା ନକ୍ଷତ୍ର ପରି ଉଜ୍ଜ୍ୱଳ; ଯାହା ପୂର୍ବଦେଶୀୟ କିମ୍ବା ପଶ୍ଚିମ ଦେଶୀୟ ନୁହେ; ଏପରି ମଙ୍ଗଳମୟ ଜୈତୁନ ବୃକ୍ଷର ତେଲ ଦ୍ୱାରା ଅଲୋକିତ, ଯେଉଁ ତେଲ ନିଜେ ନିଜେ ଜଳଉଠେ ଯଦିଚ ଅଗ୍ନି ତାହାକୁ ସ୍ପର୍ଶକରେନା; ଉଜ୍ଜ୍ୱଳ ଅଲୋକ; ପରମେଶ୍ୱର ଯାହାକୁ ଇଚ୍ଛା ନିଜ ଅଲୋକ ପ୍ରତି ବାଟ ଦେଖାନ୍ତି; ଏବଂ ପରମେଶ୍ୱର ମନୁଷ୍ୟମାନଙ୍କ ପାଇଁ ଉପମା ବର୍ଣ୍ଣନା କରନ୍ତି ଏବଂ ପରମେଶ୍ୱର ସବୁ ବିଷୟରେ ମହାଜ୍ଞାନୀ ।୩୫।

---

ନୁହେ । ଦାସଦାସୀମାନଙ୍କୁ ମଧ୍ୟ ଅବିବାହିତ ଅବସ୍ଥାରେ ରଖିବା ପାଇଁ ନିଷେଧ କରାଯାଇଅଛି । ମହାପୁରୁଷ ମୋହମ୍ମଦଙ୍କ ସମୟରେ ଆରବ ଦେଶରେ ଦାସଦାସୀ କ୍ରୟ ବିକ୍ରୟର ପ୍ରଥା ପ୍ରଚଳିତ ଥିଲା ବୋଲି ସେମାନଙ୍କ ସମ୍ବନ୍ଧରେ ବିଧିବିଧାନ କରାଯାଇଅଛି । ବର୍ତ୍ତମାନ ଯୁଗରେ ସେ ପ୍ରଶ୍ନ ଉଠି ନପାରେ । କାରଣ ଦାସତ୍ୱ ପ୍ରଥା ଉଠିଯାଇଅଛି ।

୩୩ । ଯେଉଁମାନେ ଅଭାବଗ୍ରସ୍ତ ହେତୁ ଉପଯୁକ୍ତ କନ୍ୟା ଲାଭ କରିବାକୁ ଅକ୍ଷମ ସେମାନେ ବିବାହ ନକରି ସଂଯମ ଅବଲମ୍ବନ କରିବା ଆବଶ୍ୟକ ।

ଦାସତ୍ୱ ପ୍ରଥା ପ୍ରଚଳିତ ଥିବା ସମୟରେ ଦାସମାନେ ମୁକ୍ତି ମୂଲ୍ୟ ପ୍ରଦାନ କଲେ ସେମାନଙ୍କୁ ମୁକ୍ତି କରିଦେବାର ନିୟମ ଥିଲା । ମାତ୍ର ବିଧର୍ମୀ ଆରବମାନେ ଅନେକ ସମୟରେ ମୁକ୍ତି ମୂଲ୍ୟ ନେଇ ଦାସଦାସୀମାନଙ୍କୁ ମୁକ୍ତ କରିବା ପାଇଁ ଅସ୍ୱୀକୃତ ହେଉଥିଲେ । ଏଥିପାଇଁ ମୁସଲମାନମାନଙ୍କ ପ୍ରତି ଆଦେଶ କରାଯାଇଅଛି କି ଯେଉଁମାନେ ମୁକ୍ତି ମୂଲ୍ୟ ଦେଇ ମୁକ୍ତ ହେବା ପାଇଁ ଗୃହିବେ ସେମାନଙ୍କୁ ସେ ବିଷୟର ଲିଖିତ ଚୁକ୍ତି ପତ୍ର ଦେବା ଆବଶ୍ୟକ । ଏବଂ ମୁକ୍ତି ମୂଲ୍ୟ ପୂର୍ଣ୍ଣ କରିବା ପାଇଁ ନିଜ ଧନରୁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଆଦେଶ କରାଯାଇଅଛି । ଦାସଦାସୀକୁ ମୁକ୍ତ କରିବା ଏବଂ ସେମାନଙ୍କ ମୁକ୍ତି ପାଇଁ ଅର୍ଥ ସାହାଯ୍ୟ କରିବା ଇସଲାମ ଧର୍ମରେ ଅତି ପୁଣ୍ୟ କାର୍ଯ୍ୟ ବୋଲି ଗଣ୍ୟ କରାଯାଏ ।

ଦାସତ୍ୱ ପ୍ରଥା ପ୍ରଚଳିତ ଥିବା ସମୟରେ ବିଧର୍ମୀ ଆରବମାନଙ୍କ ମଧ୍ୟରୁ କେହି କେହି ଅର୍ଥ ଲୋଭରେ ଯୁବତୀ ଦାସୀମାନଙ୍କୁ ବ୍ୟଭିଚାର କାର୍ଯ୍ୟ କରିବାପାଇଁ ବାଧ୍ୟ କରୁଥିଲେ । ମୁସଲମାନମାନଙ୍କୁ ସେପରି କରିବା ପାଇଁ ନିଷେଧ କରାଯାଇଅଛି ।

ସେମାନଙ୍କ ପ୍ରତି—ବାଧ୍ୟକରାଯାଇଥିବା ଦାସୀମାନଙ୍କ ପ୍ରତି ।

୩୪ । ଏହି ଅଧ୍ୟାୟରେ ସମାଜ ସଂସ୍କାର ସମ୍ବନ୍ଧରେ କେତେଗୁଡିଏ ଅତ୍ୟାବଶ୍ୟକୀୟ ବିଧିବିଧାନ ଦିଆଯାଇଅଛି ।

୩୫ । ଏହି ଶ୍ଳୋକରେ ଅଲୋକ ଅର୍ଥ ଜଡ ଜଗତର ଅଲୋକ ନୁହେ, ବରଂ ଆଧ୍ୟାତ୍ମିକ ଅଲୋକ । ଆକାଶ ଓ ପୃଥିବୀ ମଧ୍ୟରେ ଅର୍ଥାତ୍ ସମଗ୍ର ଜଗତରେ ଯେତେ ପ୍ରାଣୀ ଅଛନ୍ତି ସେମାନଙ୍କୁ ଅସତ୍ୟ ଓ ଅଧର୍ମର ଅନ୍ଧକାରରୁ

ଏପରି ଆଲୋକ ପ୍ରଦୀପ୍ତ ହୁଏ ସେହି ଗୃହମାନଙ୍କରେ, ଯାହାକୁ ପରମେଶ୍ୱର ସମ୍ମାନିତ କରିବା ପାଇଁ ଆଦେଶ କରିଅଛନ୍ତି ଏବଂ ଯହିଁରେ ତାଙ୍କର ନାମ ସ୍ମରଣ କରାହୁଏ, ପ୍ରଭାତରେ ଓ ସନ୍ଧ୍ୟାରେ ତାଙ୍କର ମହିମା କୀର୍ତ୍ତନ ହେଉଥାଏ ।୩୬।

ସେହି ଲୋକମାନଙ୍କ ଦ୍ୱାରା ଯେଉଁମାନଙ୍କୁ ବାଣିଜ୍ୟ ବ୍ୟବସାୟ ଅଥବା କ୍ରୟବିକ୍ରୟ ପରମେଶ୍ୱରଙ୍କ ସ୍ମରଣରୁ ଏବଂ ଆରାଧନା ପାଳନରୁ ଓ ଜକାତ ଦାନରୁ ବିରତ କରିପାରେ ନା (କାରଣ) ସେମାନେ ସେହି ଦିବସର ଆଶଙ୍କା କରନ୍ତି ଯେଉଁ ଦିନ ଅନେକ ଲୋକଙ୍କର ହୃଦୟ ଓ ଚକ୍ଷୁ ଓଲଟି ପଡ଼ିବ ।୩୭।

---

ସତ୍ୟ ଓ ଧର୍ମର ଆଲୋକ ପ୍ରତି ପଥ ପ୍ରଦର୍ଶନ କରିବା ପରମେଶ୍ୱରଙ୍କ କାର୍ଯ୍ୟ । ପରମେଶ୍ୱର ପ୍ରେରିତ ପୁରୁଷ-ମାନଙ୍କୁ ଅବତୀର୍ଣ୍ଣ କରି ପୃଥିବୀର ଲୋକମାନଙ୍କୁ ଏହି ସତ୍ୟ ଧର୍ମର ଆଲୋକ ପ୍ରଦାନ କରନ୍ତି । ବିଶେଷତଃ ତାଙ୍କର ପ୍ରେରିତ ଶେଷ ଧର୍ମ ପ୍ରବର୍ତ୍ତକ ମହାପୁରୁଷ ମୋହମ୍ମଦଙ୍କ ଦ୍ୱାରା ପ୍ରଚାରିତ ସତ୍ୟ ସନାତନ ପବିତ୍ର ଇସଲାମ ଧର୍ମକୁ ଗୋଟିଏ ଉଜ୍ଜ୍ୱଳ ପ୍ରଦୀପ ସହିତ ତୁଳନା କରାଯାଇଅଛି । ଏହା ତାକ ଉପରେ ରଖାଯାଇଅଛି, ଅର୍ଥାତ୍ ଏହାର ଆଲୋକ ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ଓ ନଷ୍ଟ ନହୋଇ ଯେଉଁ ଗୃହରେ ଅଛି ତାକୁ ସମ୍ପୂର୍ଣ୍ଣରୂପେ ଆଲୋକିତ କରୁଅଛି । ଅର୍ଥାତ୍ ଏହି ଧର୍ମର ଅନୁସରଣକାରୀମାନେ ପୂର୍ଣ୍ଣମାତ୍ରାରେ ସୁଫଳ ଲାଭ କରୁଅଛନ୍ତି । ଏହା ନିର୍ମଳ ପରି ଉଜ୍ଜ୍ୱଳ କାଚ ମଧ୍ୟରେ ଅବସ୍ଥିତ, ସୁତରାଂ ସେହି କାଚ ମଳିନ ହେବାର ସମ୍ଭବ ନୁହେଁ । ଅର୍ଥାତ୍ ଏହି ଧର୍ମର ଅନୁସରଣକାରୀମାନଙ୍କୁ ପବିତ୍ର ଜୀବନ ଯାପନ କରିବା ପାଇଁ ଆଦେଶ କରାଯାଇଅଛି ଏବଂ ସେମାନେ ଯଦି ଧର୍ମର ଆଦେଶ ପାଳନ କରନ୍ତି ତେବେ ଅପବିତ୍ରତା ସେମାନଙ୍କୁ ସ୍ପର୍ଶ କରିବ ନାହିଁ । ଏହି ପ୍ରଦୀପ ସ୍ୱଚ୍ଛ ନିର୍ମଳ ଜୈତୁନ ବୃକ୍ଷର ତୈଳଦ୍ୱାରା ଜଳୁଅଛି, ଯାହାକି ଅଗ୍ନିର ବିନା ସାହାଯ୍ୟରେ ଜଳି ଉଠେ । ଅର୍ଥାତ ଏହି ଧର୍ମ ପବିତ୍ର ଏକେଶ୍ୱରବାଦର ସୁଦୃଢ଼ ଭିତ୍ତି ଉପରେ ସ୍ଥାପିତ, ଏବଂ ଅଂଶୀବାଦତାର ଅବିଳତା ଦ୍ୱାରା କଳୁଷିତ ନୁହେଁ । ସୁତରାଂ ବିଶ୍ୱାସକାରୀର ହୃଦୟରୁ ଅସତ୍ୟ ଓ ଅଧର୍ମର ଅନ୍ଧକାରକୁ ସ୍ୱତଃ ବହିଷ୍କୃତ କରି ସତ୍ୟ ଓ ଧର୍ମର ଆଲୋକଦ୍ୱାରା ତାହାର ହୃଦୟକୁ ଆଲୋକିତ କରେ । ଏହା ପୂର୍ବ ଦେଶୀୟ କିମ୍ବା ପଶ୍ଚିମ ଦେଶୀୟ ନୁହେଁ ଅର୍ଥାତ ଏହା ଦେଶ ବିଶେଷର ଲୋକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ନୁହେଁ, ଏହା ସମଗ୍ର ପୃଥିବୀର ଲୋକସାଧାରଣଙ୍କ ପାଇଁ ଅଭିପ୍ରେତ । ହୃଦୟରେ ବିଶ୍ୱାସର ଆଲୋକ ସହିତ ପବିତ୍ର ସତକର୍ମ ସାଧନର ଆଲୋକ ମିଶ୍ରିତ ହୋଇ ମହାଶକ୍ତିଶାଳୀ ଆଲୋକରେ ପରିଣତ ହୁଏ । ଯେଉଁମାନେ ପରମେଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ଏହି ସତ୍ୟ ଅନୁସନ୍ଧାନରେ ବ୍ରତୀ ହୁଅନ୍ତି ପରମେଶ୍ୱର ନିଜ ଅନୁଗ୍ରହଦ୍ୱାରା ସେମାନଙ୍କୁ ଏହି ଆଲୋକ ନିକଟକୁ ନେଇଯାଆନ୍ତି ।

୩୬-୩୭ । ଏହି ଦୁଇଶ୍ଳୋକରେ ସେହି ସତ୍ୟ ସନାତନ ଧର୍ମର ଆଲୋକ ପ୍ରାପ୍ତଲୋକମାନଙ୍କର ଗୁଣ ଓ କାର୍ଯ୍ୟମାନ ବର୍ଣ୍ଣିତ ହୋଇଅଛି । ଯେଉଁ ଗୃହମାନଙ୍କୁ ଅର୍ଥାତ ଉପାସନା ମନ୍ଦିର ବା ମସଜିଦମାନଙ୍କୁ ପରମେଶ୍ୱର ପବିତ୍ର ଓ ସମ୍ମାନିତ ରଖିବା ପାଇଁ ଆଦେଶ କରିଅଛନ୍ତି, ଯେଉଁଠାରେ ଶାରୀରିକ ଓ ମାନସିକ ପବିତ୍ରତା ସହିତ କେବଳ ପରମେଶ୍ୱରଙ୍କ ଆରାଧନା କରାହୁଏ ଏବଂ ସେଠାରେ ଅନ୍ୟ କୌଣସି ପ୍ରକାର ପାର୍ଥିବ କାର୍ଯ୍ୟ କରାହୁଏ ନାହିଁ ସେହି ମସଜିଦମାନଙ୍କରେ ସେହି ଲୋକମାନେ ପ୍ରଭାତରେ ଓ ସନ୍ଧ୍ୟାରେ ଅର୍ଥାତ ଦିନରେ ପାଞ୍ଚ ଥର ପରମେଶ୍ୱରଙ୍କ ଆରାଧନା କରନ୍ତି ଏବଂ ବାଣିଜ୍ୟ ବ୍ୟବସାୟ ପ୍ରଭୃତି ସାଂସାରିକ କାର୍ଯ୍ୟରେ ଲିପ୍ତରହି ମଧ୍ୟ ସେମାନେ ଦୈନିକ ପାଞ୍ଚଥର ପରମେଶ୍ୱରଙ୍କୁ ଆରାଧନା କରିବାରୁ ଏବଂ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ ଦାନ (ଜକାତ୍) ଦେବାରୁ କ୍ଷାନ୍ତ ହୁଅନ୍ତି ନାହିଁ, ଏବଂ ସେମାନେ ପରଲୋକରେ ସେହି ସଙ୍କଟମୟ ଶେଷ ବିଚାର ଦିନର ଭୟ କରନ୍ତି ଯେଉଁଦିନ ଦୁଃଖ ଓ ଭୟ ହେତୁ ଅନେକ ଲୋକଙ୍କର ହୃଦୟ ଓ ଚକ୍ଷୁ ଓଲଟି ପଡ଼ିବ ।

ଯେପରି ପରମେଶ୍ୱର ସେମାନଙ୍କୁ ସେମାନଙ୍କର କୃତକର୍ମର ଉତ୍କୃଷ୍ଟତର ପୁରସ୍କାର ପ୍ରଦାନ କରିବେ ଏବଂ ନିଜ ଅନୁଗ୍ରହରୁ ସେମାନଙ୍କୁ ଅଧିକତର ଦାନକରିବେ, ଏବଂ ପରମେଶ୍ୱର ଯାହାକୁ ଇଚ୍ଛା ତାକୁ ଅପରିମିତ ଜୀବିକା ଦାନକରି ଥାଆନ୍ତି ।୩୮।

ଏବଂ ଯେଉଁମାନେ ଅବିଶ୍ୱାସ କରିଅଛନ୍ତି ସେମାନଙ୍କର କୃତକର୍ମମାନ ମରୁଭୂମିରେ ମରୀଚିକାପରି ଯାହାକୁ ତୃଷାର୍ତ୍ତଲୋକ ଜଳ ବୋଲି ମନେକରେ, ଏପରିକି ଯେତେବେଳେ ସେ ତାହା ନିକଟରେ ଉପସ୍ଥିତ ହୁଏ ସେ ସେଠାରେ କିଛି ପାଏନାହିଁ ଏବଂ ସେ (ହିସାବ-ରକ୍ଷକ) ପରମେଶ୍ୱରଙ୍କୁ ନିଜ ନିକଟରେ ପାଏ, ତାପରେ ସେ ତାହାର ହିସାବ ପୂର୍ଣ୍ଣ କରିଦିଅନ୍ତି, ଏବଂ ପରମେଶ୍ୱର ସତ୍ୱର ହିସାବ ଗ୍ରହଣକାରୀ ।୩୯।

ଅଥବା ( ଅବିଶ୍ୱାସ କାରୀମାନଙ୍କ ଅବସ୍ଥା ) ଗଭୀର ସମୁଦ୍ରରେ ଅନ୍ଧକାର ସଦୃଶ, ଯେଉଁଠାରେ ତରଙ୍ଗ ଉପରେ ତରଙ୍ଗ ସମାଚ୍ଛନ୍ନ, ତାହା ଉପରେ ମେଘମାଳା ବିଦ୍ୟମାନ, ଏକ ଉପରେ ଅନ୍ୟଏକ ଅନ୍ଧକାର ରାଶି ଘନୀଭୂତ, ଯେତେବେଳେ ସେ ତାହାର ହାତକୁ ବଢାଏ ସେ ତାହାକୁ ଦେଖି ପାରେନାହିଁ; ଏବଂ ପରମେଶ୍ୱର ଯାହାକୁ ଅଲୋକ ଦାନ ନକରନ୍ତି ତାହାପାଇଁ କୌଣସି ଅଲୋକନାହିଁ ।୪୦।

## ୬ଷ୍ଠ ବିଭାଗ

ତୁମ୍ଭେ କଅଣ ଲକ୍ଷ୍ୟକରୁ ନାହଁ ଯେ ଆକାଶ ମଣ୍ଡଳ ଓ ଭୂମଣ୍ଡଳରେ ଯାହା କିଛିଅଛି ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ତାଙ୍କର ମହିମା କୀର୍ତ୍ତନ କରୁଅଛନ୍ତି ଏବଂ ନିଶ୍ଚୟ ପକ୍ଷୀମାନେ ମଧ୍ୟ ଡେଣା ପ୍ରସାରି କରି

---

୩୮ । ଏହି ଶ୍ଳୋକରେ ସେହି ଲୋକମାନଙ୍କର ପରଲୋକର ପୁରସ୍କାର ବିଷୟ ବର୍ଣ୍ଣିତ ହୋଇଅଛି । ପରମେଶ୍ୱର ନିଜ ଅନୁଗ୍ରହରୁ ସେମାନଙ୍କୁ ସେମାନଙ୍କର ଅର୍ଜ୍ଜିତ କର୍ମଫଳ ଅପେକ୍ଷା ଅଧିକ ପୁରସ୍କାର ପ୍ରଦାନ କରିବେ ।

୩୯ । ଅବିଶ୍ୱାସକାରୀମାନେ ଦୁଇ ଶ୍ରେଣୀରେ ବିଭକ୍ତ । ଏକ ଶ୍ରେଣୀର ଲୋକ ପରମେଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରନ୍ତି । ମାତ୍ର ନିଜର ଅହଙ୍କାର ହେତୁ ପ୍ରେରିତ ପୁରୁଷଙ୍କ ଉପଦେଶ ଅନୁଯାୟୀ କାର୍ଯ୍ୟ ନକରି ନିଜର ଲୁପ୍ତବୃତ୍ତି ଦ୍ୱାରା ଚାଳିତ ହୁଅନ୍ତି ଏବଂ ସେମାନେ ମନେ କରନ୍ତି ଯେ ସେମାନେ ପରଲୋକରେ ସୁଫଳ ଲାଭ କରିବେ । ଏ ଶ୍ରେଣୀର ଲୋକମାନଙ୍କର କର୍ମମାନଙ୍କୁ ମରୁଭୂମିର ମରୀଚିକା ସଙ୍ଗେ ତୁଳନା କରାଯାଇଅଛି । ଦୂରରୁ ମରୀଚିକା ଜଳପରି ଦେଖାଯାଏ । ମାତ୍ର ତୃଷାର୍ତ୍ତ ଲୋକ ତାହା ନିକଟରେ ଉପସ୍ଥିତ ହେଲେ ତାହା ଉଭେଇ ଯାଏ ଏବଂ ତୃଷାର୍ତ୍ତ ଲୋକ ତୃଷାରେ ପ୍ରାଣତ୍ୟାଗ କରେ । ସେହିପରି ଏ ଶ୍ରେଣୀର ଲୋକମାନେ ନିଜ କର୍ମର ସୁଫଳ ଲାଭ କରିବେ ବୋଲି ଆଶା ପୋଷଣ କରି ମନରେ ଗର୍ବ ଅନୁଭବ କରନ୍ତି । ମାତ୍ର ପରଲୋକରେ ପରମେଶ୍ୱରଙ୍କ ନିକଟ ଉପସ୍ଥିତ ହେଲାବେଳକୁ ସେମାନଙ୍କର କର୍ମମାନ ଉଭେଇ ଯିବ ଏବଂ ସେମାନେ ସେଥିରୁ କିଛିମାତ୍ର ଫଳ ଲାଭ କରିପାରିବେ ନାହିଁ ଏବଂ ସେମାନେ ପରମେଶ୍ୱରଙ୍କ ଶାସ୍ତି ଭୋଗ କରି ନରକ ଯନ୍ତ୍ରଣା ଭୋଗ କରିବେ ।

୪୦ । ୨ୟ ଶ୍ରେଣୀର ଅବିଶ୍ୱାସକାରୀମାନେ ଜଡ଼ବାଦୀ ନାସ୍ତିକ । ସେମାନେ ପରମେଶ୍ୱରଙ୍କ ଅସ୍ତିତ୍ୱ ଅଥବା ପରଲୋକରେ ବିଶ୍ୱାସ କରନ୍ତି ନାହିଁ । ଇହଲୋକର ଜୀବନ ସେମାନଙ୍କର ସର୍ବସ୍ୱ । ସେମାନଙ୍କୁ ମେଘାଚ୍ଛନ୍ନ ଅନ୍ଧକାର ରାତ୍ରରେ ତରଙ୍ଗାଚ୍ଛନ୍ନ ଗଭୀର ସମୁଦ୍ର ଗର୍ଭରେ ଘନୀଭୂତ ଅନ୍ଧକାର ରାଶି ମଧ୍ୟରେ ପଡ଼ିଥିବା ଲୋକ ସହିତ ତୁଳନା କରାଯାଇଅଛି ଯେକି ସେଠାରେ ନିଜର ହାତକୁ ସୁଦ୍ଧା ଦେଖିପାରେନା । ବାସ୍ତବରେ ଯେଉଁଲୋକ ପରମେଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ ନକରେ ତାହା ପକ୍ଷରେ ସତ୍ୟ ଓ ଜ୍ଞାନର ଅଲୋକ ପାଇବା ଅସମ୍ଭବ । ସେ ଯଦି ନିଜର ସୃଷ୍ଟି ଓ ନିଜର ଅସ୍ତିତ୍ୱ ବିଷୟରେ ଚିନ୍ତା କରେ ତେବେ ସେ ନିଶ୍ଚୟ ପରମେଶ୍ୱରଙ୍କ ଅସ୍ତିତ୍ୱ ହୃଦୟଙ୍ଗମ କରିପାରିବ । ମାତ୍ର ଗଭୀର ଅନ୍ଧକାର ମଧ୍ୟରେ ନିଜ ହାତ ଦେଖି ନପାରିବା ଭଳି, ନିଜ ସମ୍ବନ୍ଧରେ ଚିନ୍ତା କରିବାକୁ ମଧ୍ୟ ସେ ଅକ୍ଷମ ।

( କାର୍ତ୍ତନ କରୁ ଅଛନ୍ତି ) ? ପ୍ରତ୍ୟେକେ ନିଜ ନିଜ ଅରାଧନା ଓ ମହିମା କୀର୍ତ୍ତନ ପଦ୍ଧତି ଜାଣନ୍ତି ଏବଂ ସେମାନେ ଯାହା କରୁଅଛନ୍ତି ପରମେଶ୍ୱର ତାହା ଜାଣନ୍ତି ।୪୧।

ଏବଂ ଆକାଶମଣ୍ଡଳ ଓ ଭୂମଣ୍ଡଳର ଅଧିପତ୍ୟ ପରମେଶ୍ୱରଙ୍କ ଏବଂ ପରମେଶ୍ୱରଙ୍କ ଆଡ଼କୁ ସମସ୍ତଙ୍କୁ ଫେରିଯିବାକୁ ହେବ ।୪୨।

ତୁମ୍ଭେ କଅଣ ଲକ୍ଷ୍ୟକରୁ ନାହିଁ ଯେ ପରମେଶ୍ୱର ମେଘମାଳା ପରିଚାଳିତ କରନ୍ତି; ପରେ ସେମାନଙ୍କୁ ଏକତ୍ରିତ କରନ୍ତି, ତାପରେ ସେମାନଙ୍କୁ ଘନୀଭୂତ କରନ୍ତି, ତାପରେ ତୁମ୍ଭେ ଦେଖୁଅଛ ଯେ ସେମାନଙ୍କ ଭିତରୁ ଜଳ ଧାରା ବାହାରୁଅଛି ? ଏବଂ ସେ ଆକାଶରୁ ପର୍ବତସମ ମେଘମାଳାରୁ ଶିଳାବୃଷ୍ଟି ବର୍ଷଣ କରନ୍ତି, ତାପରେ ସେ ତାହାକୁ ଯାହା ଉପରେ ଇଚ୍ଛା ନିକ୍ଷେପକରନ୍ତି, ଏବଂ ଯାହାଠାରୁ ଇଚ୍ଛା ନିବାରଣ କରି ଥାଆନ୍ତି, ତାଙ୍କର ବିଜୁଳି ଆଲୁଅ ଆଖିକୁ ଅନ୍ଧହେଲାପରି କରିଦିଏ ।୪୩।

ଏବଂ ପରମେଶ୍ୱର ଦିନ ଓ ରାତିର ପରିବର୍ତ୍ତନ କରନ୍ତି; ନିଶ୍ଚୟ ସେଥିରେ ଜ୍ଞାନ ଚକ୍ଷୁଥିବା ବ୍ୟକ୍ତିମାନଙ୍କ ପାଇଁ ଶିକ୍ଷାରହିଅଛି ।୪୪।

ଏବଂ ପରମେଶ୍ୱର ଜଳଦ୍ୱାରା ସର୍ବପ୍ରକାର ଜୀବଜନ୍ତୁ ସୃଷ୍ଟିକରି ଅଛନ୍ତି; ତାପରେ ସେମାନଙ୍କ ମଧ୍ୟରୁ କେତେକେ ନିଜ ଉଦର ଉପରେ ଭରାଦେଇ ଚାଲନ୍ତି ଏବଂ କେତେକେ ଦୁଇ ପାଦ ଉପରେ ଚାଲନ୍ତି; ଏବଂ କେତେକ ଚାରିପାଦ ଉପରେ ଚାଲନ୍ତି; ପରମେଶ୍ୱର ଯାହାଇଚ୍ଛା ତାହା ସୃଷ୍ଟି କରନ୍ତି; ନିଶ୍ଚୟ ପରମେଶ୍ୱର ସମସ୍ତ ବିଷୟ ଉପରେ ଶକ୍ତିଶାଳୀ ।୪୫।

ନିଶ୍ଚୟ ଆମ୍ଭେ ପ୍ରକାଶ୍ୟ ନିଦର୍ଶନ ମାନ ଅବତୀର୍ଣ୍ଣ କରିଅଛୁଁ; ଏବଂ ପରମେଶ୍ୱର ଯାହାକୁ ଇଚ୍ଛା ତାକୁ ସରଳ ପଥରେ ପରିଚାଳିତ କରନ୍ତି ।୪୬।

ଏବଂ ସେମାନେ କହନ୍ତି, "ଆମ୍ଭେମାନେ ପରମେଶ୍ୱରଙ୍କ ପ୍ରତି ଓ ପ୍ରେରିତ ପୁରୁଷଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରିଅଛୁଁ ଏବଂ ଆମ୍ଭେମାନେ ଅନୁଗତ ହୋଇଅଛୁଁ"; କିନ୍ତୁ ସେମାନଙ୍କ ମଧ୍ୟରୁ ଏକଦଳ ଏହାପରେ ବିଶ୍ୱାସରୁ ଫେରିଯାଇ ଅଛନ୍ତି, ଏବଂ ସେମାନେ ପ୍ରକୃତରେ ବିଶ୍ୱାସକାରୀ ନୁହନ୍ତି ।୪୭।

ଏବଂ ଯେତେବେଳେ ସେମାନେ ପରମେଶ୍ୱର ଓ ତାଙ୍କ ପ୍ରେରିତ ପୁରୁଷଙ୍କ ନିକଟକୁ ଡକା ଯାଆନ୍ତି, ଯେପରି ସେ ସେମାନଙ୍କ ମଧ୍ୟରେ (ଥିବା ବିବାଦ) ମୀମାଂସା କରିଦେବେ, ସେତେବେଳେ ସେମାନଙ୍କ ମଧ୍ୟରୁ ଏକଦଳ ବିମୁଖ ହୋଇ ଯାଆନ୍ତି ।୪୮।

ଏବଂ ଯଦି ମୀମାଂସା ସେମାନଙ୍କ ସପକ୍ଷରେ ଥାଏ, ସେମାନେ ତାଙ୍କ ଅଡ଼କୁ ଶୀଘ୍ର ନତଶିରରେ ଅଗ୍ରସର ହୁଅନ୍ତି ।୪୯।

---

୪୧ । ପ୍ରତ୍ୟେକେ ନିଜ ନିଜ ଅରାଧନା ଓ ମହିମା କୀର୍ତ୍ତନ ପଦ୍ଧତି ଜାଣନ୍ତି—କେଉଁ ପକ୍ଷୀ କିପରି ଭାବରେ ପରମେଶ୍ୱରଙ୍କ ମହିମା କୀର୍ତ୍ତନ କରିବ ପରମେଶ୍ୱର ତାହାକୁ ଶିକ୍ଷା ଦେଇଅଛନ୍ତି । ପରମେଶ୍ୱରଙ୍କ ସୃଷ୍ଟି ପ୍ରତ୍ୟେକ ପଦାର୍ଥ ବିଷୟରେ ଚିନ୍ତା କଲେ ଜଣାଯିବ ତାହା ପରମେଶ୍ୱରଙ୍କ ମହିମ ପ୍ରକାଶ କରୁଅଛି ।

୪୨–୪୬ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱରଙ୍କ ସୃଷ୍ଟି କୌଶଳ ବିଷୟରେ କେତେଗୁଡ଼ିଏ ଉଦାହରଣ ଦିଆଯାଇଅଛି । ସେମାନଙ୍କ ବିଷୟରେ ଚିନ୍ତା କଲେ ପରମେଶ୍ୱରଙ୍କ ମହିମା ସ୍ପଷ୍ଟ ହୃଦୟଙ୍ଗମ କରିହେବ ।

୪୭ । ଏହି ଶ୍ଳୋକରେ କପଟବିଶ୍ୱାସୀମାନଙ୍କ ଅବସ୍ଥା ବର୍ଣ୍ଣିତ ହୋଇଅଛି ।

୪୮–୪୯ । କପଟ ବିଶ୍ୱାସୀମାନେ କୌଣସି ମୋକଦ୍ଦମାରେ ମୁଦାଲ୍ଲ ହେଲେ ପ୍ରେରିତ ପୁରୁଷଙ୍କ ବିଚାରାଳୟକୁ ଆସିବାକୁ ଅସ୍ୱୀକାର କରନ୍ତି, ମାତ୍ର କୌଣସି ମୋକଦ୍ଦମାରେ ମୁଦେଇ ହେଲେ ସେମାନେ ଆଗ୍ରହ ସହିତ ଆସନ୍ତି ।

ତେବେ କାରଣ ସେମାନଙ୍କ ଅନ୍ତରରେ ରୋଗ ଅଛି, ଅଥବା ସେମାନେ ସନ୍ଦେହ ମଧ୍ୟରେ ବନ୍ଧିଅଛନ୍ତି, ଅଥବା ସେମାନେ ଭୟ କରୁଅଛନ୍ତି ଯେ ପରମେଶ୍ୱର ଓ ତାଙ୍କର ପ୍ରେରିତପୁରୁଷ ସେମାନଙ୍କ ପ୍ରତି ଅବିଚାର କରିବେ ? ବରଂ ସେହିମାନେହିଁ ଅତ୍ୟାଚାରୀ ।୫୦।

## ୭ମ ବିଭାଗ

ବିଶ୍ୱାସକାରୀମାନଙ୍କୁ ଯେତେବେଳେ ପରମେଶ୍ୱର ଓ ତାଙ୍କର ପ୍ରେରିତ ପୁରୁଷଙ୍କ ନିକଟକୁ ସେମାନଙ୍କ (ମଧ୍ୟରେ ଥିବା ବିବାଦ) ମୀମାଂସା ପାଇଁ ଡକାଯାଏ, ସେତେବେଳେ ସେମାନଙ୍କର ଏକମାତ୍ର ବାକ୍ୟ ଏହା ହୁଏ. "ଅମ୍ଭେମାନେ ଶ୍ରବଣ କଲୁଁ ଓ ଆଜ୍ଞା ପାଳନ କଲୁଁ", ଏବଂ ଏହିମାନେହିଁ ସୁଫଳ ପ୍ରାପ୍ତ ହେବେ ।୫୧।

ଏବଂ ଯେଉଁମାନେ ପରମେଶ୍ୱର ଓ ତାଙ୍କର ପ୍ରେରିତପୁରୁଷଙ୍କର ଅନୁଗତ ହୁଅନ୍ତି ଏବଂ ପରମେଶ୍ୱରଙ୍କୁ ଭୟ କରନ୍ତି ଓ ସଂଯତ ହୁଅନ୍ତି ବାସ୍ତବରେ ସେହିମାନେହିଁ କୃତକାର୍ଯ୍ୟ ହେବେ ।୫୨।

ଏବଂ ସେମାନେ ପରମେଶ୍ୱରଙ୍କ ସହିତ ସୁଦୃଢ଼ ଶପଥ କରି ଅଙ୍ଗୀକାରବଦ୍ଧ ହୁଅନ୍ତି ଯେ ଯଦି ତୁମ୍ଭେ ସେମାନଙ୍କୁ ଆଦେଶକରି ସେମାନେ ତତ୍‌କ୍ଷଣାତ୍ (ନିଜଘରୁ) ବହିର୍ଗତ ହେବେ; ତୁମ୍ଭେ କୁହ, "ତୁମ୍ଭେମାନେ ଶପଥ କରନା, ଯଥୋଚିତ ଆଦେଶ ପାଳନ କର; ନିଶ୍ଚୟ ତୁମ୍ଭେମାନେ ଯାହାକର ପରମେଶ୍ୱର ତାହା ଅବଗତ ଅଛନ୍ତି ।"୫୩।

ତୁମ୍ଭେ କୁହ, "ତୁମ୍ଭେମାନେ ପରମେଶ୍ୱରଙ୍କ ଅନୁଗତ ହୁଅ, ଏବଂ ପ୍ରେରିତ ପୁରୁଷଙ୍କ ଅନୁଗତ ହୁଅ; ତାପରେ ଯଦି ତୁମ୍ଭେମାନେ ଫେରିଯାଅ ତେବେ ତାଙ୍କ ଉପରେ ତାଙ୍କର ଭାର ଏବଂ ତୁମ୍ଭମାନଙ୍କ ଉପରେ ତୁମ୍ଭମାନଙ୍କର ଭାର, ଏବଂ ଯଦି ତୁମ୍ଭେମାନେ ତାଙ୍କର ଅନୁଗତ ହୁଅ ତେବେ ତୁମ୍ଭେମାନେ ସୁପଥ ପ୍ରାପ୍ତ ହେବ, ଏବଂ ପ୍ରେରିତପୁରୁଷଙ୍କ ଉପରେ ପ୍ରକାଶ୍ୟ ପ୍ରଚାର ଛଡ଼ା ଅନ୍ୟ କିଛି ଭାର ନାହିଁ ।"୫୪।

ପରମେଶ୍ୱର ଅଙ୍ଗୀକାର କରି ଅଛନ୍ତି ଯେ ତୁମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି, ନିଶ୍ଚୟ ସେ ସେମାନଙ୍କୁ ପୃଥିବୀରେ ଆଧିପତ୍ୟ ପ୍ରଦାନ କରିବେ, ଯେପରି ସେ ସେମାନଙ୍କର ପୂର୍ବବର୍ତ୍ତୀମାନଙ୍କୁ ଆଧିପତ୍ୟ ପ୍ରଦାନ କରିଥିଲେ, ଏବଂ ନିଶ୍ଚୟ ସେ ସେମାନଙ୍କ ପାଇଁ ସେମାନଙ୍କ ଧର୍ମକୁ ସୁପ୍ରତିଷ୍ଠିତ କରିବେ, ଯାହା ସେ ସେମାନଙ୍କ ପାଇଁ ମନୋନୀତ କରି ଅଛନ୍ତି, ଏବଂ ନିଶ୍ଚୟ

---

୫୦ । ଏ ଶ୍ଳୋକରେ କପଟ ବିଶ୍ୱାସୀମାନଙ୍କର ଉପରୋକ୍ତ ବ୍ୟବହାରର ପ୍ରକୃତ କାରଣ ଦର୍ଶାଯାଇଅଛି । ଅର୍ଥାତ୍ ସେମାନେ ଅତ୍ୟାଚାରୀ ଏବଂ ନ୍ୟାୟ ବିଚାର ଚାହାନ୍ତି ନାହିଁ ।

୫୧–୫୩ । ଏହି ଶ୍ଳୋକମାନଙ୍କରେ ବିଶ୍ୱାସକାରୀମାନଙ୍କ ନୀତି ଓ ଚରିତ୍ର ବର୍ଣ୍ଣିତ ହୋଇଅଛି ।

୫୩ । ଶପଥ କରନା—ପରମେଶ୍ୱର ଓ ପ୍ରେରିତ ପୁରୁଷଙ୍କ ଆଦେଶ ପାଳନ କରିବା ପ୍ରତ୍ୟେକ ବିଶ୍ୱାସକାରୀ ପକ୍ଷରେ ଅବଶ୍ୟ କର୍ତ୍ତବ୍ୟ; ଏହା ନିଶ୍ଚୟ ପାଳନ କରିବାକୁ ହେବ । ଏଥିପାଇଁ ପରମେଶ୍ୱରଙ୍କ ନାମରେ ଶପଥ କରିବାର ଆବଶ୍ୟକ ନାହିଁ ।

୫୪ । ବିଶ୍ୱାସକାରୀମାନଙ୍କୁ ସଦୁପଦେଶ ପ୍ରଦାନ କରିବା ପ୍ରେରିତ ପୁରୁଷଙ୍କ କର୍ତ୍ତବ୍ୟ । ମାତ୍ର ସେମାନେ ଯଦି ତାଙ୍କ ଉପଦେଶ ଅନୁଯାୟୀ କାର୍ଯ୍ୟ ନ କରନ୍ତି ଏବଂ ପରମେଶ୍ୱର ଓ ତାଙ୍କ ପ୍ରେରିତ ପୁରୁଷଙ୍କ ପ୍ରତି ଅବାଧ୍ୟତା କରନ୍ତି ସେଥିପାଇଁ ସେମାନେ ନିଜେ ଦାୟୀ ହେବେ ଏବଂ ପରମେଶ୍ୱରଙ୍କ ଦ୍ୱାରା ଦଣ୍ଡିତ ହେବେ । ସେମାନଙ୍କ ଅବାଧ୍ୟତା ଓ ଅବହେଳା ନିମନ୍ତେ ପ୍ରେରିତ ପୁରୁଷ ଦାୟୀ ହେବେ ନାହିଁ ।

ସେ ସେମାନଙ୍କର ଭୟ ପରେ ସେମାନଙ୍କ ଅବସ୍ଥାକୁ ଶାନ୍ତିରେ ପରିବର୍ତ୍ତିତ କରିଦେବେ, ସେମାନେ ଆମ୍ଭର ଉପାସନା କରିବେ ଏବଂ ଆମ୍ଭ ସହିତ କୌଣସି ଅଂଶୀ ସ୍ଥାପନ କରିବେ ନାହିଁ, ଏବଂ ଏହାପରେ ଯେଉଁମାନେ ଅବିଶ୍ୱାସ କରିବେ ବାସ୍ତବରେ ସେହିମାନେହିଁ ଦୁଷ୍କାର୍ଯ୍ୟକାରୀ ।୫୫।

ଏବଂ ତୁମ୍ଭେମାନେ ଆରାଧନା ପ୍ରତିଷ୍ଠିତ କର ଓ ଜକାତ୍ ଦିଅ ଏବଂ ପ୍ରେରିତପୁରୁଷଙ୍କ ଅନୁଗତ ହୁଅ, ଯେପରି ତୁମ୍ଭେମାନେ ଅନୁଗ୍ରହ ଲାଭକରି ପାରିବ ।୫୬।

ଏବଂ ଯେଉଁମାନେ ଅବିଶ୍ୱାସ କରିଅଛନ୍ତି ସେମାନଙ୍କ ସମ୍ବନ୍ଧରେ ଏପରି ଧାରଣାକରନାହିଁ ଯେ ସେମାନେ ପୃଥିବୀରେ ପରମେଶ୍ୱରଙ୍କ ଅଭିପ୍ରାୟକୁ ବିଫଳ କରି ପାରିବେ ଏବଂ ସେମାନଙ୍କର ବାସସ୍ଥାନ ନରକର ଅଗ୍ନି, ଏବଂ ତାହା ଫେରିଯିବାର ମନ୍ଦ ସ୍ଥାନ ଅଟେ ।୫୭।

## ୮ମ ବିଭାଗ

ହେ ବିଶ୍ୱାସକାରୀମାନେ ! ତୁମ୍ଭମାନଙ୍କର ଦକ୍ଷିଣ ହସ୍ତ ଯେଉଁମାନଙ୍କର ଅଧିକାରୀ ଏବଂ ତୁମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ବୟଃପ୍ରାପ୍ତ ହୋଇନାହାନ୍ତି ସେମାନଙ୍କର ଉଚିତ ଯେ ନିମ୍ନଲିଖିତ ତିନି ସମୟରେ ତୁମ୍ଭମାନଙ୍କ ନିକଟକୁ ଆସିବା ପାଇଁ ସେମାନେ ତୁମ୍ଭମାନଙ୍କ ଅନୁମତି ନେଉଥିବେ:—ପ୍ରାତଃକାଳୀନ ଆରାଧନା ପୂର୍ବେ ଏବଂ ଦ୍ୱିପ୍ରହର ଖରା ସମୟରେ ଯେତେବେଳେ ତୁମ୍ଭେମାନେ (ବିଶ୍ରାମ ପାଇଁ) ନିଜ ପରିଧେୟ ଆବରଣ କାଢ଼ିରଖ ଏବଂ ରାତ୍ରିର ଆରାଧନା ପରେ (ବିଛଣାକୁ ଶୋଇବାକୁ ଯିବାବେଳେ); ଏହି ତିନୋଟି ତୁମ୍ଭମାନଙ୍କ ପାଇଁ ଅନାବରଣୀୟ ସମୟ; ଏହାଛଡ଼ା ତୁମ୍ଭମାନଙ୍କ ଉପରେ ଅଥବା ସେମାନଙ୍କ ଉପରେ କୌଣସି ଦୋଷ ନାହିଁ ଯେ ତୁମ୍ଭେମାନେ ପରସ୍ପର ନିକଟକୁ ଯିବା ଆସିବା କରିବ; ଏହିପରି ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ନିଦର୍ଶନମାନ ବର୍ଣ୍ଣନା କରନ୍ତି, ଏବଂ ପରମେଶ୍ୱର ମହାଜ୍ଞାନୀ ଓ ବିଜ୍ଞାନୀ ।୫୮।

ଏବଂ ଯେତେବେଳେ ଘରେ ଥିବା ବାଳକ ବାଳକାମାନେ ବୟଃପ୍ରାପ୍ତ ହେବେ ସେତେବେଳେ ସେମାନଙ୍କର ମଧ୍ୟ ଅନୁମତି ନେଉଥିବା ଉଚିତ ଯେପରି ସେମାନଙ୍କ ପୂର୍ବରୁ (ବୟଃପ୍ରାପ୍ତ ହୋଇଥିବା

---

୫୫ । ଯଦି ମୁସଲମାନମାନେ ବିଶ୍ୱାସରେ ଦୃଢ଼ ରହି ପରମେଶ୍ୱରଙ୍କ ଉପାସନା କରନ୍ତି ଏବଂ ଅଂଶୀ ସ୍ଥାପନ ନକରନ୍ତି ତେବେ ପରମେଶ୍ୱର ସେମାନଙ୍କୁ ପୃଥିବୀର ଆଧିପତ୍ୟ ପ୍ରଦାନ କରିବାର ଏବଂ ସେମାନଙ୍କର ଧର୍ମ ଅର୍ଥାତ୍ ଇସଲାମ ଧର୍ମକୁ ପୃଥିବୀରେ ସୁପ୍ରତିଷ୍ଠିତ କରିବାର ଅଙ୍ଗୀକାର ପ୍ରଦାନ କରିଅଛନ୍ତି ।

'ଆଧିପତ୍ୟ' 'ଖିଲାଫତ୍' ର ଅନୁବାଦ ଅଟେ । ଅନେକେ ଏହାର ଅର୍ଥ ଉତ୍ତରାଧିକାରୀତ୍ୱ କରିଅଛନ୍ତି । ମହାପୁରୁଷ ମୋହମ୍ମଦ ଏବଂ ତାଙ୍କପରେ ତାଙ୍କ ଉତ୍ତରାଧିକାରୀ (ଖଲିଫା) ଚତୁଷ୍ଟୟ ଧର୍ମ ବଳରେ ଯେଉଁ ବିଶାଳ ରାଜ୍ୟ ସ୍ଥାପନ କରିଥିଲେ ତଦ୍ଦ୍ୱାରା ପରମେଶ୍ୱରଙ୍କ ଏହି ଅଙ୍ଗୀକାର ସଫଳ ହୋଇଥିଲା ।

୫୭ । ଏହି ଶ୍ଳୋକରେ ଅବିଶ୍ୱାସକାରୀମାନଙ୍କର ଇହଲୋକରେ ପରାଜୟ ଏବଂ ପରଲୋକରେ ନରକ ଯନ୍ତ୍ରଣା ଭୋଗର ଭବିଷ୍ୟତ ବାଣୀ ପ୍ରଚାର କରାଯାଇଅଛି ।

୫୮ । ଦାସଦାସୀ ଏବଂ ଅପ୍ରାପ୍ତ ବୟସ୍କ ବାଳକ ବାଳିକା ପକ୍ଷରେ ପର୍ଦ୍ଦା କରିବାର ଆବଶ୍ୟକ ନାହିଁ ଏବଂ ସେମାନେ ଗୃହରେ ପ୍ରବେଶ କରିବା ସମୟରେ ଅନୁମତି ନେବାର ଆବଶ୍ୟକ ନାହିଁ । ଏହା ସାଧାରଣ ନିୟମ । ମାତ୍ର ଦିନ ମଧ୍ୟରେ ତିନି ଥର, ଯେତେବେଳେ ନରନାରୀ ଗୃହ ମଧ୍ୟରେ ଅସଂଯତ ଓ ଅନାବୃତ ଅବସ୍ଥାରେ ଥାଆନ୍ତି, ସେତେବେଳେ ସେମାନେ ଅନୁମତି ନେଇ ଗୃହ ମଧ୍ୟରେ ପ୍ରବେଶ କରିବେ ।

ଲୋକମାନେ) ଅନୁମତି ଲୋଡ଼ୁଅଛନ୍ତି; ଏହିପରି ପରମେଶ୍ୱର ତୁମ୍ଭମାନଙ୍କପାଇଁ ନିଜ ନିଦର୍ଶନମାନ ବର୍ଣ୍ଣନା କରନ୍ତି; ଏବଂ ପରମେଶ୍ୱର ମହାଜ୍ଞାନୀ ଓ ବିଜ୍ଞାନୀ ।୫୯।

ଏବଂ ଯେଉଁ ବୃଦ୍ଧା ସ୍ତ୍ରୀ ଲୋକମାନଙ୍କର ବିବାହର ବାସନା ନାହିଁ, ଯଦି ସେମାନେ ସେମାନଙ୍କର ବେଶଭୂଷା ପ୍ରଦର୍ଶନ ନକରି ନିଜର ପରିଧେୟ ଓଢ଼ଣୀ କାଢ଼ି ରଖନ୍ତି ତେବେ ସେମାନଙ୍କ ପକ୍ଷରେ କୌଣସି ଦୋଷ ନାହିଁ, ଏବଂ ଯଦି ସେମାନେ (ଏପରି କାର୍ଯ୍ୟରୁ) ନିବୃତ୍ତ ହୁଅନ୍ତି ତେବେ ସେମାନଙ୍କ ପକ୍ଷରେ ଉତ୍ତମ; ଏବଂ ପରମେଶ୍ୱର ଶ୍ରବଣକାରୀ ମହାଜ୍ଞାନୀ ।୬୦।

ଅନ୍ଧପାଇଁ କୌଣସି ଦୋଷ ନାହିଁ ଅଥବା ଛୋଟା ଲୋକପାଇଁ କୌଣସି ଦୋଷ ନାହିଁ କିମ୍ବା ପୀଡ଼ିତ ଲୋକ ପାଇଁ ମଧ୍ୟ କୌଣସି ଦୋଷ ନାହିଁ ଏବଂ ତୁମ୍ଭମାନଙ୍କ ପାଇଁ ମଧ୍ୟ କୌଣସି ଦୋଷ ନାହିଁ ଯେ ତୁମ୍ଭେମାନେ ନିଜ ଗୃହରେ ଆହାର କରି ଅଥବା ତୁମ୍ଭମାନଙ୍କର ପିତାଙ୍କ ଗୃହରେ କିମ୍ବା ତୁମ୍ଭମାନଙ୍କର ମାତାମାନଙ୍କ ଗୃହରେ ଅଥବା ତୁମ୍ଭମାନଙ୍କର ଭ୍ରାତାମାନଙ୍କର ଗୃହରେ କିମ୍ବା ତୁମ୍ଭମାନଙ୍କର ଭଗ୍ନୀମାନଙ୍କ ଗୃହରେ ଅଥବା ତୁମ୍ଭମାନଙ୍କର ପିତୃବ୍ୟମାନଙ୍କ ଗୃହରେ କିମ୍ବା ତୁମ୍ଭମାନଙ୍କର ପିଉସୀମାନଙ୍କ ଗୃହରେ ଅଥବା ତୁମ୍ଭମାନଙ୍କର ମାମୁମାନଙ୍କ ଗୃହରେ କିମ୍ବା ତୁମ୍ଭମାନଙ୍କର ମାଉସୀ ମାନଙ୍କ ଗୃହରେ ଅଥବା ଯେଉଁ ଗୃହମାନଙ୍କର କଞ୍ଚି ସବୁ ତୁମ୍ଭମାନଙ୍କ ଅଧିକାରରେ ଅଛି କିମ୍ବା ନିଜ ବନ୍ଧୁ ଗୃହରେ, ତୁମ୍ଭମାନଙ୍କ ପାଇଁ କୌଣସି ଅପରାଧ ନାହିଁ ଯେ ତୁମ୍ଭେମାନେ ଏକାଠିରେ ଅଥବା ପୃଥକ ଭାବରେ ଆହାରକର; ଅତଏବ ଯେତେବେଳେ ତୁମ୍ଭେମାନେ ଗୃହମାନଙ୍କରେ ପ୍ରବେଶ କର ସେତେବେଳେ ନିଜ ଲୋକମାନଙ୍କୁ ସଲାମ କର, ଯାହା ପରମେଶ୍ୱରଙ୍କ ନିକଟରୁ ମଙ୍ଗଳମୟ ପବିତ୍ରତମ ଆଶୀର୍ବାଦ, ଏହିପରି ପରମେଶ୍ୱର ତୁମ୍ଭମାନଙ୍କ ପାଇଁ ନିଦର୍ଶନମାନ ବର୍ଣ୍ଣନା କରନ୍ତି ଯେପରି ତୁମ୍ଭେମାନେ ହୃଦୟଙ୍ଗମ କରି ପାରିବ ।୬୧।

## ୯ମ ବିଭାଗ

କେବଳ ସେହିମାନେ ବିଶ୍ୱାସକାରୀ ଯେଉଁମାନେ ପରମେଶ୍ୱର ଓ ତାଙ୍କର ପ୍ରେରିତପୁରୁଷଙ୍କ ପ୍ରତି ବିଶ୍ୱାସସ୍ଥାପନ କରି ଅଛନ୍ତି ଏବଂ ଯେତେବେଳେ ତାଙ୍କ ନିକଟରେ କୌଣସି ସମବେତ କାର୍ଯ୍ୟ ଉପଲକ୍ଷ୍ୟରେ

---

୫୯ । ଅପ୍ରାପ୍ତ ବୟସ୍କ ବାଳକ ବାଳିକାମାନେ ବୟଃପ୍ରାପ୍ତ ହେଲାପରେ ପ୍ରାପ୍ତ ବୟସ୍କ ଲୋକମାନଙ୍କ ପରି ଅନୁମତି ପ୍ରାର୍ଥନା କରି ଗୃହ ମଧ୍ୟରେ ପ୍ରବେଶ କରିବା ଆବଶ୍ୟକ ।

୬୦ । ବୃଦ୍ଧା ସ୍ତ୍ରୀଲୋକମାନଙ୍କ ପକ୍ଷରେ ଶ୍ଳୋ ୩୧ କରେ ବର୍ଣ୍ଣିତ ନିୟମ ଅନୁଯାୟୀ ସର୍ବାଙ୍ଗ ଆବୃତ କରି ପର୍ଦ୍ଦା କରିବାର ଆବଶ୍ୟକ ନାହିଁ । ମାତ୍ର ଯଦି ସେମାନେ ତାହା କରନ୍ତି ତେବେ ସେମାନଙ୍କ ପକ୍ଷରେ ତାହା ଉତ୍କୃଷ୍ଟତର ।

୬୧ । ଏହି ଶ୍ଳୋକରେ ସମାଜ ମଧ୍ୟରେ କେଉଁ ନିୟମରେ ପାନାହାର କରିବାକୁ ହେବ ତାହାର ବିଧିବିଧାନ ଦିଆଯାଇଅଛି । ନିଜ ନିଜ ରୁଚି ଅନୁଯାୟୀ କାର୍ଯ୍ୟ କରିବା ପାଇଁ ଆଦେଶ କରାଯାଇଅଛି । ଅନ୍ଧ, ଛୋଟା ଓ ପୀଡ଼ିତ ଲୋକମାନଙ୍କ ସହିତ, ନିଜର ଆତ୍ମୀୟ ଓ ବନ୍ଧୁବାନ୍ଧବମାନଙ୍କ ସହିତ ଏକାଠିରେ ଅଥବା ପୃଥକ ଭାବରେ ଆହାର କରାଯାଇପାରେ । ସେ ବିଷୟରେ କୌଣସି ବାଧ ବାଧକତା ନାହିଁ । ମାତ୍ର ଅନ୍ୟ ଲୋକର ଗୃହରେ ଆହାର କରିବା ପୂର୍ବରୁ ଗୃହସ୍ଥ ଲୋକମାନଙ୍କ ସହିତ ଶାନ୍ତି ସମ୍ଭାଷଣ (ସଲାମ) କରି ସେମାନଙ୍କ ଅନୁମତି ଗ୍ରହଣ କରିବା ଉଚିତ । ସେମାନଙ୍କୁ ଅସନ୍ତୁଷ୍ଟ କରି ଆହାର କରିବା ଉଚିତ ନୁହେ । ସଲାମ କରିବା ସମ୍ବନ୍ଧରେ ଦେଖ ଟୀକା ଏହି ଅଧ୍ୟାୟ ୨୭ ଶ୍ଳୋକ ।

ଯେଉଁ ଗୃହମାନଙ୍କର କଞ୍ଚିସବୁ ତୁମ୍ଭମାନଙ୍କ ଅଧିକାରରେ ଅଛି—ତୁମ୍ଭେମାନେ ଯେଉଁ ଗୃହମାନଙ୍କରେ ପରିଚାଳକ ବା ମେନେଜରର କାର୍ଯ୍ୟ କରୁଅଛ ।

ଏକତ୍ରିତ ହୁଅନ୍ତି, ତାଙ୍କର ଅନୁମତି ନପାଇବା ପର୍ଯ୍ୟନ୍ତ ଚାଲି ଯାଆନ୍ତି ନାହିଁ; ଅବଶ୍ୟ ଯେଉଁମାନେ ତୁମ୍ଭ ନିକଟରେ ଅନୁମତି ପ୍ରାର୍ଥନା କରନ୍ତି ସେହିମାନେହିଁ ପରମେଶ୍ୱର ଓ ତାଙ୍କର ପ୍ରେରିତପୁରୁଷଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରିଅଛନ୍ତି; ଅତଏବ ଯେତେବେଳେ ସେମାନେ ନିଜର କୌଣସି କାର୍ଯ୍ୟ ସକାଶେ ତୁମ୍ଭର ଅନୁମତି ପ୍ରାର୍ଥନା କରନ୍ତି ସେତେବେଳେ ତୁମ୍ଭେ ସେମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା (ତାକୁ ଯିବାପାଇଁ) ଅନୁମତି ପ୍ରଦାନକର ଏବଂ ସେମାନଙ୍କ ପାଇଁ ପରମେଶ୍ୱରଙ୍କ ନିକଟ କ୍ଷମା ପ୍ରାର୍ଥନା କର; ନିଶ୍ଚୟ ପରମେଶ୍ୱର କ୍ଷମାଶୀଳ କରୁଣାମୟ ।୬୨।

ତୁମ୍ଭେମାନେ ତୁମ୍ଭମାନଙ୍କ ମଧ୍ୟରେ ପ୍ରେରିତପୁରୁଷଙ୍କ ଆହ୍ୱାନକୁ ଏପରି ଧାରଣା କରନା, ଯେପରି ତୁମ୍ଭେମାନେ ପରସ୍ପର ମଧ୍ୟରେ (ସାଧାରଣ) ଆହ୍ୱାନକୁ ମନେ କରିଥାଅ; ତୁମ୍ଭମାନଙ୍କ ମଧ୍ୟରେ ଯେଉଁମାନେ ସଭାସ୍ଥଳରୁ ଅଲକ୍ଷିତ ଭାବରେ ପ୍ରସ୍ଥାନ କରନ୍ତି, ପରମେଶ୍ୱର ସେମାନଙ୍କୁ ଭଲରୂପେ ଜାଣନ୍ତି; ଅତଏବ ଯେଉଁମାନେ ତାଙ୍କ ଆଦେଶର ବିରୁଦ୍ଧାଚରଣ କରନ୍ତି, ସେମାନଙ୍କର ସାବଧାନ ହେବା ଉଚିତ ଯେ (କାଳେ) ସେମାନଙ୍କ ଉପରେ କୌଣସି ବିପଦ ଉପସ୍ଥିତ ହେବ ଅଥବା ଯନ୍ତ୍ରଣାଦାୟକ ଶାସ୍ତି ଉପସ୍ଥିତ ହେବ ।୬୩।

ସାବଧାନ ! ନିଶ୍ଚୟ ଆକାଶମଣ୍ଡଳ ଓ ଭୂମଣ୍ଡଳରେ ଯାହାଅଛି ତାହା ପରମେଶ୍ୱରଙ୍କର; ସେ ତୁମ୍ଭମାନଙ୍କର ଅବସ୍ଥା ଭଲରୂପେ ଜାଣନ୍ତି; ଏବଂ ଯେଉଁଦିନ ସେମାନେ ତାଙ୍କ ନିକଟକୁ ଫେରିଯିବେ, ସେତେବେଳେ ସେମାନେ ଯାହା କରିଅଛନ୍ତି ସେ ବିଷୟ ସେ ସେମାନଙ୍କୁ ଜଣାଇଦେବେ; ଏବଂ ପରମେଶ୍ୱର ସବ ବିଷୟରେ ଅଭିଜ୍ଞ ।୬୪।

---

୬୨ । ୬୩ । ପ୍ରେରିତ ପୁରୁଷଙ୍କ ନିକଟରେ କୌଣସି ସମବେତ କାର୍ଯ୍ୟ ଉପଲକ୍ଷରେ ଏକତ୍ରିତ ହେବା ଓ ତାଙ୍କ ସହିତ ସାକ୍ଷାତ ଓ କଥାବାର୍ତ୍ତା କରିବା ସମୟରେ ବିଶ୍ୱାସକାରୀମାନେ କିପରି ବ୍ୟବହାର କରିବେ ତାହା ଏହି ଶ୍ଳୋକମାନଙ୍କରେ ବର୍ଣ୍ଣିତ ହୋଇଅଛି । ସମବେତ କାର୍ଯ୍ୟ ଅର୍ଥ ଯେଉଁ କାର୍ଯ୍ୟରେ ସମସ୍ତଙ୍କ ପରାମର୍ଶ ଲୋଡ଼ିବା ଆବଶ୍ୟକ ହୁଏ ।

୬୪ । ବିଶ୍ୱାସକାରୀମାନଙ୍କୁ ସଂଯତ ଓ ସୁପଥଗାମୀ ହୋଇ ପବିତ୍ର ଜୀବନ ଯାପନ କରିବା ପାଇଁ ସତର୍କ କରିଦେଇ ପରମେଶ୍ୱର ଏହି ପବିତ୍ର ଅଧ୍ୟାୟର ଉପସଂହାର କରିଅଛନ୍ତି ।



## ୨୫ଶ ଅଧ୍ୟାୟ

ନାମ—ଅଲ୍ ଫୁରକାନ (ପାର୍ଥକ୍ୟକାରୀ ଗ୍ରନ୍ଥ) ।

ମକ୍କାରେ ଅବତୀର୍ଣ୍ଣ । ଏଥିରେ ଗୋ୬ଟି ବିଭାଗ ଏବଂ ୭୭ ଗୋଟି ଶ୍ଲୋକ ଅଛି ।

ଦୟାମୟ ଓ କରୁଣା ସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ସେହି ମଙ୍ଗଳମୟ ପରମେଶ୍ୱର ନିଜ ସେବକ ପ୍ରତି ପାର୍ଥକ୍ୟକାରୀ ଗ୍ରନ୍ଥ ଅବତୀର୍ଣ୍ଣ କରିଅଛନ୍ତି ଯେପରି ସେ ସମସ୍ତ ଜଗତ ପାଇଁ ଭୟପ୍ରଦର୍ଶନକାରୀ ହେବେ । ୧ ।

ଆକାଶମଣ୍ଡଳ ଓ ଭୂମଣ୍ଡଳର ଆଧିପତ୍ୟ ତାଙ୍କର, ଏବଂ ସେ କୌଣସି ପୁତ୍ର ଗ୍ରହଣ କରିନାହାନ୍ତି ଏବଂ ତାଙ୍କର ଆଧିପତ୍ୟରେ କେହି ତାଙ୍କର ଅଂଶୀ ନାହିଁ ଏବଂ ସେହି ସମସ୍ତ ବସ୍ତୁ ସୃଷ୍ଟି କରିଅଛନ୍ତି, ତାପରେ ତାହାକୁ ନିର୍ଦ୍ଦିଷ୍ଟ ନିୟମରେ ନିୟନ୍ତ୍ରିତ କରୁଅଛନ୍ତି । ୨ ।

ଏବଂ ସେମାନେ ତାଙ୍କ ପରିବର୍ତ୍ତିରେ ଏପରି ଉପାସ୍ୟମାନଙ୍କୁ ଗ୍ରହଣ କରିଅଛନ୍ତି ଯେଉଁମାନେ କିଛି ସୃଷ୍ଟି କରିପାରନ୍ତି ନାହିଁ, ବରଂ ସେମାନେ ନିଜେ ସୃଷ୍ଟ ହୋଇଅଛନ୍ତି ଏବଂ ସେମାନେ ନିଜ ପାଇଁ କୌଣସି କ୍ଷତି ବା ଲାଭ କରିବାକୁ ସମର୍ଥ ନୁହନ୍ତି ଏବଂ ସେମାନେ ଜୀବନ ଅଥବା ମରଣ ଅଥବା ପୁନରୁତ୍ଥାନ ସମ୍ବନ୍ଧରେ ଶକ୍ତିଶାଳୀ ନୁହନ୍ତି । ୩ ।

ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଏହା ମିଥ୍ୟା ଛଡ଼ା ଆଉ କିଛି ନୁହେ ଯାହା ସେ ରଚନା କରିଅଛନ୍ତି ଏବଂ ଅନ୍ୟ ସମ୍ପ୍ରଦାୟର ଲୋକମାନେ ଏ ବିଷୟରେ ତାଙ୍କୁ ସାହାଯ୍ୟ କରିଅଛନ୍ତି;" ଅତଏବ ନିଶ୍ଚୟ ସେମାନେ ଅତ୍ୟାଚାର ଓ ମିଥ୍ୟା ପ୍ରଚାର କରିଅଛନ୍ତି । ୪ ।

---

ନାମକରଣ—ଏହି ଅଧ୍ୟାୟର ପ୍ରଥମ ଶ୍ଲୋକରେ ପାର୍ଥକ୍ୟକାରୀ ଗ୍ରନ୍ଥର ବିଷୟ ଉଲ୍ଲେଖ ଥିବାରୁ ଏହାର ଏପରି ନାମକରଣ ହୋଇଅଛି ।

୧ । ସେହି ମଙ୍ଗଳମୟ ପରମେଶ୍ୱର ତାଙ୍କର ସେବକ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ସତ୍ୟ ଓ ମିଥ୍ୟା, ଧର୍ମ ଓ ଅଧର୍ମ ଏବଂ ପାପ ଓ ପୁଣ୍ୟ ମଧ୍ୟରେ ପାର୍ଥକ୍ୟକାରୀ ଧର୍ମଗ୍ରନ୍ଥ ପବିତ୍ର କୋରାନ ଅବତୀର୍ଣ୍ଣ କରିଅଛନ୍ତି । ଏହି ଗ୍ରନ୍ଥ ସାହାଯ୍ୟରେ ସେ ସମସ୍ତ ଜଗତର ଲୋକମାନଙ୍କୁ ସଦୁପଦେଶ ପ୍ରଦାନ କରି ସତ୍ୟ, ଧର୍ମ ଓ ପୁଣ୍ୟର ପୁରସ୍କାର ସମ୍ବନ୍ଧରେ ସୁସମ୍ବାଦ ପ୍ରଦାନ କରିବେ ଏବଂ ମିଥ୍ୟା, ଅଧର୍ମ ଓ ପାପର ଶାସ୍ତି ସମ୍ବନ୍ଧରେ ଭୟ ପ୍ରଦର୍ଶନ କରିବେ ।

୨ । ତାଙ୍କର—ପରମେଶ୍ୱରଙ୍କ । ବିଶ୍ୱ ସଂସାରର ସୃଷ୍ଟି ସ୍ଥିତି ଲୟ ସେହି ଏକ ପରମେଶ୍ୱରଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଅଛି । ତାଙ୍କର କେହି ସନ୍ତାନ କିମ୍ବା କେହି ଅଂଶୀଦାର ନାହାନ୍ତି ।

୪ । ୨ । ପବିତ୍ର କୋରାନ ଗ୍ରନ୍ଥ ମାନବ ରଚିତ ନୁହେ । ଦେଖ ଟୀକା ୨୨ ଅଧ୍ୟାୟ ଶ୍ଲୋ ୨୩, ୨୪ଠ । ଏହା ପରମେଶ୍ୱରଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି ।

ଏବଂ ସେମାନେ କହନ୍ତି, "ଏହାତ ପୂର୍ବକାଳୀନ ଲୋକମାନଙ୍କର କାହାଣୀ, ଯାହା ସେ ଲେଖି ରଖି ଅଛନ୍ତି, ତାପରେ ଏ ସମସ୍ତ ସକାଳେ ଓ ସନ୍ଧ୍ୟାରେ ତାଙ୍କ ନିକଟରେ ପଠିତ ହୁଏ।" ୫ ।

ତୁମେ କୁହ, "ସେହି ଏହାକୁ ଅବତୀର୍ଣ୍ଣ କରିଅଛନ୍ତି ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳର ରହସ୍ୟ ଅବଗତ ଅଛନ୍ତି; ନିଶ୍ଚୟ ସେ କ୍ଷମାଶୀଳ ଓ କରୁଣାମୟ।" ।୬।

ଏବଂ ସେମାନେ କହନ୍ତି, " ଏ କପର ପ୍ରେରିତ ପୁରୁଷ ଯେ ଖାଦ୍ୟ ଭକ୍ଷଣ କରନ୍ତି ଏବଂ ବଜାରମାନଙ୍କରେ ଗମନ କରନ୍ତି ? ଏବଂ ତାଙ୍କ ସହିତ କାହିଁକି ଜଣେ ସ୍ୱର୍ଗଦୂତ ଅବତୀର୍ଣ୍ଣ ହୋଇନାହିଁ ଯେ ତାଙ୍କ ସହିତ ଭୟ ପ୍ରଦର୍ଶନକାରୀ ହୁଅନ୍ତା । ୭ ।

"ଅଥବା ତାଙ୍କପ୍ରତି କୌଣସି ଧନଭଣ୍ଡାର ପ୍ରେରିତ ହୋଇଥାନ୍ତା କିମ୍ବା ତାଙ୍କ ପାଇଁ ଏପରି ଏକ ଉଦ୍ୟାନ ଥାଆନ୍ତା ଯେଉଁଥିରୁ ସେ ଭକ୍ଷଣ କରନ୍ତେ," ଏବଂ ଅତ୍ୟାଚାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି "ତୁମ୍ଭେମାନେ ଜଣେ ଯାଦୁଗ୍ରସ୍ତ ବ୍ୟକ୍ତିଛଡ଼ା ଅନ୍ୟ କାହାର ଅନୁସରଣ କରୁନାହଁ" ।୮।

ଲକ୍ଷ୍ୟ କର, ସେମାନେ ତୁମ୍ଭପାଇଁ କପରି ଉପମାମାନ ପ୍ରୟୋଗ କରୁଅଛନ୍ତି, ବାସ୍ତବରେ ସେମାନେ ବିଭ୍ରାନ୍ତ ହୋଇଅଛନ୍ତି, ତାପରେ ସେମାନେ କୌଣସି ପଥ ପାଇବାକୁ ସମର୍ଥ ହେବେ ନାହିଁ । ୯ ।

## ୨ୟ ବିଭାଗ

ସେହି ମଙ୍ଗଳମୟ ପରମେଶ୍ୱର ଇଚ୍ଛା କଲେ ତୁମ୍ଭ ପାଇଁ ଏହା ଅପେକ୍ଷା ଅଧିକ ଉତ୍ତମ ଉଦ୍ୟାନମାନ ସୃଷ୍ଟି କରିପାରିବେ, ଯାହାର ନିମ୍ନରେ ନଦୀମାନ ପ୍ରବାହିତ ହେଉଥିବ ଏବଂ ତୁମ୍ଭପାଇଁ ସମୁଚ୍ଚ ପ୍ରାସାଦ ନିର୍ମାଣ କରିଦେବେ । ୧୦ ।

ବରଂ ସେମାନେ ସେହି ସମୟକୁ ମିଥ୍ୟା ମନେ କରୁଅଛନ୍ତି ଏବଂ ଯେ ଏହି ସମୟକୁ ମିଥ୍ୟା ମନେ କରେ ଆମ୍ଭେ ତାହା ପାଇଁ ଅଗ୍ନିଶିଖା ପ୍ରସ୍ତୁତ କରି ରଖିଅଛୁଁ । ୧୧ ।

ଯେତେବେଳେ ଏହି ଅଗ୍ନିଶିଖା ଦୂର ସ୍ଥାନରୁ ସେମାନଙ୍କୁ ଦେଖିବ (ସେ ଗର୍ଜି ଉଠିବ), ସେତେବେଳେ ସେମାନେ ତାହାର ପ୍ରଚଣ୍ଡ କ୍ରୋଧ ଜନିତ ଗର୍ଜନ ଶୁଣିବେ । ୧୨ ।

ଏବଂ ଯେତେବେଳେ ସେମାନେ ତାହା ମଧ୍ୟରେ ଥିବା ଏକ ସଂକୀର୍ଣ୍ଣ ସ୍ଥାନରେ ସେମାନଙ୍କ ଗୋଡ଼ ହାତ ବନ୍ଧା ହୋଇଥିବା ଅବସ୍ଥାରେ ପକାଇ ଦିଆଯିବେ, ସେତେବେଳେ ସେମାନେ ଧ୍ୱଂସପ୍ରାପ୍ତ ହେବା ପାଇଁ (ମୃତ୍ୟୁକୁ) ଡାକିବେ । ୧୩ ।

ସେମାନେ ଉତ୍ତର ପାଇବେ "ଆଜ ତୁମ୍ଭେମାନେ ଥରେ ଧ୍ୱଂସ ହେବା ପାଇଁ ଆହ୍ୱାନ କରନା ବରଂ ବାରମ୍ବାର ଧ୍ୱଂସ ହେବା ପାଇଁ ଆହ୍ୱାନ କରୁଥାଅ" । ୧୪ ।

---

୭।୮।୯। ଅବିଶ୍ୱାସକାରୀମାନେ ମହାପୁରୁଷ ମୋହମ୍ମଦଙ୍କୁ ସେମାନଙ୍କ ପରି ଜଣେ ମନୁଷ୍ୟ ମନେ କରି ସେ ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ବୋଲି ବିଶ୍ୱାସ କରିପାରୁନାହାନ୍ତି । ସେମାନେ ଅଲୌକିକ ନିଦର୍ଶନ ଦେଖିବାକୁ ଇଚ୍ଛା କରନ୍ତି । ଅଲୌକିକ ନିଦର୍ଶନ ଅଭାବରେ ତାଙ୍କୁ ଯାଦୁକର ବୋଲି ମନେକରୁଅଛନ୍ତି । ସେଥିପାଇଁ ପରମେଶ୍ୱର ପ୍ରକାଶ କରୁଅଛନ୍ତି କି ସେମାନେ ଭ୍ରମରେ ପଡ଼ିଅଛନ୍ତି ।

୧୦ । ଏହା ଅପେକ୍ଷା—୮ ଶ୍ଳୋକ ବର୍ଣ୍ଣିତ ଉଦ୍ୟାନ ଅପେକ୍ଷା ।

୧୧ । ସେହି ସମୟ—ଶେଷ ବିଚାର ଦିନ ।

୧୪ । ବାରମ୍ବାର ଧ୍ୱଂସ ହେବା ପାଇଁ ଆହ୍ୱାନ କରୁଥାଅ—ତୁମ୍ଭେମାନେ ଯେତେ ଥର ମୃତ୍ୟୁକୁ ଡାକ, ମୃତ୍ୟୁ ତୁମ୍ଭମାନଙ୍କ ପାଖକୁ ଆସିବ ନାହିଁ କିମ୍ବା ତୁମ୍ଭେମାନେ ଶାସ୍ତିରୁ ରକ୍ଷା ପାଇବ ନାହିଁ ।

ତୁମ୍ଭେ କୁହ, ''ଏହା ଉତ୍ତମ ଅଂବା ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ ଯାହା ଧର୍ମଭୀରୁମାନଙ୍କ ପାଇଁ ଅଙ୍ଗୀକୃତ ହୋଇଅଛି ତାହା ଉତ୍ତମ ? ଏହାହିଁ ସେମାନଙ୍କ ପାଇଁ ପୁରସ୍କାର ଓ ପ୍ରତ୍ୟାବର୍ତ୍ତନର ସ୍ଥାନ ହେବ । ୧୫ ।

"ସେମାନେ ତନ୍ମଧ୍ୟରେ ଯାହା ଚାହିଁବେ ସେ ସବୁ ଚିରସ୍ଥାୟୀ ଭାବରେ ପାଇବେ, ଏହା ଅଙ୍ଗୀକାର ହିଁ ତୁମ୍ଭର ପାଳନକର୍ତ୍ତାଙ୍କଠାରୁ ପାଇବା ପାଇଁ ପ୍ରାର୍ଥନା କରିବା ଉଚିତ ।"୧୬ ।

ଏବଂ ଯେଉଁଦିନ ପରମେଶ୍ୱର ସେମାନଙ୍କୁ ଏବଂ ପରମେଶ୍ୱରଙ୍କ ପରିବର୍ତ୍ତେ ସେମାନେ ଯେଉଁମାନଙ୍କର ଉପାସନା କରନ୍ତି ସେମାନଙ୍କୁ ଏକତ୍ରିତ କରିବେ, ତାପରେ ପଚାରିବେ "ତୁମ୍ଭେମାନେ କଅଣ ଆମ୍ଭର ଏହି ସେବକମାନଙ୍କୁ ବିଭ୍ରାନ୍ତ କରିଥିଲ ଅଥବା ସେମାନେ ନିଜେ ପଥଭ୍ରଷ୍ଟ ହୋଇଥିଲେ ?୧୭।

ସେମାନେ କହିବେ, "ତୁମ୍ଭେହିଁ ପବିତ୍ର । ଏହା ଆମ୍ଭମାନଙ୍କ ପକ୍ଷରେ ଉପଯୁକ୍ତ ନୁହେ ଯେ ଆମ୍ଭେମାନେ ତୁମ୍ଭ ପରିବର୍ତ୍ତେ ଅନ୍ୟ ଅଭିଭାବକ ଗ୍ରହଣ କରିବୁଁ ; କିନ୍ତୁ ତୁମ୍ଭେ ସେମାନଙ୍କୁ ଏବଂ ସେମାନଙ୍କର ପୂର୍ବପୁରୁଷମାନଙ୍କୁ ଏତେ ଅଧିକ ସୁଖ ସମ୍ପଦ ଦାନ କରିଥିଲ ଯେ ସେମାନେ ତୁମ୍ଭର ସ୍ମରଣ ଭୁଲିଯାଇଥିଲେ, ଏବଂ ସେମାନେ ଧ୍ୱଂସୋନ୍ମୁଖ ସମ୍ପ୍ରଦାୟ ହୋଇଥିଲେ" ।୧୮।

ପରମେଶ୍ୱର କହିବେ ''ଅତଏବ ତୁମ୍ଭେମାନେ ଯାହା କହୁଅଛ ସେ ସମ୍ବନ୍ଧରେ ସେମାନେ ତୁମ୍ଭମାନଙ୍କୁ ମିଥ୍ୟାବାଦୀ ପ୍ରମାଣ କରିଅଛନ୍ତି; ସୁତରାଂ ତୁମ୍ଭେମାନେ ଶାସ୍ତି ନିବାରଣ କରିବାକୁ ଅଥବା ସାହାଯ୍ୟ କରିବାକୁ ସମର୍ଥ ହେବ ନାହିଁ;" ପରନ୍ତୁ ଏବଂ ତୁମ୍ଭମାନଙ୍କ ମଧ୍ୟରେ ଯେ ଅତ୍ୟାଚାର କରେ ଆମ୍ଭେ ତାହାକୁ ବୃହତ୍ତର ଶାସ୍ତି ଆସ୍ୱାଦନ କରାଇବୁଁ ।୧୯।

ଏବଂ ଆମ୍ଭେ ତୁମ୍ଭ ପୂର୍ବେ ଏପରି ପ୍ରେରିତ ପୁରୁଷମାନଙ୍କୁ ପ୍ରେରଣ କରିନାହୁଁ ଯେଉଁମାନେ ଖାଦ୍ୟ ଭକ୍ଷଣ କରୁ ନ ଥିଲେ ଏବଂ ବଜାରମାନଙ୍କରେ ଗମନାଗମନ କରୁ ନ ଥିଲେ ଏବଂ ଆମ୍ଭେ ତୁମ୍ଭମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟକେତେକଙ୍କ ପାଇଁ ପରୀକ୍ଷାସ୍ଥଳ କରିଅଛୁଁ ; ତୁମ୍ଭେମାନେ କଅଣ ଧୈର୍ଯ୍ୟ ଧାରଣ କରି ପାରିବ ନାହିଁ ? ଏବଂ ତୁମ୍ଭର ପାଳନକର୍ତ୍ତା ପ୍ରତ୍ୟକ୍ଷକାରୀ ।୨୦।

## ଊନବିଂଶ ଭାଗ

## ୩ୟ ବିଭାଗ

ଏବଂ ଯେଉଁମାନେ ଆମ୍ଭର ସାକ୍ଷାତ କାମନା କରନ୍ତି ନାହିଁ ସେମାନେ କହନ୍ତି, "କାହିଁକି ଆମ୍ଭମାନଙ୍କ ପ୍ରତି ସ୍ୱର୍ଗଦୂତମାନେ ଅବତୀର୍ଣ୍ଣ ହୋଇନାହାନ୍ତି ଅଥବା ଆମ୍ଭେମାନେ ଆମ୍ଭମାନଙ୍କର ପାଳନକର୍ତ୍ତାଙ୍କୁ ଦେଖି

---

୧୫ । ୧୬ । ବିଶ୍ୱାସକାରୀମାନଙ୍କର ପରଲୋକର ପୁରସ୍କାର ସହିତ ଅବିଶ୍ୱାସକାରୀମାନଙ୍କର ପରଲୋକର ଶାସ୍ତି ତୁଳନା କରି ପରମେଶ୍ୱର ଆଦେଶ କରୁଅଛନ୍ତି କି ବିଶ୍ୱସକାରୀମାନେ ପାର୍ଥିବ ସୁଖ ପରିବର୍ତ୍ତେ ପରଲୋକର ସୁଖ ପାଇଁ ପ୍ରାର୍ଥନା କରିବା ଉଚିତ ।

୧୭ । ୧୯ । ଏହି ଶ୍ଳୋକମାନଙ୍କରେ ଅଂଶୀବାଦୀମାନଙ୍କର ଓ ସେମାନଙ୍କର ଅଂଶୀ ଉପାସ୍ୟମାନଙ୍କର ପରଲୋକର ଅବସ୍ଥା ବର୍ଣ୍ଣିତ ହୋଇଅଛି । ଅଂଶୀବାଦୀମାନେ ଯାହା କହିବେ ଅଂଶୀଉପାସ୍ୟମାନେ ସେମାନଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ତାହା ଅସ୍ୱୀକାର କରିବେ । ସୁତରାଂ ସେମାନେ ଶାସ୍ତି ଭୋଗ କରିବେ ।

୨୦ । ଏହି ଶ୍ଳୋକରେ ୭ମ ଶ୍ଳୋକରେ ବର୍ଣ୍ଣିତ ଅବିଶ୍ୱାସକାରୀମାନଙ୍କ ଆପତ୍ତିର ଉତ୍ତର ଦିଆଯାଇଅଛି । ସବୁ ଯୁଗରେ ମନୁଷ୍ୟମାନଙ୍କର ଉପଦେଷ୍ଟା ଧର୍ମପ୍ରବର୍ତ୍ତକ ମନୁଷ୍ୟ ରୂପରେ ପ୍ରେରିତ ହୁଅନ୍ତି । ୭ମ ଅଧ୍ୟାୟ ୬୩ ଶ୍ଳୋକ, ୧୬ ଅଧ୍ୟାୟ ୪୩ ଶ୍ଳୋକ ଓ ୧୭ ଅଧ୍ୟାୟ ୯୫ ଶ୍ଳୋକ ଦେଖ । ସୁତରାଂ ଅବିଶ୍ୱାସକାରୀମାନଙ୍କର ଅଯଥା ଦୋଷାରୋପରେ ଦୁଃଖିତ ନହୋଇ ବିଶ୍ୱାସକାରୀମାନଙ୍କର ଧୈର୍ଯ୍ୟ ଅବଲମ୍ବନ କରିବା ଆବଶ୍ୟକ ।

ପାରୁନାହୁଁ ?" ନିଶ୍ଚୟ ସେମାନେ ନିଜ ସମ୍ବନ୍ଧରେ ଅହଙ୍କାର କରୁଅଛନ୍ତି ଏବଂ ଗୁରୁତର ବିଦ୍ରୋହରେ ବିଦ୍ରୋହାଚରଣ କରୁଅଛନ୍ତି ।୨୧।

ଯେଉଁଦିନ ସେମାନେ ସ୍ୱର୍ଗଦୂତମାନଙ୍କୁ ଦେଖିବେ, ସେଦିନ ଅପରାଧୀମାନଙ୍କ ପାଇଁ କୌଣସି ସୁସମ୍ବାଦ ହେବନାହିଁ ଏବଂ ସ୍ୱର୍ଗଦୂତମାନେ କହିବେ, "ତୁମ୍ଭମାନଙ୍କ ପାଇଁ ଅଲଙ୍ଘନୀୟ ପ୍ରତିବନ୍ଧକ ରହିଅଛି" ।୨୨।

ଏବଂ ସେମାନେ ଯେଉଁ କୃତକର୍ମମାନ କରିଥିଲେ ଆମ୍ଭେ ସେଥିପ୍ରତି ଅଗ୍ରସର ହେବୁ, ତାପରେ ଆମ୍ଭେ ସେସବୁ କର୍ମକୁ ବିକ୍ଷିପ୍ତ ଓ ବିଚୂର୍ଣ୍ଣ କରିଦେବୁଁ ।୨୩।

ସେଦିନ ସ୍ୱର୍ଗୋଦ୍ୟାନର ଅଧିବାସୀମାନେ ମଙ୍ଗଳମୟ ଶାନ୍ତି ଧାମରେ ଏବଂ ଉତ୍ତମ ବିଶ୍ରାମ ସ୍ଥାନରେ ଅବସ୍ଥାନ କରିବେ ।୨୪।

ଏବଂ ଯେଉଁଦିନ ମେଘମାଳା ସହିତ ଆକାଶ ବିଦୀର୍ଣ୍ଣ ହେବ ଏବଂ ସ୍ୱର୍ଗଦୂତମାନେ ଅବତୀର୍ଣ୍ଣ କରାହେବେ, ।୨୫।

ସେଦିନ ଦୟାମୟଙ୍କର ପ୍ରକୃତ ଆଧିପତ୍ୟହେବ; ଏବଂ ଅବିଶ୍ୱାସକାରୀମାନଙ୍କ ପାଇଁ ସେଦିନ ଅତି କଠୋର ହେବ ।୨୬।

ଏବଂ ସେଦିନ ଅତ୍ୟାଚାରୀ ନିଜ ହସ୍ତଦ୍ୱୟ କାମୁଡ଼ି କହିବ, 'ହାୟ ! ଆମ୍ଭେ ଯଦି ପ୍ରେରିତ-ପୁରୁଷଙ୍କ ସହିତ ପଥ ଅନୁସରଣ କରିଥାଆନ୍ତୁ ! ।୨୭।

"ଧିକ୍ ଆମ୍ଭକୁ ! ଯଦି ଆମ୍ଭେ ଅମୁକକୁ ବନ୍ଧୁରୂପେ ଗ୍ରହଣ କରି ନ ଥାନ୍ତୁ ।୨୮।

"ନିଶ୍ଚୟ ଆମ୍ଭନିକଟ ସ୍ମାରକଗ୍ରନ୍ଥ ଆସିବାପରେ ସେ ଆମ୍ଭକୁ ସେଥିରୁ ବିଭ୍ରାନ୍ତ କରିଥିଲା; ଏବଂ ଶଇତାନ ମନୁଷ୍ୟପାଇଁ ପ୍ରତାରଣାକାରୀ ।"୨୯।

ଏବଂ ପ୍ରେରିତପୁରୁଷ କହିବେ, "ହେ ଆମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଆମ୍ଭର ସମ୍ପ୍ରଦାୟ ଏହି କୋରାନକୁ ପରିବର୍ଜ୍ଜନୀୟ ମନେ କରିଅଛନ୍ତି" ।୩୦।

---

୨୧ । ଅବିଶ୍ୱାସକାରୀମାନେ ଇହ ଜୀବନରେ ସ୍ୱର୍ଗଦୂତ କିମ୍ବା ପରମେଶ୍ୱରଙ୍କୁ ଦେଖିବାର ଇଚ୍ଛା କରନ୍ତି । ସେମାନେ ଅହଙ୍କାରୀ ଓ ବିଦ୍ରୋହୀ । କାରଣ ପାର୍ଥିବ ଜୀବନରେ ସ୍ୱର୍ଗଦୂତମାନଙ୍କୁ କିମ୍ବା ପରମେଶ୍ୱରଙ୍କୁ ସ୍ୱଚକ୍ଷୁରେ ଦେଖିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ।

୨୨ । ଅଲଙ୍ଘନୀୟ ପ୍ରତିବନ୍ଧକ—ଶେଷ ବିଚାର ଦିନ ସ୍ୱର୍ଗଦୂତମାନେ ଅପରାଧୀମାନଙ୍କୁ କହିବେ, "ସ୍ୱର୍ଗ, କ୍ଷମା, ଓ ଆନନ୍ଦ ତୁମ୍ଭମାନଙ୍କ ପାଇଁ ବନ୍ଦ କରାଯାଇଅଛି; ତୁମ୍ଭେମାନେ ତାହା ପାଇପାରିବ ନାହିଁ ।"

୨୩ । ବିକ୍ଷିପ୍ତ ଓ ବିଚୂର୍ଣ୍ଣ କରିଦେବୁଁ—ବିଫଳ ଓ ନଷ୍ଟ କରିଦେବୁଁ ଅର୍ଥାତ୍ ସେମାନେ ସେଥିରୁ କିଛି ଉପକାର ପାଇପାରିବେ ନାହିଁ ।

୨୪ । ୨୬ । ଯେଉଁଦିନ, ସେଦିନ—ଅର୍ଥାତ୍ ଶେଷ ବିଚାର ଦିନ ।

୨୭-୨୯ । ପୁନରୁତ୍ଥାନ ଦିନ ଅବିଶ୍ୱାସକାରୀମାନେ ସେମାନଙ୍କର ଅବିଶ୍ୱାସ ପାଇଁ ବିଶେଷ ଅନୁତାପ କରିବେ । ମାତ୍ର ସେ ଦିନ ଅନୁତାପ କରିବା ଦ୍ୱାରା କିଛି ଉପକାର ହେବ ନାହିଁ ।
ଅମୁକକୁ—ଶଇତାନକୁ । ସ୍ମାରକ ଗ୍ରନ୍ଥ—ପବିତ୍ର କୋରାନ ।

୩୦ । ଶେଷ ବିଚାର ଦିନ ମହାପୁରୁଷ ମୋହମ୍ମଦ ସାକ୍ଷ୍ୟ ଦେବେ ଯେ ତାଙ୍କର ଅବିଶ୍ୱାସକାରୀ ସମ୍ପ୍ରଦାୟ ପବିତ୍ର କୋରାନକୁ ପରିବର୍ଜ୍ଜନୀୟ ମନେକରିଥିଲେ ।
ଆମ୍ଭର ସମ୍ପ୍ରଦାୟ—ତତ୍କାଳ କୋରେଶ ସମ୍ପ୍ରଦାୟ ଯେଉଁମାନେ ପବିତ୍ର କୋରାନ ପ୍ରତି ଅବିଶ୍ୱାସ କରିଥିଲେ ।

ଏବଂ ଏହିପରି ଅମ୍ଭେ ପ୍ରତ୍ୟେକ ଧର୍ମପ୍ରବର୍ତ୍ତକଙ୍କ ପାଇଁ ଅପରାଧୀମାନଙ୍କ ମଧ୍ୟରୁ ଶତ୍ରୁ ସୃଷ୍ଟି କରିଅଛୁଁ, ଏବଂ ତୁମ୍ଭର ପାଳନକର୍ତ୍ତା ପଥପ୍ରଦର୍ଶନକାରୀ ଓ ସାହାଯ୍ୟକାରୀ ରୂପେ ଯଥେଷ୍ଟ ।୩୧।

ଏବଂ ଅବିଶ୍ୱାସକାରୀମାନେ କହନ୍ତି, "କାହିଁକି ତାଙ୍କ ପ୍ରତି ସମ୍ପୂର୍ଣ୍ଣ କୋରାନ ଏକସଙ୍ଗେ ଅବତୀର୍ଣ୍ଣ ହୋଇନାହିଁ ?" ଏଥିପାଇଁ ଯେ, ଅମ୍ଭେ ଏହାଦ୍ୱାରା ତୁମ୍ଭର ଅନ୍ତର ସୁପ୍ରତିଷ୍ଠିତ କରିବୁଁ ଏବଂ ଅମ୍ଭେ ଏହାକୁ କ୍ରମେ କ୍ରମେ ଅବତୀର୍ଣ୍ଣ କରିଅଛୁଁ ।୩୨।

ଏବଂ ଅମ୍ଭେ ତୁମ୍ଭ ନିକଟ ସତ୍ୟ ସହିତ ଓ ଉତ୍କୃଷ୍ଟ ବ୍ୟାଖ୍ୟା ସହିତ ଯାହା ଅବତୀର୍ଣ୍ଣ କରିଅଛୁଁ ତାହାଛଡ଼ା ସେମାନେ ତୁମ୍ଭନିକଟ କୌଣସି ଦୃଷ୍ଟାନ୍ତ ଆଣି ପାରିବେ ନାହିଁ ।୩୩।

ସେମାନେ ଅଧୋମୁଖରେ ନରକରେ ଏକତ୍ରିତ କରାହେବେ, ଏହିମାନଙ୍କର ବାସସ୍ଥାନ ନିକୃଷ୍ଟତର ଏବଂ ଏହିମାନେହିଁ ପଥଭ୍ରଷ୍ଟ ।୩୪।

## ୪ର୍ଥ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ମୂସାଙ୍କୁ ଗ୍ରନ୍ଥ ପ୍ରଦାନ କରିଥିଲୁଁ ଏବଂ ତାଙ୍କର ଭାଇ ହାରୁନଙ୍କୁ ତାଙ୍କର ସହକାରୀ ନିଯୁକ୍ତ କରିଥିଲୁଁ ।୩୫।

ତାପରେ ଅମ୍ଭେ କହିଥିଲୁଁ, "ତୁମ୍ଭେ ଦୁହେଁ ସେହି ସମ୍ପ୍ରଦାୟ ଅଡ଼କୁ ଗମନକର ଯେଉଁମାନେ ଅମ୍ଭର ନିଦର୍ଶନମାନଙ୍କ ପ୍ରତି ମିଥ୍ୟାରୋପ କରୁଅଛନ୍ତି", ତାପରେ ଅମ୍ଭେ (ସେମାନଙ୍କୁ) ସେମାନଙ୍କ ଅବାଧ୍ୟତା ଯୋଗୁଁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଦେଇ ଥିଲୁଁ ।୩୬।

ଏବଂ ନୂହଙ୍କ ସମ୍ପ୍ରଦାୟ ଯେତେବେଳେ ପ୍ରେରିତ ପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ଅମ୍ଭେ ସେତେବେଳେ ସେମାନଙ୍କୁ ଜଳମଗ୍ନ କରି ଦେଇଥିଲୁଁ ଏବଂ ସେମାନଙ୍କୁ ମାନବମଣ୍ଡଳୀ ପାଇଁ ନିଦର୍ଶନ କରିଥିଲୁଁ; ଏବଂ ଅମ୍ଭେ ଅତ୍ୟାଚାରୀମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଅଛୁଁ ।୩୭।

---

୩୨ । ଅବିଶ୍ୱାସକାରୀମାନେ ଆପତ୍ତି କରୁଥିଲେ କି ସମ୍ପୂଦାୟ କୋରାନ ଗ୍ରନ୍ଥ ଏକ ସମୟରେ ଅବତୀର୍ଣ୍ଣ ନ ହୋଇ କ୍ରମେ କ୍ରମେ କାହିଁକି ଅବତୀର୍ଣ୍ଣ ହୋଇଅଛି । ଏହାର ଉତ୍ତରରେ ପରମେଶ୍ୱର ଆଦେଶ କରୁଅଛନ୍ତି କି ସମ୍ପୂଦାୟ କୋରାନ ଗ୍ରନ୍ଥ ଏକ ସମୟରେ ଅବତୀର୍ଣ୍ଣ ହେଲେ ତାକୁ ମନେରଖିବା, ହୃଦୟଙ୍ଗମ କରିବା ଏବଂ ଲୋକମାନଙ୍କ ଆଗରେ ପ୍ରଚାର କରିବା ବିଶେଷ କଷ୍ଟକର ହେବ । ଏଥିପାଇଁ ତାକୁ କ୍ରମେ କ୍ରମେ ଅବତୀର୍ଣ୍ଣ କରାଯାଇଅଛି ଯେପରିକି ତାହା ପ୍ରେରିତ ପୁରୁଷଙ୍କ ଅନ୍ତରରେ ସୁରକ୍ଷିତ ଓ ସୁପ୍ରତିଷ୍ଠିତ ହେବ ଏବଂ ଲୋକମାନଙ୍କୁ ଉପଦେଶ ଦେବା ସହଜ ହେବ ।

୩୩ । ପବିତ୍ର କୋରାନ ଗ୍ରନ୍ଥରେ ଯାହା ବର୍ଣ୍ଣିତ ହୋଇଅଛି ତାହା ସତ୍ୟ ଏବଂ ଭଲରୂପେ ବ୍ୟାଖ୍ୟା କରାଯାଇଅଛି ଯେପରି ସମସ୍ତେ ବୁଝିପାରିବେ । ଏଥିରେ ଥିବା କୌଣସି ବିଷୟ ମିଥ୍ୟା ବୋଲି କେହି ପ୍ରମାଣ କରିପାରିବେ ନାହିଁ ।

୩୪ । ସେମାନେ—ଅବିଶ୍ୱାସକାରୀମାନେ ।

୩୫—୩୯ । ଏହି ଶ୍ଲୋକମାନଙ୍କରେ ମହାପୁରୁଷ ମୋହମ୍ମଦଙ୍କ ପୂର୍ବବର୍ତ୍ତୀ କେତେକ ଅବାଧ୍ୟ ସମ୍ପ୍ରଦାୟଙ୍କ ବିଷୟ ସଂକ୍ଷେପରେ ଉଲ୍ଲେଖ କରାଯାଇଅଛି । ସେମାନଙ୍କ ବିସ୍ତୃତ ବିବରଣ ପୂର୍ବ ଅଧ୍ୟାୟମାନଙ୍କରେ ଦିଆଯାଇଅଛି ।

୩୬ । ସେହି ସମ୍ପ୍ରଦାୟ—ଫେରଅଉନଙ୍କ ସମ୍ପ୍ରଦାୟ ।

ଏବଂ ଆଦ୍ ଓ ସମୁଦ୍ ଓ 'ରସ୍' କୂପ ନିକଟରେ ବାସକରୁଥିବା ସମ୍ପ୍ରଦାୟ ଏବଂ ସେମାନଙ୍କର ମଧ୍ୟବର୍ତ୍ତୀ ବହୁ ସମ୍ପ୍ରଦାୟ, ।୩୮।

ଏବଂ ପ୍ରତ୍ୟେକ ପାଇଁ ଆମ୍ଭେ ଦୃଷ୍ଟାନ୍ତମାନ ପ୍ରଦର୍ଶିତ କରିଅଛୁଁ ଏବଂ ପ୍ରତ୍ୟେକକୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିଦେଇ ଅଛୁଁ ।୩୯।

ଏବଂ ନିଶ୍ଚୟ ସେମାନେ ସେହି ନଗର ଦେଇ ଯାତାୟାତ କରୁଅଛନ୍ତି ଯାହାଉପରେ ଆମ୍ଭେ ନିକୃଷ୍ଟ (ଶିଳା) ବୃଷ୍ଟି କରିଥିଲୁଁ; ତାହାହେଲେ ସେମାନେ କଅଣ ଏହାକୁ ଲକ୍ଷ୍ୟ କରିନାହାନ୍ତି ? ନା, ସେମାନେ ପୁନରୁତ୍‌ଥାନ ଆକାଂକ୍ଷା କରୁନାହାନ୍ତି ।୪୦।

ଏବଂ ଯେତେବେଳେ ସେମାନେ ତୁମ୍ଭଙ୍କୁ ଦେଖନ୍ତି, ସେତେବେଳେ ସେମାନେ ତୁମ୍ଭଙ୍କୁ ହାସ୍ୟାସ୍ପଦ ମନେ କରନ୍ତି (ଏବଂ କହନ୍ତି) "ଏ ଲୋକଟା କଅଣ ସେହି ଯାହାକୁ ପରମେଶ୍ୱର ପ୍ରେରିତପୁରୁଷ ରୂପେ ପ୍ରେରଣ କରିଅଛନ୍ତି ? ।୪୧।

"ସେତ ଆମ୍ଭମାନଙ୍କୁ ଆମ୍ଭମାନଙ୍କ ଉପାସ୍ୟମାନଙ୍କଠାରୁ ବିଭ୍ରାନ୍ତ କରିଦେଇ ଥାଆନ୍ତା, ଯଦି ଆମ୍ଭେମାନେ ସେମାନଙ୍କ ସମ୍ବନ୍ଧରେ ଧୈର୍ଯ୍ୟ ଧାରଣକରି ନଥାଆନ୍ତୁ" । ଏବଂ ଯେତେବେଳେ ଶାସ୍ତି ଦେଖିବେ ସେତେବେଳେ ସେମାନେ ଜାଣି ପାରିବେ ଯେ, ସୁପଥରୁ କିଏ ଅଧିକ ବିଭ୍ରାନ୍ତ ହୋଇଅଛୁ ।୪୨।

ତୁମ୍ଭେ କଅଣ ତାହାର ଅବସ୍ଥା ପ୍ରତି ଲକ୍ଷ୍ୟ କରିଅଛ ଯେ ନିଜ ପ୍ରବୃତ୍ତିକୁ ଉପାସ୍ୟ ରୂପେ ଗ୍ରହଣ କରିଅଛୁ ? ତାପରେ ତୁମ୍ଭେ କଅଣ ତାହାର ଅଭିଭାବକ ହୋଇ ପାରିବ ।୪୩।

---

୩୮ । ରସ୍—ମଦୟନ ନିକଟବର୍ତ୍ତୀ ଏକ ବୃହତ କୂପର ନାମ ରସ ଥିଲା । ତାହାର ଚତୁର୍ଦ୍ଦିଗରେ ଥିବା ଲୋକମାନେ ପୌତ୍ତଳିକ ଥିଲେ । ମହାପୁରୁଷ ଶୋୟେବ ସେମାନଙ୍କୁ ଉପଦେଶ ଦେବାକୁ ଯାଇଥିଲେ, ମାତ୍ର ସେମାନେ ତାଙ୍କ କଥା ଶୁଣିଲେ ନାହିଁ । ପରିଣାମରେ ପ୍ରବଳ ଭୂମିକମ୍ପରେ କୂପ ଧସି ଗଲା; ବସତି ଛାରଖାର ହେଲା ଏବଂ ଲୋକମାନେ ଧ୍ୱଂସ ପ୍ରାପ୍ତ ହେଲେ ।

୪୦ । ସେମାନେ—ମକ୍‌କାବାସୀ ବିଧର୍ମୀ ଲୋକମାନେ ।

ଏହି ଶ୍ଳୋକରେ ଅବାଧ୍ୟ ଲୂତ ସମ୍ପ୍ରଦାୟର ବିଷୟ ଉଲ୍ଲେଖ କରାଯାଇଅଛି । ସେମାନଙ୍କ ନଗରର ଧ୍ୱଂସାବଶେଷ ମରୁହ୍ରଦ ରୂପରେ ବର୍ତ୍ତମାନ ସୃରିଆ ପ୍ରଦେଶରେ ରହିଅଛି, ଯାହାକୁ ଅବିଶ୍ୱାସକାରୀମାନେ ବାଣିଜ୍ୟ ବ୍ୟବସାୟ ଉଦ୍ଦେଶ୍ୟରେ ଯିବା ଆସିବା ସମୟରେ ଦେଖୁଅଛନ୍ତି । ମାତ୍ର ସେମାନେ ଏଥିରୁ ଶିକ୍ଷା ଲାଭ କରୁନାହାନ୍ତି, କାରଣ ସେମାନେ ପରଲୋକରେ ପୁନରୁତ୍‌ଥାନ ସମ୍ବନ୍ଧରେ ବିଶ୍ୱାସ କରୁନାହାନ୍ତି ।

୪୧ । ସେମାନେ—ମକ୍‌କାବାସୀ ବିଧର୍ମୀ ଲୋକମାନେ ।

ତୁମ୍ଭଙ୍କୁ—ମହାପୁରୁଷ ମୋହମ୍ମଦଙ୍କୁ ।

୪୨ । ବିଧର୍ମୀମାନେ କହୁଥିଲେ, "ଯଦି ଆମ୍ଭେମାନେ ଦୃଢ଼ତା ଅବଲମ୍ବନ କରି ନଥାନ୍ତୁ ତେବେ ସେ (ଅର୍ଥାତ୍ ମହାପୁରୁଷ ମୋହମ୍ମଦ) ଆମ୍ଭମାନଙ୍କୁ ଆମ୍ଭମାନଙ୍କର ଦେବତାମାନଙ୍କ ଉପାସନାରୁ ଭୁଲାଇ ଦେଇଥାନ୍ତେ ।" ଅର୍ଥାତ୍ ବିଧର୍ମୀମାନେ ମନେ କରୁଥିଲେ ସେମାନେ ସତ୍‌ପଥରେ ଅଛନ୍ତି ଏବଂ ପ୍ରେରିତ ପୁରୁଷ ସେମାନଙ୍କୁ ବିଭ୍ରାନ୍ତ କରିବାର ଚେଷ୍ଟା କରୁଅଛନ୍ତି । ତାହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି ଯେ ମୃତ୍ୟୁପରେ ଯେତେବେଳେ ଏମାନେ ଶାସ୍ତି ଭୋଗ କରିବେ ସେତେବେଳେ ଜାଣିପାରିବେ କିଏ ସୁପଥରେ ଅଛି ଅଉ କିଏ ବିଭ୍ରାନ୍ତ ।

୪୩ । ତାହାକୁ—ଏକବଚନ ବ୍ୟବହୃତ ହୋଇଥିଲେ ମଧ୍ୟ ଏହା ସାଧାରଣ ଭାବରେ ସମସ୍ତ ବିଧର୍ମୀମାନଙ୍କ ପ୍ରତି

ଅଥବା ତୁମ୍ଭେ କଅଣ ମନେକର ଯେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଶ୍ରବଣ କରିବାକୁ ବା ହୃଦୟଙ୍ଗମ କରିବାକୁ ସକ୍ଷମ ? ସେମାନେ ଚତୁଷ୍ପଦ ପଶୁବ୍ୟତୀତ ଅଧିକନ୍ତୁ ନୁହନ୍ତି, ବରଂ ସେହିମାନେହିଁ ସୁପଥରୁ ଅଧିକ ବିଭ୍ରାନ୍ତ ।୪୪।

## ୫ମ ବିଭାଗ

ତୁମ୍ଭେ କଅଣ ନିଜର ପାଳନକର୍ତ୍ତାଙ୍କ ପ୍ରତି ଲକ୍ଷ୍ୟ କରିନାହଁ ଯେ ସେ କିପରି ଛାୟାକୁ ପ୍ରସାରିତ କରନ୍ତି ; ଏବଂ ଯଦି ସେ ଇଚ୍ଛାକରି ଥାନ୍ତେ ତେବେ ସେ ତାହାକୁ ସ୍ଥିରକରି ଦେଇଥାନ୍ତେ; ତାପରେ ଅମ୍ଭେ ସୂର୍ଯ୍ୟକୁ ତାହାଉପରେ ପଥନିର୍ଦ୍ଦେଶକ କରି ଦେଇଅଛୁଁ ।୪୫।

ତାପରେ ଅମ୍ଭେ ତାହାକୁ ଅମ୍ଭଆଡ଼କୁ କ୍ରମେ କ୍ରମେ ଆକର୍ଷଣ କରୁଁ ।୪୬।

ଏବଂ ସେହି ତୁମ୍ଭମାନଙ୍କ ପାଇଁ ରାତ୍ରିକୁ ଆବରଣ ସ୍ୱରୂପ ଏବଂ ନିଦ୍ରାକୁ ବିଶ୍ରାମ ସ୍ୱରୂପ କରିଅଛନ୍ତି ଏବଂ ଦିନକୁ ପୁଣି ଉଠିବା ପାଇଁ କରିଅଛନ୍ତି ।୪୭।

ଏବଂ ସେ ନିଜ କରୁଣାର ଅଗ୍ରଦୂତ ସ୍ୱରୂପ ବାୟୁରାଶିକୁ ପ୍ରେରଣ କରନ୍ତି ଏବଂ ଅମ୍ଭେ ଆକାଶରୁ ବିଶୁଦ୍ଧ ଜଳ ଅବତୀର୍ଣ୍ଣ କରୁଁ ।୪୮।

ଯେପରି ଅମ୍ଭେ ଏହାଦ୍ୱାରା ନିର୍ଜୀବ ଭୂତଳକୁ ସଜୀବ କରୁଁ ଏବଂ ଅମ୍ଭର ସୃଷ୍ଟ ଜୀବଜନ୍ତୁ ଓ ମନୁଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ତାହା ପାନ କରାଉଁ ।୪୯।

ଏବଂ ନିଶ୍ଚୟ ଅମ୍ଭେ ଏ ବିଷୟ ସେମାନଙ୍କ ମଧ୍ୟରେ ସୁପ୍ରକାଶିତ କରିଅଛୁଁ ଯେପରି ସେମାନେ ଉପଦେଶ ଲାଭ କରିବେ; କିନ୍ତୁ ଅଧିକାଂଶ ମାନବ ଅସ୍ୱୀକାର ଛଡ଼ା ସ୍ୱୀକାର କରନ୍ତି ନାହିଁ ।୫୦।

---

ଲକ୍ଷ୍ୟ କରାଯାଇଅଛି । ସେମାନେ ନିଜ ନିଜ କୁପ୍ରବୃତ୍ତି ଦ୍ୱାରା ଚାଳିତ ହୋଇ ସତ୍ୟ ଧର୍ମକୁ ଅଗ୍ରାହ୍ୟ କରୁଅଛନ୍ତି । ସେମାନଙ୍କୁ ଉପଦେଶ ଦ୍ୱାରା ସତ୍‌ପଥକୁ ଆଣିବା ସମ୍ଭବ ନୁହେଁ ।

୪୪ । କାରଣ ସେମାନେ ପଶୁପରି ବରଂ ତାହାଠାରୁ ହୀନ । ସେମାନେ ଚକ୍ଷୁ ଥାଇ ଦେଖିପାରନ୍ତି ନାହିଁ, କାନ ଥାଇ ଉପଦେଶ ଶ୍ରବଣ କରନ୍ତି ନାହିଁ ଏବଂ ହୃଦୟ ଥାଇ ମଧ୍ୟ ସତ୍ୟ ଗ୍ରହଣ କରିବାର ଶକ୍ତି ରଖନ୍ତି ନାହିଁ । ସେମାନେ ବିଭ୍ରାନ୍ତ ।

୪୫-୪୬ । ପରମେଶ୍ୱର ଯଦି ଇଚ୍ଛା କରିଥାନ୍ତେ ତେବେ ପ୍ରତ୍ୟେକ ବସ୍ତୁର ଛାୟାକୁ ସ୍ଥିର କରି ରଖିଥାନ୍ତେ । ମାତ୍ର ସେ ସୂର୍ଯ୍ୟ ସାହାଯ୍ୟରେ ଛାୟାକୁ କ୍ରମେ କ୍ରମେ ବଢାଇ ଦଅନ୍ତି ଏବଂ କ୍ରମେ କ୍ରମେ ସାନ କରିଦଅନ୍ତି, ଅବଶେଷରେ ତାହା ମୂଳ ବସ୍ତୁର ପାଦ ଦେଶରେ ଲୀନ ହୋଇଯାଏ । ଏଥିରେ ଲୋକମାନଙ୍କ ପାଇଁ ଶିକ୍ଷା ରହିଅଛି । ସେମାନଙ୍କର ଉନ୍ନତି କ୍ରମେ କ୍ରମେ ସାଧିତ ହୁଏ ଏବଂ ଅବନତି ମଧ୍ୟ କ୍ରମେ କ୍ରମେ ସାଧିତ ହୁଏ । ଏବଂ ସେମାନେ କ୍ରମେ କ୍ରମେ ସେମାନଙ୍କର ଆଦି ସ୍ରଷ୍ଟା ପରମେଶ୍ୱରଙ୍କ ଆଡ଼କୁ ଆକୃଷ୍ଟ ହେଉଅଛନ୍ତି ।

୪୮ । କରୁଣା—ଜଳ ବର୍ଷଣ ।
ଦେଖ ଟୀକା ୨୭ ଅଧ୍ୟାୟର ୬୩ ଶ୍ଳୋକ ।

୫୦ । ଦିନ, ରାତି, ନିଦ୍ରା ଓ ଜଳ ବର୍ଷଣ ମନୁଷ୍ୟ ପ୍ରତି ପରମେଶ୍ୱରଙ୍କ କରୁଣା ଅଟେ । ଏଥିରୁ ଶିକ୍ଷା ଲାଭ କରି ପରମେଶ୍ୱରଙ୍କ ପ୍ରତି କୃତଜ୍ଞ ହେବା ଆବଶ୍ୟକ । ମାତ୍ର ଅଧିକାଂଶ ଲୋକ ଅକୃତଜ୍ଞ ଅଟନ୍ତି । ବୃଷ୍ଟି ଜଳ ଯେ କେବଳ ମରୁଭୂମିର ପ୍ରାଣୀମାନଙ୍କ ପାଇଁ ଦରକାର ତାହା ନୁହେଁ ଏହି ଜଳ ସାରା ପୃଥିବୀରେ ଅଳ୍ପ ବହୁତ ସମସ୍ତ ପ୍ରାଣୀଙ୍କୁ ଯୋଗାଇ ଦିଆଯାଉଅଛି ।

ଏବଂ ଯଦି ଅମ୍ଭେ ଇଚ୍ଛା କରିଥାନ୍ତୁ ତେବେ ନିଶ୍ଚୟ (ଏ ଯୁଗରେ ମଧ୍ୟ) ପ୍ରତି ନଗରରେ ଭୟ ପ୍ରଦର୍ଶନକାରୀ ଅବିର୍ଭୂତ କରି ଥାଅନ୍ତୁ, (ମାତ୍ର ଏପରି ନକରି ତୁମ୍ଭଙ୍କୁ ସମୁଦାୟ ଜଗତ ପାଇଁ ଧର୍ମୋପଦେଷ୍ଟା କରି ପଠାଇଅଛୁଁ) ।୫୧।

ଅତଏବ ତୁମ୍ଭେ ଅବିଶ୍ୱାସକାରୀମାନଙ୍କର ଅନୁସରଣ କରନା ଏବଂ ଏହାଦ୍ୱାରା ପ୍ରବଳ ପ୍ରଚେଷ୍ଟାର ସହିତ ସେମାନଙ୍କ ପ୍ରତିରୋଧର ସମ୍ମୁଖୀନ ହୁଅ ।୫୨।

ଏବଂ ସେ ଦୁଇ ସମୁଦ୍ରକୁ ମିଳିତ କରିଅଛନ୍ତି, ଗୋଟିଏ ତୃଷାନିବାରକ ସୁମିଷ୍ଟ ଏବଂ ଅନ୍ୟଟି ପ୍ରଦାହକାରୀ ଲବଣାକ୍ତ ଏବଂ ସେ ଏ ଉଭୟ ମଧ୍ୟରେ ପ୍ରାଚୀର ଓ ସୁଦୃଢ଼ ଅନ୍ତରାୟ ସୃଷ୍ଟି କରି ଅଛନ୍ତି ।୫୩।

ଏବଂ ସେ ଜଳରୁ ମନୁଷ୍ୟକୁ ସୃଷ୍ଟି କରିଅଛନ୍ତି, ତାପରେ ସେ ତାହାପାଇଁ ଶୋଣିତ ସମ୍ପର୍କ ଓ ବୈବାହିକ ସମ୍ପର୍କ କରି ଅଛନ୍ତି, ଏବଂ ତୁମ୍ଭର ପାଳନକର୍ତ୍ତା ସର୍ବଶକ୍ତିମାନ ।୫୪।

ଏବଂ ସେମାନେ ପରମେଶ୍ୱରଙ୍କ ପରିବର୍ତ୍ତେ ତାହାର ଉପାସନା କରନ୍ତି ଯେ ସେମାନଙ୍କର କୌଣସି ଲାଭ ଅଥବା ସେମାନଙ୍କର କୌଣସି କ୍ଷତି କରିପାରେନା, ଏବଂ ଅବିଶ୍ୱାସକାରୀ ତାହାର ପାଳନ-କର୍ତ୍ତାଙ୍କର ବିରୁଦ୍ଧାଚାରୀ ଅଟେ ।୫୫।

ଏବଂ ଅମ୍ଭେ ତୁମ୍ଭଙ୍କୁ ସୁସମ୍ବାଦଦାତା ଓ ଭୟ ପ୍ରଦର୍ଶନକାରୀ ଛଡ଼ା ଅନ୍ୟ କୌଣସି ରୂପେ ପ୍ରେରଣ କରିନାହୁଁ ।୫୬।

---

୫୧ । ପରମେଶ୍ୱର ପ୍ରତି ନଗର ବା ଗ୍ରାମ ପାଇଁ ଜଣେ ଜଣେ ସ୍ୱତନ୍ତ୍ର ଧର୍ମ ପ୍ରବର୍ତ୍ତକ ଅବିର୍ଭୂତ କରି ନାହାନ୍ତି । ମାତ୍ର ସେ ଅନେକ ନଗରମାନଙ୍କ କେନ୍ଦ୍ରସ୍ଥଳୀରେ ଧର୍ମପ୍ରବର୍ତ୍ତକଙ୍କୁ ଅବିର୍ଭୂତ କରିଥିଲେ ଏବଂ ତାଙ୍କର ଅନୁଚର ପ୍ରଚାରକମାନେ ଦୂରବର୍ତ୍ତୀ ସ୍ଥାନମାନଙ୍କୁ ଯାଇ ସେଠାରେ ତାଙ୍କର ଧର୍ମ ପ୍ରଚାର କରିଥିଲେ । ୨୮ ଅଧ୍ୟାୟ ୫୯ ଶ୍ଳୋକ ଦେଖ । ମହାପୁରୁଷ ମୋହମ୍ମଦଙ୍କ ପୂର୍ବେ ଜଗତର ବିଭିନ୍ନ ସମ୍ପ୍ରଦାୟରେ, ଓ ବିଭିନ୍ନ ସମୟରେ ବହୁ ଧର୍ମ ପ୍ରବର୍ତ୍ତକ ପ୍ରେରିତ ପୁରୁଷ ଆସିଥିଲେ ଏବଂ ଧର୍ମ ପ୍ରଚାର କରିଥିଲେ । ଦେଖ ୩୫ ଅଧ୍ୟାୟ ୨୪ ଶ୍ଳୋକ । ସେମାନଙ୍କ ପ୍ରଚାର ସ୍ଥାନ ବିଶେଷରେ ଓ ସମ୍ପ୍ରଦାୟ ବିଶେଷରେ ଆବଦ୍ଧ ଥିଲା । ମାତ୍ର ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସମୁଦାୟ ଜଗତ ପାଇଁ ଏବଂ ସବୁକାଳ ପାଇଁ ଶେଷ ଧର୍ମ ପ୍ରବର୍ତ୍ତକ ରୂପରେ ଆରବର ମକ୍କା ନଗରୀରେ ଅବିର୍ଭୂତ କରିଥିଲେ । ତାଙ୍କର ଅନୁଚର ପ୍ରଚାରକମାନେ ଭିନ୍ନ ଭିନ୍ନ ସ୍ଥାନକୁ ଯାଇ ଏହି ଧର୍ମ ପ୍ରଚାର କରିଥିଲେ । ୩୩ ଅଧ୍ୟାୟ ୪୦ ଶ୍ଳୋକ ଓ ୬୨ ଅଧ୍ୟାୟ ୨ । ୩ ଶ୍ଳୋକ ଓ ତାହାର ଟୀକା ଦେଖ ।

୫୨ । ସେଥିପାଇଁ ମହାପୁରୁଷ ମୋହମ୍ମଦ ତଥା ତାଙ୍କର ଅନୁଚରମାନଙ୍କୁ ନିର୍ଭୟରେ ଅବିଶ୍ୱାସକାରୀ ବିଧର୍ମୀ ଲୋକମାନଙ୍କ ଆଗରେ ପବିତ୍ର କୋରାନର ପ୍ରବଳ ପ୍ରଚାର କରିବା ପାଇଁ ପରମେଶ୍ୱର ଆଦେଶ କରୁଅଛନ୍ତି । ଏହି ପ୍ରଚାର କାର୍ଯ୍ୟକୁ ''ଜେହାଦେ ଅକବର'' ବା ପ୍ରଧାନ ଧର୍ମଯୁଦ୍ଧ କୁହାଯାଇଅଛି ।

୫୩ । ସମୁଦ୍ରରେ ଯେଉଁଠାରେ ନଦୀ ମିଶ୍ରିତ ହୋଇଅଛି ସେହି ନଦୀ ମୁହାଣ ନିକଟରେ ନଦୀ ଜଳ ଓ ସମୁଦ୍ର ଜଳ ମିଶିଗଲା ପରି ଜଣାଯାଏ । ମାତ୍ର ପରମେଶ୍ୱରଙ୍କ ଅପୂର୍ବ ସୃଷ୍ଟି କୌଶଳ ହେତୁ ଏ ଦୁଇ ପ୍ରକାର ଜଳ ମଧ୍ୟରେ ଗୋଟିଏ ସୁଦୃଢ଼ ଅନ୍ତରାୟ ପ୍ରାଚୀର ପରି ରହିଅଛି ଯାହାକି ଏ ଦୁଇ ପ୍ରକାର ଜଳକୁ ପୃଥକ କରୁଅଛି । ତାହାର ଏକ ପାଖର ଜଳ ସୁମିଷ୍ଟ ଏବଂ ଅନ୍ୟ ପାଖର ଜଳ ଲବଣାକ୍ତ । ୨୭ ଅଧ୍ୟାୟ ୬୧ ଶ୍ଳୋକ ଓ ୫୫ ଅଧ୍ୟାୟର ୧୯ ଶ୍ଳୋକ ଓ ଟୀକା ଦେଖ ।

୫୪ । ଜଳରୁ—ଅର୍ଥାତ୍ ଜଳବିନ୍ଦୁ ବୀର୍ଯ୍ୟରୁ ।

ତୁମ୍ଭେ କୁହ, "ଅମ୍ଭେ ଏଥିପାଇଁ ତୁମ୍ଭମାନଙ୍କ ନିକଟରୁ ଏହାଛଡ଼ା ଅନ୍ୟ କୌଣସି ପାରଶ୍ରମିକ ଗୃହୁଁ ନାହୁଁ ଯେ ଯାହା'ର ଇଚ୍ଛା ସେ ନିଜ ପାଳନକର୍ତ୍ତାଙ୍କର ସୁପଥ ଗ୍ରହଣ କରୁ ।" ୫୭।

ଏବଂ ତୁମ୍ଭେ ସେହି ଚିର ଜୀବନ୍ତ ପରମେଶ୍ୱରଙ୍କ ଉପରେ ନିର୍ଭର କର ଯାହାଙ୍କର ମୃତ୍ୟୁ ନାହିଁ ଏବଂ ତାଙ୍କର ପ୍ରଶଂସା ସହିତ ତାଙ୍କର ମହିମା କୀର୍ତ୍ତନ କର, ଏବଂ ସେହି ନିଜ ସେବକମାନଙ୍କର ଅପରାଧମାନଙ୍କୁ ଜାଣିବା ସମ୍ବନ୍ଧରେ ଯଥେଷ୍ଟ ।୫୮।

ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳ ଏବଂ ଏ ଉଭୟମଧ୍ୟରେ ଯାହାକିଛି ଅଛି ତାହାକୁ ଛଅଦିନରେ ସୃଷ୍ଟି କରିଅଛନ୍ତି ଏବଂ ସେ ସିଂହାସନ ଉପରେ ସୁପ୍ରତିଷ୍ଠିତ ଅଛନ୍ତି, ସେହି ଦୟାମୟ, ଅତଏବ ତାଙ୍କ ସମ୍ବନ୍ଧରେ ଅଭିଜ୍ଞମାନଙ୍କୁ ପ୍ରଶ୍ନ କର ।୫୯।

ଏବଂ ଯେତେବେଳେ ସେମାନଙ୍କୁ କୁହାହୁଏ, "ଦୟାମୟଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କର" ,ସେମାନେ କହନ୍ତି, "ଦୟାମୟ କିଏ ? ତୁମ୍ଭେ ଅମ୍ଭମାନଙ୍କୁ ଯାହା ଆଦେଶ କରିବ ଅମ୍ଭେମାନେ କିଏଣ ତାଙ୍କୁହିଁ ସାଷ୍ଟାଙ୍ଗ ପ୍ରଣିପାତ କରିବୁଁ ?" ଏବଂ ଏହାଦ୍ୱାରା ସେମାନଙ୍କର ବିରୋଧ ବର୍ଦ୍ଧିତ ହୁଏ । ୬୦ ।

## ୬ଷ୍ଠ ବିଭାଗ

ସେହି ମଙ୍ଗଳମୟ ଯେ ଆକାଶମଣ୍ଡଳରେ ନକ୍ଷତ୍ରମାନଙ୍କୁ ସୃଷ୍ଟି କରିଅଛନ୍ତି ଏବଂ ସେଥି ମଧ୍ୟରେ ସୂର୍ଯ୍ୟ ଓ ଉଜ୍ଜ୍ୱଳ ଚନ୍ଦ୍ର ସୃଷ୍ଟି କରିଅଛନ୍ତି । ୬୧ ।

ଏବଂ ସେ ପରସ୍ପର ଅଗ୍ରପଶ୍ଚାତ ଗମନକାରୀ ରାତ୍ରି ଓ ଦିନକୁ ତାହାପାଇଁ ସୃଷ୍ଟି କରିଅଛନ୍ତି ଯେ ଏହାକୁ ହୃଦୟଙ୍ଗମ କରିବାକୁ ଇଚ୍ଛା କରେ ଅଥବା କୃତଜ୍ଞତା ପ୍ରକାଶ କରିବାକୁ ଆକାଂକ୍ଷା କରେ । ୬୨ ।

ଏବଂ ସେହିମାନେହିଁ ସେହି ଦୟାମୟଙ୍କ ସେବକବୃନ୍ଦ ଯେଉଁମାନେ ପୃଥିବୀ ଉପରେ ବିନୀତ ଭାବରେ ଗମନ କରନ୍ତି ଏବଂ ଯେତେବେଳେ ଅଜ୍ଞ ଲୋକମାନେ ସେମାନଙ୍କୁ ସମ୍ବୋଧନ କରନ୍ତି ସେତେବେଳେ ସେମାନେ କହନ୍ତି, (ସଲାମ) 'ଶାନ୍ତି' । ୬୩ ।

---

୫୯ । ଛଅ ଦିନରେ ସୃଷ୍ଟି—୭ମ ଅଧ୍ୟାୟର ୫୪ ଶ୍ଳୋକ; ୩୨ ଅଧ୍ୟାୟର ୪ ଶ୍ଳୋକ ଓ ୪୧ ଅଧ୍ୟାୟର ୯-୧୦ ଶ୍ଳୋକ ଓ ଟୀକା ଦେଖ ।

ପ୍ରଶ୍ନକର—ଏତେ ପ୍ରମାଣ ସତ୍ତ୍ୱେ ଯଦି ତୁମ୍ଭେମାନେ ପରମେଶ୍ୱରଙ୍କ ଅସ୍ତିତ୍ୱ ଓ ଏକତ୍ୱରେ ବିଶ୍ୱାସ ନ କରୁଛ, ତେବେ ଯେ କୌଣସି ଅଭିଜ୍ଞ ଲୋକକୁ ପଚାର, ସେ ନିଶ୍ଚୟ କହିବ ଯେ ପରମେଶ୍ୱର ଏକ ଏବଂ ଅଦ୍ୱିତୀୟ ।

୬୦ । ଏହି ଶ୍ଳୋକ ପାଠ ଓ ଶ୍ରବଣ ପରେ ସଙ୍ଗେ ସଙ୍ଗେ ସାଷ୍ଟାଙ୍ଗ ପ୍ରଣିପାତ (ସଜ୍‌ଦା) କରିବା ବିଧେୟ । ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତ କରିବା ବିଶ୍ୱାସକାରୀମାନଙ୍କ କର୍ତ୍ତବ୍ୟ । ଅବିଶ୍ୱାସକାରୀ ବିଧର୍ମୀମାନଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିବା ପାଇଁ କହିଲେ, ସେମାନେ ବିରୁଦ୍ଧାଚରଣ କରୁଥିଲେ ।

୬୨ । ଅଗ୍ର ପଶ୍ଚାତ ଗମନକାରୀ—ରାତ୍ରି ପରେ ଦିନ ପୁଣି ଦିନ ପରେ ରାତ୍ରି ଏହିପରି କ୍ରମାଗତ ଚାଲିଥିବା ।

୬୩-୬୮ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱରଙ୍କ ପ୍ରକୃତ ସେବକମାନଙ୍କର କେତେଗୁଡ଼ିଏ ଲକ୍ଷଣ ଦିଆଯାଇଅଛି—

(୧) ବିନୟ ଅବଲମ୍ବନ କରିବା ।

(୨) ଅଜ୍ଞ ଲୋକମାନଙ୍କ ସହିତ ଅଯଥା ଯୁକ୍ତି ତର୍କ ନକରି ଶାନ୍ତ ସମ୍ଭାଷଣ ସହିତ ବିଦାୟ ନେବା ।

(୩) ରାତ୍ରିରେ ପରମେଶ୍ୱରଙ୍କ ଆରାଧନା କରିବା ।

(୪) ନରକର ଶାସ୍ତିରୁ ରକ୍ଷା ପାଇବା ପାଇଁ ପ୍ରାର୍ଥନା କରିବା ।

ଏବଂ ସେମାନେ ନିଜ ପାଳନକର୍ତ୍ତାଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତରେ ଓ ଦଣ୍ଡାୟମାନ ଅବସ୍ଥାରେ ରାତି ଅତିବାହିତ କରନ୍ତି ।୬୪।

ଏବଂ ସେହିମାନେ କହନ୍ତି, "ହେ ଅମ୍ଭମାନଙ୍କର ପାଳନକର୍ତ୍ତା ! ଅମ୍ଭମାନଙ୍କଠାରୁ ନରକର ଶାସ୍ତି ନିବାରଣ କର, ନିଶ୍ଚୟ ଏହାର ଶାସ୍ତି ଅନିବାର୍ଯ୍ୟ ।୬୫।

"ନିଶ୍ଚୟ ଏହା ନିକୃଷ୍ଟ ବିଶ୍ରାମ ସ୍ଥାନ ଓ ନିକୃଷ୍ଟ ବାସସ୍ଥାନ" ।୬୬।

ଏବଂ ଯେତେବେଳେ ସେମାନେ ବ୍ୟୟକରନ୍ତି ସେତେବେଳେ ଅପବ୍ୟୟ ଅଥବା କୃପଣତା କରନ୍ତି ନାହିଁ ଏବଂ ଏହାର ମଧ୍ୟରେ ମଧ୍ୟମ ପନ୍ଥା ଅବଲମ୍ବନ କରନ୍ତି ।୬୭।

ଏବଂ ସେମାନେ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ଅାହ୍ୱାନ କରନ୍ତିନାହିଁ ଏବଂ ନ୍ୟାୟ ସଙ୍ଗତ କାରଣ ବ୍ୟତୀତ ଏପରି ଜୀବ ହତ୍ୟା କରନ୍ତି ନାହିଁ ଯାହାକୁ ପରମେଶ୍ୱର ଅବୈଧ କରିଅଛନ୍ତି ଏବଂ ସେମାନେ ବ୍ୟଭିଚାର କରନ୍ତି ନାହିଁ; ଏବଂ ଯେ ଏପରି କାର୍ଯ୍ୟ କରେ ସେ ପାପର ପ୍ରତିଫଳ ପାଇବ ।୬୮।

ପୁନରୁତ୍‌ଥାନ ଦିବସରେ ତାହା ପାଇଁ ଶାସ୍ତି ଦ୍ୱିଗୁଣିତ ହେବ ଏବଂ ସେଥିମଧ୍ୟରେ ସେ ଘୃଣିତ ଭାବରେ ପଡ଼ି ରହିବ ।୬୯।

କିନ୍ତୁ ଯେଉଁମାନେ ଅନୁତାପ କରନ୍ତି ଓ ବିଶ୍ୱାସ ସ୍ଥାପନ କରନ୍ତି ଓ ସତ୍‌କାର୍ଯ୍ୟ କରନ୍ତି ତେବେ ପରମେଶ୍ୱର ସେମାନଙ୍କର ଅସତ୍ କାର୍ଯ୍ୟମାନଙ୍କୁ ସତ୍‌କାର୍ଯ୍ୟରେ ପରିବର୍ତ୍ତିତ କରି ଦିଅନ୍ତି, ଏବଂ ପରମେଶ୍ୱର କ୍ଷମାଶୀଳ ଓ କରୁଣାମୟ ।୭୦।

ଏବଂ ଯେ ଅନୁତାପ କରେ ଓ ସତ୍‌କାର୍ଯ୍ୟ କରେ, ତେବେ ନିଶ୍ଚୟ ସେ ପରମେଶ୍ୱରଙ୍କ ନିକଟକୁ ପ୍ରତ୍ୟାବର୍ତ୍ତିତ ହୁଏ ।୭୧।

ଏବଂ ସେମାନେ ମିଥ୍ୟା ସାକ୍ଷ୍ୟ ଦିଅନ୍ତି ନାହିଁ ଏବଂ ଯେତେବେଳେ ସେମାନେ ଅଯଥା କ୍ରୀଡ଼ା କୌତୁକର ନିକଟ ଦେଇ ଗମନ କରନ୍ତି ସେମାନେ ସମ୍ଭ୍ରମରେ ଗମନ କରନ୍ତି ।୭୨।

---

(୫) ଅପବ୍ୟୟ କିମ୍ବା କୃପଣତା ନକରି ମଧ୍ୟମ ପନ୍ଥା ଅବଲମ୍ବନ କରିବା

(୬) ଅଂଶୀ ଉପାସ୍ୟ ଗ୍ରହଣ ନକରିବା

(୭) ବିନା କାରଣରେ ଅବୈଧ ଜୀବକୁ ହତ୍ୟା ନକରିବା

(୮) ବ୍ୟଭିଚାର ନକରିବା ।

୬୮ । ଯେ ଏପରି କାର୍ଯ୍ୟ କରେ—୬୭ ଓ ୬୮ ଶ୍ଳୋକମାନଙ୍କରେ ଯେଉଁସବୁ କାର୍ଯ୍ୟ ବିଶ୍ୱାସକାରୀମାନେ କରନ୍ତି ନାହିଁ ବୋଲି ବର୍ଣ୍ଣିତ ହୋଇଅଛି ସେହି କାର୍ଯ୍ୟ ସବୁ କରେ ।

୭୦ । ୭୧ । ପାପ କାର୍ଯ୍ୟ କଲାପରେ ଅନୁତାପ କରି ପରମେଶ୍ୱରଙ୍କଠାରେ କ୍ଷମା ପ୍ରାର୍ଥନା କଲେ ଏବଂ ତାହାପରେ ସତ୍‌କାର୍ଯ୍ୟ କଲେ, ପୂର୍ବ ଅଚରିତ ପାପ କାର୍ଯ୍ୟ ପାଇଁ ପରମେଶ୍ୱର ଦଣ୍ଡ ବିଧାନ କରିବେ ନାହିଁ ।

୭୨-୭୪ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱରଙ୍କ ପ୍ରକୃତ ସେବକମାନଙ୍କର ଅଉ କେତେଗୁଡ଼ିଏ ଲକ୍ଷଣ କଥାଯାଇଅଛି:—

(୯) ମିଥ୍ୟା ସାକ୍ଷ୍ୟ ନଦେବା ।

(୧୦) ଅଯଥା କ୍ରୀଡ଼ା କୌତୁକରେ ଯୋଗ ନଦେବା ।

(୧୧) ପରମେଶ୍ୱରଙ୍କ ପ୍ରତ୍ୟାଦେଶ ବାଣୀକୁ ଅନ୍ଧ ଭାବରେ ଗ୍ରହଣ ନକରି ବୁଦ୍ଧି ଓ ବିବେଚନା ସହିତ ହୃଦୟଙ୍ଗମ କରିବା ।

ଏବଂ ଯେତେବେଳେ ସେମାନଙ୍କୁ ସେମାନଙ୍କର ପାଳନକର୍ତ୍ତାଙ୍କର ନିଦର୍ଶନମାନ ହୃଦୟଙ୍ଗମ କରାଇ ଦିଆଯାଏ ସେତେବେଳେ ସେମାନେ ବଧିର ଓ ଅନ୍ଧ ଭାବରେ ତାହା ଉପରେ ପତିତ ହୁଅନ୍ତି ନାହିଁ ।୭୩।

ଏବଂ ସେମାନେ କହନ୍ତି, "ହେ ଅମ୍ଭମାନଙ୍କର ପାଳନକର୍ତ୍ତା ! ଅମ୍ଭମାନଙ୍କୁ ଅମ୍ଭମାନଙ୍କର ପତ୍ନୀ-ମାନଙ୍କରେ ଓ ଅମ୍ଭମାନଙ୍କର ସନ୍ତାନମାନଙ୍କରେ ନୟନାନନ୍ଦ ଦାନକର ଏବଂ ଅମ୍ଭମାନଙ୍କୁ ସଂଯମୀମାନଙ୍କର ଅଗ୍ରଗାମୀ କର" ।୭୪।

ଏହିମାନେହିଁ ନିଜର ଧୈର୍ଯ୍ୟଶୀଳତା ପାଇଁ ଉଚ୍ଚ ବାସସ୍ଥାନମାନ ପୁରସ୍କାର ପାଇବେ ଏବଂ ସେଥି ମଧ୍ୟରେ ସେମାନେ ଶୁଭ ଆଶୀର୍ବାଦ ଓ ଶାନ୍ତି ସମ୍ଭାଷଣ ପ୍ରାପ୍ତ ହେବେ ।୭୫।

ସେମାନେ ସେଥି ମଧ୍ୟରେ ସର୍ବଦା ବାସ କରିବେ, ସେହି ଶାନ୍ତି ନିକେତନ ଓ ବାସସ୍ଥାନ କିପରି ଉତ୍ତମ ।୭୬।

ତୁମ୍ଭେ କୁହ, "ହେ ଅବିଶ୍ୱାସୀଗଣ ଯଦି ତୁମ୍ଭେମାନେ ତାଙ୍କୁ ଆହ୍ୱାନ ନକର ସେଥିପାଇଁ ଅମ୍ଭର ପାଳନକର୍ତ୍ତା କିଛିମାତ୍ର ଗ୍ରାହ୍ୟ କରିବେ ନାହିଁ, କିନ୍ତୁ ନିଶ୍ଚୟ ତୁମ୍ଭେମାନେ ( ତାଙ୍କ ନିଦର୍ଶନଗୁଡ଼ିକ ପ୍ରତି ) ମିଥ୍ୟାରୋପ କରିଅଛ, ଅତଏବ ଏହା ତୁମ୍ଭମାନଙ୍କର ଜୀବନର କଣ୍ଟକ ହେବ" ।୭୭।

---

(୧୨) ନିଜର ପତ୍ନୀ ଓ ସନ୍ତାନମାନଙ୍କୁ ସତ୍ ପଥରେ ଗଠିତ କରିବା ପାଇଁ ପ୍ରାର୍ଥନା କରିବା

(୧୩) ସଂଯମ ଅବଲମ୍ବନ କରିବା ।

(ଦେଖ ଟୀକା ଏହି ଅଧ୍ୟାୟ ୬୩-୬୮ ଶ୍ଳୋକ) ।

୭୫-୭୬ । ଏହି ଶ୍ଳୋକମାନଙ୍କରେ ବିଶ୍ୱାସକାରୀମାନଙ୍କର ପରଲୋକର ପୁରସ୍କାର ବିଷୟ ବର୍ଣ୍ଣିତ ହୋଇଅଛି ।

## ୨୬ଶ ଅଧ୍ୟାୟ

ନାମ—ଅଶ୍-ଶୋଅରା ( କବିଗଣ )

ମକ୍କାରେ ଅବତୀର୍ଣ୍ଣ । ଏଥିରେ ମୋଟ ୧୧ଟି ବିଭାଗ ଏବଂ ମୋଟ ୨୨୭ଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ତ୍ୱା, ସୀନ, ମୀମ୍ ।୧।

ଏହି ଶ୍ଳୋକ ସବୁ ସେହି ଗ୍ରନ୍ଥର ଅନ୍ତର୍ଗତ, ଯାହାକି ସୁସ୍ପଷ୍ଟ ବର୍ଣ୍ଣନାକାରୀ ଅଟେ ।୨।

ସମ୍ଭବତଃ ତୁମ୍ଭେ ଏଥିପାଇଁ ନିଜ ଜୀବନକୁ ଦୁଃଖ ଜର୍ଜ୍ଜରିତ କରିବ ଯେ ସେମାନେ ବିଶ୍ୱାସ ସ୍ଥାପନ କରୁ ନାହାନ୍ତି ।୩।

ଆମ୍ଭେ ଯଦି ଇଚ୍ଛା କରୁଁ ତେବେ ଆମ୍ଭେ ଆକାଶରୁ ସେମାନଙ୍କ ଉପରେ ଏପରି ନିଦର୍ଶନ ଅବତୀର୍ଣ୍ଣ କରିବୁଁ ଯାହାଦ୍ୱାରା ସେମାନଙ୍କର ସ୍କନ୍ଧସବୁ ଏହା ଆଗରେ ନଇଁ ପଡ଼ିବ ।୪।

ଏବଂ ସେହି ଦୟାମୟଙ୍କ ନିକଟରୁ ସେମାନଙ୍କ ନିକଟ ଏପରି କୌଣସି ନୂତନ ଉପଦେଶ ଉପସ୍ଥିତ ହୋଇ ନାହିଁ ଯେଉଁଥିରୁ ସେମାନେ ବିମୁଖ ହୋଇ ନାହାନ୍ତି ।୫।

ସେମାନେ ନିଶ୍ଚୟ ( ଆମ୍ଭ ନିଦର୍ଶନ ପ୍ରତି ) ମିଥ୍ୟାରୋପ କରି ଅଛନ୍ତି, ସୁତରାଂ ଯେଉଁ ସମ୍ବାଦମାନଙ୍କ ସମ୍ବନ୍ଧରେ ସେମାନେ ଉପହାସ କରୁ ଅଛନ୍ତି ତାହା ଶୀଘ୍ର ସେମାନଙ୍କ ନିକଟରେ ଉପସ୍ଥିତ ହେବ ।୬।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋ ୨୨୪-୨୨୬ମାନଙ୍କରେ ଅବିଶ୍ୱାସକାରୀମାନେ ପବିତ୍ର କୋରାନ ଗ୍ରନ୍ଥକୁ କବିମାନଙ୍କ ରଚିତ କବିତା ଗ୍ରନ୍ଥ ବୋଲି କହିଥିବାରୁ ଏହି ଅଧ୍ୟାୟର ଏପରି ନାମକରଣ ହୋଇଅଛି । ଦେଖ ଟୀକା ଏହି ଅଧ୍ୟାୟ ଶ୍ଳୋ ୨୨୪-୨୨୬ର ।

୧ । ମୂଳଗ୍ରନ୍ଥରେ ଏହି ଶ୍ଳୋକ 'ତ୍ୱା, ସୀନ୍, ମୀମ୍' ଏହି ସାଙ୍କେତିକ ବର୍ଣ୍ଣମାନଙ୍କରେ ଦିଆଯାଇଅଛି । ସାଙ୍କେତିକ ବର୍ଣ୍ଣମାନଙ୍କ ସମ୍ବନ୍ଧରେ ୨ୟ ଅଧ୍ୟାୟ ୧ମ ଶ୍ଳୋକ ଓ ତହିଁର ଟୀକା ଦେଖ । କେତେକ ଟୀକାକାରଙ୍କ ମତ ଅନୁଯାୟୀ ତ୍ୱା ଅର୍ଥ 'ଲତିଫ୍' ସୀନ୍ ଅର୍ଥ 'ସମିଅ' ଏବଂ ମୀମ୍ ଅର୍ଥ 'ଅଲିମ୍' ନିଆଯାଇଅଛି । ଏହାର ଭାବାର୍ଥ, ଦୟାମୟ, ଶ୍ରବଣକାରୀ, ମହାଜ୍ଞ ଅଟେ ଏହା ପରମେଶ୍ୱରଙ୍କ ଗୁଣାବଳୀ ପ୍ରକାଶ କରୁଅଛି ।

୨ । ସୁସ୍ପଷ୍ଟବର୍ଣ୍ଣନାକାରୀଗ୍ରନ୍ଥ—ପବିତ୍ରକୋରାନ । ଏହା ସତ୍ୟ, ଧର୍ମ ଓ ପୁଣ୍ୟର ପଥ ସ୍ପଷ୍ଟରୂପେ ପ୍ରକାଶ କରୁଅଛି ।

୪ । ସ୍କନ୍ଧମାନ ନଇଁ ପଡ଼ିବ—ସେମାନେ ତୁମ୍ଭ ପ୍ରତି ବିଶ୍ୱାସ ସ୍ଥାପନ କରିବାକୁ ବାଧ୍ୟ ହେବେ । ମାତ୍ର ବିଶ୍ୱର ବିବେଚନା ପାଇଁ ପରମେଶ୍ୱର ଲୋକମାନଙ୍କୁ ସ୍ୱାଧୀନ ଇଚ୍ଛା ଦେଇଅଛନ୍ତି । ସେ କାହାରିକି ବାଧ୍ୟ କରନ୍ତି ନାହିଁ ।

୬ । ସମ୍ବାଦମାନ—ଶାସ୍ତି ଉପସ୍ଥିତ ହେବାର ସମ୍ବାଦମାନ ।

ସେମାନେ କଅଣ ଭୂମିପ୍ରତି ଲକ୍ଷ୍ୟ କରନ୍ତି ନାହାନ୍ତି ଯେ ଅମ୍ଭେ ସେଥି ମଧ୍ୟରୁ କପର ଉତ୍କୃଷ୍ଟ ବିବିଧ ବସ୍ତୁ ସବୁ ଉତ୍ପନ୍ନ କରିଅଛୁଁ ? ୭।

ନିଶ୍ଚୟ ଏଥି ମଧ୍ୟରେ ନିଦର୍ଶନ ରହିଅଛି, ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ ସ୍ଥାପନ କରନ୍ତି ନାହାନ୍ତି ।୮।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହା ପରାକ୍ରାନ୍ତ ଓ କରୁଣାମୟ ।୯।

## ୨ୟ ବିଭାଗ

ଏବ ଯେତେବେଳେ ତୁମ୍ଭର ପାଳନକର୍ତ୍ତା ମୂସାଙ୍କୁ ଅହ୍ୱାନ କରି କହିଥିଲେ, "ତୁମ୍ଭେ ଅତ୍ୟାଚାରୀ ସଂପ୍ରଦାୟ ନିକଟ ଗମନ କର ।୧୦।

"ଫେର ଅଉନର ସଂପ୍ରଦାୟ ନିକଟ; ସେମାନେ କଅଣ ସଂଯତ ହେବେ ନାହିଁ" ? ୧୧।

ସେ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା । ନିଶ୍ଚୟ ଅମ୍ଭେ ଅଶଙ୍କା କରୁଅଛୁଁ ଯେ, ସେମାନେ ଅମ୍ଭପ୍ରତି ମିଥ୍ୟାରୋପ କରିବେ ।୧୨।

"ଏବଂ ଅମ୍ଭର ବକ୍ଷ ସଙ୍କୁଚିତ ହେଉଅଛି ଏବଂ ଅମ୍ଭର ଜିହ୍ୱା ପରିସ୍ଫୁଟ ନୁହେ, ଅତଏବ (ଅମ୍ଭ-ସହିତ) ହାରୁନଙ୍କୁ ପ୍ରେରଣ କର ।୧୩।

"ଏବଂ ଅମ୍ଭ ବିରୁଦ୍ଧରେ ସେମାନଙ୍କର ଗୋଟିଏ ଅଭିଯୋଗ ଅଛି, ଅତଏବ ଅମ୍ଭେ ଅଶଙ୍କା କରୁଅଛୁଁ ଯେ, ସେମାନେ ଅମ୍ଭଙ୍କୁ ହତ୍ୟା କରିବେ" ।୧୪।

ପରମେଶ୍ୱର କହିଥିଲେ, "କଦାପି ନୁହେ; ଅତଏବ ତୁମ୍ଭେମାନେ ଉଭୟେ ଅମ୍ଭର ନିଦର୍ଶନମାନଙ୍କ ସହିତ ଗମନକର; ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ସହିତ ଶ୍ରବଣକାରୀ ରୂପେ ଅଛୁଁ ।୧୫।

"ତାପରେ ତୁମ୍ଭେମାନେ ଉଭୟେ ଫେରଅଉନର ନିକଟକୁ ଯାଇ କୁହ, ନିଶ୍ଚୟ ଅମ୍ଭେମାନେ ସମସ୍ତ ଜଗତର ପାଳନକର୍ତ୍ତାଙ୍କର ପ୍ରେରିତ ପୁରୁଷ" ।୧୬।

"ଯେପରି ତୁମ୍ଭେ ଇସରାଇଲ ବଂଶଧରମାନଙ୍କୁ ଅମ୍ଭମାନଙ୍କ ସହିତ ପ୍ରେରଣ କର" ।୧୭।

ଫେରଅଉନ କହିଥିଲା, "ଅମ୍ଭେମାନେ କଅଣ ତୁମ୍ଭଙ୍କୁ ଅମ୍ଭମାନଙ୍କ ମଧ୍ୟରେ ଶିଶୁ ସନ୍ତାନ ପରି ପାଳନ କରିନାହୁଁ ଏବ ତୁମ୍ଭେ କଅଣ ଅମ୍ଭମାନଙ୍କ ମଧ୍ୟରେ ତୁମ୍ଭର ଜୀବନର ବହୁବର୍ଷ ବାସ କରିନାହଁ ?୧୮।

"ଏବ ତୁମ୍ଭେ ତୁମ୍ଭର ସେହି କାର୍ଯ୍ୟ କରି ଯାଇଅଛ ଯାହା ତୁମ୍ଭେହିଁ କରିଥିଲ; ଏବ ତୁମ୍ଭେ ଅକୃତଜ୍ଞମାନଙ୍କର ଅନ୍ତର୍ଗତ" ।୧୯।

ମୂସା କହିଥିଲେ, "ଅମ୍ଭେ ସେତେବେଳେ ଏହି କାର୍ଯ୍ୟ କରିଥିଲୁଁ ଯେତେବେଳେ ଅମ୍ଭେ ଅଜ୍ଞମାନଙ୍କର ଅନ୍ତର୍ଗତ ଥିଲୁଁ ।୨୦।

"ତା ପରେ ଯେତେବେଳେ ଅମ୍ଭେ ତୁମ୍ଭ ଭୟରେ ତୁମ୍ଭ ନିକଟରୁ ପଳାୟନ କରିଥିଲୁଁ, ସେତେ-ବେଳେ ଅମ୍ଭର ପାଳନକର୍ତ୍ତା ଅମ୍ଭଙ୍କୁ ଜ୍ଞାନ ଦାନ କରିଥିଲେ ଏବ ଅମ୍ଭଙ୍କୁ ପ୍ରେରିତ ପୁରୁଷ ରୂପେ ମନୋନୀତ କରିଥିଲେ । ୧।

---

୧୩ । ଜିହ୍ୱା ପରିସ୍ଫୁଟ ନୁହେ – ମୂସା ସୁବକ୍ତା ନଥିଲେ । ୨୦ ଅଧ୍ୟାୟ ୨୭ଶ୍ଳୋକ ଦେଖ ।

୧୪ । ଅଭିଯୋଗ=ନରହତ୍ୟାର ଅଭିଯୋଗ । ଦେଖ ୨୮ଶ ଅଧ୍ୟାୟ ଶ୍ଳୋ୧୫ କ ।

୧୯ । ସେହିକାର୍ଯ୍ୟ—ନରହତ୍ୟା । ଦେଖ ଏହିଅଧ୍ୟାୟ ଶ୍ଳୋ୧୪କ ।

"ଏବଂ ତୁମ୍ଭେ କଅଣ ଆମ୍ଭଙ୍କୁ ତୁମ୍ଭର ସେହି ଅନୁଗ୍ରହର ବିଷୟ ପ୍ରକାଶ କରୁଅଛ ଯେ ତୁମ୍ଭେ ଇସ୍ରାଇଲ ବଂଶଧରମାନଙ୍କୁ ଦାସତ୍ୱଶୃଙ୍ଖଳରେ ଅବଦ୍ଧ କରି ରଖିଅଛ" ?୨୨।

ଫେରଅଉନ କହିଥିଲା, "ଏବଂ ସମସ୍ତ ଜଗତର ପାଳନକର୍ତ୍ତା କଅଣ" ?୨୩।

ମୂସା କହିଥିଲେ, "ସେ ଆକାଶ ମଣ୍ଡଳ ଓ ଭୂମଣ୍ଡଳ ଏବଂ ଏ ଉଭୟ ମଧ୍ୟରେ ଯାହାକିଛି ଅଛି ତାହାର ପାଳନକର୍ତ୍ତା, ଯଦି ତୁମ୍ଭେମାନେ ନିଶ୍ଚୟ ଧାରଣା କର" ।୨୪।

ଫେରଅଉନ ତାହାର ପାର୍ଶ୍ୱବର୍ତ୍ତୀ ଲୋକମାନଙ୍କୁ କହିଥିଲା, "ସେ ଯାହା କହୁଛି ତୁମ୍ଭେମାନେ କଅଣ ଶୁଣୁନାହଁ" ? ୨୫।

ମୂସା କହିଥିଲେ, "ତୁମ୍ଭମାନଙ୍କର ପାଳନକର୍ତ୍ତା ଏବଂ ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ପୂର୍ବପୁରୁଷ-ମାନଙ୍କର ମଧ୍ୟ ପାଳନକର୍ତ୍ତା" ।୨୬।

ଫେରଅଉନ ନିଜ ଲୋକମାନଙ୍କୁ କହିଥିଲା, "ନିଶ୍ଚୟ ତୁମ୍ଭମାନଙ୍କର ଏହି ପ୍ରେରିତ ପୁରୁଷ ଯେ ତୁମ୍ଭମାନଙ୍କ ନିକଟ ପ୍ରେରିତ ହୋଇଅଛି, ନିଶ୍ଚୟ ସେ ପାଗଳ" ।୨୭।

ମୂସା କହିଥିଲେ, "ସେ ପୂର୍ବ ଓ ପଶ୍ଚିମ ଏବଂ ଏ ଉଭୟ ମଧ୍ୟରେ ଯାହାକିଛି ଅଛି ତାହାର ପାଳନକର୍ତ୍ତା, ଯଦି ତୁମ୍ଭେମାନେ (ଏ ସତ୍ୟ) ହୃଦୟଙ୍ଗମ କରିପାର" ।୨୮।

ଫେରଅଉନ କହିଥିଲା, "ଯଦି ତୁମ୍ଭେ ଆମ୍ଭବ୍ୟତୀତ ଅନ୍ୟ ଉପାସ୍ୟ ଗ୍ରହଣ କର ତେବେ ନିଶ୍ଚୟ ଆମ୍ଭେ ତୁମ୍ଭଙ୍କୁ କାରାରୁଦ୍ଧମାନଙ୍କର ଅନ୍ତର୍ଗତ କରିଦେବୁ" ।୨୯।

ମୂସା କହିଥିଲେ, "ଯଦି ଆମ୍ଭେ ତୁମ୍ଭ ନିକଟ ଗୋଟିଏ ପ୍ରକାଶ୍ୟ ବିଷୟ ଆଣୁ, ତେବେବି (କ'ଣ ଏହା କରିବ ?)" ୩୦।

ଫେରଅଉନ କହିଥିଲା, "ଯଦିତୁମ୍ଭେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ ଥାଅ ତେବେ ତାହା ନେଇଆସ" ।୩୧।

ସେତେବେଳେ ସେ ନିଜ ଯଷ୍ଟି ନିକ୍ଷେପ କରିଥିଲେ, ତତ୍କ୍ଷଣାତ୍ ତାହା ଦେଖିବାକୁ ପ୍ରକାଶ୍ୟ ସର୍ପ ହୋଇଗଲା ।୩୨।

ଏବଂ ସେ ନିଜହସ୍ତ କାଖଭିତରୁ ବାହାର କରିଥିଲେ, ତତ୍କ୍ଷଣାତ୍ ତାହା ଦର୍ଶକମାନଙ୍କ ଆଗରେ ଶୁଭ୍ର ଉଜ୍ଜ୍ୱଳ ଦେଖାଯାଇଥିଲା ।୩୩।

## ୩ୟ ବିଭାଗ

ଫେରଅଉନ ତାହାର ପାର୍ଶ୍ୱବର୍ତ୍ତୀ ମୁଖ୍ୟ ଲୋକମାନଙ୍କୁ କହିଥିଲା, "ନିଶ୍ଚୟ ଏ ଜଣେ ପକ୍କା ଯାଦୁକର" ।୩୪।

"ସେ ତୁମ୍ଭମାନଙ୍କୁ ନିଜ ଯାଦୁଦ୍ୱାରା ତୁମ୍ଭମାନଙ୍କ ଦେଶରୁ ବାହାର କରିବାକୁ ଇଚ୍ଛାକରେ, ଅତଏବ ତୁମ୍ଭେମାନେ କି ମତ ଦେଉଅଛ ?" ୩୫।

---

୨୮ । ପୂର୍ବ ଓ ପଶ୍ଚିମ ସମ୍ବନ୍ଧରେ ଦେଖ ଟୀକା ୮୬ଅଧ୍ୟାୟ ୧୭ଶ୍ଳୋକ ଓ ୭୦ଅଧ୍ୟାୟ ୪୦ଶ୍ଳୋକ ।
୩୨ । ୩୩ । ୭ମ ଅଧ୍ୟାୟ ୧୦୭—୧୦୮ ଶ୍ଳୋକ ଦେଖ ।]

ସେମାନେ କହିଥିଲେ, "ତାହାଙ୍କୁ ଏବଂ ତାହାର ଭାଇକୁ ଅବକାଶ ଦିଅ ଏବଂ ପ୍ରତି ନଗରକୁ ଘୋଷଣାକାରୀମାନଙ୍କ ପଠାଅ,—୩୬ ।

"ଯେପରି ସେମାନେ ତୁମ୍ଭ ନିକଟ ପକ୍କା ଯାଦୁକରମାନଙ୍କ ନେଇ ଆସିବେ" ।୩୭।

ତାପରେ ନିର୍ଦ୍ଧାରିତ ଉତ୍ସବର ନିର୍ଦ୍ଦିଷ୍ଟ ସମୟରେ ଯାଦୁକରମାନେ ଏକତ୍ରିତ ହୋଇଥିଲେ ।୩୮।

ଏବଂ ଲୋକମାନଙ୍କୁ କୁହାଯାଇଥିଲା, "ତୁମ୍ଭେମାନେ ମଧ୍ୟ କଅଣ ଏକତ୍ରିତ ହୋଇଅଛ ?୩୯।

"ସମ୍ଭବତଃ ଆମ୍ଭେମାନେ ଯାଦୁକରମାନଙ୍କର ଅନୁଗତ ହୋଇ ପାରିବୁଁ ଯଦି ସେମାନେ ଜୟୀ ହୁଅନ୍ତି" ।୪୦।

ତାପରେ ଯେତେବେଳେ ଯାଦୁକରମାନେ ଉପସ୍ଥିତ ହୋଇ ଫେରଅଉନଙ୍କୁ କହିଥିଲେ, "ଯଦି ଆମ୍ଭେମାନେ ଜୟୀ ହେଉଁ ତେବେ ଆମ୍ଭେମାନେ କି ପୁରସ୍କାର ପାଇବୁଁ ?' ।୪୧।

ଫେରଅଉନ କହିଥିଲା, "ହଁ ଏବଂ ନିଶ୍ଚୟ ତୁମ୍ଭେମାନେ ଆମ୍ଭର ପାଖଲୋକମାନଙ୍କ ମଧ୍ୟରେ ରହିବ" । ୪୨ ।

ମୂସା ସେମାନଙ୍କୁ କହିଥିଲେ, "ତୁମ୍ଭେମାନେ ଯାହା ନିକ୍ଷେପ କରିବ ତାହା ନିକ୍ଷେପ କର" ।୪୩ ।

ତାପରେ ସେମାନେ ସେମାନଙ୍କର ରଜ୍ଜୁ ଓ ଯଷ୍ଟିମାନଙ୍କୁ ନିକ୍ଷେପ କରିଥିଲେ; ଏବଂ କହିଥିଲେ "ଫେରଅଉନଙ୍କ ପ୍ରଭାବରେ ନିଶ୍ଚୟ ଆମ୍ଭେମାନେ ଜୟୀହେବୁଁ ?" ।୪୪।

ତାପରେ ମୂସା ନିଜ ଯଷ୍ଟି ନିକ୍ଷେପ କରିଥିଲେ; ତାପରେ ସେମାନେ ଯେଉଁ ଅଳୀକ କାଣ୍ଡକରି ଥିଲେ ତାହାକୁ (ମୂସାଙ୍କ ଯଷ୍ଟି) ତତ୍‌କ୍ଷଣାତ୍ ଗ୍ରାସ କରିଥିଲା ।୪୫।

ସେତେବେଳେ ଯାଦୁକରମାନେ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବା ଅବସ୍ଥାରେ ପଡ଼ି ଯାଇଥିଲେ ।୪୬।

ଯାଦୁକରମାନେ କହିଥିଲେ, "ଆମ୍ଭେମାନେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ ସ୍ଥାପନକଲୁଁ ।୪୭।

"ଯେ ମୂସା ଓ ହାରୁନଙ୍କ ପାଳନକର୍ତ୍ତା" ୪୮।

ଫେରଅଉନ କହିଥିଲା "ଆମ୍ଭେ ତୁମ୍ଭମାନଙ୍କୁ ଆଦେଶ କରିବା ପୂର୍ବରୁ ତୁମ୍ଭେମାନେ ତାହାପ୍ରତି ବିଶ୍ୱାସ ସ୍ଥାପନ କଲ, ନିଶ୍ଚୟ ସେ ତୁମ୍ଭମାନଙ୍କର ଗୁରୁ ଯେ ତୁମ୍ଭମାନଙ୍କୁ ଯାଦୁବିଦ୍ୟା ଶିକ୍ଷା ଦେଇଅଛି; ସୁତରାଂ ତୁମ୍ଭେମାନେ ଶୀଘ୍ର ଏହାର ଫଳ ଜାଣିପାରିବ ।୪୯।

"ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କର ହାତ ସବୁକୁ ଓ ଗୋଡ଼ସବୁକୁ ବିପରୀତ ଭାବରେ କର୍ତ୍ତନ କରିବୁଁ ଏବଂ ତୁମ୍ଭମାନଙ୍କୁ ସମସ୍ତଙ୍କୁ ଶୂଳୀ ଦେବୁଁ" ।୫୦।

---

୩୯।୪୦ । ଫେରଅଉନ୍ ମନେ କରିଥିଲା ଯେ ତାହାର ରାଜ୍ୟର ଯାଦୁକରମାନେ ଏହି ବିଦେଶୀ ଯାଦୁକରମାନଙ୍କ ଉପରେ ନିଶ୍ଚୟ ଜୟୀ ହେବେ । ସୁତରାଂ ଗୋଟିଏ ପ୍ରଧାନ ପର୍ବଦିନ ଏହି କାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ କରାଯାଇଥିଲା ଯେପରି ବହୁସଂଖ୍ୟକ ଲୋକ ଏକତ୍ରିତ ହେବେ ଏବଂ ରାଜ୍ୟର ଯାଦୁକରମାନେ ଜୟୀ ହେବାର ଦେଖି ସେମାନେ ଫେରଅଉନର ଅଧିକ ଅନୁଗତ ହେବେ ଏବଂ ତାକୁ ଉପାସ୍ୟ ରୂପେ ଗ୍ରହଣ କରିବେ ।

୪୪ । ସେମାନେ—ଯାଦୁକରମାନେ । ସେମାନଙ୍କର ରଜ୍ଜୁ ଓ ଯଷ୍ଟି ଯାଦୁ କ୍ରିୟା ଦ୍ୱାରା ସର୍ପ ପରି ବିଚରଣ କରିବାର ଦେଖାଯାଇଥିଲା । ଦେଖ ୨୦ଅଧ୍ୟାୟ ୬୬ଶ୍ଳୋକ ।

୪୫ । ସତ୍ୟ କୁହୁକ ଅପେକ୍ଷା ଅଧିକ ଶକ୍ତିଶାଳୀ ଏବଂ ତାକୁ ମିଥ୍ୟା ଥିବାର ପ୍ରକାଶ କରି ବିନାଶ ସାଧନ କରେ ।

ଯାଦୁକରମାନେ କହିଥିଲେ; "କୌଣସି କ୍ଷତି ନାହିଁ; ନିଶ୍ଚୟ ଆମ୍ଭେମାନେ ନିଜ ପାଳନକର୍ତ୍ତାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରିବୁଁ ।୫୧।

"ନିଶ୍ଚୟ ଆମ୍ଭେମାନେ ଆଶାକରୁଁ ଯେ ଆମ୍ଭମାନଙ୍କର ପାଳନକର୍ତ୍ତା ଆମ୍ଭମାନଙ୍କର ଅପରାଧମାନ କ୍ଷମା କରିବେ, କାରଣ ଆମ୍ଭେମାନେହିଁ ପ୍ରଥମ ବିଶ୍ୱାସ ସ୍ଥାପନକାରୀ ।"୫୨।

## ୪ର୍ଥ ବିଭାଗ

ଏବଂ ଆମ୍ଭେ ମୂସାଙ୍କ ପ୍ରତି ପ୍ରତ୍ୟାଦେଶ କରିଥିଲୁଁ ଯେ ତୁମ୍ଭେ ରାତାରାତି ଆମ୍ଭର ସେବକମାନଙ୍କୁ ନେଇ ଚାଲିଯାଅ; ନିଶ୍ଚୟ ତୁମ୍ଭେମାନେ ଅନୁସୃତ ହେବ ।୫୩।

ତାପରେ ଫେରଅଉନ ନଗରମାନଙ୍କରେ ଦୂତମାନଙ୍କୁ ପ୍ରେରଣ କରିଥିଲା ।୫୪।

(ଏବଂ କହିଥିଲା) "ନିଶ୍ଚୟ ସେମାନେ ଗୋଟିଏ କ୍ଷୁଦ୍ର ଦଳ ।୫୫।

"ଏବଂ ନିଶ୍ଚୟ ସେମାନେ ଆମ୍ଭମାନଙ୍କର କ୍ରୋଧ ଉଦ୍ଦୀପ୍ତ କରିଅଛନ୍ତି ।୫୬।

"ଏବଂ ନିଶ୍ଚୟ ଆମ୍ଭେମାନେ ସୁସଜ୍ଜିତ ଦଳ ।"୫୭।

ତାପରେ ଆମ୍ଭେ ସେମାନଙ୍କୁ [ସେମାନଙ୍କ] ଉଦ୍ୟାନ ଓ ଝରଣାମାନଙ୍କରୁ ବିତାଡ଼ିତ କରିଥିଲୁଁ ।୫୮।

ଏବଂ ଧନ ଭଣ୍ଡାର ଓ ଉତ୍ତମ ବାସସ୍ଥାନରୁ ମଧ୍ୟ (ବିତାଡ଼ିତ କରିଥିଲୁଁ) ।୫୯।

ଏହିପରି ଭାବରେ; ଏବଂ ଆମ୍ଭେ ଇସରାଇଲ ବଂଶଧରମାନଙ୍କୁ ସେମାନଙ୍କର ଉତ୍ତରାଧିକାରୀ କରିଥିଲୁଁ ।୬୦।

ତାପରେ ସେମାନେ ସୂର୍ଯ୍ୟୋଦୟ ସମୟରେ ସେମାନଙ୍କର ପଶ୍ଚାତ୍‌ଧାବନ କରିଥିଲେ ।୬୧।

ତାପରେ ଯେତେବେଳେ ଦୁଇଦଳ ପରସ୍ପର ଦେଖିବାକୁ ପାଇଥିଲେ ସେତେବେଳେ ମୂସାଙ୍କ ସହଚରମାନେ କହିଥିଲେ, "ନିଶ୍ଚୟ ଆମ୍ଭେମାନେ ଧରାପଡ଼ିବୁଁ" ।୬୨।

ମୂସା କହିଥିଲେ, "କଦାପି ନୁହେଁ; ନିଶ୍ଚୟ ଆମ୍ଭର ପାଳନକର୍ତ୍ତା ଆମ୍ଭ ସଙ୍ଗରେ ଅଛନ୍ତି, ସେ ଆମ୍ଭଙ୍କୁ ଏହିକ୍ଷଣି ପଥପ୍ରଦର୍ଶନ କରିବେ" ।୬୩।

ତାପରେ ଆମ୍ଭେ ମୂସାଙ୍କ ପ୍ରତି ପ୍ରତ୍ୟାଦେଶ କରିଥିଲୁଁ, "ତୁମ୍ଭେ ନିଜ ଯଷ୍ଟିଦ୍ୱାରା ସମୁଦ୍ରକୁ ଅଘାତ କର"; ତଦ୍ୱାରା ତାହା ଦୁଇଭାଗ ହୋଇଗଲା ଏବଂ ପ୍ରତ୍ୟେକ ଅଂଶ ପ୍ରକାଣ୍ଡ ପର୍ବତପରି ହୋଇଗଲା ।୬୩

---

୫୩ । ଆମ୍ଭର ସେବକମାନଙ୍କୁ=ଇସରାଇଲୀୟମାନଙ୍କୁ । ଅନୁସୃତ ହେବ=ତୁମ୍ଭମାନଙ୍କ ପଛରେ ଫେରଅଉନ ଓ ତାହାର ଲୋକମାନେ ଗୋଡ଼ାଇବେ ।

୫୫ । ସେମାନେ—ମୂସା ଏବଂ ତାଙ୍କର ଅନୁଚରମାନେ ।

୫୬ । ସେମାନେ—ମୂସା ଓ ତାଙ୍କର ଅନୁଚରମାନେ ।

୫୭ । ଆମ୍ଭେମାନେ—ଫେରଅଉନ୍ ଓ ତାଙ୍କର ଅନୁଚରମାନେ ।

୫୮ । ଅମ୍ଭେ—ପରମେଶ୍ୱର । ସେମାନଙ୍କୁ—ଫେରଅଉନ ଓ ତାଙ୍କର ଅନୁଚରମାନଙ୍କୁ ।

୬୦ । ଫେରଅଉନ୍ ଓ ତାଙ୍କର ଅନୁଚରମାନେ ଧ୍ୱଂସ ପ୍ରାପ୍ତ ହୋଇଥିଲେ ଏବଂ ଇସରାଇଲୀୟମାନେ ସେମାନଙ୍କର ସ୍ଥାନ ଅଧିକାର କରିଥିଲେ ।

୬୧ । ସେମାନେ—ଫେରଅଉନ୍ ଓ ତାଙ୍କର ଅନୁଚରମାନେ । ସେମାନଙ୍କର—ମୂସା ଓ ତାଙ୍କର ଅନୁଚରମାନଙ୍କର

୬୪ । ୬୬ । ଅମ୍ଭେ—ପରମେଶ୍ୱର । ଅନ୍ୟପକ୍ଷକୁ=ଫେରଅଉନ ଓ ତାହାର ଦଳକୁ ।

ଏବଂ ଅମ୍ଭେ ଅନ୍ୟ ପକ୍ଷକୁ ତାହାର ନିକଟକୁ ନେଇ ଆସିଥିଲୁଁ ।୬୪।
ଏବଂ ଅମ୍ଭେ ମୂସାଙ୍କୁ ଓ ତାଙ୍କର ସଙ୍ଗୀମାନଙ୍କୁ ରକ୍ଷା କରିଥିଲୁଁ ।୬୫।
ତାପରେ ଅମ୍ଭେ ଅନ୍ୟ ପକ୍ଷକୁ ଜଳମଗ୍ନ କରିଦେଇଥିଲୁଁ ।୬୬।
ନିଶ୍ଚୟ ଏଥିରେ ନିଦର୍ଶନ ରହିଅଛି; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ ।୬୮।
ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୬୯।

## ୫ମ ବିଭାଗ

ଏବଂ ସେମାନଙ୍କ ଅଗରେ ଇବ୍ରାହିମଙ୍କ ବିବରଣ ପାଠକର ।୭୦।
ଯେତେବେଳେ ସେ ତାଙ୍କର ପିତା ଓ ସମ୍ପ୍ରଦାୟକୁ କହିଥିଲେ, "ତୁମ୍ଭେମାନେ କାହାକୁ ଉପାସନା କରୁଅଛ ?" ୭୧।
ସେମାନେ କହିଥିଲେ, "ଅମ୍ଭେମାନେ ପ୍ରତିମାମାନଙ୍କୁ ଉପାସନା କରୁଅଛୁଁ; ଅତଏବ ଅମ୍ଭେମାନେ ସେମାନଙ୍କୁହିଁ ଭକ୍ତି କରୁଥାଉଁ" ।୭୨।
ଇବ୍ରାହିମ କହିଥିଲେ, "ତୁମ୍ଭେମାନେ ଯେତେବେଳେ ଅହ୍ୱାନକର ସେତେବେଳେ କଅଣ ସେମାନେ ଶ୍ରବଣ କରନ୍ତି ? ଅଥବା ତୁମ୍ଭମାନଙ୍କର ଉପକାର ବା ଅପକାର କରିପାରନ୍ତି ?" ୭୩।
ସେମାନେ କହିଥିଲେ, "ବରଂ ଅମ୍ଭେମାନେ ନିଜ ପୂର୍ବପୁରୁଷମାନଙ୍କୁ ଏହିପରି କରିବାର ଦେଖିଅଛୁଁ" ।୭୪।
ଇବ୍ରାହିମ କହିଥିଲେ, "ତୁମ୍ଭେମାନେ ଯାହାର ଉପାସନା କରୁଅଛ ସେ ବିଷୟରେ କଅଣ ଚିନ୍ତାକରି ଦେଖିଅଛ ।୭୫।
"ତୁମ୍ଭେମାନେ ଓ ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ପୂର୍ବପୁରୁଷମାନେ ? ୭୬।
"ସେମାନେ ନିଶ୍ଚୟ ଅମ୍ଭର ଶତ୍ରୁ, କିନ୍ତୁ ସମସ୍ତ ଜଗତର ପାଳନକର୍ତ୍ତା (ସେପରି ନୁହନ୍ତି),।୭୭।

---

୬୮ । ସେମାନଙ୍କ ମଧ୍ୟରୁ—ଅବିଶ୍ୱାସକାରୀ ବିଧର୍ମୀ ଲୋକମାନଙ୍କ ମଧ୍ୟରୁ ।
୬୯ । ପରମେଶ୍ୱର ନିଜର ପରାକ୍ରମ ଓ କରୁଣାର ବିଷୟ ଉଲ୍ଲେଖ କରି ମୂସାଙ୍କ ବିବରଣ ଶେଷ କରିଅଛନ୍ତି ।
୭୦ । ପରମେଶ୍ୱର ଅବିଶ୍ୱାସକାରୀ ବିଧର୍ମୀ ଲୋକମାନଙ୍କ ଅଗରେ ମହାପୁରୁଷ ଇବ୍ରାହିମଙ୍କ ବିବରଣ ବର୍ଣ୍ଣନ କରିବାପାଇଁ ମହାପୁରୁଷ ମୋହମ୍ମଦଙ୍କୁ ଆଦେଶ କରୁଅଛନ୍ତି ।
୭୧ । ସେ—ଇବ୍ରାହିମ ।
୭୨ । ସେମାନେ—ଇବ୍ରାହିମଙ୍କ ସମ୍ପ୍ରଦାୟ ।
୭୩ । ସେମାନେ—ପ୍ରତିମାମାନେ ।
୭୪ । ସେମାନେ—ଇବ୍ରାହିମଙ୍କ ସମ୍ପ୍ରଦାୟ ।
୭୫।୮୨ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଇବ୍ରାହିମ ତାଙ୍କ ପିତା ଓ ସମ୍ପ୍ରଦାୟର ଲୋକମାନଙ୍କୁ ପ୍ରତିମା ପୂଜାର ଅପକାରିତା ଓ ପରମେଶ୍ୱରଙ୍କୁ ଉପାସନା କରିବାର ଉପକାରିତା ବୁଝାଇଅଛନ୍ତି ।
୭୭ । ଅମ୍ଭର ଶତ୍ରୁ—ପ୍ରତିମାମାନଙ୍କୁ ଉପାସନା କରିବାଦ୍ୱାରା କୌଣସି ଉପକାର ନାହିଁ କାରଣ ସେମାନେ ଆମ୍ଭମାନଙ୍କ ଲାଭକ୍ଷତିର କର୍ତ୍ତା ନୁହନ୍ତି । ସେମାନଙ୍କୁ ଉପାସନା କରିବାଦ୍ୱାରା ଅମ୍ଭମାନଙ୍କର ସମ୍ପୂର୍ଣ୍ଣକ୍ଷତି, କାରଣ ତଦ୍ୱାରା

"ଯେ ଅମ୍ଭଙ୍କୁ ସୃଷ୍ଟି କରିଅଛନ୍ତି, ତାପରେ ଅମ୍ଭଙ୍କୁ ପଥପ୍ରଦର୍ଶନ କରିଅଛନ୍ତି; ।୭୮।

"ଏବଂ ସେହି ଅମ୍ଭଙ୍କୁ ଖାଦ୍ୟ ଦିଅନ୍ତି ଓ ପାନୀୟ ଦିଅନ୍ତି ।୭୯।

"ଏବଂ ଯେତେବେଳେ ଅମ୍ଭେ ପୀଡ଼ିତ ହେଉଁ ସେତେବେଳେ ସେହି ଅମ୍ଭଙ୍କୁ ଆରୋଗ୍ୟ କରିଥାଆନ୍ତି; ।୮୦।

"ଏବଂ ସେହି ଅମ୍ଭର ମୃତ୍ୟୁ ଘଟାଇବେ, ସେହି ପୁନର୍ବାର ଅମ୍ଭଙ୍କୁ ଜୀବିତ କରିବେ ।୮୧।

"ଏବଂ ଅମ୍ଭେ ଆଶାକରୁଁ ଯେ ପୁନରୁତ୍‌ଥାନ ଦିବସରେ ସେ ଅମ୍ଭର ଅପରାଧମାନ କ୍ଷମା କରିବେ ।୮୨।

"ହେ ଅମ୍ଭର ପାଳନକର୍ତ୍ତା ! ଅମ୍ଭଙ୍କୁ ଜ୍ଞାନ ଦାନକର ଏବଂ ଅମ୍ଭଙ୍କୁ ସତ୍‌କର୍ମଶୀଳମାନଙ୍କ ସହିତ ମିଳିତକର ।୮୩।

"ଏବଂ ପରବର୍ତ୍ତୀମାନଙ୍କ ମଧ୍ୟରେ ଅମ୍ଭର ସତ୍ୟବିବରଣୀ ପ୍ରକାଶ କର ।୮୪।

"ଏବଂ ଅମ୍ଭଙ୍କୁ ସୁଖସମ୍ପଦ ପୂର୍ଣ୍ଣ ସ୍ୱର୍ଗୋଦ୍ୟାନର ଉତ୍ତରାଧିକାରୀ କର ।୮୫।

"ଏବଂ ଅମ୍ଭର ପିତାଙ୍କୁ କ୍ଷମାକର; ଯେହେତୁ ସେ ବିଭ୍ରାନ୍ତମାନଙ୍କ ମଧ୍ୟରେ ରହିଅଛନ୍ତି ।୮୬।

"ଏବଂ ପୁନରୁତ୍‌ଥାନ ଦିବସରେ ଅମ୍ଭଙ୍କୁ ଅପଦସ୍ଥ କରନା ।୮୭।

"ଯେଉଁଦିନ ଧନସମ୍ପଦ ଅଥବା ସନ୍ତାନସନ୍ତତି କୌଣସି ଉପକାରରେ ଆସିବେ ନାହିଁ ।୮୮।

"କିନ୍ତୁ ଯେ ପରମେଶ୍ୱରଙ୍କ ନିକଟ ନିର୍ମଳ ଅନ୍ତରରେ ଆସିବ (ସେ ତ୍ରାଣ ପାଇବ) ।୮୯।

"ଏବଂ ଧର୍ମଭୀରୁମାନଙ୍କ ପାଇଁ ସ୍ୱର୍ଗୋଦ୍ୟାନ ନିକଟତର କରାହେବ ।୯୦।

"ଏବଂ ବିପଥଗାମୀମାନଙ୍କ ପାଇଁ ନରକ ପ୍ରକାଶ କରାହେବ ।୯୧।

"ଏବଂ ସେମାନଙ୍କୁ କୁହାହେବ, "ତୁମ୍ଭେମାନେ ଯାହାଙ୍କୁ ଉପାସନା କରୁଥିଲ ସେମାନେ କାହାନ୍ତି, ।୯୨।

"ପରମେଶ୍ୱରଙ୍କ ବ୍ୟତୀତ ? ସେମାନେ କଅଣ ତୁମ୍ଭମାନଙ୍କର କୌଣସି ସାହାଯ୍ୟ କରିପାରିବେ ଅଥବା ନିଜର କୌଣସି ସାହାଯ୍ୟ କରିପାରିବେ ?" ।୯୩।

ଅତଏବ ସେମାନେ ଓ ବିପଥଗାମୀମାନେ ସେଥିମଧ୍ୟରେ ଅଧୋମୁଖରେ ନିକ୍ଷିପ୍ତ ହେବେ ।୯୪।

"ଏବଂ ସଇତାନର ସେନାଦଳ, ସମସ୍ତେ; ।୯୫।

"ସେଠାରେ ସେମାନେ ପରସ୍ପର ତର୍କବିତର୍କ କରି କହିବେ, ।୯୬।

---

ପରମେଶ୍ୱରଙ୍କ ପ୍ରତି ଅକୃତଜ୍ଞତା ପ୍ରକାଶ କରାହୁଏ ଏବଂ ସେଥିପାଇଁ ପରଲୋକରେ ଶାସ୍ତି ଭୋଗ କରିବାକୁ ହେବ । ସୁତରାଂ ସେହି ପ୍ରତିମାମାନ ଅମ୍ଭମାନଙ୍କର ଶତ୍ରୁ ।

୮୩।୮୯ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଇବ୍ରାହିମ ତାଙ୍କର ଇହଲୋକ ଓ ପରଲୋକର ମଙ୍ଗଳପାଇଁ ଏବଂ ତାଙ୍କ ପିତାଙ୍କୁ କ୍ଷମା କରିବାପାଇଁ ପରମେଶ୍ୱରଙ୍କ ନିକଟ ପ୍ରାର୍ଥନା କରିଥିବାର ବିଷୟ ଉଲ୍ଲେଖକରି ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ଧୈର୍ଯ୍ୟ ଅବଲମ୍ବନ ଓ ପ୍ରାର୍ଥନା କରିବା ପାଇଁ ଉପଦେଶ ଦେଇଅଛନ୍ତି ।

୯୦।୯୫ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ପରଲୋକରେ ପୁଣ୍ୟବାନ୍‌ମାନଙ୍କର ପୁରସ୍କାର ଓ ପାପାଚାରୀମାନଙ୍କ ଶାସ୍ତିର ବିଷୟ ବର୍ଣ୍ଣନା କରି ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ପ୍ରଦାନ କରିଅଛନ୍ତି ।

୯୬।୧୦୨ । ପରଲୋକରେ ପାପାଚାରୀମାନେ ନରକର ଶାସ୍ତି ଭୋଗକରିବା ସମୟରେ ପରସ୍ପର ମଧ୍ୟରେ ଯୁକ୍ତିତର୍କ କରିବେ । ସେମାନେ ସେମାନଙ୍କର ବିପଥଗମନ ପାଇଁ ଅଂଶୀଉପାସ୍ୟମାନଙ୍କୁ ଦୋଷଦେଇ ଅନୁତାପ କରିବେ ।

"ପରମେଶ୍ୱରଙ୍କ ଶପଥ । ନିଶ୍ଚୟ ଅମ୍ଭେମାନେ ପ୍ରକାଶ୍ୟ ଭ୍ରାନ୍ତି ମଧ୍ୟରେ ଥିଲୁଁ ।୯୭।

"ଯେତେବେଳେ ଅମ୍ଭେମାନେ ତୁମ୍ଭମାନଙ୍କୁ ସମସ୍ତ ଜଗତର ପାଳନକର୍ତ୍ତାଙ୍କର ସମକକ୍ଷ ମନେ କରୁଥିଲୁଁ; ।୯୮।

"ଏବଂ ଏହି ଅପରାଧୀମାନଙ୍କ ଛଡ଼ା ଆଉ କେହି ଅମ୍ଭମାନଙ୍କୁ ବିଭ୍ରାନ୍ତ କରିନାହାନ୍ତି ।୯୯।

"ଅତଏବ ଅମ୍ଭମାନଙ୍କ ପାଇଁ କେହି ସୁପାରିସକାରୀ ନାହିଁ; ।୧୦୦।

"ଅଥବା କେହି ପ୍ରକୃତ ବନ୍ଧୁ ନାହିଁ ।୧୦୧।

"ଏହାପରେ ଯଦି ଅମ୍ଭେମାନେ (ପୃଥିବୀକୁ) ଫେରି ଯାଇପାରନ୍ତୁ, ତେବେ ନିଶ୍ଚୟ ଅମ୍ଭେମାନେ (ସେଠାରେ ସତ୍‌କାର୍ଯ୍ୟ କରି) ବିଶ୍ୱାସକାରୀମାନଙ୍କର ଅନ୍ତର୍ଗତ ହୁଅନ୍ତୁ" ।୧୦୨।

ନିଶ୍ଚୟ ଏହା ମଧ୍ୟରେ ନିଦର୍ଶନ ରହିଅଛି; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ ।୧୦୩।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୦୪।

## ୬ଷ୍ଠ ବିଭାଗ

ନୂହଙ୍କ ସମ୍ପ୍ରଦାୟ ପ୍ରେରିତପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ।୧୦୫।

ଯେତେବେଳେ ସେମାନଙ୍କ ଭାଇ ନୂହ ସେମାନଙ୍କୁ କହିଥିଲେ. "ତୁମ୍ଭେମାନେ କଅଣ ଧର୍ମଭୀରୁ ହେବ ନାହିଁ ? ୧୦୬।

"ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପାଇଁ ଜଣେ ବିଶ୍ୱସ୍ତ ପ୍ରେରିତପୁରୁଷ ।୧୦୭।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଅମ୍ଭର ଅନୁଗତ ହୁଅ ।୧୦୮।

"ଏବଂ ଅମ୍ଭେ ସେଥିପାଇଁ ତୁମ୍ଭମାନଙ୍କଠାରୁ କୌଣସି ପାରିଶ୍ରମିକ ଗ୍ରହଣ କରୁନାହୁଁ; ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରିଠାରୁ ଅମ୍ଭର ପାରିଶ୍ରମିକ ନାହିଁ ।୧୦୯।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଅମ୍ଭର ଅନୁଗତହୁଅ ।୧୧୦।"

ସେମାନେ କହିଥିଲେ, "ଅମ୍ଭେମାନେ କଅଣ ତୁମ୍ଭପ୍ରତି ବିଶ୍ୱାସ କରିବୁଁ, ଅଥଚ ଇତରଲୋକମାନେ ତୁମ୍ଭର ଅନୁସରଣ କରୁଅଛନ୍ତି ?" ୧୧୧।

---

ମାତ୍ର ସେତେବେଳେ ଅନୁତାପ କରିବାରେ କୌଣସି ଲାଭ ହେବନାହିଁ, କାରଣ ପାର୍ଥିବଜୀବନ ଯାହାକି କର୍ମକ୍ଷେତ୍ର ଅଟେ ଆଉ ଫେରି ଆସିବ ନାହିଁ । ପରଲୋକ କେବଳ କର୍ମଫଳ ଭୋଗର ସ୍ଥାନ ଅଟେ ।

୧୦୩।୧୦୪ । ପରମେଶ୍ୱର ପରଲୋକର ଶାସ୍ତିର ବିଷୟ ଉଲ୍ଲେଖକରି ବିଧର୍ମୀ ମକ୍‌କାବାସୀମାନଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି ଯେ ସେମାନେ ଏଥିରୁ ଶିକ୍ଷା ଲାଭ କରିବା ଉଚିତ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ । ପରମେଶ୍ୱର ଅବାଧ୍ୟ ଲୋକମାନଙ୍କୁ ଶାସ୍ତିଦେବାପାଇଁ ଯେପରି ପରାକ୍ରମଶାଳୀ, ସେହିପରି ବିଶ୍ୱାସକାରୀମାନଙ୍କୁ କ୍ଷମା ଓ ପୁରସ୍କାର ଦେବାପାଇଁ କରୁଣାମୟ ।

୧୦୫।୧୨୨ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ନୂହ ଏବଂ ତାଙ୍କ ସମ୍ପ୍ରଦାୟର ବିବରଣ ସଂକ୍ଷେପରେ ବର୍ଣ୍ଣନା କରି ବିଧର୍ମୀ ମକ୍‌କାବାସୀମାନଙ୍କୁ ଲକ୍ଷ୍ୟକରି କହୁଅଛନ୍ତି ଏହି ବିବରଣୀରୁ ସେମାନଙ୍କୁ ଶିକ୍ଷା ଲାଭ କରିବା ଉଚିତ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରୁନାହାନ୍ତି । ପରମେଶ୍ୱର ଅବିଶ୍ୱାସକାରୀମାନଙ୍କୁ ଶାସ୍ତିଦେବା ପାଇଁ ଯେପରି ପରାକ୍ରାନ୍ତ, ସେହିପରି ବିଶ୍ୱାସକାରୀମାନଙ୍କୁ କ୍ଷମା ଓ ପୁରସ୍କାର ଦେବାପାଇଁ କରୁଣାମୟ । ୧୧ଶଅଧ୍ୟାୟ ଶ୍ଳୋ୩୬-୪୮କ ମାନଙ୍କରେ ମହାପୁରୁଷ ନୂହଙ୍କ ବିଶେଷ ବିବରଣ ବର୍ଣ୍ଣିତ ଅଛି ।

ନୂହ କହିଥିଲେ, "ସେମାନେ କଅଣ କରୁଅଛନ୍ତି ତାହାତ ଆମ୍ଭେ ଜାଣୁନାହୁଁ ।୧୧୨।

"ସେମାନଙ୍କ ଭଲମନ୍ଦ କାର୍ଯ୍ୟର ହିସାବ ଆମ୍ଭର ପାଳନକର୍ତ୍ତାଙ୍କଛଡ଼ା ଅନ୍ୟ କାହାର ନିକଟରେ ନାହିଁ, ଯଦିଚ ତୁମ୍ଭେମାନେ ଏତକ ସତ୍ୟ ବୁଝିଥାନ୍ତ ।୧୧୩।

"ଏବଂ ଆମ୍ଭେ ବିଶ୍ୱାସକାରୀମାନଙ୍କୁ ବିତାଡ଼ିତ କରିବୁଁ ନାହିଁ ।୧୧୪।

"ଆମ୍ଭେ ପ୍ରକାଶ୍ୟ ଭୟପ୍ରଦର୍ଶନକାରୀ ଛଡ଼ା ଅନ୍ୟ କିଛି ନୋହୁଁ" ।୧୧ ।

ସେମାନେ କହିଥିଲେ, "ହେ ନୂହ ! ଯଦି ତୁମ୍ଭେ (ପ୍ରଚାର କାର୍ଯ୍ୟରୁ) ନିବୃତ୍ତ ନହୁଅ ତେବେ ନିଶ୍ଚୟ ତୁମ୍ଭେ ପ୍ରସ୍ତରାଘାତରେ ବିଚୂର୍ଣ୍ଣ ହେବ" ।୧୧୬।

ନୂହ କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଆମ୍ଭର ସମ୍ପ୍ରଦାୟ ଆମ୍ଭପ୍ରତି ମିଥ୍ୟାରୋପ କରିଅଛନ୍ତି ।୧୧୭।

"ଅତଏବ ତୁମ୍ଭେ ଆମ୍ଭ ଓ ସେମାନଙ୍କ ମଧ୍ୟରେ ମୀମାଂସା କରିଦିଅ ଏବଂ ଆମ୍ଭଙ୍କୁ ଓ ଆମ୍ଭର ସଙ୍ଗୀ ବିଶ୍ୱାସକାରୀମାନଙ୍କୁ ଉଦ୍ଧାର କର ।" ।୧୧୮।

ଅତଏବ ଆମ୍ଭେ ତାଙ୍କୁ ଏବଂ ପରିପୂର୍ଣ୍ଣ ନୌକାରେ ଥିବା ତାଙ୍କର ସଙ୍ଗୀମାନଙ୍କୁ ଉଦ୍ଧାର କରିଥିଲୁଁ ।୧୧୯।

ତା ପରେ ଆମ୍ଭେ ଅବଶିଷ୍ଟମାନଙ୍କୁ ଜଳମଗ୍ନ କରି ଦେଇଥିଲୁଁ । ୧୨୦।

ନିଶ୍ଚୟ ଏହା ମଧ୍ୟରେ ନିଦର୍ଶନ ରହିଅଛି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ ।୧୨୧।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୨୨।

## ୭ମ ବିଭାଗ

ଆଦ୍ ସମ୍ପ୍ରଦାୟ ପ୍ରେରିତ ପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ।୧୨୩।

ଯେତେବେଳେ ସେମାନଙ୍କର ଭାଇ ହୁଦ୍ ସେମାନଙ୍କୁ କହିଥିଲେ, "ତୁମ୍ଭେମାନେ କଅଣ ଧର୍ମ ଭୀରୁ ହେବ ନାହିଁ ? ୧୨୪।

"ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କ ପାଇଁ ଜଣେ ବିଶ୍ୱସ୍ତ ପ୍ରେରିତ ପୁରୁଷ ।୧୨୫।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଆମ୍ଭର ଅନୁଗତ ହୁଅ ।୧୨୬।

"ଏବଂ ଆମ୍ଭେ ସେଥିପାଇଁ ତୁମ୍ଭମାନଙ୍କ ନିକଟରୁ କୌଣସି ପାରିଶ୍ରମିକ ଗୃହୁଁ ନାହୁଁ, ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରଠାରୁ ଆମ୍ଭର ପୁରସ୍କାର ନାହିଁ ।୧୨୭।

"ତୁମ୍ଭେମାନେ କଅଣ ପ୍ରତ୍ୟେକ ଉଚ୍ଚସ୍ଥାନରେ କୀର୍ତ୍ତି ସ୍ତମ୍ଭ ପ୍ରସ୍ତୁତ କରୁଅଛ ? ଏସବୁ ବୃଥାରେ କରୁଅଛ କିନା । ୧୨୮।

---

୧୧୪ । ଧନୀ ହେଉ ଦରିଦ୍ରହେଉ, ଉଚ୍ଚ ହେଉ ବା ଅସ୍ପୃଶ୍ୟ ହେଉ ଯେ ପରମେଶ୍ୱରଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରି ଆମ୍ଭର ଅନୁଗତ ହେବ, ଅମ୍ଭେ ତାକୁ ତଡ଼ି ଦେବୁ ନାହିଁ । ୧୧ଅଧ୍ୟାୟର ୨୯ ଶ୍ଳୋକ ଦେଖ ।

୧୨୮—୧୨୯ । ଇହସଂସାର କ୍ଷଣସ୍ଥାୟୀ ଅଟେ । ଏଠାରେ କଠୋର ପରିଶ୍ରମ ଓ ବହୁ ଅର୍ଥବ୍ୟୟରେ ବିଖ୍ୟାତ ଲୋକମାନଙ୍କ ସ୍ମୃତି ରକ୍ଷାପାଇଁ କୀର୍ତ୍ତିସ୍ତମ୍ଭ ସ୍ଥାପନ ଏବଂ ବାସ ପାଇଁ ସୁନ୍ଦର ଓ ବହୁମୂଲ୍ୟ ଅଟ୍ଟାଳିକାମାନ ନିର୍ମାଣ ବୃଥା ଅଟେ ।

"ଏବଂ ତୁମ୍ଭେମାନେ ସୁରମ୍ୟ ପ୍ରାସାଦମାନ ପ୍ରସ୍ତୁତ କରୁଅଛ ଯେପରି ତୁମ୍ଭେମାନେ ସର୍ବଦା ବାସ କରିବ ।୧୨୯।

"ଏବଂ ଯେତେବେଳେ ତୁମ୍ଭେମାନେ ହସ୍ତ ପ୍ରସାରଣକର, ଅତ୍ୟାଗ୍ରହୀ ପରି ଜୋରରେ ହସ୍ତକ୍ଷେପ କର ।୧୩୦।

"ଅତଏବ ତୁମ୍ଭେମାନେ ପରମେଶ୍ୱରଙ୍କୁ ଭୟକର ଏବଂ ଆମ୍ଭର ଅନୁଗତ ହୁଅ । ୧୩୧।

"ଏବଂ ତାଙ୍କୁହିଁ ଭୟକର ଯେ ତୁମ୍ଭମାନଙ୍କୁ ପ୍ରଚୁରପରିମାଣରେ ଯାହା ଦେଇ ଅଛନ୍ତି, ତୁମ୍ଭେମାନେ ତାହା ଅବଗତ ଅଛ ।୧୩୨।

"(ଅର୍ଥାତ୍) ସେ ତୁମ୍ଭମାନଙ୍କୁ ପ୍ରଚୁର ପରିମାଣରେ ଗୃହପାଳିତ ପଶୁ ଓ ସନ୍ତାନ ସନ୍ତତି ଦେଇ-ଅଛନ୍ତି ।୧୩୩।

"ଏବଂ ଉଦ୍ୟାନ ଓ ଝରଣାମାନ ଦେଇଅଛନ୍ତି ।୧୩୪।

"ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ (ମନ୍ଦକାର୍ଯ୍ୟ) ପାଇଁ ମହା ଦିବସର ଶାସ୍ତିର ଆଶଙ୍କା କରୁଅଛୁ"।୧୩୫।

ସେମାନେ କହିଥିଲେ, "ତୁମ୍ଭେ ଅମ୍ଭମାନଙ୍କୁ ଉପଦେଶ ଦିଅ ଅଥବା ନ ଦିଅ ଅମ୍ଭମାନଙ୍କ ପକ୍ଷରେ ଉଭୟ ସମାନ ।୧୩୬।

"ଏହାତ ପୂର୍ବବର୍ତ୍ତୀମାନଙ୍କର ପ୍ରଥା ଛଡ଼ା ଅନ୍ୟ କିଛି ନୁହେ ।୧୩୭।

"ଏବଂ ଅମ୍ଭେମାନେ ଶାସ୍ତି ପ୍ରାପ୍ତ ହେବୁ ନାହିଁ" ।୧୩୮।

ସୁତରାଂ ସେମାନେ ତାଙ୍କପ୍ରତି ମିଥ୍ୟାରୋପ କରିଥିଲେ; ତାପରେ ଅମ୍ଭେ ସେମାନଙ୍କୁ ଧ୍ୱଂସ କରି ଦେଇଥିଲୁଁ; ନିଶ୍ଚୟ ଏହା ମଧ୍ୟରେ ନିଦର୍ଶନ ରହିଅଛି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ ।୧୩୯।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୪୦।

## ୮ମ ବିଭାଗ

ସମୁଦ ସଂପ୍ରଦାୟ ପ୍ରେରିତପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ।୧୪୧।

ଯେତେବେଳେ ସେମାନଙ୍କ ଭାଇ ସ୍ୱାଲେହ ସେମାନଙ୍କୁ କହିଥିଲେ, "ତୁମ୍ଭେମାନେ କଅଣ ଧର୍ମ-ଭୀରୁ ହେବ ନାହିଁ ।୧୪୨।

---

୧୩୦ । ତୁମ୍ଭେମାନେ ନିଜର କ୍ଷମତା ସଦୁପଯୋଗକରି ଦୁଃଖୀ ଦରିଦ୍ରର ଦୁଃଖହରଣ ପରିବର୍ତ୍ତେ ସେମାନଙ୍କ ପ୍ରତି ଅତ୍ୟାଗ୍ରହ ଓ ନିର୍ଦ୍ଦୟ ବ୍ୟବହାର କରୁଅଛ ।

୧୩୫ । ମହାଦିବସ—ପରଲୋକରେ ପୁନରୁତ୍ଥାନ ଦିବସ ।

୧୩୬ । ସେମାନେ—ଅଦ ସମ୍ପ୍ରଦାୟ ।

୧୩୯-୧୪୦ । ପରମେଶ୍ୱର ମହାପୁରୁଷ ହୁଦ ଏବଂ ଅଦ ସମ୍ପ୍ରଦାୟର ବିବରଣୀ ସଂକ୍ଷେପରେ ପ୍ରକାଶ କରି ବିଧର୍ମୀ ଲୋକମାନଙ୍କ ପ୍ରତି ଲକ୍ଷ୍ୟକରି କହୁଅଛନ୍ତି କି ଅଦ ସମ୍ପ୍ରଦାୟର ଶାସ୍ତି ବିଷୟ ସ୍ମରଣ କରି ସେମାନଙ୍କୁ ଶିକ୍ଷା ଲାଭ କରିବା ଉଚିତ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରୁନାହାନ୍ତି । ପରମେଶ୍ୱର ଅବାଧ୍ୟ ଲୋକମାନଙ୍କୁ ଶାସ୍ତି ଦେବା ପାଇଁ ଯେପରି ପରାକ୍ରାନ୍ତ, ଅନୁଗତ ଲୋକମାନଙ୍କୁ ପୁରସ୍କାର ଦେବା ପାଇଁ ସେହିପରି କରୁଣାମୟ ।

ଅଦ ସମ୍ପ୍ରଦାୟର ବିଶେଷ ବିବରଣୀ ୭ମ ଅଧ୍ୟାୟର ୯ମ ବିଭାଗରେ ଲିଖିତ ଅଛି ।

"ନିଶ୍ଚୟ ଆମ୍ଭେ ତୁମ୍ଭମାନଙ୍କ ପାଇଁ ଜଣେ ବିଶ୍ୱସ୍ତ ପ୍ରେରିତ ପୁରୁଷ ।୧୪୩।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଆମ୍ଭର ଅନୁଗତ ହୁଅ ।୧୪୪।

"ଏବଂ ଆମ୍ଭେ ସେଥିପାଇଁ ତୁମ୍ଭମାନଙ୍କ ନିକଟରୁ କୌଣସି ପାରିଶ୍ରମିକ ଗୃହୁ ନାହୁଁ, ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରଠାରୁ ଆମ୍ଭର ପୁରସ୍କାର ନାହିଁ ।୧୪୫।

"ତୁମ୍ଭମାନଙ୍କୁ କଅଣ ଏଠାରେ ଯାହା କିଛି ଅଛି ତାହା ମଧ୍ୟରେ ନିରାପଦରେ ଛାଡ଼ି ଦିଆଯିବ ?୧୪୬।

"ଉଦ୍ୟାନମାନଙ୍କରେ ଏବଂ ଝରଣାମାନଙ୍କରେ ।୧୪୭।

"ଏବଂ ଶସ୍ୟ କ୍ଷେତ୍ରରେ ଓ ସୁନ୍ଦର ଗୁଚ୍ଛଯୁକ୍ତ ଖଜୁରୀଗଛମାନଙ୍କରେ ।୧୪୮।

"ଏବଂ ତୁମ୍ଭେମାନେ ପର୍ବତମାନ କାଟି ଆଡମ୍ବରରେ ଗୃହ ସବୁ ନିର୍ମାଣ କରୁଅଛ ।୧୪୯।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଆମ୍ଭର ଅନୁଗତହୁଅ ।୧୫୦।

"ଏବଂ ଅପବ୍ୟୟୀମାନଙ୍କର ଆଦେଶର ଅନୁସରଣ କରନା ।୧୫୧।

"ଯେଉଁମାନେ ପୃଥିବୀରେ ଦୁଷ୍କର୍ମ କରନ୍ତି ଏବଂ (ନିଜକୁ) ସଂଶୋଧନ କରନ୍ତି ନାହିଁ ।"୧୫୨।

ସେମାନେ କହିଥିଲେ, "ତୁମ୍ଭେ ଜଣେ ଯାଦୁଗ୍ରସ୍ତ ବ୍ୟକ୍ତି ଛଡ଼ା ଆଉ କିଛି ନୁହ ।୧୫୩।

"ତୁମ୍ଭେ ଆମ୍ଭମାନଙ୍କ ପରି ମନୁଷ୍ୟ ଛଡ଼ା ଆଉ କିଛି ନୁହଁ, ଅତଏବ ତୁମ୍ଭେ ଯଦି ସତ୍ୟବାଦୀ-ମାନଙ୍କର ଅନ୍ତର୍ଗତ ଥାଅ ତେବେ କୌଣସି ନିଦର୍ଶନ ଆଣ" ।୧୫୪।

ସ୍ୱାଲେହ କହିଥିଲେ, "ଏ ଗୋଟିଏ ଉଷ୍ଟ୍ରୀ (ତୁମ୍ଭମାନଙ୍କପାଇଁ ନିଦର୍ଶନ ଅଟେ) ନିର୍ଦ୍ଧାରିତ ଦିନରେ ଏହାକୁ ଏକବାର ଜଳପାନ କରିବାକୁ ଦେବ ଏବଂ ତୁମ୍ଭେମାନେ ମଧ୍ୟ ଏକବାର ପାନ କରିବ ।୧୫୫।

"ଏବଂ ଅସତ୍ ଅଭିପ୍ରାୟରେ ତାହାକୁ ସ୍ପର୍ଶ କରିବ ନାହିଁ, ନଚେତ ତୁମ୍ଭମାନଙ୍କୁ ମହାଦିବସର ଶାସ୍ତି ଆକ୍ରମଣ କରିବ" ।୧୫୬।

କିନ୍ତୁ ସେମାନେ ଉଷ୍ଟ୍ରୀକୁ ହତ୍ୟା କରିଥିଲେ, ପରେ ଏକାର୍ଯ୍ୟପାଇଁ ଦୁଃଖ ପ୍ରକାଶ କରିଥିଲେ ।୧୫୭।

ମାତ୍ର ଶାସ୍ତି ସେମାନଙ୍କୁ ଆକ୍ରମଣ କରିଥିଲା, ନିଶ୍ଚୟ ଏହା ମଧ୍ୟରେ ନିଦର୍ଶନ ରହିଅଛି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ ।୧୫୮।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୫୯।

---

୧୪୧-୧୫୯ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ସ୍ୱାଲେହ ଏବଂ ତାଙ୍କର ଅବାଧ୍ୟ ସମ୍ପ୍ରଦାୟ ସମୁଦ୍‌ର ଶାସ୍ତିର ବିଷୟ ସଂକ୍ଷେପରେ ବର୍ଣ୍ଣନା କରି ମକ୍କାବାସୀ ଅବିଶ୍ୱାସକାରୀମାନଙ୍କ ପ୍ରତି ଲକ୍ଷ୍ୟ କରି କହୁଅଛନ୍ତି କି ଏହି ବିବରଣୀରୁ ସେମାନଙ୍କର ଶିକ୍ଷା ଲାଭ କରିବା ଉଚିତ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରୁ ନାହାନ୍ତି । ସୁତରାଂ ପରମେଶ୍ୱର ଅବିଶ୍ୱାସକାରୀମାନଙ୍କୁ ଶାସ୍ତି ଦେବା ପାଇଁ ଯେପରି ପରାକ୍ରାନ୍ତ, ବିଶ୍ୱାସକାରୀ-ମାନଙ୍କୁ ପୁରସ୍କାର ଦେବା ପାଇଁ ସେହିପରି କରୁଣାମୟ ।

ସମୁଦ ସମ୍ପ୍ରଦାୟ ଭୂମିକମ୍ପଦ୍ୱାରା ଧ୍ୱଂସ ହୋଇଥିଲେ । ୭ମ ଅଧ୍ୟାୟର ୭୮ ଶ୍ଳୋକ ଦେଖ ।

୧୫୫ । ପାଳି କରି ଦିନେ ଉଷ୍ଟ୍ରୀକୁ ଜଳ ପିଇବାକୁ ଦେବ ଏବଂ ତହିଁ ଆରଦିନ ତୁମ୍ଭେମାନେ ଜଳ ନେବ ।

୧୫୭ । ମହାପୁରୁଷ ସ୍ୱାଲେହଙ୍କ ଦ୍ୱାରା ଅଲୌକିକ ନିଦର୍ଶନରେ ବିଶ୍ୱାସ ସ୍ଥାପନ ନ କରି କେବଳ ମୁଖରେ ଦୁଃଖ ପ୍ରକାଶ କରିବା ଦ୍ୱାରା କିଛି ଫଳ ଲାଭ ହୋଇ ନଥିଲା ।

## ୯ମ ବିଭାଗ

ଏବଂ ଲୁତ ସଂପ୍ରଦାୟ ପ୍ରେରିତ ପୁରୁଷମାନଙ୍କପ୍ରତି ମିଥ୍ୟାରୋପ କରିଥିଲେ ।୧୬୦।

ଯେତେବେଳେ ସେମାନଙ୍କ ଭାଇ ଲୁତ ସେମାନଙ୍କୁ କହିଥିଲେ, ତୁମ୍ଭେମାନେ କଅଣ ଧର୍ମଭୀରୁ ହେବ ନାହିଁ ? ୧୬୧।

"ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପାଇଁ ଜଣେ ବିଶ୍ବସ୍ତ ପ୍ରେରିତ ପୁରୁଷ ୧୬୨।

"ଅତଏବ ପରମେଶ୍ବରଙ୍କୁ ଭୟକର ଏବଂ ଅମ୍ଭର ଅନୁଗତ ହୁଅ ।୧୬୩।

"ଏବଂ ଅମ୍ଭେ ସେଥିପାଇଁ ତୁମ୍ଭମାନଙ୍କଠାରୁ କୌଣସି ପାରିଶ୍ରମିକ ଗ୍ରହଣ ନାହୁଁ; ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରିଠାରୁ ଅମ୍ଭର ପୁରସ୍କାର ନାହିଁ ।୧୬୪।

"ଏ କ'ଣ ! ଏ ସଂସାରରେ ତୁମ୍ଭେମାନେ କେବଳ ପୁରୁଷମାନଙ୍କ ଉପରେ (ଅସ୍ବାଭାବିକ ବ୍ୟଭିଚାର ପାଇଁ) ଉପସ୍ଥିତ ହେଉଅଛ ।୧୬୫।

"ଏବଂ ତୁମ୍ଭମାନଙ୍କର ପାଳନକର୍ତ୍ତା ତୁମ୍ଭମାନଙ୍କ ପାଇଁ ଯେ ସ୍ତ୍ରୀମାନଙ୍କୁ ସୃଷ୍ଟି କରି ଅଛନ୍ତି ସେମାନଙ୍କୁ ତୁମ୍ଭେମାନେ ପରିତ୍ୟାଗ କରୁଅଛ । ବରଂ ତୁମ୍ଭେମାନେ ସୀମା ଅତିକ୍ରମକାରୀ ସଂପ୍ରଦାୟ" ।୧୬୬।

ସେମାନେ କହିଥିଲେ, "ହେ ଲୁତ ! ଯଦି ତୁମ୍ଭେ (ଏପରି ପ୍ରଚାରରୁ) ବିରତ ନ ହୁଅ ତେବେ ନିଶ୍ଚୟ ତୁମ୍ଭେ (ଅମ୍ଭମାନଙ୍କ ସହରରୁ) ବହିଷ୍କୃତମାନଙ୍କର ଅନ୍ତର୍ଗତ ହେବ" ।୧୬୭।

ଲୁତ କହିଥିଲେ, "ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କର କାର୍ଯ୍ୟକୁ ଘୃଣା କରୁଅଛୁଁ ।୧୬୮।

(ଏବଂ ପ୍ରାର୍ଥନା କରିଥିଲେ —) "ହେ ଅମ୍ଭର ପାଳନକର୍ତ୍ତା ! ସେମାନେ ଯାହା କରୁଅଛନ୍ତି ସେଥିରୁ ଅମ୍ଭଙ୍କୁ ଏବଂ ଅମ୍ଭର ପରିବାରକୁ ରକ୍ଷାକର" ।୧୬୯।

ସୁତରାଂ ଅମ୍ଭେ ତାଙ୍କୁ ଓ ତାଙ୍କର ପରିବାରର ଲୋକମାନଙ୍କୁ ଉଦ୍ଧାର କରିଥିଲୁଁ; ।୧୭୦।

କିନ୍ତୁ ଏକ ପଶ୍ଚାଦ୍‌ବର୍ତ୍ତିନୀ ବୃଦ୍ଧାଛଡ଼ା ।୧୭୧।

ତାପରେ ଅମ୍ଭେ ଅବଶିଷ୍ଟମାନଙ୍କୁ (ବୃଦ୍ଧାସହିତ) ଧ୍ବଂସ କରି ଦେଇଥିଲୁଁ ।୧୭୨।

ଏବଂ ସେମାନଙ୍କ ଉପରେ (ଶିଳା) ବୃଷ୍ଟି ବର୍ଷଣ କରିଥିଲୁଁ; ଏବଂ ଭୟପ୍ରଦର୍ଶିତମାନଙ୍କ ଉପରେ କି ଭୟଙ୍କର ବୃଷ୍ଟି ହୋଇଥିଲା ।୧୭୩।

ନିଶ୍ଚୟ ଏହାମଧ୍ୟରେ ନିଦର୍ଶନ ରହିଅଛି; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ବାସ କରନ୍ତି ନାହିଁ ।୧୭୪।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୭୫।

---

୧୬୦-୧୭୫ । ଏହି ଶ୍ଳୋକମାନଙ୍କରେ ପରମେଶ୍ବର ମହାପୁରୁଷ ଲୁତ ଏବଂ ତାଙ୍କର ଅବାଧ୍ୟ ସମ୍ପ୍ରଦାୟର ବିବରଣୀ ସଂକ୍ଷେପରେ ପ୍ରକାଶ କରି ଅବିଶ୍ବାସକାରୀମାନଙ୍କ ପ୍ରତି ଲକ୍ଷ୍ୟ କରି କହୁଅଛନ୍ତି କି ଏହି ବିବରଣୀରୁ ସେମାନଙ୍କର ଶିକ୍ଷା ଲାଭ କରିବା ଉଚିତ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ବାସ କରୁନାହାନ୍ତି । ପରମେଶ୍ବର ଅବିଶ୍ବାସକାରୀମାନଙ୍କୁ ଶାସ୍ତି ଦେବା ପାଇଁ ଯେପରି ପରାକ୍ରାନ୍ତ, ବିଶ୍ବାସକାରୀମାନଙ୍କୁ ପୁରସ୍କାର ଦେବା ପାଇଁ ସେହିପରି କରୁଣାମୟ ।

୭ମ ଅଧ୍ୟାୟର ୮୪ ଶ୍ଳୋକ ଦେଖ । ମହାପୁରୁଷ ଲୁତଙ୍କ ପାପୀ ସମ୍ପ୍ରଦାୟ ଶିଳାବୃଷ୍ଟିରେ ଧ୍ବଂସ ପାଇଥିଲେ ।

୧୭୧ । ପଶ୍ଚାଦ୍‌ବର୍ତ୍ତିନୀ ବୃଦ୍ଧା—ଲୁତଙ୍କ ଅବାଧ୍ୟା ସ୍ତ୍ରୀ ।

## ୧୦ମ ବିଭାଗ

(ଅସ୍ୱେକା) ବନବାସୀମାନେ ପ୍ରେରିତପୁରୁଷମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ।୧୭୬।

ଯେତେବେଳେ ଶୋୟେବ୍ ସେମାନଙ୍କୁ କହିଥିଲେ, "ତୁମ୍ଭେମାନେ କଅଣ ଧର୍ମଭୀରୁ ହେବନାହିଁ ?। ୧୭୭ ।

"ନିଶ୍ଚୟ ଅମ୍ଭେ ତୁମ୍ଭମାନଙ୍କ ପାଇଁ ଜଣେ ବିଶ୍ୱସ୍ତ ପ୍ରେରିତପୁରୁଷ ।୧୭୮।

"ଅତଏବ ପରମେଶ୍ୱରଙ୍କୁ ଭୟକର ଏବଂ ଅମ୍ଭର ଅନୁଗତହୁଅ ।୧୭୯।

"ଏବଂ ଅମ୍ଭେ ସେଥିପାଇଁ ତୁମ୍ଭମାନଙ୍କ ନିକଟରୁ କୌଣସି ପାରିଶ୍ରମିକ ଗୃହୁ ନାହୁଁ; ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ ଅନ୍ୟ କାହାରିଠାରୁ ଅମ୍ଭର ପୁରସ୍କାର ନାହିଁ ।୧୮୦।

"ତୁମ୍ଭେମାନେ (ଦ୍ରବ୍ୟ ମାପ କଲାବେଳେ) ପୂର୍ଣ୍ଣ ପରିମାଣରେ ପ୍ରଦାନକର ଏବଂ କ୍ଷତିକାରୀମାନଙ୍କର ଅନ୍ତର୍ଗତ ହୁଅନା ।୧୮୧।

"ଏବଂ ସଠିକ ତୁଳାଦଣ୍ଡ ଦ୍ୱାରା ମାପକର ।୧୮୨।

"ଏବଂ ଲୋକମାନଙ୍କୁ ସେମାନଙ୍କର ଦ୍ରବ୍ୟ ଅଦ କମକରି ଦିଅନା ଏବଂ ପୃଥିବୀରେ ଅଶାନ୍ତି ସୃଷ୍ଟିକରନା ।୧୮୩।

"ଏବଂ ତାହାଙ୍କୁ ଭୟକର ଯେ ତୁମ୍ଭମାନଙ୍କୁ ଏବଂ ପୂର୍ବବର୍ତ୍ତୀ ଲୋକମାନଙ୍କୁ ସୃଷ୍ଟି କରିଅଛନ୍ତି" ।୧୮୪।

ସେମାନେ କହିଥିଲେ, "ତୁମ୍ଭେ ଜଣେ ଯାଦୁଗ୍ରସ୍ତ ବ୍ୟକ୍ତି ଛଡ଼ା ଆଉକିଛି ନୁହଁ; —।୧୮୫।

"ଏବଂ ତୁମ୍ଭେ ଅମ୍ଭମାନଙ୍କପରି ମନୁଷ୍ୟ ଛଡ଼ା ଆଉ କିଛି ନୁହ ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭକୁ ମିଥ୍ୟାବାଦୀମାନଙ୍କର ଅନ୍ତର୍ଗତ ମନେ କରୁଅଛୁଁ ।୧୮୬।

"ଅତଏବ ଯଦି ତୁମ୍ଭେ ସତ୍ୟବାଦୀ ଥାଅ ତେବେ ଆକାଶର ଏକ ଅଂଶ (ଖଣ୍ଡି) ଅମ୍ଭମାନଙ୍କ ଉପରେ ନିକ୍ଷେପ କର" ।୧୮୭।

ଶୋୟେବ କହିଥିଲେ, "ତୁମ୍ଭେମାନେ ଯାହା କରୁଅଛ ସେ ବିଷୟରେ ଅମ୍ଭର ପାଳନକର୍ତ୍ତାହିଁ ଅଭିଜ୍ଞ" ।୧୮୮।

ତାପରେ ସେମାନେ ତାଙ୍କ ପ୍ରତି ମିଥ୍ୟାରୋପ କରିଥିଲେ, ସେଥିପାଇଁ ଅନ୍ଧକାରାଚ୍ଛନ୍ନ ଦିବସର ଶାସ୍ତି ସେମାନଙ୍କୁ ଆକ୍ରମଣ କରିଥିଲା; ନିଶ୍ଚୟ ଏହା କଠୋର ଦିବସର ଶାସ୍ତିଥିଲା ।୧୮୯।

---

୧୭୬-୧୯୧ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ଶୋୟେବ ଓ ତାଙ୍କର ଅବାଧ୍ୟ ସମ୍ପ୍ରଦାୟର ବିବରଣୀ ସଂକ୍ଷେପରେ ପ୍ରକାଶ କରି ଅବିଶ୍ୱାସକାରୀମାନଙ୍କ ପ୍ରତି ଲକ୍ଷ୍ୟ କରି କହୁଅଛନ୍ତି କି ଏହି ବିବରଣୀରୁ ସେମାନଙ୍କର ଶିକ୍ଷା ଲାଭ କରିବା ଉଚିତ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରୁନାହାନ୍ତି । ସୁତରାଂ ପରମେଶ୍ୱର ଅବିଶ୍ୱାସକାରୀମାନଙ୍କୁ ଶାସ୍ତି ଦେବା ପାଇଁ ଯେପରି ପରାକ୍ରାନ୍ତ, ବିଶ୍ୱାସକାରୀମାନଙ୍କୁ ପୁରସ୍କାର ଦେବାପାଇଁ ସେହିପରି କରୁଣାମୟ ।

୧୮୧ । କ୍ଷତିକାରୀମାନଙ୍କର ଅନ୍ତର୍ଗତ ହୁଅନା—ମାପରେ କମ କରିଦେଇ ଲୋକମାନଙ୍କର କ୍ଷତି କରନା ।

୧୮୯ । ବନବାସୀ ସମ୍ପ୍ରଦାୟର ଅବାଧ୍ୟତା ଓ ଅତ୍ୟାଗ୍ରହ ଯେତେବେଳେ ସୀମାଲଙ୍ଘନ କରିଥିଲା, ଦିନେ ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇ ପୃଥିବୀ ଅନ୍ଧକାରବୃତ ହୋଇଥିଲା ଏବଂ ଆକାଶର ଏକ ଅଂଶ ଖଣ୍ଡି ପଡ଼ିଲା ପରି

ନିଶ୍ଚୟ ଏହାମଧ୍ୟରେ ନିଦର୍ଶନ ରହିଅଛି; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସସ୍ଥାପନ କରନ୍ତି ନାହିଁ ।୧୯୦।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମହାପରାକ୍ରାନ୍ତ ଓ କରୁଣାମୟ ।୧୯୧।

## ୧୧ଶ ବିଭାଗ

ଏବଂ (ହେ ମୋହମ୍ମଦ) ନିଶ୍ଚୟ ଏ କୋରାନ୍ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି ।୧୯୨।

ଏହା ସହିତ ବିଶ୍ୱସ୍ତ ଆତ୍ମା (ଜିବରେଇଲ୍) ଅବତୀର୍ଣ୍ଣ ହୋଇ ଅଛନ୍ତି ।୧୯୩।

ତୁମ୍ଭହୃଦୟ ଉପରେ, ଯେପରି ତୁମ୍ଭେ ଭୟ ପ୍ରଦର୍ଶନକାରୀ ମାନଙ୍କର ଅନ୍ତର୍ଗତ ହେବ,—।୧୯୪।

ପ୍ରକାଶ୍ୟ ଆରବୀଭାଷାରେ ।୧୯୫।

ଏବଂ ନିଶ୍ଚୟ ଏହା ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ରହିଅଛି ।୧୯୬।

ଏହା କଅଣ ସେମାନଙ୍କ ପକ୍ଷରେ ନିଦର୍ଶନ ନୁହେ ଯେ ଇସ୍ରାଇଲ୍ ବଂଶୀୟ ବିଦ୍ୱାନ୍‌ଲୋକମାନେ ଏହା ଅବଗତ ଅଛନ୍ତି ? ୧୯୭।

ଏବଂ ଯଦି ଆମ୍ଭେ ଏହାକୁ କୌଣସି ବିଦେଶୀ ଲୋକପ୍ରତି ଅବତୀର୍ଣ୍ଣ କରିଥାନ୍ତୁ ।୧୯୮।

ତତ୍ପରେ ସେ ସେମାନଙ୍କ ନିକଟରେ ତାହା ପାଠ କରିଥାନ୍ତା, ତେବେ ମଧ୍ୟ ସେମାନେ ସେଥିରେ ବିଶ୍ୱାସ ସ୍ଥାପନ କରି ନ ଥାନ୍ତେ ।୧୯୯।

ଏହିପରି ଆମ୍ଭେ ଅପରାଧୀମାନଙ୍କ ଅନ୍ତରରେ ଏହି (ଅବାଧ୍ୟତା)କୁ ପ୍ରବେଶ କରାଉ ।୨୦୦।

---

ଘଡ଼ଘଡ଼ିର ଭୀଷଣ ଶବ୍ଦ ହୋଇ ମୂଷଳ ଧାରରେ ବୃଷ୍ଟି ହୋଇଥିଲା ଏବଂ ସେମାନେ ଧ୍ୱଂସପ୍ରାପ୍ତ ହୋଇଥିଲେ ।

୧୯୨-୧୯୫ । ପବିତ୍ର କୋରାନ ଗ୍ରନ୍ଥ ବିଶ୍ୱଜଗତର ପାଳନକର୍ତ୍ତା ପରମେଶ୍ୱରଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି । ବିଶ୍ୱସ୍ତ ସ୍ୱର୍ଗଦୂତ ଜିବରେଇଲ ପରମେଶ୍ୱରଙ୍କଠାରୁ ଏହି ପବିତ୍ର ଗ୍ରନ୍ଥକୁ ଆଣି ମହାପୁରୁଷ ମୋହମ୍ମଦଙ୍କ ହୃଦୟରେ ଅଙ୍କିତ କରିଦେଇ ଅଛନ୍ତି ଏବଂ ଏହା ତାଙ୍କର ମାତୃଭାଷା ଓ ଆରବବାସୀମାନଙ୍କ ମାତୃଭାଷା ବିଶୁଦ୍ଧ ଆରବୀ ଭାଷାରେ ଅବତୀର୍ଣ୍ଣ ହୋଇଅଛି, ଯେପରି ସେ ଲୋକମାନଙ୍କୁ ସତ୍ ପଥରେ ଚାଲିବା ପାଇଁ ଉପଦେଶ ଦେଇ-ପାରିବେ ଏବଂ ପରମେଶ୍ୱରଙ୍କ ଅବାଧ୍ୟତା ପାଇଁ ପରଲୋକର ଶାସ୍ତି ସମ୍ବନ୍ଧରେ ଭୟ ଦେଖାଇବେ ଏବଂ ବିଶ୍ୱାସକାରୀମାନଙ୍କୁ ପରଲୋକର ପୁରସ୍କାର ବିଷୟରେ ସୁସମ୍ବାଦ ଦେଇପାରିବେ ।

୧୯୬-୧୯୭ । ପବିତ୍ର କୋରାନ ଗ୍ରନ୍ଥରେ ଇସଲାମ ଧର୍ମ ସମ୍ବନ୍ଧରେ ଯେଉଁ ସାଙ୍କେତିକ ବାର୍ତ୍ତାର ବ୍ୟାଖ୍ୟା କରାଯାଇଅଛି ତାହାର ପୂର୍ବ ଆଭାସ ଜଗତର ସମସ୍ତ ପୂର୍ବବର୍ତ୍ତୀ ବାଣୀ ଗ୍ରନ୍ଥମାନଙ୍କରେ ଦିଆଯାଇଥିଲା । ଇହୁଦୀ ଧର୍ମବିଦ୍ ପଣ୍ଡିତମାନଙ୍କ ମଧ୍ୟରୁ ଅନେକେ ମହାପୁରୁଷ ମୋହମ୍ମଦଙ୍କ ବାର୍ତ୍ତାକୁ ବାଣୀବାର୍ତ୍ତା ବୋଲି ସ୍ୱୀକାର କରିଅଛନ୍ତି । କେତେକ ଖ୍ରୀଷ୍ଟାନ ଧର୍ମାବଲମ୍ବୀ ସନ୍ନ୍ୟାସୀ ଏବଂ ଜ୍ଞାନୀ ଲୋକମାନେ ମଧ୍ୟ ମହାପୁରୁଷ ମୋହମ୍ମଦଙ୍କ ପ୍ରେରିତତ୍ୱକୁ ସ୍ୱୀକାର କରିଅଛନ୍ତି ।

୧୯୮-୧୯୯ । ବିଧର୍ମୀ ଆରବମାନେ କହୁଥିଲେ, କୋରାନ ଅନ୍ୟ କୌଣସି ଭାଷାରେ ଅବତୀର୍ଣ୍ଣ ନହୋଇ ଆରବୀ ଭାଷାରେ କାହିଁକି ଅବତୀର୍ଣ୍ଣ ହେଲା । ତାହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, ଏହା ଅନ୍ୟ କୌଣସି ଦେଶର ଲୋକ ଉପରେ ଅନ୍ୟ କୌଣସି ଭାଷାରେ ଅବତୀର୍ଣ୍ଣ ହୋଇଥିଲେ ମଧ୍ୟ, ସେ ଲୋକ ଆସି ଏମାନଙ୍କ ନିକଟରେ ତାହା ପ୍ରଚାର କଲେ ମଧ୍ୟ ଏମାନେ ବିଶ୍ୱାସ କରି ନଥାନ୍ତେ ।

ଯନ୍ତ୍ରଣାଦାୟକ ଶାସ୍ତି ନ ଦେଖିବା ପର୍ଯ୍ୟନ୍ତ ସେମାନେ ଏଥିପ୍ରତି ବିଶ୍ୱାସ ସ୍ଥାପନ କରିବେ ନାହିଁ ।୨୦୧।

ତାପରେ ଏହା ସେମାନଙ୍କ ନିକଟ ଅକସ୍ମାତ୍ ଉପସ୍ଥିତ ହେବ, ଏବଂ ସେମାନେ ତାହା ଜାଣି ପାରିବେ ନାହିଁ ।୨୦୨।

ସେତେବେଳେ ସେମାନେ କହିବେ, "ଅମ୍ଭେମାନେ କଅଣ ଅବକାଶ ପାଇବୁ ?"।୨୦୩।

ତେବେ କି କଅଣ ସେମାନେ ଆମ୍ଭର ଶାସ୍ତି ପାଇଁ ସତ୍ୱରତା କରୁଅଛନ୍ତି ?।୨୦୪।

ତୁମ୍ଭେ କଅଣ ଲକ୍ଷ୍ୟ କରୁଅଛ ଯେ ଯଦି ଅମ୍ଭେ ସେମାନଙ୍କୁ ବହୁବର୍ଷ (ପାର୍ଥିବସୁଖ) ଉପଭୋଗ କରିବାକୁ ଦେଉଁ,—୨୦୫।

ତାପରେ ସେମାନଙ୍କୁ ଯାହା ଅଙ୍ଗୀକାର କରିହୋଇଅଛି, ତାହା ସେମାନଙ୍କ ନିକଟରେ ଉପସ୍ଥିତ ହୁଏ—୨୦୬।

ତେବେ ସେମାନେ ଯାହା ଉପଭୋଗ କରୁଅଛନ୍ତି ତାହା ସେମାନଙ୍କର କୌଣସି ଉପକାରରେ ଆସିବ ନାହିଁ ।୨୦୭।

ଏବଂ ଅମ୍ଭେ ଏପରି କୌଣସି ନଗରକୁ ଧ୍ୱଂସ କରିନାହୁଁ, ଯାହା ପାଇଁ ଭୟ ପ୍ରଦର୍ଶନକାରୀ ନ ଥିଲେ ।୨୦୮।

ସ୍ମରଣ କରାଇ ଦେବାପାଇଁ; ଏବଂ ଅମ୍ଭେ କଦାପି (ସେମାନଙ୍କ ପ୍ରତି) ଅତ୍ୟାଚାରୀ ହୋଇନାହୁଁ ।୨୦୯।

ଏବଂ ସଇତାନମାନେ ଏହି କୋରାନ ସହିତ ଅବତୀର୍ଣ୍ଣ ହୋଇନାହାନ୍ତି ।୨୧୦।

ଏବଂ ଏହା ସେମାନଙ୍କର ଉପଯୋଗୀ ନୁହେଁ ଏବଂ ସେମାନେ ଏହା କରିବାକୁ ସକ୍ଷମ ନୁହନ୍ତି ।୨୧୧।

---

୨୦୦-୨୦୧ । କାରଣ ବଦ୍ଧମୂଳ ଅବିଶ୍ୱାସକାରୀମାନଙ୍କର ଏହା ପ୍ରକୃତିଗତ ଯେ ସେମାନେ ସ୍ୱଚକ୍ଷୁରେ ଶାସ୍ତି ନଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିବେ ନାହିଁ ।

୨୦୨-୦୪ । କିନ୍ତୁ ପରମେଶ୍ୱରଙ୍କ ଶାସ୍ତି ହଠାତ୍ ଉପସ୍ଥିତ ହେବ ଏବଂ ସେତେବେଳେ ସେମାନେ ଅନୁତାପ କରିବାକୁ ଲାଗିବେ, ମାତ୍ର ସେତେବେଳେ ଅନୁତାପ କରିବାରେ କୌଣସି ଲାଭ ହେବ ନାହିଁ ।

୨୦୫-୨୦୭ । ଅବିଶ୍ୱାସକାରୀ ବିଧର୍ମୀମାନଙ୍କ ଅବାଧ୍ୟତା ସତ୍ତ୍ୱେ ପରମେଶ୍ୱର ସେମାନଙ୍କୁ ବହୁବର୍ଷ ସୁଖ ସ୍ୱାଚ୍ଛନ୍ଦ୍ୟରେ ପାର୍ଥିବ ଜୀବନ ଉପଭୋଗ କରିବା ପାଇଁ ଅବସର ଦେଇଅଛନ୍ତି । ମାତ୍ର ସେମାନେ କୃତଜ୍ଞ ହେବା ପରିବର୍ତ୍ତିରେ ଅକୃତଜ୍ଞ ହେଉଅଛନ୍ତି । ସୁତରାଂ ଯେତେବେଳେ ସେମାନଙ୍କ ପ୍ରତି ଶାସ୍ତି ଉପସ୍ଥିତ ହେବ, ସେମାନଙ୍କର ପାର୍ଥିବ ସୁଖ ସେମାନଙ୍କର କୌଣସି ଉପକାରରେ ଆସିବ ନାହିଁ ।

୨୦୮-୨୦୯ । ପରମେଶ୍ୱର ଅତ୍ୟାଚାରୀ ନୁହନ୍ତି । ସୁତରାଂ କୌଣସି ନଗରର ଅବାଧ୍ୟ ଲୋକମାନଙ୍କୁ ଶାସ୍ତି ଦେବାର ହେଲେ ପ୍ରଥମେ ସେ ଭୟପ୍ରଦର୍ଶନକାରୀ ଉପଦେଷ୍ଟା ପଠାଇ ସେମାନଙ୍କୁ ସାବଧାନ କରାଇ ଦିଅନ୍ତି । ସେମାନେ ଅବାଧ୍ୟତାରେ ଦୃଢ଼ ରହି ଯେତେବେଳେ ସୀମା ଲଙ୍ଘନ କରନ୍ତି, ସେତେବେଳେ ସେମାନଙ୍କ ପ୍ରତି ହଠାତ୍ ଶାସ୍ତି ଉପସ୍ଥିତ ହୁଏ ।

୨୧୦-୨୧୨ । ଅବିଶ୍ୱାସକାରୀ ବିଧର୍ମୀମାନେ କହୁଥିଲେ, କୋରାନଗ୍ରନ୍ଥ ସ୍ୱର୍ଗଦୂତ ଜିବରେଇଲଙ୍କ ଦ୍ୱାରା ଅବତୀର୍ଣ୍ଣ ହେଉଅଛି, ଏହା ବିଶ୍ୱାସଯୋଗ୍ୟ ନୁହେ । ଏହା କୌଣସି ପାପାତ୍ମା ସଇତାନର କାର୍ଯ୍ୟ ଅଟେ । ଏହାର

ନିଶ୍ଚୟ ସେମାନଙ୍କୁ ଏହା ଶ୍ରବଣ କରିବାରୁ ଅପସୃତ କରାହୋଇଅଛି । ୨୧୨ ।

ଅତଏବ ତୁମ୍ଭେ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟଙ୍କୁ ଆହ୍ୱାନ କରନା, ନଚେତ ତୁମ୍ଭେ ଶାସ୍ତି ପ୍ରାପ୍ତମାନଙ୍କର ଅନ୍ତର୍ଗତ ହେବ ।୨୧୩।

ଏବଂ ତୁମ୍ଭର ଆତ୍ମୀୟ ସ୍ୱଜନମାନଙ୍କୁ ଭୟପ୍ରଦର୍ଶନକର ।୨୧୪।

ଏବଂ ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଯେ ତୁମ୍ଭର ଅନୁସରଣ କରେ ତାହାପାଇଁ ନିଜବାହୁ ଅବନତ କର ।୨୧୫।

କିନ୍ତୁ ଯଦି ସେମାନେ ତୁମ୍ଭର ଅବାଧ୍ୟ ହୁଅନ୍ତି ତେବେ ତୁମ୍ଭେ କୁହ, "ନିଶ୍ଚୟ ତୁମ୍ଭେମାନେ ଯାହା କରୁଅଛ ଆମ୍ଭେ ସେଥିର ଦାୟିତ୍ୱରୁ ମୁକ୍ତ" ।୨୧୬।

ଏବଂ ମହାପରାକ୍ରାନ୍ତ ଓ କରୁଣାମୟଙ୍କ ଉପରେ ନିର୍ଭର କର ।୨୧୭।

ଯେ କି ତୁମ୍ଭଙ୍କୁ ଲକ୍ଷ୍ୟ କରନ୍ତି, ଯେତେବେଳେ ତୁମ୍ଭେ ଦଣ୍ଡାୟମାନ ହୁଅ ।୨୧୮।

ଏବଂ ସାଷ୍ଟାଙ୍ଗ ପ୍ରଣିପାତକାରୀମାନଙ୍କ ମଧ୍ୟରେ ଗମନା ଗମନ କର ।୨୧୯।

ନିଶ୍ଚୟ ସେ ଶ୍ରବଣକାରୀ ମହାଜ୍ଞାନୀ ।୨୨୦।

ଆମ୍ଭେ କଅଣ ତୁମ୍ଭଙ୍କୁ ଜଣାଇ ଦେବୁଁ ଯେ କାହାପ୍ରତି ସଇତାନମାନେ ଅବତୀର୍ଣ୍ଣ ହୋଇ ଥାଆନ୍ତି ? ୨୨୧ ।

ସେମାନେ ପ୍ରତ୍ୟେକ ମିଥ୍ୟାବାଦୀ ପାପୀମାନଙ୍କ ଉପରେ ଅବତୀର୍ଣ୍ଣ ହୋଇ ଥାଆନ୍ତି ।୨୨୨।

ସେମାନେ ସେମାନଙ୍କର କାନସବୁକୁ (ମିଥ୍ୟା ଜନରବ ଓ ଅଳୀକ ବିଷୟମାନଙ୍କ ଦ୍ୱାରା) ପୂର୍ଣ୍ଣକରି ଦିଅନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ମିଥ୍ୟାବାଦୀ ।୨୨୩।

---

ଉତ୍ତରରେ ପରମେଶ୍ୱର କହୁଅଛନ୍ତି, ପରମେଶ୍ୱରଙ୍କ ସଦୁପଦେଶର ନିକଟବର୍ତ୍ତୀ ହେବା ପାପାତ୍ମା ସଇତାନର କ୍ଷମତାର ବହିର୍ଭୂତ ଅଟେ । ସୁତରାଂ ଏହା ସଇତାନର କାର୍ଯ୍ୟ ହୋଇ ନପାରେ । ଏହା ଛଡ଼ା, ସଇତାନମାନେ ସ୍ୱର୍ଗୀୟ ପ୍ରତ୍ୟାଦେଶ ବାଣୀ ଶୁଣିବାରୁ ରହିତ କରାଯାଇ ଅଛନ୍ତି । ୧୫ ଅଧ୍ୟାୟ ୧୭-୧୮ ଶ୍ଲୋକ ଓ ୩୭ ଅଧ୍ୟାୟର ୭-୧୦ ଶ୍ଲୋକ ଓ ତହିଁର ଟୀକା ଦେଖ ।

୨୧୩-୨୧୬ । ସୁତରାଂ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସମ୍ବୋଧନ କରି କହୁଅଛନ୍ତି, "ତୁମ୍ଭେ ପରମେଶ୍ୱରଙ୍କ ଛଡ଼ା ଅନ୍ୟ ଉପାସ୍ୟ ଗ୍ରହଣ ନକରି ଏକମାତ୍ର ପରମେଶ୍ୱରଙ୍କ ଉପାସନା କର ଏବଂ ଏ ବିଷୟରେ ସମସ୍ତଙ୍କୁ ଉପଦେଶ ପ୍ରଦାନ କର । ଯେଉଁମାନେ ତୁମ୍ଭର ଉପଦେଶ ଗ୍ରହଣ କରିବେ ସେମାନଙ୍କ ପ୍ରତି ଭଦ୍ର ବ୍ୟବହାର କର ଏବଂ ଯେଉଁମାନେ ତୁମ୍ଭର ଉପଦେଶ ଗ୍ରହଣ ନ କରି ଅବାଧ୍ୟ ହେବେ ସେମାନଙ୍କୁ ସ୍ପଷ୍ଟ କହିଦିଅ ଯେ ସେମାନଙ୍କ କାର୍ଯ୍ୟ ପାଇଁ ସେମାନେ ଦାୟୀ ।" ବାହୁ ଅବନତ କର—ଭଦ୍ର ବ୍ୟବହାର କର ।

୨୧୭-୨୨୦ । ଏହି ଶ୍ଲୋକମାନଙ୍କରେ ପରମେଶ୍ୱର ବିଧର୍ମୀ ଲୋକମାନଙ୍କୁ ଲେଶ ମାତ୍ର ଭୟ ନ କରି ପରାକ୍ରାନ୍ତ ଓ କରୁଣାମୟ ପରମେଶ୍ୱରଙ୍କ ଉପରେ ନିର୍ଭର କରି ତାଙ୍କର ଉପାସନା କରିବା ପାଇଁ ମହାପୁରୁଷ ମୋହମ୍ମଦଙ୍କୁ ଆଦେଶ କରୁଅଛନ୍ତି ।

୨୨୧-୨୨୩ । ପାପାତ୍ମା ସଇତାନମାନେ ଅବିଶ୍ୱାସକାରୀ ବିଧର୍ମୀ ଲୋକମାନଙ୍କ ପ୍ରତି ଅବତୀର୍ଣ୍ଣ ହୁଅନ୍ତି, କାରଣ ସେମାନେ ସଇତାନମାନଙ୍କ କୁପରାମର୍ଶ ପ୍ରତି କର୍ଣ୍ଣପାତ କରି ଅସତ୍ ପଥରେ ଚାଳିତ ହୁଅନ୍ତି । ମାତ୍ର ବିଶ୍ୱାସକାରୀ ପୁଣ୍ୟାତ୍ମାମାନେ ସଇତାନମାନଙ୍କ କୁପରାମର୍ଶରେ କର୍ଣ୍ଣପାତ କରନ୍ତି ନାହିଁ । ସୁତରାଂ ସେମାନେ ବିଶ୍ୱାସକାରୀମାନଙ୍କ ନିକଟବର୍ତ୍ତୀ ହୁଅନ୍ତି ନାହିଁ । ସେମାନେ—ସଇତାନମାନେ; ସେମାନଙ୍କର—ପାପୀମାନଙ୍କର ।

ଏବଂ ବିପଥଗାମୀମାନେହିଁ କବିମାନଙ୍କର ଅନୁସରଣ କରିଥାନ୍ତି ।୨୨୪।

ତୁମ୍ଭେ କଅଣ ଦେଖୁନାହଁ ଯେ ସେମାନେ ପ୍ରତ୍ୟେକ ପ୍ରାନ୍ତରରେ ହତବୁଦ୍ଧି ହୋଇ ବିଚରଣ କରନ୍ତି ? ୨୨୫।

ଏବଂ ସେମାନେ ଯାହା କହନ୍ତି ତାହା କରନ୍ତି ନାହିଁ ।୨୨୬।

ସେହିମାନଙ୍କ ବ୍ୟତୀତ, ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି ଏବଂ ପରମେଶ୍ୱରଙ୍କୁ ଅଧିକତର ସ୍ମରଣ କରନ୍ତି ଏବଂ କେବଳ ଅନ୍ୟାୟ ଆକ୍ରମଣ ପରେ ଆତ୍ମରକ୍ଷା କରନ୍ତି, ଏବଂ ଅତ୍ୟାଚାରୀମାନେ ଅବଗତ ହେବେ ଯେ ସେମାନେ କେଉଁ ପ୍ରତ୍ୟାବର୍ତ୍ତନ ସ୍ଥଳକୁ ପ୍ରତ୍ୟାବର୍ତ୍ତିତ ହେବେ ।୨୨୭।



---

୨୨୧-୨୨୬ । ଅବିଶ୍ୱାସକାରୀ ବିଧର୍ମୀ ଲୋକମାନେ ପବିତ୍ର କୋରାନର ସତ୍ୟତା ବିପକ୍ଷରେ ନାନାପ୍ରକାର ଅଯଥା ଯୁକ୍ତିତର୍କ ଆଗତ କରି ପରାସ୍ତ ହେଲାପରେ କହିବାକୁ ଲାଗିଲେ ଯେ ଏହା ଜଣେ ଅସାଧାରଣ କବିଙ୍କଦ୍ୱାରା ରଚିତ କବିତାଗ୍ରନ୍ଥ ଏବଂ ମୋହମ୍ମଦ ତାଙ୍କଠାରୁ ଶିକ୍ଷା କରୁଅଛନ୍ତି । ଏହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି କି କବିମାନଙ୍କର କବିତା ମିଥ୍ୟା କାଳ୍ପନିକ, ଅସାର ଓ ଅଶ୍ଳୀଳ ବିଷୟମାନଙ୍କରେ ପୂର୍ଣ୍ଣ ଏବଂ ବିପଥଗାମୀ ଲୋକମାନେ ତାହାର ଅନୁସରଣ କରି କ୍ଷଣିକ ସୁଖ ଅନୁଭବ କରିଥାଆନ୍ତି । ମାତ୍ର ପବିତ୍ର କୋରାନ ସତ୍ୟ, ସାର ଓ ସଦୁପଦେଶ ପୂର୍ଣ୍ଣ ବିଷୟମାନଙ୍କରେ ପୂର୍ଣ୍ଣ । ପୁଣ୍ୟାତ୍ମା ଲୋକମାନେ ଏହାର ଅନୁସରଣ କରି ଇହଲୋକ ଓ ପରଲୋକର ମଙ୍ଗଳସାଧନ କରନ୍ତି । ସୁତରାଂ କୋରାନଗ୍ରନ୍ଥ କବିମାନଙ୍କ ରଚିତ କବିତାଗ୍ରନ୍ଥରୁ ସମ୍ପୂର୍ଣ୍ଣ ପୃଥକ ।

୨୨୭ । ଏହି ଶ୍ଳୋକରେ ବିଶ୍ୱାସକାରୀ ଧର୍ମଶୀଳ କବିମାନଙ୍କ ବିଷୟ ଉଲ୍ଲେଖ କରାଯାଇଅଛି । ସେମାନଙ୍କ କବିତା କାଳ୍ପନିକ, ଅସାର ଓ ଅଶ୍ଳୀଳ ବିଷୟରେ ପୂର୍ଣ୍ଣ ନ ହୋଇ ପରମେଶ୍ୱରଙ୍କ ସ୍ତୁତି ଓ ସଦୁପଦେଶମାନଙ୍କରେ ପୂର୍ଣ୍ଣ ହୋଇଥାଏ । ପରିଶେଷରେ ଅବିଶ୍ୱାସକାରୀ ଅତ୍ୟାଚାରୀମାନଙ୍କର ଶାସ୍ତିର ବିଷୟ ଉଲ୍ଲେଖ କରାଯାଇ ଏ ଅଧ୍ୟାୟର ଉପସଂହାର କରାଯାଇଅଛି ।



## ୨୭ଶ ଅଧ୍ୟାୟ

ନାମ—ଅନ୍‌ନମ୍‌ଲ (ପିପୀଲିକା) ।

ମକ୍‌କାରେ ଅବତୀର୍ଣ୍ଣ । ଏଥିରେ ଗୋ୭ଟି ବିଭାଗ ଏବଂ ଗୋ୯୩ଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ତ୍ୱା, ସୀନ୍; ଏ ଶ୍ଳୋକଗୁଡ଼ିକ କୋରାନ ଗ୍ରନ୍ଥର ଅଟେ; ଯାହା ସ୍ପଷ୍ଟ ବର୍ଣ୍ଣନାକାରୀ, ।୧।

ବିଶ୍ୱାସକାରୀମାନଙ୍କ ପାଇଁ ସୁପଥ ପ୍ରଦର୍ଶକ ଓ ଶୁଭସମ୍ବାଦ ଦାତା ।୨।

ଯେଉଁମାନେ ଆରାଧନା ପ୍ରତିଷ୍ଠିତ କରନ୍ତି ଏବଂ ଜକାତ୍ ଦଅନ୍ତି ଏବଂ ଯେଉଁମାନେ ପରକାଳ ସମ୍ବନ୍ଧରେ ଦୃଢ଼ ବିଶ୍ୱାସ କରି ଥାଆନ୍ତି ।୩।

ନିଶ୍ଚୟ ଯେଉଁମାନେ ପରକାଳ ସମ୍ବନ୍ଧରେ ବିଶ୍ୱାସ କରନ୍ତି ନାହିଁ, ଆମ୍ଭେ ସେମାନଙ୍କ ପାଇଁ ସେମାନଙ୍କ କର୍ମମାନ ମନୋରମ କରି ଅଛୁଁ, ସୁତରାଂ ସେମାନେ (ଅନ୍ଧକାରରେ) ଇତସ୍ତତ ଭ୍ରମଣ କରୁଅଛନ୍ତି ।୪।

ଏହିମାନଙ୍କ ପାଇଁ କଠିନ ଶାସ୍ତି ରହିଅଛି ଏବଂ ପରକାଳରେ ଏହିମାନେହିଁ କ୍ଷତିଗ୍ରସ୍ତ ହେବେ । ୫ ।

ଏବଂ ନିଶ୍ଚୟ ତୁମ୍ଭେ ବିଜ୍ଞାନୀ ଓ ମହାଜ୍ଞାନୀ (ପରମେଶ୍ୱର) ଙ୍କ ଠାରୁ କୋରାନ ଗ୍ରନ୍ଥ ପ୍ରାପ୍ତ ହୋଇଅଛ । ୬ ।

ଯେତେବେଳେ ମୂସା ନିଜ ପରିବାରମାନଙ୍କୁ କହିଥିଲେ, "ନିଶ୍ଚୟ ଅମ୍ଭେ ଅଗ୍ନି ଦେଖୁଅଛୁ, ଶୀଘ୍ର ଅମ୍ଭେ ତୁମ୍ଭମାନଙ୍କ ନିକଟ ସେଥିରୁ କୌଣସି ସମ୍ବାଦ ଆଣିବୁ ଅଥବା ତୁମ୍ଭମାନଙ୍କ ନିକଟ ପ୍ରଜ୍ୱଳିତ ଶିଖା ଆଣିବୁଁ ଯେପରି ତୁମ୍ଭେମାନେ ଉତ୍ତାପ ଲାଭ କରିବ" ।୭।

---

ନାମକରଣ—ଏହି ଅଧ୍ୟାୟର ୧୮ ଶ୍ଳୋକରେ ପିପୀଲିକାମାନଙ୍କ ବିଷୟ ଉଲ୍ଲେଖ ଥିବାରୁ ଏହାର ଏପରି ନାମକରଣ ହୋଇଅଛି ।

୧ । ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ୨ୟ ଅଧ୍ୟାୟ ୧ମ ଶ୍ଳୋକ ଓ ତହିଁର ଟୀକା ଦେଖ । କେତେକ ଟୀକାକାରଙ୍କ ମତରେ 'ତ୍ୱା' ଅର୍ଥ 'ଲତିଫ' ଏବ ସିନ୍ ଅର୍ଥ 'ସମିଅ', ଯାହାର ଭାବାର୍ଥ ଦୟାମୟ ଓ ଶ୍ରବଣକାରୀ ପରମେଶ୍ୱର ଅଟେ ।

୩ । ଜକାତ୍—ନିର୍ଦ୍ଦିଷ୍ଟ ଦାନ ।

୪ । ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ, ଈଶ୍ୱର ଭକ୍ତଲୋକମାନଙ୍କ ପରି ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନାହିଁ । ସେମାନେ ସେମାନଙ୍କର ପାର୍ଥିବ ଜୀବନକୁ ଚରମ ଲକ୍ଷ୍ୟ ମନେ କରନ୍ତି । ସୁତରାଂ ସେମାନେ ପାର୍ଥିବ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଭ ସକାଶେ କୁପ୍ରବୃତ୍ତି ଦ୍ୱାରା ଗୃହୀତ ହୋଇ ଅନ୍ଧକାରରେ ଏଣେ ତେଣେ ବୁଲିଲା ପରି କାର୍ଯ୍ୟ କରୁଅଛନ୍ତି ।:୨୪ ଅଧ୍ୟାୟର ୪୦ ଶ୍ଳୋକ ଓ ତହିଁର ଟୀକା ଦେଖ ।

୭ । ୮ । ଅଗ୍ନି—ଅଲୋକ ବା ପରମେଶ୍ୱରଙ୍କ ଜ୍ୟୋତି । ୨୦ ଅଧ୍ୟାୟର ୯-୨୪ ଶ୍ଳୋକମାନ ଦେଖ ।

ତାପରେ ଯେତେବେଳେ ସେ ତାହା ନିକଟରେ ଉପସ୍ଥିତ ହେଲେ ସେତେବେଳେ ଶବ୍ଦ ହେଲା "ଅଗ୍ନି ମଧ୍ୟରେ ଯାହାଅଛି ଏବଂ ତାହାର ଗୃହପାଖରେ ଯାହାଅଛି ତାହାକୁ ମଙ୍ଗଳମୟ କରା ଯାଇଅଛି, ଏବଂ ସମସ୍ତ ଜଗତର ପାଳନକର୍ତ୍ତା ପରମେଶ୍ୱରହିଁ ପବିତ୍ରତମ ।୮।

"ହେ ମୂସା, ନିଶ୍ଚୟ ଅମ୍ଭେହିଁ ସେହି ମହାପରାକ୍ରାନ୍ତ ଓ ବିଜ୍ଞାନୀ ପରମେଶ୍ୱର ।୯।

"ଏବଂ ତୁମ୍ଭେ ନିଜ ଯଷ୍ଟି ନିକ୍ଷେପ କର;" ତାପରେ ଯେତେବେଳେ ମୂସା ତାହାକୁ ସର୍ପପରି ଗତିଶୀଳ ଦେଖିଲେ ସେ ପୃଷ୍ଠପ୍ରଦର୍ଶନ କରି ପଳାୟନ କଲେ ଏବଂ ପଛଅଡ଼କୁ ଫେରି ଗୃହିଁଲେ ନାହିଁ; (ତାଙ୍କୁ କୁହାଗଲା) "ହେ ମୂସା ! ତୁମ୍ଭେ ଭୀତ ହୁଅନା ନିଶ୍ଚୟ ପ୍ରେରିତ ପୁରୁଷମାନେ ଅମ୍ଭ ସମ୍ମୁଖରେ ଭୀତ ହେବେ ନାହିଁ ।୧୦।

"କିନ୍ତୁ ଯେ ଅତ୍ୟାଗ୍ଭର କରି ପରେ ଅସତ୍‌କାର୍ଯ୍ୟ ପରିବର୍ତ୍ତିରେ ସତ୍‌କାର୍ଯ୍ୟ କରେ, ତେବେ ନିଶ୍ଚୟ ଅମ୍ଭେ କ୍ଷମାଶୀଳ ଓ କରୁଣାମୟ ।୧୧।

"ଏବଂ ତୁମ୍ଭେ ତୁମ୍ଭର କାଖରେ ତୁମ୍ଭର ହାତ ପ୍ରବେଶ କର, କୌଣସି ଅନିଷ୍ଟ ବ୍ୟତୀତ ଏହା ଶୁଭ୍ର-ବର୍ଣ୍ଣରେ ପ୍ରକାଶ ପାଇବ; ଫେରଅଉନ୍ ଓ ତାହାର ସମ୍ପ୍ରଦାୟ ପାଇଁ ନଅଗୋଟି ନିଦର୍ଶନ ମଧ୍ୟରେ ଏହା ଅନ୍ତର୍ଗତ; ନିଶ୍ଚୟ ସେମାନେ ଦୁଷ୍କର୍ମଶୀଳ ସମ୍ପ୍ରଦାୟ" ।୧୨।

ତାପରେ ଯେତେବେଳେ ସେମାନଙ୍କ ନିକଟରେ ଅମ୍ଭର ନିଦର୍ଶନମାନ ଉପସ୍ଥିତ ହୋଇଥିଲା ସେତେବେଳେ ସେମାନେ କହିଥିଲେ, "ଏହାତ ପ୍ରକାଶ୍ୟ ଯାଦୁକ୍ରିୟା" ।୧୩।

ଏବଂ ସେମାନେ ତାହାକୁ ସେମାନଙ୍କ ଅନ୍ତରରେ ସତ୍ୟ ଅନୁଭବ କରି ମଧ୍ଯ ଅନ୍ୟାୟ ଭାବରେ ଏବଂ ଗର୍ବର ସହିତ ଅସ୍ୱୀକାର କରିଥିଲେ, ଅତଏବ ଲକ୍ଷ୍ୟ କର ଯେ ଅନିଷ୍ଟକାରୀମାନଙ୍କର ପରିଣାମ କିପରି ହୋଇଥିଲା ।୧୪।

## ୨ୟ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ଦାଉଦ ଓ ସୋଲେମାନଙ୍କୁ ଜ୍ଞାନ ଦାନ କରିଥିଲୁଁ ଏବଂ ସେମାନେ ଉଭୟେ କହିଥିଲେ, "ପରମେଶ୍ୱରଙ୍କ ପାଇଁ ସମସ୍ତ ପ୍ରଶଂସା ଯେ ନିଜ ବହୁବିଶ୍ୱାସକାରୀ ସେବକମାନଙ୍କ ମଧ୍ୟରେ ଅମ୍ଭମାନଙ୍କୁ ଶ୍ରେଷ୍ଠତ୍ୱଦାନ କରିଅଛନ୍ତି" ।୧୫।

ଏବଂ ସୋଲେମାନ ଦାଉଦଙ୍କ ପୂର୍ବରୂପେ ଉତ୍ତରାଧିକାରୀ ହୋଇଥିଲେ ଏବଂ ସେ କହିଥିଲେ, "ହେ ଲୋକମାନେ ! ଅମ୍ଭକୁ ପକ୍ଷୀମାନଙ୍କର ବାକ୍ୟ (ବୁଝିବାର) ଶିକ୍ଷା ଦିଆଯାଇଅଛି ଏବଂ ଅମ୍ଭକୁ ପ୍ରତ୍ୟେକ (ଆବଶ୍ୟକୀୟ) ବିଷୟ ଦିଆଯାଇଅଛି, ନିଶ୍ଚୟ ଏହା ତାଙ୍କର ପ୍ରକାଶ୍ୟ ଅନୁଗ୍ରହ" ।୧୬।

---

୧୨ । ନଅ ଗୋଟି ନିଦର୍ଶନ—ଦେଖ ୭ମ ଅଧ୍ୟାୟ ୧୩୦ରୁ ୧୩୪ ଶ୍ଳୋକ ଏବଂ ୧୭ ଅଧ୍ୟାୟ ଶ୍ଳୋ ୧୦୧କ ଓ ତହିଁର ଟୀକା ।
ଏହା ଅନ୍ତର୍ଗତ=ନଅ ଗୋଟି ନିଦର୍ଶନ ମଧ୍ୟରେ ଏ ଦୁଇଗୋଟି ଅଟେ ଅର୍ଥାତ ଯଷ୍ଟିର ସର୍ପ ଆକାର ଧାରଣ ଏବଂ ହସ୍ତ ଶୁଭ୍ର ବର୍ଣ୍ଣରେ ପ୍ରକାଶ ।

୧୪ । ପରିଣାମ—ସେମାନେ ସମୁଦ୍ରରେ ବୁଡ଼ି ମରିଥିଲେ । ୭ମ ଅଧ୍ୟାୟର ୧୩୬ ଓ ୧୩୭ ଶ୍ଳୋକ ଓ ତହିଁର ଟୀକା ଦେଖ ।
ସେମାନେ—ଫେରଅଉନ୍‌ର ସମ୍ପ୍ରଦାୟ ।

ଏବଂ ସୋଲେମାନଙ୍କ ପାଇଁ ଦାନବ ଓ ମାନବ ଓ ପକ୍ଷୀମାନଙ୍କ ମଧ୍ୟରୁ ସୈନ୍ୟଦଳ ସଂଗୃହୀତ ହୋଇଥିଲା; ତାପରେ ସେମାନଙ୍କୁ ଶ୍ରେଣୀବଦ୍ଧ କରା ହୋଇଥିଲା ।୧୭।

ଏପରିକି ଯେତେବେଳେ ସେମାନେ ପିପୀଲିକାପ୍ରାନ୍ତରରେ ଉପସ୍ଥିତ ହୋଇଥିଲେ ସେତେବେଳେ ଗୋଟିଏ ପିପୀଲିକା କହିଥିଲା, "ହେ ପିପୀଲିକାମାନେ ! ତୁମ୍ଭେମାନେ ତୁମ୍ଭମାନଙ୍କର ବାସସ୍ଥାନରେ ପ୍ରବେଶ କର, ଯେପରି ସୋଲେମାନ ଓ ତାଙ୍କର ସୈନ୍ୟଦଳ ସେମାନଙ୍କର ଅଜ୍ଞାତ ଭାବରେ ତୁମ୍ଭମାନଙ୍କୁ ପଦଦଳିତ ନ କରନ୍ତି" ।୧୮।

ତାପରେ ସେ ତାହାର ବାକ୍ୟରେ ଅଶ୍ଚର୍ଯ୍ୟାନ୍ୱିତ ହୋଇ ମୃଦୁହାସ୍ୟ କରିଥିଲେ ଏବଂ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ତୁମ୍ଭର ସେହି ଅନୁଗ୍ରହ ପାଇଁ କୃତଜ୍ଞତା ପ୍ରକାଶ କରିବାର ଶକ୍ତି ଅମ୍ଭକୁ ଦିଅ, ଯେଉଁ ଅନୁଗ୍ରହ ତୁମ୍ଭେ ଅମ୍ଭପ୍ରତି ଓ ଅମ୍ଭର ପିତାମାତାଙ୍କ ପ୍ରତି କରିଅଛ, ଏବଂ ଅମ୍ଭେ ଯେପରି ଏପରି ସତ୍କାର୍ଯ୍ୟ କରୁଁ ଯହିଁରେ ତୁମ୍ଭେ ସନ୍ତୁଷ୍ଟ ହେବ, ଏବଂ ଯେପରି ତୁମ୍ଭେ ନିଜ ଅନୁଗ୍ରହରେ ଅମ୍ଭକୁ ତୁମ୍ଭର ସତ୍‌କର୍ମଶୀଳ ସେବକମାନଙ୍କର ଅନ୍ତର୍ଭୁକ୍ତ କର" ।୧୯।

ଏବଂ ସେ ପକ୍ଷୀମାନଙ୍କୁ ପରିଦର୍ଶନ କରିଥିଲେ, ତାପରେ କହିଥିଲେ, "କଅଣ ହେଲା ଯେ ଅମ୍ଭେ ହୁଦହୁଦକୁ ଦେଖୁନାହୁଁ ? ତେବେ କଅଣ ସେ ଅନୁପସ୍ଥିତ ହୋଇଅଛି ? ।୨୦।

"ନିଶ୍ଚୟ ଅମ୍ଭେ ତାକୁ କଠୋର ଶାସ୍ତିଦ୍ୱାରା ଶାସ୍ତି ପ୍ରଦାନ କରିବୁଁ ଅଥବା ତାହାକୁ ନିହତ କରିବୁଁ ଅଥବା ତାହାକୁ ଅମ୍ଭ ନିକଟରେ ଅନୁପସ୍ଥିତିର ପ୍ରକାଶ୍ୟ କାରଣ ଦର୍ଶାଇବାକୁ ହେବ" ।୨୧।

ତାପରେ ସେ ଅନତି ବିଳମ୍ବରେ ଅସି କହିଥିଲା, "ତୁମ୍ଭେ ଯାହା ଅବଗତନୁହ, ମୁଁ 'ସବା'ନଗରରୁ ତୁମ୍ଭନିକଟ ସେହିବିଷୟର ଏକ ସୁନିଶ୍ଚିତ ସମ୍ବାଦ ଅଣିଅଛି ।୨୨।

"ନିଶ୍ଚୟ ମୁଁ ଜଣେ ସ୍ତ୍ରୀଲୋକକୁ ସେମାନଙ୍କ ଉପରେ ଆଧିପତ୍ୟ କରିବାର ଦେଖିଅଛି ଏବଂ ତାହାକୁ ପ୍ରତ୍ୟେକ ବିଷୟ ଦିଆଯାଇଅଛି ଏବଂ ତାହାପାଇଁ ଏକ ବୃହତ ସିଂହାସନ ରହିଅଛି ।୨୩।

"ଏବଂ ତାହାକୁ ଓ ତାହାର ସମ୍ପ୍ରଦାୟକୁ ପରମେଶ୍ୱରଙ୍କ ପରିବର୍ତ୍ତିରେ ସୂର୍ଯ୍ୟକୁ ସାଷ୍ଟାଙ୍ଗ ପ୍ରଣିପାତ କରିବାର ଦେଖିଅଛି, ଏବଂ ସଏତାନ ସେମାନଙ୍କର କୃତକର୍ମମାନ ସେମାନଙ୍କ ପାଇଁ ମନୋରମ କରିଅଛି ଏବଂ ସେମାନଙ୍କୁ ସୁପଥରୁ ପ୍ରତିରୋଧ କରୁଅଛି ଯେପରି ସେମାନେ ପଥପ୍ରାପ୍ତ ନହେବେ ।୨୪।

"ଯେପରି ସେମାନେ ସେହି ପରମେଶ୍ୱରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ନ କରିବେ, ଯେ ଆକାଶମଣ୍ଡଳ ଓ ଭୂମଣ୍ଡଳର ଗୁପ୍ତବିଷୟମାନ ପ୍ରକାଶିତ କରନ୍ତି ଏବଂ ତୁମ୍ଭେମାନେ ଯାହା ଗୋପନକର ଅଥବା ପ୍ରକାଶକର ତାହା ସେ ଅବଗତ ଅଛନ୍ତି ।୨୫।

---

୧୯ । ସେ—ମହାପୁରୁଷ ସୋଲେମାନ ।
ତାହାର ବାକ୍ୟରେ—ପିପୀଲିକାର କଥା ବୁଝିପାରି ।

୨୦ । ହୁଦ୍ ହୁଦ୍—କାଠହଣା ଜାତୀୟ ଏକ ପ୍ରକାର ପକ୍ଷୀ । ଏହି ପକ୍ଷୀମାନେ ମହାପୁରୁଷ ସୋଲେମାନଙ୍କ ବାର୍ତ୍ତା-ବହର କାର୍ଯ୍ୟ କରୁଥିଲେ ଏବଂ ନିଜ ଥଣ୍ଟରେ ଚିଠି ପତ୍ର ବହନ କରୁଥିଲେ ।

୨୨ । ସେ—ହୁଦ୍ ହୁଦ୍ । ସବା—ଗୋଟିଏ ପ୍ରଦେଶର ନାମ ।

୨୩ । ସେମାନଙ୍କ ଉପରେ—ସବା ଦେଶର ଲୋକମାନଙ୍କ ଉପରେ । ସ୍ତ୍ରୀଲୋକ—ସବା ଦେଶର ରାଣୀ । ଏହାଙ୍କ ନାମ ବିଲ୍‌କିସ୍ ।

୨୫ । ପାପାତ୍ମା ସଏତାନର ପ୍ରବର୍ତ୍ତନାରେ ପଡି ସବାର ରାଣୀ ଏବଂ ତାଙ୍କ ସମ୍ପ୍ରଦାୟରଲୋକମାନେ ଅନ୍ତର୍ଯ୍ୟାମୀ ପରମେଶ୍ୱରଙ୍କ ପରିବର୍ତ୍ତିରେ ସୂର୍ଯ୍ୟଙ୍କୁ ପୂଜା କରୁଥିଲେ ।

"ସେହି ପରମେଶ୍ୱର, ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ସେହି ମହାସିଂହାସନର ଅଧିପତି" ।୨୬।

ସୋଲେମାନ କହିଥିଲେ, "ଅମ୍ଭେ ଏହିକ୍ଷଣି ଦେଖିବୁଁ ଯେ ତୁ ସତ୍ୟବାଦୀ ଅଥବା ମିଥ୍ୟାବାଦୀମାନଙ୍କର ଅନ୍ତର୍ଗତ ।୨୭।

"ଅମ୍ଭର ଏହି ପତ୍ର ନେଇଯା ଏବଂ ସେମାନଙ୍କୁ ଦେ, ତାପରେ ସେମାନଙ୍କ ନିକଟରୁ ଫେରିଆ, ତାପରେ ଦେଖ ସେମାନେ କି ଉତ୍ତର ଦେଉଅଛନ୍ତି" ।୨୮।

ସେ କହିଥିଲେ, "ହେ ପ୍ରଧାନ ବ୍ୟକ୍ତିମାନେ ! ନିଶ୍ଚୟ ଅମ୍ଭକୁ ଏକ ସମ୍ମାନିତ ପତ୍ର ଦିଆଯାଇଅଛି ।୨୯।

"ନିଶ୍ଚୟ ଏହା ସୋଲେମାନଙ୍କ ନିକଟରୁ ଆସିଅଛି ଏବଂ ଏଥିରେ ଏପରି ଲେଖାଅଛି ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ) ।୩୦।

"ଯେପରି ତୁମ୍ଭେମାନେ ଅମ୍ଭ ନିକଟରେ ଅହଙ୍କାର ନକର ଏବଂ ଅମ୍ଭନିକଟକୁ ଆସି ଆତ୍ମସମର୍ପଣକାରୀ ଧର୍ମ ଅବଲମ୍ବନ କର" ।୩୧।

## ୩ୟ ବିଭାଗ

ସବାରରାଣୀ କହିଥିଲେ, "ହେ ପ୍ରଧାନ ବ୍ୟକ୍ତିମାନେ ! ତୁମ୍ଭେମାନେ ଅମ୍ଭର କାର୍ଯ୍ୟ ସମ୍ବନ୍ଧରେ ପରାମର୍ଶ ଦିଅ, ଅମ୍ଭେ ତୁମ୍ଭମାନଙ୍କ ଉପସ୍ଥିତି ବ୍ୟତୀତ କୌଣସି ବିଷୟ ମୀମାଂସା କରୁନାହୁଁ" ।୩୨।

ପ୍ରଧାନବ୍ୟକ୍ତିମାନେ କହିଥିଲେ, "ଅମ୍ଭେମାନେ ଶକ୍ତିଶାଳୀ ଓ ପ୍ରଚଣ୍ଡଯୋଦ୍ଧା ଏବଂ ଆଦେଶ ତୁମ୍ଭ ହାତରେ, ଅତଏବ ତୁମ୍ଭେ ଭାବି ଦେଖ ଯେ କି ଆଦେଶ କରିବା ଉଚିତ" ।୩୩।

ସବାରରାଣୀ କହିଥିଲେ, "ଯେତେବେଳେ ରାଜାମାନେ କୌଣସି ନଗରରେ ପ୍ରବେଶ କରନ୍ତି ସେତେବେଳେ ନିଶ୍ଚୟ ସେମାନେ ତାହାକୁ ଧ୍ୱଂସ କରିଦିଅନ୍ତି ଏବଂ ଏହାର ସମ୍ଭ୍ରାନ୍ତ ଅଧିବାସୀମାନଙ୍କୁ ଅବନତ କରିଦିଅନ୍ତି, ଏବଂ ସେମାନେ ଏହିପରି କରିବେ ।୩୪।

"ଏବଂ ଅମ୍ଭେ ଅବଶ୍ୟ ସେମାନଙ୍କ ନିକଟ ଉପହାର ପଠାଇବୁଁ, ତାପରେ ଦେଖିବୁଁ ଯେ ଦୂତମାନେ କି (ଉତ୍ତର) ନେଇ ଫେରୁଅଛନ୍ତି" ।୩୫।

ତାପରେ ଯେତେବେଳେ ସେ ସୋଲେମାନଙ୍କ ନିକଟ ଉପସ୍ଥିତ ହୋଇଥିଲା, ସେତେବେଳେ ସୋଲେମାନ କହିଥିଲେ, "ତୁମ୍ଭେମାନେ କଅଣ ଅମ୍ଭକୁ ଧନରତ୍ନଦ୍ୱାରା ସାହାଯ୍ୟ କରିବାକୁ ଚାହଁ ? ଅଥଚ ପରମେଶ୍ୱର ଅମ୍ଭକୁ ଯାହା ଦେଇ ଅଛନ୍ତି ତାହା ତୁମ୍ଭମାନଙ୍କୁ ଯାହା ଦେଇଅଛନ୍ତି ତାହା ଅପେକ୍ଷା ଶ୍ରେଷ୍ଠତର, ବରଂ ତୁମ୍ଭେମାନେ ତୁମ୍ଭମାନଙ୍କର ଉପହାର ହେତୁ ଗର୍ବ ଅନୁଭବ କରୁଅଛ ।୩୬।

---

୨୮ । ସେମାନଙ୍କୁ—ସବାର ରାଣୀ ଓ ପ୍ରଧାନ ଲୋକମାନଙ୍କୁ ।

୨୯ । ସେ କହିଥିଲେ—ସବାର ରାଣୀ ମହାପୁରୁଷ ସୋଲେମାନଙ୍କ ପତ୍ର ପାଇ ପ୍ରଧାନ ଲୋକମାନଙ୍କୁ ସମ୍ବୋଧନ କରି କହିଥିଲେ ।

୩୪ । ସେମାନେ—ସୋଲେମାନ ଓ ତାଙ୍କର ଲୋକମାନେ ।

୩୬ । ସେ—ସବାର ରାଣୀଙ୍କ ଦୂତମାନଙ୍କ ଅଗ୍ରଣୀ ବା ପ୍ରଧାନ ଦୂତ ।

"ହେ ପ୍ରଧାନ ଦୂତ, ତୁମ୍ଭେ ସେମାନଙ୍କ ନିକଟ ଫେରିଯାଅ; ତାପରେ ନିଶ୍ଚୟ ଆମ୍ଭେ ଏପରି ସୈନ୍ୟଦଳ ସହିତ ସେମାନଙ୍କ ନିକଟ ଉପସ୍ଥିତ ହେବୁଁ ଯେ ସେମାନେ ସେମାନଙ୍କର ସମ୍ମୁଖୀନ ହୋଇ ପାରିବେ ନାହିଁ ଏବଂ ନିଶ୍ଚୟ ଆମ୍ଭେ ସେମାନଙ୍କୁ ସେଠାରୁ ଅପମାନ ସହିତ ବାହାର କରି ଦେବୁଁ ଏବଂ ସେମାନଙ୍କୁ ଅବନତ ହେବାକୁ ପଡ଼ିବ" ।୩୭।

ସେ କହିଥିଲେ; "ହେ ପ୍ରଧାନ ବ୍ୟକ୍ତିମାନେ ! ତୁମ୍ଭମାନଙ୍କ ମଧ୍ୟରେ ଏପରି କିଏ ଅଛି ଯେ ସେମାନେ ବଶ୍ୟତା ସ୍ୱୀକାର କରି ଆମ୍ଭ ନିକଟ ଆସିବା ପୂର୍ବରୁ ତାହାର ସିଂହାସନ ଆମ୍ଭ ନିକଟ ନେଇ ଆସି ପାରିବ ?" ୩୮।

ଦାନବମାନଙ୍କ ମଧ୍ୟରେ ଜଣେ ସାହସୀ ଲୋକ କହିଥିଲା, "ତୁମ୍ଭେ ନିଜ ଆସନରୁ ଉଠିବା ପୂର୍ବରୁ ଆମ୍ଭେ ତୁମ୍ଭ ଆଗରେ ତାହା ନେଇ ଆସିବୁଁ ଏବଂ ଆମ୍ଭେ ନିଶ୍ଚୟ ସେଥିପାଇଁ ଶକ୍ତିଶାଳୀ ଓ ବିଶ୍ୱସ୍ତ ଅଛୁଁ" । ୩୯ ।

ଗ୍ରନ୍ଥ ସମ୍ବନ୍ଧରେ ଅଭିଜ୍ଞ ଏକ ବ୍ୟକ୍ତି କହିଥିଲା, "ତୁମ୍ଭେ ପଲକ ପକାଇବା ମାତ୍ରକେ ଆମ୍ଭେ ତାହା ତୁମ୍ଭ ନିକଟରେ ଉପସ୍ଥିତ କରିବୁଁ ।" ତାପରେ ଯେତେବେଳେ ସେ ତାଙ୍କ ଆଗରେ ତାହା ଉପସ୍ଥିତ ହୋଇଥିବାର ଦେଖିଲେ ସେତେବେଳେ ସେ କହିଥିଲେ, "ଏହା ଆମ୍ଭର ପାଳନକର୍ତ୍ତାଙ୍କର ଅନୁଗ୍ରହ ଯଦ୍ଦ୍ୱାରା ଆମ୍ଭର ପରୀକ୍ଷା ହେବ ଯେ ଆମ୍ଭେ କୃତଜ୍ଞ କି ଅକୃତଜ୍ଞ; ଏବଂ ଯେ କୃତଜ୍ଞତା ସ୍ୱୀକାର କରେ ବାସ୍ତବରେ ସେ ନିଜ ପାଇଁ କୃତଜ୍ଞତା ସ୍ୱୀକାର କରେ; ଏବଂ ଯେ ଅକୃତଜ୍ଞ ହୁଏ, ତେବେ ଆମ୍ଭର ପାଳନକର୍ତ୍ତା ନିଶ୍ଚୟ ଆତ୍ମନିର୍ଭରଶୀଳ ଓ ସମ୍ମାନିତ" ।୪୦।

ସୋଲେମାନ କହିଥିଲେ, "ତାଙ୍କପାଇଁ ତାଙ୍କର ସିଂହାସନକୁ ପରିବର୍ତ୍ତିତ କରିଦିଅ, ଆମ୍ଭେ ଦେଖିବୁଁ ଯେ ସେ ସୁପଥଗାମିନୀ ହେବେ ଅଥବା ଯେଉଁମାନେ ପଥପ୍ରାପ୍ତ ହୋଇନାହାନ୍ତି ସେମାନଙ୍କର ଅନ୍ତର୍ଗତ ହେବେ" ।୪୧।

ତାପରେ ଯେତେବେଳେ ସେ ଉପସ୍ଥିତ ହୋଇଥିଲେ ସେତେବେଳେ ତାଙ୍କୁ ପୁଚ୍ଛାଯାଇଥିଲା, "ତୁମ୍ଭର ସିଂହାସନ କଅଣ ଏହିପରି ଥିଲା" ? ସେ କହିଥିଲେ, "ଏହା ଏହିପରି ଥିଲା ଏବଂ ଏହା

---

୩୭ । ସେମାନଙ୍କ ନିକଟ—ସବାର ରାଣୀ ଓ ପ୍ରଧାନ ଲୋକମାନଙ୍କ ନିକଟ ।

୩୮ । ସେ କହିଥିଲେ—ମହାପୁରୁଷ ସୋଲେମାନ ନିଜର ପ୍ରଧାନ ଲୋକମାନଙ୍କୁ ସମ୍ବୋଧନ କରି କହିଥିଲେ ।
ମହାପୁରୁଷ ସୋଲେମାନ ଜାଣି ପାରିଥିଲେ ଯେ ସବାର ରାଣୀ ତାଙ୍କର ଉତ୍ତର ଅବଗତ ହେଲା ପରେ ବଶ୍ୟତା ସ୍ୱୀକାର କରି ତାଙ୍କ ନିକଟ ଉପସ୍ଥିତ ହେବେ । ତାଙ୍କର ଅଲୌକିକ ଶକ୍ତିର ପ୍ରମାଣ ଦର୍ଶାଇବା ପାଇଁ ସବାର ରାଣୀ ତାଙ୍କ ନିକଟରେ ଉପସ୍ଥିତ ହେବା ପୂର୍ବରୁ ତାଙ୍କର ସିଂହାସନକୁ ଉଠାଇ ଆଣିବା ପାଇଁ ସେ ତାଙ୍କର ପ୍ରଧାନ ବ୍ୟକ୍ତିମାନଙ୍କୁ ଆଦେଶ କରିଥିଲେ ।

୪୦ । ସେ—ମହାପୁରୁଷ ସୋଲେମାନ ।
ତାହା—ରାଣୀଙ୍କର ସିଂହାସନ ।
ଗ୍ରନ୍ଥ ସମ୍ବନ୍ଧରେ ଅଭିଜ୍ଞ ଏକ ବ୍ୟକ୍ତି—ସୋଲେମାନଙ୍କର ଅଲୌକିକ ଶକ୍ତିସମ୍ପନ୍ନ ଜଣେ ଅନୁଚର । କେତେକ ଟୀକାକାରଙ୍କ ମତରେ ସୋଲେମାନ ନିଜେ ।

୪୧ । ସବାର ରାଣୀଙ୍କ ବୁଦ୍ଧି ପରୀକ୍ଷା କରିବା ପାଇଁ ତାଙ୍କର ସିଂହାସନର ଆକାର ପରିବର୍ତ୍ତନ କରିଦେବା ପାଇଁ ସୋଲେମାନ ଆଦେଶ କରିଥିଲେ ।

ପୂର୍ବରୁ ଅମ୍ଭେମାନେ ଅବଗତ ହୋଇଥିଲୁଁ ଏବଂ ଅମ୍ଭେମାନେ ପରମେଶ୍ୱରଙ୍କଠାରେ ଆତ୍ମସମର୍ପଣ କରିଥିଲୁଁ ।୪୨।

ଏବଂ ପରମେଶ୍ୱରଙ୍କ ପରିବର୍ତ୍ତିରେ ସେ ଯାହାର ଉପାସନା କରୁଥିଲେ ସେ ତାହାକୁ (ସତ୍‌ପଥରୁ) ରୋଧ କରିଥିଲ, ଯେହେତୁ ନିଶ୍ଚୟ ସେ ଅବିଶ୍ୱାସକାରୀ ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ ।୪୩।

ତାହାଙ୍କୁ କୁହାଯାଇଥିଲ ଯେ ପ୍ରାସାଦରେ ପ୍ରବେଶ କର, ତାପରେ ଯେତେବେଳେ ସେ ତାହା ଦେଖିଥିଲେ ସେ ତାହାକୁ ଜଳାଶୟ ମନେ କରିଥିଲେ ଏବଂ ସେ (ସେଥିରେ ପଶିବା ପାଇଁ) ନିଜର ଦୁଇ ପାଦର ଆବରଣୀ ଖୋଲି ଦେଇଥିଲେ; ସୋଲେମାନ କହିଥିଲେ, "(ଏହା ତୁମ୍ଭର ଭ୍ରମ) ନିଶ୍ଚୟ ଏହି ପ୍ରାସାଦ କାଚ-ଦ୍ୱାରା ମଣ୍ଡିତ"; ସବାର ରାଣୀ କହିଥିଲେ "ହେ ଅମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଅମ୍ଭେ ନିଜ ପ୍ରତି ଅତ୍ୟାଚାର କରିଅଛୁଁ ଏବଂ ଅମ୍ଭେ ସୋଲେମାନଙ୍କ ସହିତ ସମସ୍ତ ଜଗତର ପାଳନକର୍ତ୍ତା ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ଆତ୍ମ-ସମର୍ପଣ କଲୁଁ ।"୪୪।

## ୪ର୍ଥ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ସମୁଦ ସଂପ୍ରଦାୟପ୍ରତି ସେମାନଙ୍କର ଭାଇ ସ୍ୱାଲେହଙ୍କୁ ପ୍ରେରଣ କରିଥିଲୁ (ଏହି ଉପଦେଶ ଦେବାକୁ) ଯେ ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର, ତାପରେ ସେମାନେ ଦୁଇଦଳ ହୋଇ ପରସ୍ପର ମଧ୍ୟରେ କଳହ କରିଥିଲେ ।୪୫।

---

୪୨ । ସେ—ସବାର ରାଣୀ ।

ସବାର ରାଣୀ ସୋଲେମାନଙ୍କୁ କହିଥିଲେ, "ତୁମ୍ଭର ଅଲୌକିକ ଶକ୍ତିର ବିଷୟ ଅମ୍ଭେମାନେ ଏଠାକୁ ଆସିବା ପୂର୍ବରୁ ଅବଗତ ହୋଇଥିଲୁଁ । ସୁତରାଂ ଅମ୍ଭେମାନେ ଆତ୍ମ ସମର୍ପଣ କରିବାକୁ ଆସିଥିଲୁଁ ।"

୪୩ । ସବାର ରାଣୀ ପ୍ରକୃତରେ ବୁଦ୍ଧିମତୀ ଏବଂ ଧର୍ମପରାୟଣା ଥିଲେ । ମାତ୍ର ସୂର୍ଯ୍ୟୋପାସକ ସମ୍ପ୍ରଦାୟ ମଧ୍ୟରେ ଜନ୍ମଗ୍ରହଣ ଓ ଶିକ୍ଷା ଲାଭ କରିଥିବାରୁ ସତ୍ୟ ସନାତନ ଧର୍ମର ପଥ ପ୍ରାପ୍ତ ହୋଇ ପାରିନଥିଲେ । ଉପଦେଶ ପ୍ରାପ୍ତି ମାତ୍ରକେ ସେ ତାହା ଗ୍ରହଣ କରିବା ପାଇଁ ପ୍ରସ୍ତୁତ ହୋଇଥିଲେ ।

୪୪ । ମହାପୁରୁଷ ସୋଲେମାନ ଜଣେ ଖ୍ୟାତନାମା ଧର୍ମ ପ୍ରବର୍ତ୍ତକ ଥିଲେ ଏବଂ ସେ ଜଣେ ମହାନ ଶକ୍ତିଶାଳୀ ସଙ୍ଗତି-ସମ୍ପନ୍ନ ସମ୍ରାଟ ମଧ୍ୟ ଥିଲେ । ତାଙ୍କର ରାଜ ପ୍ରାସାଦ କାଚଦ୍ୱାରା ମଣ୍ଡିତ ହୋଇଥିଲା । ଏହାର ପ୍ରବେଶ ଦ୍ୱାର ନିକଟରେ ସେ ଗୋଟିଏ କୃତ୍ରିମ ଜଳାଶୟ ନିର୍ମାଣ କରି ତାକୁ ଜଳପୂର୍ଣ୍ଣ କରିଥିଲେ ଏବଂ ସେଥିରେ ମତ୍ସ୍ୟମାନେ ବିଚରଣ କରୁଥିଲେ ଏବଂ ସେଥିରେ ଜଳଜ ପୁଷ୍ପ ବୃକ୍ଷମାନ ଥିଲା । ମାତ୍ର ତାହାର ଉପରଭାଗ କାଚଦ୍ୱାରା ମଣ୍ଡିତ ହୋଇଥିଲା । ସୁତରାଂ ତାହା ଉନ୍ମୁକ୍ତ ଜଳାଶୟ ପରି ଦେଖାଯାଉଥିଲା । ସବାର ରାଣୀ ପ୍ରାସାଦରେ ପ୍ରବେଶ କଲାବେଳେ ତାହାକୁ ଜଳାଶୟ ମନେ କରି ତାହାକୁ ପାରିହେବା ପାଇଁ ପାଦୁକା ଖୋଲିଥିଲେ । ମାତ୍ର ସୋଲେମାନ ତାଙ୍କୁ କହିଥିଲେ ଯେ ଏହା କାଚଦ୍ୱାରା ଆବୃତ ସୁତରାଂ ପାଦୁକା ଖୋଲିବାର ଆବଶ୍ୟକ ନାହିଁ । ଏଥିରେ ସବାର ରାଣୀ ଲଜ୍ଜିତା ହୋଇ ସୋଲେମାନଙ୍କର ପାର୍ଥିବ ଗୌରବ ଓ ଅଲୌକିକ ଶକ୍ତି ଏକାଧାରରେ ବିଦ୍ୟମାନ ଥିବାର ଜାଣିପାରି ତାଙ୍କର ବଶ୍ୟତା ସ୍ୱୀକାର କରିବା ସଙ୍ଗେ ତାଙ୍କର ଧର୍ମ ମଧ୍ୟ ଗ୍ରହଣ କରିଥିଲେ । ଏହି ରାଣୀଙ୍କ ନାମ ବିଲକିଶ । ସେ ଏହାପରେ ସୋଲେମାନଙ୍କୁ ବିବାହ କରିଥିବାର ପ୍ରକାଶ । ମାତ୍ର କୋରାନ ଗ୍ରନ୍ଥରେ ବିବାହ ସମ୍ବନ୍ଧରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇ ନାହିଁ ।

୪୫ । ଦୁଇଦଳ—ଦଳେ ମହାପୁରୁଷ ସ୍ୱାଲେହଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରିଥିଲେ, ଅନ୍ୟ ଦଳ ତାଙ୍କର ବିରୁଦ୍ଧାଚରଣ କରିଥିଲେ ।

ସେ କହିଥିଲେ, "ହେ ଅମ୍ଭର ସଂପ୍ରଦାୟ ! ତୁମ୍ଭେମାନେ ସତ୍‌କର୍ମ ପୂର୍ବେ ଅସତ୍‌କର୍ମପାଇଁ କାହିଁକି ସତ୍ୱରତା କରୁଅଛ ? ତୁମ୍ଭେମାନେ କାହିଁକି ପରମେଶ୍ୱରଙ୍କ ନିକଟରେ କ୍ଷମା ପ୍ରାର୍ଥନା କରୁନାହିଁ, ଯଦ୍ଦ୍ୱାରା ତୁମ୍ଭେମାନେ ଅନୁଗ୍ରହ ପ୍ରାପ୍ତ ହେବ" ? ୪୬।

ସେମାନେ କହିଥିଲେ, "ତୁମ୍ଭପାଇଁ ଓ ତୁମ୍ଭର ସଙ୍ଗୀମାନଙ୍କ ପାଇଁ ଅମ୍ଭେମାନେ ଦୁର୍ଭାଗ୍ୟଗ୍ରସ୍ତ ହୋଇଅଛୁଁ;" ସେ କହିଥିଲେ, "ପରମେଶ୍ୱରଙ୍କ ନିକଟରୁ ତୁମ୍ଭମାନଙ୍କର ଦୁର୍ଭାଗ୍ୟ ହୋଇଅଛି, ବରଂ ତୁମ୍ଭେ-ମାନେ ଏପରି ସଂପ୍ରଦାୟ ଯେ ତୁମ୍ଭମାନଙ୍କୁ ପରୀକ୍ଷା କରାଯାଉଅଛି ।" ୪୭।

ଏବଂ ଏହି ନଗରରେ ନଅ ଜଣ ଥିଲେ ଯେଉଁମାନେ ପୃଥିବୀରେ ଅଶାନ୍ତି ଉତ୍ପାଦନ କରୁଥିଲେ ଏବଂ (ନିଜକୁ) ସଂଶୋଧନ କରୁ ନ ଥିଲେ । ୪୮।

ସେମାନେ (ପରସ୍ପର ମଧ୍ୟରେ) କହିଥିଲେ, "ତୁମ୍ଭେମାନେ ପରସ୍ପର ପରମେଶ୍ୱରଙ୍କ ଶପଥକର ଯେ ଅମ୍ଭେମାନେ ତାହାକୁ ଓ ତାହାର ପରିବାରମାନଙ୍କୁ ରାତ୍ରରେ ଆକ୍ରମଣ କରିବୁଁ, ତାପରେ ଅମ୍ଭେମାନେ ତାହାର ଉତ୍ତରାଧିକାରୀକୁ କହିବୁଁ ଯେ ଅମ୍ଭେମାନେ ତାହାର ପରିବାରମାନଙ୍କ ଧ୍ୱଂସ ସମୟରେ ଉପସ୍ଥିତ ନଥିଲୁ ଏବଂ ନିଶ୍ଚୟ ଅମ୍ଭେମାନେ ସତ୍ୟବାଦୀ ।" ୪୯।

ଏବଂ ସେମାନେ ଏକ ଚକ୍ରାନ୍ତର ଷଡ଼ଯନ୍ତ୍ର କରିଥିଲେ ଏବଂ ଅମ୍ଭେ ମଧ୍ୟ ସୁକୌଶଳରେ ଏକ କୌଶଳ କରିଥିଲୁଁ ଏବଂ ସେମାନେ ଏହା ଜାଣି ପାରି ନଥିଲେ । ୫୦।

ଅତଏବ ଲକ୍ଷ୍ୟକର ଯେ ସେମାନଙ୍କର ଚକ୍ରାନ୍ତର ପରିଣାମ କପରି ହୋଇଥିଲା ! ଅମ୍ଭେ ସେମାନଙ୍କୁ ଓ ସେମାନଙ୍କର ସଂପ୍ରଦାୟର ସମସ୍ତଙ୍କୁ ଧ୍ୱଂସ କରି ଦେଇଥିଲୁଁ । ୫୧।

ତାପରେ ସେମାନଙ୍କର ଗୃହମାନ ଶୂନ୍ୟ ହୋଇ ପଡ଼ି ରହିଅଛି ଯେହେତୁ ସେମାନେ ଅତ୍ୟାଗ୍ରର କରିଥିଲେ, ନିଶ୍ଚୟ ଏଥିରେ ଅଭିଜ୍ଞ ସଂପ୍ରଦାୟ ପାଇଁ ନିଦର୍ଶନ ରହିଅଛି । ୫୨।

ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଥିଲେ ଓ ସଂଯତ ହୋଇଥିଲେ ଅମ୍ଭେ ସେମାନଙ୍କୁ ଉଦ୍ଧାର କରିଥିଲୁଁ । ୫୩।

---

୪୭ । ସମୁଦ ସମ୍ପ୍ରଦାୟର ଅବାଧ୍ୟତା ହେତୁ ପରମେଶ୍ୱର ସେମାନଙ୍କ ପ୍ରତି ଅନାବୃଷ୍ଟି, ଦୁର୍ଭିକ୍ଷ ଓ ମହାମାରୀ ପ୍ରଭୃତି ଶାସ୍ତି ପ୍ରେରଣ କରିଥିଲେ । ମାତ୍ର ସେମାନେ ଏଥିରୁ ଶିକ୍ଷା ଲାଭ ନକରି ଏଥିପାଇଁ ସ୍ୱାଲେହିଙ୍କୁ ଦୋଷୀ କରିଥିଲେ । ସ୍ୱାଲେହ କହିଥିଲେ, ତୁମ୍ଭମାନଙ୍କ ପରୀକ୍ଷାପାଇଁ ଏ ସବୁ ଦୁର୍ଘଟଣା ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ହୋଇଅଛି ।

୪୯ । ସେମାନେ—ଶ୍ଳୋ ୪୮ରେ ବର୍ଣ୍ଣିତ ନଅଜଣ ।
ତାହାକୁ—ମହାପୁରୁଷ ସ୍ୱାଲେହଙ୍କୁ

୫୧ । ଧ୍ୱଂସ କରି ଦେଇଥିଲୁ—ସେମାନେ ଭୂମିକମ୍ପ ଦ୍ୱାରା ଧ୍ୱଂସ ପ୍ରାପ୍ତ ହୋଇଥିଲେ । ୭ମ ଅଧ୍ୟାୟର ୭୮ । ୭୯ ଶ୍ଳୋକ ଓ ତହିଁର ଟୀକା ଦେଖ ।

୪୫—୫୩ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ସ୍ୱାଲେହ ଏବଂ ତାଙ୍କର ସମ୍ପ୍ରଦାୟ ସମୁଦମାନଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ସେମାନଙ୍କ ବିସ୍ତୃତ ବିବରଣ ପୂର୍ବ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ହୋଇଅଛି । ୭ମ ଅଧ୍ୟାୟ ୭୮ ଶ୍ଳୋକ ଦେଖ ।

ଏବଂ ଲୁତ ଯେତେବେଳେ ତାଙ୍କର ସମ୍ପ୍ରଦାୟକୁ କହିଥିଲେ, "ତୁମ୍ଭେମାନେ ଏହି ଅଶ୍ଳୀଳ କାର୍ଯ୍ୟ କରୁଅଛ ଏବଂ ତୁମ୍ଭେମାନେ ଏହାକୁ ଦେଖୁଅଛ ।୫୪।

"ତୁମ୍ଭେମାନେ କଅଣ ସ୍ତ୍ରୀମାନଙ୍କ ପରିବର୍ତ୍ତିରେ ପୁରୁଷମାନଙ୍କ ପ୍ରତି କାମ ଲାଳସା ତୃପ୍ତି ନିମନ୍ତେ ଉପସ୍ଥିତ ହେଉ ଅଛ ? ବରଂ ତୁମ୍ଭେମାନେ ନିର୍ବୋଧ ସମ୍ପ୍ରଦାୟ" ।୫୫।

ଏବଂ ତାଙ୍କ ସମ୍ପ୍ରଦାୟର ଏହା ବ୍ୟତୀତ ଅନ୍ୟ କୌଣସି ଉତ୍ତର ନଥିଲା ଯେ ସେମାନେ କହିଥିଲେ "ଲୁତଙ୍କ ପରିବାରମାନଙ୍କୁ ତୁମ୍ଭମାନଙ୍କର ନଗରରୁ ବାହାର କରିଦିଅ, କାରଣ ଏହି ଲୋକମାନେ ପବିତ୍ର ରହିବାକୁ ଚାହାନ୍ତି ।"୫୬।

ତାପରେ ନିଶ୍ଚୟ ଆମ୍ଭେ ତାଙ୍କର ପତ୍ନୀ ବ୍ୟତୀତ ତାଙ୍କୁ ଓ ତାଙ୍କର ପରିବାରମାନଙ୍କୁ ଉଦ୍ଧାର କରିଥିଲୁଁ; ଆମ୍ଭେ ତାଙ୍କୁ ପଶ୍ଚାତବର୍ତ୍ତୀମାନଙ୍କର ଅନ୍ତର୍ଗତ ବୋଲି ସ୍ଥିର କରିଥିଲୁଁ ।୫୭।

ଏବଂ ଆମ୍ଭେ ସେମାନଙ୍କ ଉପରେ ଶିଳାବୃଷ୍ଟି ବର୍ଷଣ କରିଥିଲୁଁ, ଏବଂ ଭୟ ପ୍ରଦର୍ଶିତମାନଙ୍କ ପ୍ରତି ଏହା ଅନିଷ୍ଟକର ବୃଷ୍ଟି ଥିଲା ।୫୮।

## ୫ମ ବିଭାଗ

ତୁମ୍ଭେ କୁହ, "ପରମେଶ୍ୱରଙ୍କ ପାଇଁ ସମସ୍ତ ପ୍ରଶଂସା ଏବଂ ତାଙ୍କର ମନୋନୀତ ସେବକମାନଙ୍କ ଉପରେ ଶାନ୍ତି, ପରମେଶ୍ୱର ଶ୍ରେଷ୍ଠତର କିମ୍ବା ସେମାନଙ୍କର ଅଂଶୀ ଉପାସ୍ୟମାନେ ଶ୍ରେଷ୍ଠତର ?"୫୯।

## ବିଂଶ ଭାଗ

କିମ୍ବା ଯେ ଏହି ଆକାଶ ମଣ୍ଡଳ ଓ ଭୂମଣ୍ଡଳକୁ ସୃଷ୍ଟି କରିଅଛନ୍ତି ଏବଂ ତୁମ୍ଭମାନଙ୍କ ପାଇଁ ଆକାଶରୁ ଜଳ ବର୍ଷଣ କରୁଅଛନ୍ତି ? ତାପରେ ଆମ୍ଭେ ତଦ୍ଦ୍ୱାରା ସୁଶୋଭିତ ଉଦ୍ୟାନ ଉତ୍ପାଦନ କରୁଅଛୁ; ତୁମ୍ଭମାନଙ୍କର ଶକ୍ତି ନଥିଲା ଯେ ତୁମ୍ଭେମାନେ ତାହାର ବୃକ୍ଷମାନଙ୍କୁ ଉତ୍ପାଦନ କରି ପାରନ୍ତ, କଅଣ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ କେହି ଅଛି ? ବରଂ ସେହିମାନେହିଁ ବିପଥଗାମୀ ସମ୍ପ୍ରଦାୟ ।୬୦।

---

୫୪-୫୮ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଲୁତ ଏବଂ ତାଙ୍କ ସମ୍ପ୍ରଦାୟର ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ସେମାନଙ୍କ ବିସ୍ତୃତ ବିବରଣ ପୂର୍ବବର୍ତ୍ତୀ ଅଧ୍ୟାୟମାନଙ୍କରେ ବିଶେଷତଃ ୭ମ ଅଧ୍ୟାୟର ୧୦ମ ବିଭାଗରେ ବର୍ଣ୍ଣିତ ହୋଇଅଛି ।

୫୭ । ତାଙ୍କୁ—ମହାପୁରୁଷ ଲୁତଙ୍କ ଅବାଧ୍ୟା ପତ୍ନୀକୁ ଅନ୍ୟାନ୍ୟ ଅନାଗ୍ରହୀମାନଙ୍କ ସହିତ ସେ ମଧ୍ୟ ଧ୍ୱଂସ ମୁଖରେ ପତିତ ହୋଇଥିଲା ।

୫୮ । ସେହି ପାପୀ ଅତ୍ୟାଗ୍ରହୀମାନଙ୍କ ଉପରେ ଶିଳାବୃଷ୍ଟି ହୋଇଥିଲା । ୧୧ ଅଧ୍ୟାୟ ୮୨ ଶ୍ଳୋକ ଏବଂ ୧୫ ଅଧ୍ୟାୟର ୭୪ ଶ୍ଳୋକ ଦେଖ ।

ଭୟ ପ୍ରଦର୍ଶିତ—ଶାସ୍ତି ଉପସ୍ଥିତ ହେବ ବୋଲି ଯେଉଁମାନଙ୍କୁ ଭୟ ପ୍ରଦର୍ଶିତ କରାଯାଇଥିଲା; ମାତ୍ର ସେମାନେ କିଛି ପରୁଆ କରିନଥିଲେ ।

୫୯-୬୪ । ଏହି ଶ୍ଳୋକମାନଙ୍କରେ ଏକମାତ୍ର ପରମେଶ୍ୱରଙ୍କ ମହିମା ବର୍ଣ୍ଣନା କରି ତାଙ୍କ ସହିତ ଅଂଶୀ ଉପାସ୍ୟ ସ୍ଥିର କରିବାର ଅସାରତା ଓ ଅଯୌକ୍ତିକତା ପ୍ରମାଣ କରାଯାଇଅଛି । ଏହି ଶ୍ଳୋକମାନଙ୍କରେ ଯେଉଁ ସବୁ ପ୍ରଶ୍ନ ଅଛି ତହିଁର ସାଧାରଣ ଉତ୍ତର ହେଉଅଛି—"ପରମେଶ୍ୱର ଏକ ଏବଂ ସେହି ଏକମାତ୍ର ଉପାସ୍ୟ । ତାଙ୍କ ଛଡ଼ା ଏସବୁ କେହି କରିନାହିଁ" ।

ଦୃଢ଼ ପର୍ବତମାଳା=୧୫ଶ ଅଧ୍ୟାୟର ୧୯ ଶ୍ଳୋକ ଓ ତହିଁର ଟୀକା ଦେଖ ।

କିମ୍ବା ଯେ ପୃଥିବୀକୁ ବିଶ୍ରାମାଗାର କରିଅଛନ୍ତି ଏବଂ ସେଥି ମଧ୍ୟରେ ନଦୀମାନ ପ୍ରବାହିତ କରିଅଛନ୍ତି ଏବଂ ତାହା ଉପରେ ଦୃଢ଼ ପର୍ବତମାଳା ସୃଷ୍ଟିକରି ଅଛନ୍ତି ଏବଂ ଉଭୟ ସମୁଦ୍ର ମଧ୍ୟରେ ପ୍ରାଚୀର କରି ଦେଇ ଅଛନ୍ତି ? କଅଣ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ କେହି ଅଛି ? ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଅବଗତ ନୁହନ୍ତି ।୬୧।

କିମ୍ବା ଯେ ସନ୍ତାପିତ ଲୋକ ତାଙ୍କୁ ଡାକିଲାବେଳେ ତାହାକୁ ଉତ୍ତର ପ୍ରଦାନ କରନ୍ତି ଏବଂ ତାହାର ଦୁଃଖ ଦୂରକରି ଦିଅନ୍ତି ଏବଂ ତୁମ୍ଭମାନଙ୍କୁ ପୃଥିବୀର ପ୍ରତିନିଧି କରନ୍ତି ? କଅଣ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ କେହିଅଛି ? ତୁମ୍ଭେମାନେ ଅତିଅଳ୍ପ ମନଯୋଗ ଦେଇଥାଅ ।୬୨।

କିମ୍ବା ଯେ ଅନ୍ଧକାରମୟ ଭୂମିରେ ଓ ସମୁଦ୍ରରେ ତୁମ୍ଭମାନଙ୍କୁ ପଥ ପ୍ରଦର୍ଶନକରନ୍ତି ଏବଂ ଯେ ତାଙ୍କର କରୁଣାର ଅଗ୍ରଦୂତ ସ୍ୱରୂପ ବାୟୁରାଶି ପ୍ରେରଣ କରନ୍ତି ? କଅଣ ପରମେଶ୍ୱରଙ୍କ ସହିତ ଅନ୍ୟଉପାସ୍ୟ କେହିଅଛି ? ସେମାନେ ଯେଉଁ ଅଂଶୀ ସ୍ଥାପନକରନ୍ତି ପରମେଶ୍ୱର ସେଥିରୁ ସମୁନ୍ନତ ।୬୩।

କିମ୍ବା ଯେ ଏହିସୃଷ୍ଟିର ଅଦିସ୍ରଷ୍ଟା, ତାପରେ ଏହାକୁ ପୁନର୍ବାର ସୃଷ୍ଟିକରିବେ ଏବଂ ଯେ ତୁମ୍ଭମାନଙ୍କୁ ଅକାଶ ମଣ୍ଡଳ ଓ ଭୂମଣ୍ଡଳରୁ ଜୀବିକା ପ୍ରଦାନ କରନ୍ତି ? କଅଣ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ କେହିଅଛି ? ତୁମ୍ଭେକୁହ; "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ ତେବେ ତୁମ୍ଭମାନଙ୍କର ପ୍ରମାଣ ଅଗତକର" ।୬୪।

ତୁମ୍ଭେ କହିଦିଅ, "ପରମେଶ୍ୱରଙ୍କ ବ୍ୟତୀତ ଅକାଶମଣ୍ଡଳ ଓ ଭୂମଣ୍ଡଳରେ ଯେତେ ଜୀବଅଛନ୍ତି କେହି ଅଦୃଷ୍ଟବିଷୟ ଜାଣନ୍ତି ନାହିଁ, ଏବଂ ସେମାନେ କେବେ (କବରରୁ) ଉଠିବେ ତାହା ମଧ୍ୟ ସେମାନେ ଜାଣନ୍ତିନାହିଁ ।୬୫।

"ବରଂ ପରକାଳ ସମ୍ବନ୍ଧରେ ସେମାନଙ୍କରଜ୍ଞାନ ଅତିଅଳ୍ପ, ବରଂ ସେ ବିଷୟରେ ସେମାନେ ସନ୍ଦେହରେ ରହିଅଛନ୍ତି, ବରଂ ଏବିଷୟରେ ସେମାନେ ସମ୍ପୂର୍ଣ୍ଣ ଅନ୍ଧ" ।୬୬।

---

୬୧ । ଉଭୟ ସମୁଦ୍ର ମଧ୍ୟରେ ପ୍ରାଚୀର—୨୫ ଅଧ୍ୟାୟ ୫୩ ଶ୍ଲୋକ ୫୫ ଅଧ୍ୟାୟର ୧୯ ଶ୍ଲୋକ ଓ ତହିଁର ଟୀକା ଦେଖ ।

୬୨ । ପୃଥିବୀର ପ୍ରତିନିଧି –୬ଷ୍ଠ ଅଧ୍ୟାୟ ୧୬୫ ଶ୍ଲୋକ ଓ ଟୀକା ଦେଖ ।

୬୩ । ବାୟୁରାଶି ପ୍ରେରଣ କରନ୍ତି –ଜଳବୃଷ୍ଟି ପରମେଶ୍ୱରଙ୍କ ଅନୁଗ୍ରହ ମଧ୍ୟରେ ଗଣ୍ୟ । ବୃଷ୍ଟି ହେବା ପୂର୍ବରୁ ବାୟୁ ମେଘମାଳକୁ ବହନ କରି ବୃଷ୍ଟିପାତର ସୁସମ୍ବାଦ ଦେଇଥାଏ । ୨୫ ଅଧ୍ୟାୟର ୪୮ ଶ୍ଲୋକ ଦେଖ ।

୬୪ । ପ୍ରମାଣ ଅଗତ କର ଯୁକ୍ତିଯୁକ୍ତ ପ୍ରମାଣ ଦିଅଯେ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ଅଛି । ମାତ୍ର ତୁମ୍ଭମାନଙ୍କ ପାଖରେ ଏହାର କୌଣସି ପ୍ରମାଣ ନାହିଁ ।

୬୫-୬୧ । ଯେଉଁମାନେ ପରଲୋକରେ ପୁନରୁତ୍ଥାନ ବିଷୟରେ ଅବିଶ୍ୱାସ କରୁଅଛନ୍ତି ସେମାନଙ୍କୁ ଲକ୍ଷ୍ୟ କରି ପରମେଶ୍ୱର କହୁଅଛନ୍ତି କି ସେମାନଙ୍କ ଜ୍ଞାନ ଅତି ସୀମବଦ୍ଧ ଏବଂ ସେମାନେ ଅନ୍ଧ ସ୍ୱରୂପ । ଏଥିପୂର୍ବେ ଅବିଶ୍ୱାସକାରୀମାନେ ପୃଥିବୀରେ ଶାସ୍ତି ଭୋଗ କରିଅଛନ୍ତି ଏବଂ ପରଲୋକରେ ମଧ୍ୟ ସେମାନେ କଷ୍ଟମୟ ଶାସ୍ତି ଭୋଗ କରିବେ ।

୬୬ । ଜଡବାଦୀ ନାସ୍ତିକମାନେ ପରଲୋକର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ନାହିଁ । ଦେଖ ଟୀକା ୨୪ ଅଧ୍ୟାୟ ୪୦ ଶ୍ଲୋକ ।

## ଷଷ୍ଠ ବିଭାଗ

ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଯେତେବେଳେ ଆମ୍ଭେମାନେ ଓ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ମାଟି ହୋଇ ଯାଇଥିବୁଁ ସେତେବେଳେ କଅଣ ସତେ ଆମ୍ଭମାନଙ୍କୁ ( କବରରୁ) ବାହାର କରାହେବ ? ୬୭।

"ନିଶ୍ଚୟ ଏହାପୂର୍ବେ ମଧ୍ୟ ଆମ୍ଭେମାନେ ଓ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଏବିଷୟରେ ପ୍ରତିଶ୍ରୁତି ପାଇଅଛୁଁ; ଏହା ପୂର୍ବକାଳୀନ କାହାଣୀ ଛଡ଼ା ଅନ୍ୟ କିଛିନୁହେ" ।୬୮।

ତୁମ୍ଭେକୁହ, "ତୁମ୍ଭେମାନେ ପୃଥିବୀରେ ଭ୍ରମଣକରି ଦେଖ ଯେ ଅପରାଧୀମାନଙ୍କର ପରିଣାମ କିପରି ହୋଇଅଛି" ।୬୯।

ଏବଂ ତୁମ୍ଭେ ସେମାନଙ୍କ ପାଇଁ ଦୁଃଖିତ ହୁଅନା ଏବଂ ସେମାନେ ଯେଉଁ ଚକ୍ରାନ୍ତ କରୁଅଛନ୍ତି ସେଥିପାଇଁ ଚିନ୍ତିତହୁଅନା ।୭୦।

ଏବଂ ସେମାନେ କହନ୍ତି, "ଯଦି ତୁମ୍ଭେ ସତ୍ୟବାଦୀ ଥାଅ ତେବେ କହିଅ ଏହି ପ୍ରତିଶ୍ରୁତି କେବେ ଘଟିବ" ? ୭୧।

ତୁମ୍ଭେ କୁହ, "ତୁମ୍ଭେମାନେ ଯେଉଁ ବିଷୟରେ ସନ୍ଦିହତା କରୁଅଛ ତାହାର କେତେକ ଅଂଶ ସମ୍ଭବତଃ ତୁମ୍ଭମାନଙ୍କ ପଛେ ପଛେ ଲାଗି ରହିଅଛି" ।୭୨।

ଏବଂ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ମନୁଷ୍ୟମାନଙ୍କ ପାଇଁ ଅନୁଗ୍ରହକାରୀ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ କୃତଜ୍ଞ ନୁହନ୍ତି ।୭୩।

ଏବଂ ସେମାନଙ୍କର ଅନ୍ତରରେ ଯାହା ଗୋପନରେ ଅଛି ଏବଂ ସେମାନେ ଯାହା ପ୍ରକାଶ କରନ୍ତି ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ତାହା ଜାଣନ୍ତି ।୭୪।

ଏବଂ ଆକାଶରେ ଓ ପୃଥିବୀରେ ଏପରି କୌଣସି ଗୁପ୍ତ ବିଷୟ ନାହିଁ ଯାହାକି ପ୍ରକାଶ୍ୟ ପୁସ୍ତକରେ ନାହିଁ ।୭୫।

ନିଶ୍ଚୟ ଏହି କୋରାନ ଇସ୍ରାଇଲ ବଂଶଧରମାନଙ୍କୁ ସେହିବିଷୟର ଅଧିକାଂଶ ବର୍ଣ୍ଣନା କରୁଅଛି ଯେଉଁ ବିଷୟରେ ସେମାନେ ଭିନ୍ନ ଭିନ୍ନ ମତ ପ୍ରକାଶ କରୁଅଛନ୍ତି ।୭୬।

---

୭୦ । ଅବିଶ୍ୱାସକାରୀମାନଙ୍କର ଅବାଧ୍ୟତା ଓ ଶତ୍ରୁତାଚରଣ ପାଇଁ ଦୁଃଖିତ କିମ୍ବା ଚିନ୍ତିତ ନହେବା ପାଇଁ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ପ୍ରଦାନ କରୁଅଛନ୍ତି ।

୭୧-୭୫ । ଅବିଶ୍ୱାସକାରୀମାନେ ପ୍ରଶ୍ନ କରୁଥିଲେ, ପୁନରୁତ୍ଥାନ କେବେ ଘଟିବ ? ତାହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, ଅନ୍ତର୍ଯ୍ୟାମୀ ପରମେଶ୍ୱରଙ୍କ ଛଡ଼ା ଅଦୃଷ୍ଟ ବିଷୟର ଜ୍ଞାନ ଅନ୍ୟ କାହାରି ନାହିଁ । ପୁନରୁତ୍ଥାନର ସମୟ ନିର୍ଦ୍ଦିଷ୍ଟରୂପେ ଜଣାଇ ଦିଆଯାଇ ନାହିଁ ବୋଲି ଏହା କେବେ ଘଟିବ ନାହିଁ ଏପରି ମନେ କରିବା ଉଚିତ ନୁହେ । ପରମେଶ୍ୱର ନିଜ ଅନୁଗ୍ରହରୁ ଲୋକମାନଙ୍କୁ ଅବସର ଦେଇଅଛନ୍ତି, ଯାହାରେ ସେମାନେ ଅନୁତାପ କରିବେ । ପ୍ରକାଶ୍ୟ ପୁସ୍ତକ—ପରମେଶ୍ୱରଙ୍କ ଅସୀମ ଓ ଅନନ୍ତ ଜ୍ଞାନ ।

୭୬ । ଇହୁଦୀମାନେ ଓଜାଇରଙ୍କ (୯ମ ଅଧ୍ୟାୟ ୩୦ ଶ୍ଳୋକ)ଙ୍କ ସମ୍ବନ୍ଧରେ ଏବଂ ମହାପୁରୁଷ ଇସାଙ୍କ ଜନ୍ମ ଓ ମୃତ୍ୟୁ ସମ୍ବନ୍ଧରେ, ଏବଂ ପୂର୍ବେହିତମାନଙ୍କ ସମ୍ବନ୍ଧରେ ଏବଂ ପରିଶେଷରେ ଶେଷ ପ୍ରେରିତ ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ସମ୍ବନ୍ଧରେ ଯେଉଁ ଭ୍ରାନ୍ତ ଧାରଣା ପୋଷଣ କରୁଥିଲେ କୋରାନରେ ସେ ସବୁ ବିଷୟର ପ୍ରକୃତ ଘଟଣା ବର୍ଣ୍ଣନା କରାଯାଇଅଛି ।

ଏବଂ ନିଶ୍ଚୟ ଏହା ବିଶ୍ୱାସକାରୀମାନଙ୍କ ପାଇଁ ସୁପଥ ପ୍ରଦର୍ଶକ ଓ କରୁଣା ।୭୭।

ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ନିଜ ସୁବିଚାର ଦ୍ୱାରା ସେମାନଙ୍କ ମଧ୍ୟରେ ମୀମାଂସାକରି ଦେବେ, ଏବଂ ସେ ପରାକାନ୍ତ ମହାଜ୍ଞାନୀ ।୭୮।

ଅତଏବ ତୁମ୍ଭେ ପରମେଶ୍ୱରଙ୍କ ଉପରେ ନିର୍ଭରକର; ନିଶ୍ଚୟ ତୁମ୍ଭେ ପ୍ରକାଶ୍ୟ ସତ୍ୟପଥ ଉପରେ ରହିଅଛ ।୭୯।

ନିଶ୍ଚୟ ତୁମ୍ଭେ ପ୍ରାଣହୀନମାନଙ୍କୁ ଶୁଣାଇ ପାରିବନାହିଁ ଏବଂ ବଧିରମାନଙ୍କୁ (ତୁମ୍ଭର) ଡାକ ଶୁଣାଇ ପାରିବ ନାହିଁ, ଯେତେବେଳେ ସେମାନେ ପଛ ଫେରାଇ ଫେରିଯାଆନ୍ତି ।୮୦।

ଏବଂ ତୁମ୍ଭେ ଅନ୍ଧମାନଙ୍କୁ ସେମାନଙ୍କ ଭ୍ରାନ୍ତ ପଥରୁ ସୁପଥକୁ ଆଣି ପାରିବନାହିଁ; ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କରେ ବିଶ୍ୱାସ କରି ଅଛନ୍ତି ସେମାନଙ୍କ ଛଡ଼ା, ତୁମ୍ଭେ ଅନ୍ୟ କାହାକୁ (ତୁମ୍ଭ କଥା) ଶୁଣାଇ ପାରିବ ନାହିଁ; ବାସ୍ତବରେ ସେହିମାନେ ହିଁ ଆତ୍ମସମର୍ପଣକାରୀ ।୮୧।

ଏବଂ ଯେତେବେଳେ ସେମାନଙ୍କ ଉପରେ ସେହିକଥା ଘଟିବ, ସେତେବେଳେ ଆମ୍ଭେ ସେମାନଙ୍କ ପାଇଁ ଭୂମିରୁ ଏପରି ଏକ ଜନ୍ତୁ ବାହାର କରିବୁଁ ଯେ ସେମାନଙ୍କ ସହିତ କଥା କହିବ; ଯେ ହେତୁ ଲୋକମାନେ ଆମ୍ଭର ନିଦର୍ଶନମାନଙ୍କରେ ବିଶ୍ୱାସ କଲେନାହିଁ ।୮୨।

## ୭ମ ବିଭାଗ

ଏବଂ ଯେଉଁଦିନ ଆମ୍ଭେ ପ୍ରତ୍ୟେକ ସମ୍ପ୍ରଦାୟରୁ ଗୋଟିଏ ଗୋଟିଏ ଦଳ ଉଠାଇବୁଁ, ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କୁ ମିଥ୍ୟା ମନେ କରୁଥିଲେ, ସେତେବେଳେ ସେମାନଙ୍କୁ ଭିନ୍ନ ଭିନ୍ନ ଶ୍ରେଣୀରେ ରଖାଯିବ ।୮୩।

---

୭୮ । ଭିନ୍ନ ଭିନ୍ନ ବିବାଦୀ ଦଳ ମଧ୍ୟରେ ଯେଉଁ ମତଭେଦ ଦେଖାଯାଉଅଛି, ତାହାର ମୀମାଂସା ପରମେଶ୍ୱରଙ୍କ ଆଦେଶରେ ହେବ—(କ) ପରମେଶ୍ୱରଙ୍କ ଅବତୀର୍ଣ୍ଣ ଆଦେଶ ବାଣୀ ଦ୍ୱାରା, ଯେପରିକି କୋରାନ ଦ୍ୱାରା ହୋଇଥିଲା । (ଖ) କିମ୍ବା ଏହି ଇହ କାଳର ଘଟଣା ଚକ୍ରଦ୍ୱାରା, ଯେପରିକି କାଳ କ୍ରମେ ଅସଂଖ୍ୟ ଦଳ ଲୋପ ପାଇ ଅଛନ୍ତି (ଗ) କିମ୍ବା ପରକାଳରେ ପରମେଶ୍ୱରଙ୍କ ଶେଷ ବିଚାର ଦ୍ୱାରା, ଯେତେବେଳେ ବିବାଦୀ ଦଳମାନେ ସେମାନଙ୍କ ଭ୍ରମ ଜାଣି ପାରିବେ ।

୮୦-୮୧ । ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସରେ ଦୃଢ଼ ରହିଅଛନ୍ତି ସେମାନଙ୍କୁ ସତ୍ପଥକୁ ଆଣିବା ପ୍ରେରିତ ପୁରୁଷଙ୍କ ସାଧ୍ୟାତୀତ । ସୁତରାଂ ସେଥିପାଇଁ ଦୁଃଖିତ ହେବାର କୌଣସି କାରଣ ନାହିଁ ।

୮୨ । ପୁନରୁତ୍ଥାନ ଦିବସର ପୂର୍ବେ ଭୂତଳରୁ ଏପରି ଗୋଟିଏ ଅଦ୍ଭୁତ ଜନ୍ତୁ ବାହାରିବ ଯେକି ଲୋକମାନଙ୍କ ସହିତ କଥା କହିବ ଏବଂ ପୁନରୁତ୍ଥାନ ଦିବସ ନିକଟବର୍ତ୍ତୀ ବୋଲି ଅବିଶ୍ୱାସକାରୀମାନଙ୍କ ନିକଟରେ ପ୍ରକାଶ କରିବ । ଅଧୁନିକ ଟୀକାକାରମାନଙ୍କ ମଧ୍ୟରୁ କେହି କେହି ଏହାର ଅର୍ଥ ରୂପକ ଭାବରେ ଗ୍ରହଣ କରି କହନ୍ତି ଯେ, ସେହି କଥା ଅର୍ଥ ଦଣ୍ଡାଦେଶ; ଏକ ଜନ୍ତୁ ବାହାର କରିବା ଅର୍ଥ ଭୂମିକମ୍ପ, ଦୁର୍ଭିକ୍ଷ, ଜଳପ୍ଳାବନ, ଯୁଦ୍ଧ ବିଗ୍ରହ ଓ ମହାମାରୀ ପ୍ରଭୃତି ବ୍ୟାଧି ଦ୍ୱାରା ଦୈବ ଦୁର୍ଯୋଗର ଘଟନ; ସେମାନଙ୍କ ସହିତ କଥା କହିବା ମାନେ ସେମାନଙ୍କୁ ଆହତ ଓ କ୍ଷତିଗ୍ରସ୍ତ କରିବ । ସେମାନେ ପାପୀ-ଅତ୍ୟାଚାରୀ ଅଟନ୍ତି । ଏହାର ମତଲବ ହେଉଅଛି ଯେ ଯେତେବେଳେ ପୃଥିବୀରେ ପାପ ଓ ଅତ୍ୟାଚାରର ଭାର ବେଶୀ ହୋଇପଡ଼ିବ ସେତେବେଳେ ଏହି ସବୁ ପ୍ରାକୃତିକ ଦୁର୍ଘଟଣା ଘଟି ଧନ ଜନ ଧ୍ୱଂସ ହେବ ।

୮୩-୮୫ । ଏହି ଶ୍ଳୋକମାନଙ୍କରେ ପୁନରୁତ୍ଥାନ ଦିବସର ଘଟଣା ବର୍ଣ୍ଣିତ ହୋଇଅଛି ।

ଏପରିକି ଯେତେବେଳେ ସେମାନେ ସମସ୍ତେ (ବିଚାର ସ୍ଥଳରେ) ଉପସ୍ଥିତ ହେବେ, ସେତେବେଳେ ସେ କହିବେ, "ତୁମ୍ଭେମାନେ କଅଣ ଆମର ନିଦର୍ଶନମାନଙ୍କୁ ମିଥ୍ୟା ମନେକରୁଥିଲ, ଅଥଚ ସେ ସମ୍ବନ୍ଧରେ ତୁମ୍ଭମାନଙ୍କର କୌଣସି ପୂର୍ଣ୍ଣ ଜ୍ଞାନ ନଥିଲା ? କିମ୍ବା ତୁମ୍ଭେମାନେ (ଯଦି ଏହା ନ କରିଥିଲ ତେବେ) ଅଉ କଅଣ କରିଥିଲ" ? ୮୪ ।

ଏବଂ ସେମାନଙ୍କର ଅତ୍ୟାଚାର ପାଇଁ ସେମାନଙ୍କ ଉପରେ ସେହି କଥା ଘଟିବ; ସେତେବେଳେ ସେମାନେ କଥାକହି ପାରିବେ ନାହିଁ ।୮୫।

ସେମାନେ କଅଣ ଲକ୍ଷ୍ୟକରୁ ନାହାନ୍ତି ଯେ ଆମ୍ଭେ ରାତକୁ ସେମାନଙ୍କ ବିଶ୍ରାମ ପାଇଁ ଏବଂ ଦିନକୁ ଆଲୋକ ପାଇଁ ସୃଷ୍ଟିକରିଅଛୁଁ ? ନିଶ୍ଚୟ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ଏଥିରେ ନିଦର୍ଶନମାନ ରହିଅଛି ।୮୬।

ଏବଂ ଯେଉଁଦିନ ଭେରୀ ଧ୍ୱନି କରାହେବ, ସେଦିନ ଆକାଶରେ ଓ ପୃଥିବୀରେ ଥିବା ସମସ୍ତେ ଭୟରେ କମ୍ପିବେ; ତେବେ ପରମେଶ୍ୱର ଯାହାକୁ ଇଚ୍ଛା କରିବେ ସେମାନଙ୍କୁ ନିର୍ଭୟ ରଖିବେ; ଏବଂ ସେମାନେ ସମସ୍ତେ ତାଙ୍କ ଆଗରେ ବିନୀତ ଭାବରେ ଉପସ୍ଥିତ ହେବେ । ୮୭ ।

ଏବଂ ତୁମ୍ଭେ ପର୍ବତମାନଙ୍କୁ ଦେଖି ସେମାନଙ୍କୁ ଅଚଳ ମନେ କରୁଅଛ, କିନ୍ତୁ ସେମାନେ ଗତିଶୀଳ ମେଘମାଳାପରି ଗତି କରିବେ; ଏହା ସେହି ପରମେଶ୍ୱରଙ୍କ କାରିଗରୀ ଯେ ପ୍ରତ୍ୟେକ ବିଷୟ ନିୟନ୍ତ୍ରିତ କରି-ଅଛନ୍ତି; ତୁମ୍ଭେମାନେ ଯାହା କରୁଅଛ ନିଶ୍ଚୟ ସେ ତାହା ଜାଣନ୍ତି । ୮୮ ।

ଯେ (ନିଜ ସଙ୍ଗରେ) ସତ୍‌କାର୍ଯ୍ୟ ଆଣିବ ସେ ତହିଁର ଉତ୍ତମ ପୁରସ୍କାର ପାଇବ ଏବଂ ସେଦିନ ସେ ଭୟରୁ ନିରାପଦରେ ରହିବ । ୮୯ ।

ଏବଂ ଯେ (ନିଜ ସଙ୍ଗରେ) ଅସତ୍‌କାର୍ଯ୍ୟ ଆଣିବ ତାକୁ ଅଧୋମୁଖରେ ନରକରେ ପକାଇ ଦିଆଯିବ; (ପରମେଶ୍ୱର ସେମାନଙ୍କୁ କହିବେ) "ତୁମ୍ଭେମାନେ ଯାହା କରିଥିଲ ତାହା ଛଡା ଅଉ କଅଣ ପ୍ରତିଫଳ ପାଇବ" ? ୯୦ ।

(ତୁମ୍ଭେକୁହ) "ଆମ୍ଭେ ଆଦିଷ୍ଟ ହୋଇଅଛୁଁ ଯେ ଏହି ନଗରର ପାଳନକର୍ତ୍ତାଙ୍କର ଉପାସନା କରିବୁଁ ଯେ ଏହାକୁ ପବିତ୍ର କରିଅଛନ୍ତି ଏବଂ ଯେ ସମସ୍ତ ବିଷୟର ଅଧିକାରୀ; ଏବଂ ଆମ୍ଭେ ଆଦିଷ୍ଟ ହୋଇଅଛୁଁ ଯେ ଆମ୍ଭେ ଆତ୍ମସମର୍ପଣକାରୀମାନଙ୍କର ଅନ୍ତର୍ଗତ ହେବୁଁ । ୯୧ ।

---

୮୪ । ସେ=ପରମେଶ୍ୱର
'ପରକାଳ ସମ୍ବନ୍ଧରେ ତୁମ୍ଭମାନଙ୍କ କୌଣସି ପୂର୍ଣ୍ଣ ଜ୍ଞାନ ନଥିଲା, ତଥାପି ତୁମ୍ଭେମାନେ ସର୍ଗଙ୍କରେ ଆମର ନିଦର୍ଶନମାନଙ୍କୁ ମିଥ୍ୟା ଜ୍ଞାନ କରିଥିଲ ଏହା କଣ ସତ୍ୟ, ବା ତୁମ୍ଭମାନଙ୍କ ସପକ୍ଷରେ ଅଉ କୌଣସି ଉତ୍ତର ଅଛି ?' ସେମାନଙ୍କ ବିରୁଦ୍ଧରେ ଏ ଅଭିଯୋଗ ଆଣାଯିବ ।
୮୫ । ସେହି କଥା—ପାପର ଶାସ୍ତି । କଥା କହିପାରିବେ ନାହିଁ—କୌଣସି ବାହାନା କରିପାରିବେ ନାହିଁ ।
୮୬ । ପରମେଶ୍ୱରଙ୍କ ସୃଷ୍ଟି କୌଶଳ ଦର୍ଶନ କରି ପରଲୋକରେ ବିଶ୍ୱାସ କରିବା ପାଇଁ ଆଦେଶ ଦିଆଯାଇଅଛି ।
୮୭-୯୦ । ଏହି ଶ୍ଳୋକମାନଙ୍କରେ ଶେଷ ବିଚାର ଦିନର ଘଟନା ଓ କର୍ମଫଳ ଭୋଗର ବିଷୟ ବର୍ଣ୍ଣିତ ହୋଇଅଛି ।
୯୧ । ଏହି ନଗର—ମକ୍କା ନଗରୀ । ଏହାକୁ—ମକ୍କା ନଗରକୁ ।

"ଏବଂ (ଆମ୍ଭେ ଆଦିଷ୍ଟ ହୋଇଅଛୁଁ) ଯେପରି ଆମ୍ଭେ କୋରାନ ପାଠ କରିବୁଁ;" ଅତଏବ ଯେ (ତଦ୍ଦ୍ୱାରା) ସୁପଥଗାମୀ ହେବ ସେ ବାସ୍ତବରେ ନିଜପାଇଁ ସୁପଥଗାମୀ ହେବ; ଏବଂ ଯେ ବିପଥଗାମୀ ହେବ ତୁମ୍ଭେ ତାକୁ କହିଦିଅ ଯେ ଆମ୍ଭେ ଭୟ ପ୍ରଦର୍ଶକ ଛଡ଼ା ଅନ୍ୟ କିଛି ନୋହୁଁ । ୯୨ ।

ଏବଂ ତୁମ୍ଭେ କୁହ, "ପରମେଶ୍ୱରଙ୍କପାଇଁ ସମସ୍ତ ପ୍ରଶଂସା, ସେହି ତୁମ୍ଭମାନଙ୍କୁ ନିଜର ନିଦର୍ଶନମାନ ଦେଖାଇବେ; ସେତେବେଳେ ତୁମ୍ଭେମାନେ ସେସବୁକୁ ଚିହ୍ନି ପାରିବ; ଏବଂ ତୁମ୍ଭେମାନେ ଯାହା କରୁଅଛ ସେ ବିଷୟରେ ତୁମ୍ଭର ପାଳନକର୍ତ୍ତା ଅମନଯୋଗୀ ନୁହନ୍ତି" । ୯୩ ।

---

୯୧-୯୩ । ଏହି ଶ୍ଲୋକମାନଙ୍କରେ ପରମେଶ୍ୱରଙ୍କଠାରେ ଆତ୍ମ ସମର୍ପଣ କରି ଲୋକମାନଙ୍କୁ କୋରାନ ଗ୍ରନ୍ଥ ପ୍ରଚାର-କରିବା ଏବଂ ବିଶ୍ୱାସକାରୀମାନଙ୍କୁ ପରଲୋକର ପୁରସ୍କାର ସମ୍ବନ୍ଧରେ ସୁସମ୍ବାଦ ଦେବା ଏବଂ ଅବିଶ୍ୱାସକାରୀ-ମାନଙ୍କୁ ପରଲୋକର ଶାସ୍ତି ବିଷୟରେ ଭୟ ପ୍ରଦର୍ଶନ କରିବା ପାଇଁ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ଆଦେଶ କରିଅଛନ୍ତି ।

# ୨୮ଶ ଅଧ୍ୟାୟ

ନାମ—ଅଲ୍‌କସସ୍ (ଉପାଖ୍ୟାନମାଳା)

ମକ୍କାରେ ଅବତୀର୍ଣ୍ଣ । ଏଥିରେ ମୋଟ ୯ ଟି ବିଭାଗ ଏବଂ ମୋଟ ୮୮ ଟି ଶ୍ଳୋକ ଅଛି ।

ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

## ୧ମ ବିଭାଗ

ତ୍ୱା—ସୀନ୍—ମୀମ୍ ।୧।

ଏହା ସେହି ସ୍ପଷ୍ଟ ବର୍ଣ୍ଣନାକାରୀ ଗ୍ରନ୍ଥର ଶ୍ଳୋକମାନ । ୨ ।

(ହେ ମୋହମ୍ମଦ), ଆମ୍ଭେ ମୂସା ଓ ଫେରଅଓନ୍‌ଙ୍କ ବିବରଣରୁ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ତୁମ୍ଭ ନିକଟରେ ସତ୍ୟ ଭାବରେ ବର୍ଣ୍ଣନା କରୁଅଛୁଁ । ୩ ।

ନିଶ୍ଚୟ ଫେରଅଓନ୍ (ମିଶର) ଦେଶରେ ଉନ୍ନତ ହୋଇଥିଲା ଏବଂ ଏହାର ଅଧିବାସୀମାନଙ୍କୁ ଭିନ୍ନ ଭିନ୍ନ ଦଳରେ ବିଭକ୍ତ କରି ସେମାନଙ୍କ ମଧ୍ୟରୁ ଏକ ଦଳକୁ ଦୁର୍ବଳ କରି ଦେଇଥିଲା, ସେମାନଙ୍କର ପୁତ୍ରମାନଙ୍କୁ ସେ ହତ୍ୟା କରୁଥିଲା ଏବଂ ସେମାନଙ୍କର ସ୍ତ୍ରୀଲୋକମାନଙ୍କୁ ଜୀବିତ ରଖୁଥିଲା; ନିଶ୍ଚୟ ସେ ଦୁଷ୍କର୍ମକାରୀମାନଙ୍କର ଅନ୍ତର୍ଗତ ଥିଲା । ୪ ।

ଏବଂ ଆମ୍ଭେ ଇଚ୍ଛା କରିଥିଲୁଁ ଯେ ଯେଉଁମାନେ ସେହି ଦେଶରେ ଦୁର୍ବଳ ଥିଲେ ସେମାନଙ୍କୁ ସାହାଯ୍ୟ କରିବୁ ଏବଂ ସେମାନଙ୍କୁ ଦଳପତି କରିଦେବୁ ଏବଂ ସେମାନଙ୍କୁ (ରାଜ୍ୟର) ଉତ୍ତରାଧିକାରୀ କରିଦେବୁ । ୫ ।

ଏବଂ ଆମ୍ଭେ ସେମାନଙ୍କୁ ପୃଥିବୀରେ ଶକ୍ତିଶାଳୀ କରିଦେବୁ ଏବଂ ଫେରଅଓନ୍ ଓ ହାମାନ୍ ଏବଂ ସେମାନଙ୍କର ଅନୁଚରମାନେ ସେମାନଙ୍କଠାରୁ ଯେଉଁ ବିପଦର ଆଶଙ୍କା କରୁଅଛନ୍ତି ଆମ୍ଭେ ତାହା ଦେଖାଇ ଦେବୁଁ । ୬ ।

---

ନାମକରଣ—ଏହି ଅଧ୍ୟାୟର ପ୍ରଥମ ଅଂଶରେ ମହାପୁରୁଷ ମୂସାଙ୍କ ଉପାଖ୍ୟାନ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଏଥିପାଇଁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ସାଙ୍କେତିକ ବର୍ଣ୍ଣମାଳା ସମ୍ବନ୍ଧରେ ୨ୟ ଅଧ୍ୟାୟ ୧ମ ଶ୍ଳୋକ ଓ ତହିଁର ଟୀକା ଦେଖ । ୨୬ ଅଧ୍ୟାୟ ୧ମ ଶ୍ଳୋକର ଟୀକା ଦେଖ ।

୨ । ସ୍ପଷ୍ଟ ବର୍ଣ୍ଣନାକାରୀ ଗ୍ରନ୍ଥ—କୋରାନ ।

୪ । ଉନ୍ନତ ହୋଇଥିଲା—ଶକ୍ତିଶାଳୀ ଥିବା ହେତୁ ଉଦ୍ଧତ ପ୍ରକୃତି ବିଶିଷ୍ଟ ହୋଇଥିଲା ।
ଏକ ଦଳକୁ—ଇସରାଇଲ ବଂଶଧରମାନଙ୍କୁ
ଫେରଅଓନ—ମିଶର ଦେଶର ଅତ୍ୟାଚାରୀ ରାଜା ।
ପୁତ୍ରମାନଙ୍କୁ ହତ୍ୟାକରୁଥିଲା—ଯେପରି କି ଇସରାଇଲୀୟମାନଙ୍କ ସଂଖ୍ୟା କମେ କମେ ଲୋପ ପାଏ ।

୫ । ଆମ୍ଭେ—ପରମେଶ୍ୱର ।

୬ । ଆମ୍ଭେ—ପରମେଶ୍ୱର । ସେମାନଙ୍କୁ—ଇସରାଇଲ ବଂଶଧରମାନଙ୍କୁ ।

ଏବଂ ଆମ୍ଭେ ମୂସାଙ୍କ ମାତାଙ୍କୁ ଆଦେଶ କରିଥିଲୁଁ "ତୁମ୍ଭେ ତାହାଙ୍କୁ ସ୍ତନ୍ୟ ଦେଉଥାଅ, ତା ପରେ ଯେତେବେଳେ ତାଙ୍କର (ପ୍ରାଣର) ଆଶଙ୍କା କରିବ ସେତେବେଳେ ତାହାଙ୍କୁ ନଈରେ ପକାଇ ଦେବ ଏବଂ ଭୟ କରିବ ନାହିଁ କିମ୍ବା ଦୁଃଖ କରିବ ନାହିଁ; ନିଶ୍ଚୟ ଆମ୍ଭେ ତାହାଙ୍କୁ ତୁମ୍ଭ ନିକଟ ଫେରାଇ ଆଣିବୁଁ ଏବଂ ତାହାଙ୍କୁ ପ୍ରେରିତପୁରୁଷମାନଙ୍କର ଅନ୍ତର୍ଗତ କରିବୁଁ" । ୭ ।

ତା ପରେ ଫେରଅଉନର ଲୋକମାନେ ତାଙ୍କୁ ଉଠାଇ ନେଇଥିଲେ ଯେପରି ସେ ସେମାନଙ୍କପାଇଁ (ଭବିଷ୍ୟତରେ) ଶତ୍ରୁ ଓ ଦୁଃଖଦାୟକ ହେବେ; ନିଶ୍ଚୟ ଫେରଅଉନ୍ ଓ ହାମାନ ଓ ସେମାନଙ୍କର ଅନୁଚର-ମାନେ ଦୁଷ୍କର୍ମକାରୀ ଥିଲେ । ୮ ।

ଏବଂ ଫେରଅଉନ୍‌ର ପତ୍ନୀ କହିଥିଲା, "ଏ ଯେ ଆମ୍ଭପାଇଁ ଓ ତୁମ୍ଭପାଇଁ ନୟନ ତୃପ୍ତିକର । ଏହାକୁ ହତ୍ୟା କରନା; ସମ୍ଭବତଃ (ଭବିଷ୍ୟତରେ) ଏ ଆମ୍ଭମାନଙ୍କ ଉପକାରରେ ଆସିବ ଅଥବା ଆମ୍ଭେମାନେ ତାଙ୍କୁ ପୁତ୍ରରୂପେ ଗ୍ରହଣ କରିବୁଁ," ଏବଂ ସେମାନେ (ଏହାର ପରିଣାମ) ବୁଝିପାରି ନ ଥିଲେ । ।

ଏବଂ ମୂସାଙ୍କ ମାତାଙ୍କ ଅନ୍ତର ନିଶ୍ଚିନ୍ତ ହୋଇଥିଲା; ଯଦି ଆମ୍ଭେ ତାଙ୍କ ହୃଦୟକୁ ଦୃଢ଼ କରି ନ ଥାନ୍ତୁ ଯଦ୍ୱାରା ସେ ବିଶ୍ୱାସକାରୀମାନଙ୍କର ଅନ୍ତର୍ଗତ ସେ ହୋଇ ପାରନ୍ତେ, ତେବେ ନିଶ୍ଚୟ ସେ ବିଷୟ ପ୍ରକାଶ କରି ଦେବାକୁ ଉଦ୍ୟତ ହୋଇଥାନ୍ତେ । ୧୦ ।

ସେ ତାଙ୍କର ଭଗ୍ନୀକୁ କହିଥିଲେ, "ତୁମ୍ଭେ ଏହାର ପଛେ ପଛେ ଯାଅ;" ଅତଏବ ସେ ତାଙ୍କୁ ଦୂରରୁ ଦେଖୁଥିଲା ଯେପରି ସେମାନେ ଜାଣି ନ ପାରିବେ । ୧୧ ।

---

ହାମାନ୍—ଫେରଅଉନର ପ୍ରଧାନ ମନ୍ତ୍ରୀ ।

ଫେରଅଉନ୍ ଓ ତାଙ୍କ ଦଳର ଲୋକମାନେ ଆଶଙ୍କା କରୁଥିଲେ କି ଇସରାଇଲ ବଂଶଧରମାନେ ଦିନେ ଶକ୍ତି-ଶାଳୀ ହୋଇ ସେମାନଙ୍କୁ ଅଧୀନସ୍ଥ କରିନେବେ । ଏଥିପାଇଁ ସେମାନେ ସେମାନଙ୍କ ପ୍ରତି ଅତ୍ୟାଚାର କରୁଥିଲେ ଯେପରି ସେମାନେ ଶକ୍ତିଶାଳୀ ହୋଇ ନପାରିବେ । ମାତ୍ର ପରମେଶ୍ୱର ସେମାନଙ୍କୁ ଶକ୍ତିଶାଳୀ କରି ସିରିଆ ଦେଶ ଓ ମିଶର ଦେଶରେ ସେମାନଙ୍କୁ ଉତ୍ତରାଧିକାରୀ କରିବାକୁ ଇଚ୍ଛା କରିଥିଲେ ! ସେଥିପାଇଁ ମହା-ପୁରୁଷ ମୂସାଙ୍କ ଆବିର୍ଭାବ ହୋଇଥିଲା ।

୭ । ଆଶଙ୍କା—ଫେରଅଉନ ଇସରାଇଲ ବଂଶୀୟ ପୁତ୍ର ସନ୍ତାନମାନଙ୍କୁ ହତ୍ୟା କରୁଥିଲା; ଏଥିପାଇଁ ନବଜାତ ଶିଶୁ ମୂସାଙ୍କ ସମ୍ବନ୍ଧରେ ତାଙ୍କ ମାତାଙ୍କ ମନରେ ଆଶଙ୍କା ଜାତ ହୋଇଥିଲା ଯେ, ସେମାନେ ତାଙ୍କୁ ହତ୍ୟା କରିବେ ।

୮ । ୯ । ପରମେଶ୍ୱରଙ୍କ ଆଦେଶ ଅନୁଯାୟୀ ମୂସାଙ୍କ ମାତା ମୂସାଙ୍କୁ ଶୈଶବ ଅବସ୍ଥାରେ ଗୋଟିଏ କାଠ ସିନ୍ଦୁକରେ ପୂରାଇ ନୀଳ ନଦୀରେ ଭସାଇ ଦେଇଥିଲେ । ନୀଳ ନଦୀ ଫେରଅଉନର ରାଜପ୍ରାସାଦର ପାଦ ଦେଶରେ ପ୍ରବାହିତ ହେଉଥିଲା । କାଠସିନ୍ଦୁକ ନୀଳ ନଦୀ ଉପରେ ଭାସି ଯାଉଥିବା ସମୟରେ ଫେରଅଉନ ଓ ତାଙ୍କର ସ୍ତ୍ରୀ ତାକୁ ଦେଖିଥିଲେ । ସେଥିରେ କ'ଣ ଅଛି ଜାଣିବା ପାଇଁ ସେମାନେ ତାକୁ ଉଠାଇ ଆଣିବା ପାଇଁ ଅନୁଚରମାନଙ୍କୁ ଆଦେଶ କରିଥିଲେ, ସୁତରାଂ ଅନୁଚରମାନେ ସେହି କାଠ ସିନ୍ଦୁକକୁ ନଦୀରୁ ଉଠାଇ ଆଣିଥିଲେ । ସିନ୍ଦୁକକୁ ଫିଟାଇବାରୁ ସେଥି ମଧ୍ୟରେ ଗୋଟିଏ ସୁନ୍ଦର ଶିଶୁ ପୁତ୍ର ଦେଖାଗଲା । ଫେରଅଉନ ସମ୍ଭବତଃ ଅପୁତ୍ରିକ ଥିଲା । ସୁତରାଂ ତାହାର ସ୍ତ୍ରୀ ଶିଶୁଟିକୁ ହତ୍ୟା ନକରି ପୁତ୍ରରୂପେ ପ୍ରତିପାଳନ କରିବା ପାଇଁ ଫେରଅଉନକୁ ଅନୁରୋଧ କରିଥିଲା ଏବଂ ସେ ସେଥିରେ ସ୍ୱୀକୃତ ହୋଇଥିଲା । ସେତେବେଳେ ସେମାନେ ସ୍ୱପ୍ନରେ ମଧ୍ୟ ଭାବି ନଥିଲେ ଯେ ସେହି ଶିଶୁ ଭବିଷ୍ୟତରେ ସେମାନଙ୍କର ଶତ୍ରୁ ହୋଇ ସେମାନଙ୍କର ଧ୍ୱଂସ ସାଧନ କରିବ ।

୧୧ । ମୂସାଙ୍କ ମାତା ଶିଶୁକୁ ନଦୀରେ ଭସାଇ ଦେଇ ଅଧୀର ନହୋଇ ଘଟଣା ଲକ୍ଷ୍ୟ କରିବା ପାଇଁ ନିଜ କନ୍ୟାକୁ ଅର୍ଥାତ ମୂସାଙ୍କ ଭଗୀକୁ ପଠାଇଥିଲେ ଏବଂ ସେ ସେମାନଙ୍କ ଅଜ୍ଞାତରେ ଦୂରରେ ରହି ଘଟଣା ଲକ୍ଷ୍ୟ କରିଥିଲେ ।

ଏବଂ ଅମ୍ଭେ ତାହାଙ୍କ ପୂର୍ବରୁ (ଧାତ୍ରୀମାନଙ୍କ) ସ୍ତନ୍ୟପାନ ନିଷେଧ କରି ଦେଇଥିଲୁଁ, ସୁତରାଂ ସେ କହିଥିଲା, "ଅମ୍ଭେ କଅଣ ତୁମ୍ଭମାନଙ୍କୁ ଗୋଟିଏ ଘରର ପରିବାର ସମ୍ବନ୍ଧରେ ଜଣାଇ ଦେବୁଁ ଯେ ତୁମ୍ଭମାନଙ୍କ ପାଇଁ ଏହାର ପାଳନର ଭାର ଗ୍ରହଣ କରିବେ ଏବଂ ଯେ ଏହାପାଇଁ ହିତକାରୀ ହେବେ ?" ୧୨ ।

ତାପରେ ଅମ୍ଭେ ତାଙ୍କୁ ତାଙ୍କର ମାତାଙ୍କ ନିକଟ ଫେରାଇ ଆଣିଥିଲୁଁ ଯେପରି ତାଙ୍କର ନୟନ ତୃପ୍ତ ହେବ ଏବଂ ଯେପରି ସେ ଦୁଃଖିତ ନ ହେବେ ଏବଂ ଯେପରି ସେ ଜାଣି ପାରିବେ ଯେ ପରମେଶ୍ୱରଙ୍କ ଅଙ୍ଗୀକାର ସତ୍ୟ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ । ୧୩ ।

## ୨ୟ ବିଭାଗ

ଏବଂ ଯେତେବେଳେ ମୂସା ଯୌବନରେ ପଦାର୍ପଣ କରିଥିଲେ ଏବଂ ପୂର୍ଣ୍ଣବୟସ୍କ ହୋଇଥିଲେ, ସେତେବେଳେ ଅମ୍ଭେ ତାଙ୍କୁ ବିଜ୍ଞାନ ଓ ଜ୍ଞାନ ଦାନ କରିଥିଲୁଁ, ଏବଂ ଏହିପରି ଅମ୍ଭେ ସତ୍କର୍ମଶୀଳଲୋକମାନଙ୍କୁ ପୁରସ୍କାର ପ୍ରଦାନ କରିଥାଉଁ । ୧୦ ।

ଏବଂ ନଗରବାସୀମାନେ ଅସତର୍କ ଥିବା ସମୟରେ ମୂସା ନଗର ମଧ୍ୟରେ ପ୍ରବେଶ କରିଥିଲେ, ତାପରେ ସେ ସେଠାରେ ଦୁଇଜଣ ଲୋକଙ୍କୁ ପରସ୍ପର ଯୁଦ୍ଧ କରୁଥିବାର ଦେଖିଥିଲେ; ସେମାନଙ୍କ ମଧ୍ୟରୁ ଜଣେ ତାଙ୍କ ଦଳର ଲୋକ ଏବଂ ଅନ୍ୟ ଜଣକ ତାଙ୍କ ଶତ୍ରୁ ଦଳର ଲୋକ; ତାପରେ ତାଙ୍କ ଦଳର ଲୋକଟି ନିଜ ଶତ୍ରୁ ବିରୁଦ୍ଧରେ ତାଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥନା କରିଥିଲା, ସୁତରାଂ ମୂସା ତାକୁ ବିଧା ମାଡ଼ ଦେଇଥିଲେ ଯଦ୍ଦ୍ୱାରା ସେ ମୃତ୍ୟୁଲାଭ କରିଥିଲା; ସେ (ଦୁଃଖିତ ହୋଇ) କହିଥିଲେ, "ଏହା ସଇତାନର କାର୍ଯ୍ୟ, ନିଶ୍ଚୟ ସେ ପ୍ରକାଶ୍ୟ ବିଭ୍ରାନ୍ତକାରୀ ଶତ୍ରୁ ।". ୧୫ ।

ମୂସା କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ନିଶ୍ଚୟ ଅମ୍ଭେ ନିଜ ପ୍ରତି ଅତ୍ୟାଚାର କରିଅଛୁଁ, ଅତଏବ ତୁମ୍ଭେ ଅମ୍ଭଙ୍କୁ କ୍ଷମା କର;" ସୁତରାଂ ସେ ତାଙ୍କୁ କ୍ଷମା ଦେଇଥିଲେ; ନିଶ୍ଚୟ ସେ କ୍ଷମାଶୀଳ ଓ କରୁଣାମୟ । ୧୬ ।

ସେ ପୁଣି କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା ! ଯେହେତୁ ତୁମ୍ଭେ ଅମ୍ଭ ପ୍ରତି ଅନୁଗ୍ରହ କରିଅଛ, ଅମ୍ଭେ ଅପରାଧୀମାନଙ୍କର ପୃଷ୍ଠପୋଷକ ହେବୁଁ ନାହିଁ । ୧୭ ।

---

୧୨ । ୧୩ । ଫେରଅଉନ ମୂସାଙ୍କୁ ପୁତ୍ରରୂପେ ପ୍ରତିପୋଷଣ କରିବାର ସ୍ଥିର କରି ତାଙ୍କ ପାଇଁ ଧାତ୍ରୀ ନିଯୁକ୍ତ କରିବାର ବ୍ୟବସ୍ଥା କରିଥିଲା । କେତେଜଣ ଧାତ୍ରୀ ଡକା ହେଲେ, ମାତ୍ର ମୂସା କାହାରିଠାରୁ ଦୁଗ୍ଧ ପାନ କଲେ ନାହିଁ । ଏହା ଦେଖି ମୂସାଙ୍କ ଭଗ୍ନୀ ନିଜ ମାତାଙ୍କୁ ଲକ୍ଷ୍ୟ କରି ପ୍ରସ୍ତାବ କରିଥିଲେ କି ସେହି ସ୍ତ୍ରୀଲୋକଙ୍କୁ ଧାତ୍ରୀରୂପେ ନିଯୁକ୍ତ କଲେ ସେ ଏହି ଶିଶୁର ଲାଳନ ପାଳନ ସୁନ୍ଦର ରୂପେ କରିପାରିବେ । ତଦନୁଯାୟୀ ତାଙ୍କ ମାତାଙ୍କୁ ଡକାଇ ଶିଶୁର ଧାତ୍ରୀରୂପେ ନିଯୁକ୍ତ କରାଯାଇଥିଲା ଏବଂ ମୂସା ଆନନ୍ଦରେ ତାଙ୍କର ଦୁଗ୍ଧ ପାନ କରିଥିଲେ । ଏହିରୂପେ ଶ୍ଳୋକ ୭କରେ ପରମେଶ୍ୱର ମୂସାଙ୍କ ମାତାଙ୍କ ସହିତ କରିଥିବା ଅଙ୍ଗୀକାର ପୂର୍ଣ୍ଣହୋଇଥିଲା ।
ତାହାଙ୍କୁ=ମୂସାଙ୍କୁ । ସେ କହିଲା=ମୂସାଙ୍କ ଭଗ୍ନୀ କହିଲା । ତାଙ୍କ ନୟନ—ମୂସାଙ୍କ ମାତାଙ୍କ ନୟନ ।

୧୫ । ୧୬ । ତାଙ୍କ ଦଳର ଲୋକ—ଇସ୍ରାଇଲ ବଂଶୀୟ ଲୋକ । ଶତ୍ରୁ ଦଳର ଲୋକ—ମିଶର ଅଧିବାସୀ ଫେରଅଉନ ସମ୍ପ୍ରଦାୟର ଲୋକ ।
ମୂସାଙ୍କ ବିଧା ମାଡ଼ରେ କେପ୍ଟିଅର ଲୋକ ପ୍ରାଣ ତ୍ୟାଗ କରିବାରୁ ସେ ସେଥିପାଇଁ ଦୁଃଖିତ ଓ ଅନୁତପ୍ତ ହୋଇ ପରମେଶ୍ୱରଙ୍କଠାରେ କ୍ଷମା ପ୍ରାର୍ଥନା କରିଥିଲେ ଏବଂ ପରମେଶ୍ୱର ତାଙ୍କୁ କ୍ଷମା ଦେଇଥିଲେ ।

ତାପରେ ସେ ଭୀତ, ସତର୍କ ଭାବରେ ସେହି ନଗରରେ ଅବସ୍ଥାନ କରିଥିଲେ; ତାପରେ ପୂର୍ବଦିନ ଯେଉଁ ବ୍ୟକ୍ତି ତାଙ୍କ ନିକଟ ସାହାଯ୍ୟ ପ୍ରାର୍ଥନା କରିଥିଲେ, ସେ ତାଙ୍କୁ ପୁନର୍ବାର ସାହାଯ୍ୟ ପାଇଁ ଆହ୍ୱାନ କରିଥିଲେ: ମୂସା ତାଙ୍କୁ କହିଥିଲେ, "ନିଶ୍ଚୟ ତୁମ୍ଭେ ପ୍ରକାଶ୍ୟ ବିପଥଗାମୀ" ।୧୮।

ତାପରେ ଯେତେବେଳେ ମୂସା ସେହି ଲୋକକୁ, ଯେ ସେମାନଙ୍କର ଉଭୟଙ୍କର ଶତ୍ରୁ ଥିଲା, ଧରିବାକୁ ଇଚ୍ଛା କରିଥିଲେ, ସେ କହିଥିଲା, "ହେ ମୂସା ! ତୁମ୍ଭେ କଅଣ ଆମ୍ଭଙ୍କୁ ହତ୍ୟା କରିବାକୁ ଇଚ୍ଛା କରୁଅଛ, ଯେପରି ତୁମ୍ଭେ କାଲି ଏକ ଜଣକୁ ହତ୍ୟା କରିଥିଲ ? ପୃଥିବୀରେ ଅତ୍ୟାଚାରୀ ହେବା ଛଡ଼ା ତୁମ୍ଭେ କଅଣ ଆଉ କିଛି ଇଚ୍ଛା କରନା ଏବଂ ଶାନ୍ତିକାମୀ ହେବା ପାଇଁ କଅଣ ତୁମ୍ଭର ଇଚ୍ଛା ନାହିଁ ?" ।୧୯।

ଏବଂ ନଗର ପ୍ରାନ୍ତରୁ ଜଣେ ଲୋକ ଦ୍ରୁତବେଗରେ ଆସି କହିଥିଲା, "ହେ ମୂସା ! ନିଶ୍ଚୟ ପ୍ରଧାନ ବ୍ୟକ୍ତିମାନେ ତୁମ୍ଭଙ୍କୁ ହତ୍ୟା କରିବା ପାଇଁ ମନ୍ତ୍ରଣା କରୁ ଅଛନ୍ତି; ଅତଏବ ତୁମ୍ଭେ ଏଠାରୁ ବାହାରି ଯାଅ; ନିଶ୍ଚୟ ଆମ୍ଭେ ତୁମ୍ଭର ମଙ୍ଗଳାକାଂକ୍ଷୀମାନଙ୍କର ଅନ୍ତର୍ଗତ" ।୨୦।

ତାପରେ ସେ ଭୀତ ହୋଇ ସେହି ନଗରରୁ ସତର୍କ ଭାବରେ ବାହାରି ଯାଇ କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ତୁମ୍ଭେ ଆମ୍ଭଙ୍କୁ ଅତ୍ୟାଚାରୀ ସମ୍ପ୍ରଦାୟ ହାତରୁ ରକ୍ଷା କର" । ।୨୧।

## ୩ୟ ବିଭାଗ

ଏବଂ ଯେତେବେଳେ ସେ ମଦାୟେନ୍ ଆଡକୁ ଯିବା ପାଇଁ ଇଚ୍ଛା କରିଥିଲେ ସେ କହିଥିଲେ, ଶୀଘ୍ର ଆମ୍ଭର ପାଳନକର୍ତ୍ତା ଆମ୍ଭଙ୍କୁ ଠିକ ବାଟ ଦେଖାଇବେ" ।୨୨।

ଏବଂ ଯେତେବେଳେ ସେ ମଦାୟେନ୍‌ର ଜଳାଶୟ ନିକଟରେ ଉପସ୍ଥିତ ହୋଇଥିଲେ, ସେ ସେଠାରେ ଏକ ଦଳ ଲୋକଙ୍କୁ (ନିଜ ପଶୁମାନଙ୍କୁ) ଜଳପାନ କରାଉଥିବାର ଦେଖିଥିଲେ: ଏବଂ ସେମାନଙ୍କ

---

୧୮ । ପ୍ରକାଶ୍ୟ ବିପଥଗାମୀ—ତୁମ୍ଭେ ପ୍ରତ୍ୟହ ଲୋକମାନଙ୍କ ସଙ୍ଗେ ଝଗଡ଼ା କରି ଆମ୍ଭର ସାହାଯ୍ୟ ଲୋଡୁଅଛ ; ତୁମ୍ଭେ କଳହ ପ୍ରିୟ ଲୋକ ଅଟ ।

୧୯ । ମୂସା ଯେତେବେଳେ ତାଙ୍କର ଶତ୍ରୁପକ୍ଷୀୟ ଲୋକକୁ ହତ୍ୟା କରିଥିଲେ ସେଠାରେ ତାଙ୍କର ସାହାଯ୍ୟ ପ୍ରାର୍ଥୀ ଲୋକ ଛଡ଼ା ଆଉ କେହି ନଥିଲେ । ସୁତରାଂ ହତ୍ୟାକାରୀ କିଏ ତାହା ଜଣାପଡ଼ିନଥିଲା । ଫେରଅଉନ ହତ୍ୟାକାରୀର ଅନୁସନ୍ଧାନ ପାଇଁ ଗୁପ୍ତଚର ନିଯୁକ୍ତ କରିଥିଲା । ୨ୟ ଦିନ ଯେତେବେଳେ ସେହି ଲୋକ ମୂସାଙ୍କୁ ପୁନରାୟ ସାହାଯ୍ୟ ପ୍ରାର୍ଥନା କରିଥିଲା ମୂସା ତାହାପ୍ରତି ଅସନ୍ତୁଷ୍ଟ ହୋଇ ତାକୁ ତିରସ୍କାର କଲେ । ମାତ୍ର ମୂସା ଯେତେବେଳେ ସେମାନଙ୍କ ଶତ୍ରୁକୁ ଧରିବାକୁ ଉଦ୍ୟତ ହେଲେ, ତାଙ୍କର ସାହାଯ୍ୟ ପ୍ରାର୍ଥୀ ଲୋକ, କାଳେ ମୂସା ତାଙ୍କୁ ମଧ ପ୍ରହାର କରିବେ ଏହି ଭୟରେ ଅତର୍କିତ ଭାବରେ କହିପକାଇଲା "ହେ ମୂସା ! ତୁମ୍ଭେ କଅଣ ଆଜି ମୋତେ ହତ୍ୟା କରିବ, ଯେପରି କାଲି ଆଉ ଜଣକୁ ହତ୍ୟା କରିଥିଲ ?" ଏହିପରି ଭାବରେ ମୂସା ହତ୍ୟାକାରୀ ବୋଲି ପ୍ରକାଶ ପାଇଗଲା । ଫେରଅଉନ୍ ଏକଥା ଶୁଣିବା ମାତ୍ରକେ ପ୍ରଧାନ ଲୋକମାନଙ୍କ ସଙ୍ଗେ ପରାମର୍ଶ କରି ମୂସାଙ୍କୁ ହତ୍ୟା କରିବା ପାଇଁ ଆଦେଶ ଦେଇଥିଲା ।

୨୦ । କାହାରି କାହାରି ମତରେ ଏ ଲୋକ ସେହି ଗୁପ୍ତ ବିଶ୍ୱାସକାରୀ ଯାହାଙ୍କ ବିଷୟ ୪୦ ଅଧ୍ୟାୟର ୨୮ ଶ୍ଳୋକଠାରୁ ଆରମ୍ଭ କରି ୪୪ ଶ୍ଳୋକ ପର୍ଯ୍ୟନ୍ତ ବର୍ଣ୍ଣିତ ଅଛି ।

୨୨ । ୧ମ ଓ ୨ୟ ସେ—ମୂସା
ମଦାୟେନ—ଅରବ ଦେଶର ଅନ୍ତର୍ଗତ ଗୋଟିଏ ପ୍ରଦେଶ । ଏହା ଫେରଅଉନଙ୍କ ରାଜ୍ୟର ଅନ୍ତର୍ଗତ ନଥିଲା ।

ଛଡ଼ା ଦୁଇଟି ରମଣୀଙ୍କୁ ସେମାନଙ୍କ ପଛେ (ନିଜ ପଶୁମାନଙ୍କ ସହିତ) ଅପେକ୍ଷା କରୁଥିବାର ଦେଖିଥିଲେ; ମୂସା କହିଥିଲେ, "ତୁମ୍ଭେମାନେ କଅଣ ଚାହଁ" ? ସେ ଦୁହେଁ କହିଥିଲେ, "ମେଷପାଳକମାନେ ଫେରି ନ ଯିବା ପର୍ଯ୍ୟନ୍ତ ଅମ୍ଭେମାନେ (ଅମ୍ଭମାନଙ୍କ ପଶୁମାନଙ୍କୁ) ଜଳପାନ କରାଇ ପାରୁନାହୁଁ ଏବଂ ଅମ୍ଭମାନଙ୍କର ପିତା ଅତିଶୟ ବୃଦ୍ଧ" ।୨୩।

ସୁତରାଂ ମୂସା ସେମାନଙ୍କ ପାଇଁ (ସେମାନଙ୍କର ପଶୁମାନଙ୍କୁ) ଜଳପାନ କରାଇଥିଲେ; ତାପରେ ସେ ଛାୟା ନିକଟକୁ ଫେରି ଯାଇ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା । ତୁମ୍ଭେ ନିଜ କଲ୍ୟାଣରୁ ଅମ୍ଭ ପ୍ରତି ଯାହା ଅବତୀର୍ଣ୍ଣ କରିବ, ନିଶ୍ଚୟ ଅମ୍ଭେ ତାହାର ଭିକ୍ଷାକାରୀ" ।୨୪।

ତାପରେ ସେ ଦୁଇ ରମଣୀଙ୍କ ମଧ୍ୟରୁ ଜଣେ ଲଜ୍ଜା ସହିତ ପାଦ ପକାଇ ତାଙ୍କ ନିକଟକୁ ଆସିଥିଲା ଏବଂ କହିଥିଲା, "ତୁମ୍ଭେ ଅମ୍ଭମାନଙ୍କ ପାଇଁ ଜଳପାନ କରାଇ ଥିଲ, ସେଥିପାଇଁ ଅମ୍ଭର ପିତା ତୁମ୍ଭଙ୍କୁ ତାହାର ପୁରସ୍କାର ଦେବାପାଇଁ ଡାକୁଅଛନ୍ତି"; ତାପରେ ଯେତେବେଳେ ମୂସା ତାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ଏବଂ ତାଙ୍କ ନିକଟରେ ସମସ୍ତ ବିଷୟ ବର୍ଣ୍ଣନା କରିଥିଲେ ସେତେବେଳେ ସେ କହିଥିଲେ, "ଆଉ ଭୟ ନାହିଁ, ତୁମ୍ଭେ ଅତ୍ୟାଚାରୀ ସମ୍ପ୍ରଦାୟଠାରୁ ରକ୍ଷା ପାଇଅଛ" ।୨୫।

ସେ ରମଣୀ ଦ୍ୱୟଙ୍କ ମଧ୍ୟରୁ ଜଣେ କହିଥିଲା, "ହେ ଅମ୍ଭର ପିତା । ତୁମ୍ଭେ ଏହାଙ୍କୁ ଚାକର ରୂପେ ନିଯୁକ୍ତ କର; ନିଶ୍ଚୟ ତୁମ୍ଭେ ବିଶ୍ୱସ୍ତ ବଳବାନ ସର୍ବୋତ୍କୃଷ୍ଟ ଚାକର ନିଯୁକ୍ତ କରୁଅଛ" ।୨୬।

ସେ (ନିଜ କନ୍ୟାର ମନୋଭାବ ବୁଝିପାରି ମୂସାଙ୍କୁ) କହିଥିଲେ, "ନିଶ୍ଚୟ ଅମ୍ଭେ ଅମ୍ଭର ଦୁଇ କନ୍ୟା ମଧ୍ୟରୁ ଗୋଟିକୁ ତୁମ୍ଭ ସହିତ ଏହି ସର୍ତ୍ତରେ ବିବାହ ଦେବାକୁ ଇଚ୍ଛା କରୁଅଛୁଁ ଯେ ତୁମ୍ଭେ ଆଠ ବର୍ଷ ଅମ୍ଭର ଚାକର ହୋଇ ରହିବ; କିନ୍ତୁ ଯଦି ତୁମ୍ଭେ ଦଶବର୍ଷ ପୂର୍ଣ୍ଣ କର ତେବେ ତାହା ତୁମ୍ଭର ଇଚ୍ଛାଧୀନ; ଏବଂ ଅମ୍ଭେ ତୁମ୍ଭ ପ୍ରତି କଠୋରତା କରିବୁଁ ନାହିଁ; ଯଦି ପରମେଶ୍ୱର ଇଚ୍ଛା କରନ୍ତି ତେବେ ଅବଶ୍ୟ ତୁମ୍ଭେ ଅମ୍ଭଙ୍କୁ ସଦାଚାରୀମାନଙ୍କ ମଧ୍ୟରେ ପାଇବ" ।୨୭।

ମୂସା କହିଥିଲେ, "ଅମ୍ଭ ମଧ୍ୟରେ ଓ ତୁମ୍ଭ ମଧ୍ୟରେ ଏହି ସର୍ତ୍ତ ରହିଲା; ଦୁଇଟି ନିର୍ଦ୍ଦିଷ୍ଟକାଳ ମଧ୍ୟରୁ ଅମ୍ଭେ ଯେ କୌଣସିଟି ପୂର୍ଣ୍ଣ କରୁଁ, ତାପରେ ଅମ୍ଭ ପ୍ରତି ଅବିଚାର କରାଯିବ ନାହିଁ; ଏବଂ ଅମ୍ଭେମାନେ ଯାହା କହୁଅଛୁଁ ସେଥିପାଇଁ ପରମେଶ୍ୱର ସାକ୍ଷୀ" ।୨୮।

## ୪ର୍ଥ ବିଭାଗ

ତାପରେ ଯେତେବେଳେ ମୂସା ନିର୍ଦ୍ଦିଷ୍ଟକାଳ ପୂର୍ଣ୍ଣ କରିଥିଲେ ଏବଂ ନିଜ ପରିବାର ସହିତ (ଶ୍ୱଶୁର ଘରୁ) ଯାତ୍ରା କରୁଥିଲେ, ସେତେବେଳେ ସେ ତୁର ପର୍ବତ ନିକଟରେ ଅଗ୍ନି ଦେଖିଥିଲେ, ସେ ନିଜ

---

୨୩ । ପିତା ଅତିଶୟ ବୃଦ୍ଧ—ଏ ମହାପୁରୁଷ ଶୋୟେବ୍ ଅଟନ୍ତି, ଯାହାଙ୍କ ବିଷୟ ୭ମ ଅଧ୍ୟାୟ ଶ୍ଳୋ ୮୫ରୁ ୯୩ ରେ ଏବଂ ୧୧ ଅଧ୍ୟାୟ ଶ୍ଳୋ ୮୪ରୁ ୯୫କରେ ବର୍ଣ୍ଣିତ ହୋଇଅଛି ।

୨୫ । ରମଣୀ ଦ୍ୱୟ ଘରକୁ ଯାଇ ତାଙ୍କ ବୃଦ୍ଧ ପିତାଙ୍କୁ ମହାପୁରୁଷ ମୂସାଙ୍କ ସାହାଯ୍ୟ ବିଷୟ କହିବାରୁ ପିତା ଆନନ୍ଦିତ ହୋଇ ତାଙ୍କୁ ଜଣେ କନ୍ୟା ଦ୍ୱାରା ନିମନ୍ତ୍ରଣ କରିଥିଲେ ।
ତାଙ୍କ ନିକଟରେ—ରମଣୀ ଦ୍ୱୟଙ୍କ ପିତା ମହାପୁରୁଷ ଶୋୟେବଙ୍କ ନିକଟରେ ।
ସେ କହିଥିଲେ—ରମଣୀ ଦ୍ୱୟଙ୍କ ପିତା ମହାପୁରୁଷ ଶୋୟେବ କହିଥିଲେ ।

୨୮ । ଦୁଇଟି ନିର୍ଦ୍ଦିଷ୍ଟ କାଳ—ଆଠ ବର୍ଷ କିମ୍ବା ଦଶ ବର୍ଷ ।
ଟୀକାକାରମାନଙ୍କ ମତରେ ମହାପୁରୁଷ ମୂସା ମହାପୁରୁଷ ଶୋୟେବଙ୍କ ସଫୁରା ନାମ୍ନୀ କନ୍ୟାଙ୍କୁ ବିବାହ ହେଲା ପରେ ସେଠାରେ ଦଶ ବର୍ଷ କାଳ ରହିଥିଲେ ।

ପରିବାର ଲୋକଙ୍କୁ କହିଥିଲେ, "ତୁମ୍ଭେମାନେ ଅପେକ୍ଷା କର; ନିଶ୍ଚୟ ଅମ୍ଭେ ଅଗ୍ନି ଦେଖିଅଛୁଁ, ସମ୍ଭବତଃ ସେଠାରୁ କୌଣସି ସମ୍ବାଦ ଅଥବା ଜ୍ୱଳନ୍ତ ଅଙ୍ଗାର ଆଣିବୁଁ, ଯେପରି ତୁମ୍ଭେମାନେ ଉତ୍ତପ୍ତ ହୋଇ ପାରିବ" ।୨୯।

ତାପରେ ଯେତେବେଳେ ସେ ତାହାର ନିକଟରେ ଉପସ୍ଥିତ ହୋଇଥିଲେ, ସେତେବେଳେ ସେହି ମଙ୍ଗଳମୟ ଭୂମିର ପବିତ୍ର ପ୍ରାନ୍ତରର ଦକ୍ଷିଣ ଦିଗସ୍ଥିତ ବୃକ୍ଷରୁ ଆହ୍ୱାନ ଆସିଥିଲା, "ହେ ମୂସା, ନିଶ୍ଚୟ ଅମ୍ଭେ ସମସ୍ତ ଜଗତର ପାଳନକର୍ତ୍ତା ପରମେଶ୍ୱର । ।୩୦।

"ଏବଂ ତୁମ୍ଭେ ତୁମ୍ଭର ଯଷ୍ଟି ନିକ୍ଷେପ କର"; ତାପରେ ଯେତେବେଳେ ସେ ତାହାକୁ ଚଳନ୍ତା ସର୍ପ ପରି ଦେଖିଥିଲେ, ସେତେବେଳେ ସେ ପଛ ଫେରିକି ଚାଲି ଯାଇଥିଲେ, ଏବଂ ପଛଆଡ଼କୁ ଅନାଇ ନଥିଲେ; (ପୁନରାୟ ଆହ୍ୱାନ ଆସିଥିଲା) "ହେ ମୂସା ! ତୁମ୍ଭେ ଅଗ୍ରସର ହୁଅ, ଏବଂ ଭୀତ ହୁଅନା; ନିଶ୍ଚୟ ତୁମ୍ଭେ ନିରାପଦମାନଙ୍କର ଅନ୍ତର୍ଗତ ।୩୧।

"ତୁମ୍ଭର ହସ୍ତ ନିଜ କାଖରେ ରଖ, ତାହା କୌଣସି ଅନିଷ୍ଟ ବ୍ୟତୀତ ଶୁଭ୍ର ରୂପେ ପ୍ରକାଶ ପାଇବ ଏବଂ ତୁମ୍ଭେ ତୁମ୍ଭର ଭୟ (ଦୂର କରିବା) ପାଇଁ ତୁମ୍ଭର ବାହୁ ନିଜ ଆଡ଼କୁ ସଂଲଗ୍ନ କର; ଅତଏବ ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ଫେରଅଉନ୍ ଏବଂ ତାହାର ପ୍ରଧାନ ବ୍ୟକ୍ତିମାନଙ୍କ ପ୍ରତି ଏହି ଦୁଇ ଗୋଟି ନିଦର୍ଶନ; ନିଶ୍ଚୟ ସେମାନେ ଦୁଷ୍କର୍ମକାରୀ ସମ୍ପ୍ରଦାୟ" ।୩୨।

ମୂସା କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା । ନିଶ୍ଚୟ ଅମ୍ଭେ ସେମାନଙ୍କର ଜଣେ ଲୋକକୁ ହତ୍ୟା କରିଅଛୁଁ; ସେଥିପାଇଁ ଅମ୍ଭେ ଭୟ କରୁଅଛୁଁ ଯେ ସେମାନେ ମଧ୍ୟ ଅମ୍ଭକୁ ହତ୍ୟା କରିବେ ।୩୩।

"ଏବଂ ଅମ୍ଭର ଭାଇ ହାରୁନ, ଅମ୍ଭ ଅପେକ୍ଷା ଅଧିକ ବାକ୍‌ପଟୁ, ଅତଏବ ତାଙ୍କୁ ଅମ୍ଭର ସହକାରୀ ରୂପେ ଅମ୍ଭ ସହିତ ପ୍ରେରଣ କର ଯେପରି ସେ ଅମ୍ଭର ସତ୍ୟତା ପ୍ରତିପାଦନ କରିବ; ନିଶ୍ଚୟ ଅମ୍ଭେ ଭୟ କରୁଅଛୁଁ ଯେ ସେମାନେ ଅମ୍ଭ ପ୍ରତି ମିଥ୍ୟାରୋପ କରିବେ" ।୩୪।

ସେ କହିଥିଲେ, "ନିଶ୍ଚୟ ଅମ୍ଭେ ତୁମ୍ଭର ଭାଇଙ୍କ ଦ୍ୱାରା ତୁମ୍ଭର ବାହୁକୁ ଦୃଢ଼ କରିବୁଁ ଏବଂ ତୁମ୍ଭମାନଙ୍କର ଉଭୟଙ୍କୁ ପରାକ୍ରାନ୍ତ କରି ଦେବୁଁ; ସୁତରାଂ ସେମାନେ ତୁମ୍ଭମାନଙ୍କପ୍ରତି ଉପସ୍ଥିତ ହୋଇ ପାରିବେ ନାହିଁ; ଅମ୍ଭର ନିଦର୍ଶନମାନଙ୍କ ହେତୁ ତୁମ୍ଭେମାନେ ଓ ତୁମ୍ଭ ଦୁହିଁଙ୍କର ଅନୁସରଣକାରୀମାନେହିଁ ପରାକ୍ରାନ୍ତ ହୋଇ ରହିବେ ।"୩୫।

---

୩୨ । 'ତୁମ୍ଭେ ଭୟ ଦୂର କରିବା ପାଇଁ ତୁମ୍ଭର ବାହୁ ନିଜ ଆଡ଼କୁ ସଂଲଗ୍ନ କର'—ପରମେଶ୍ୱର ମହାପୁରୁଷ ମୂସାଙ୍କୁ କହୁଅଛନ୍ତି, "ତୁମ୍ଭର ହସ୍ତ ଶୁଭ୍ର ହେବା ହେତୁ ଯଦି ତୁମ୍ଭେ ଭୟ କର ତେବେ ସେହି ହସ୍ତକୁ ନିଜ କାଖରେ ପୁନରାୟ ରଖି ବାହୁକୁ ଦେହ ସହିତ ସଂଲଗ୍ନ କଲେ ତାହା ସ୍ୱାଭାବିକ ଅବସ୍ଥା ଧାରଣ କରିବ । ସୁତରାଂ ଭୟ କରିବାର କାରଣ ନାହିଁ" ।

୩୩ । ହତ୍ୟା କରିଅଛୁଁ—ଦେଖ ଏହି ଅଧ୍ୟାୟ ଶ୍ଳୋ ୧୫କ ।

୩୫ । ସେ—ପରମେଶ୍ୱର । ତୁମ୍ଭମାନଙ୍କ ପ୍ରତି ଉପସ୍ଥିତ ହୋଇ ପାରିବେ ନାହିଁ—ଫେରଅଉନ୍‌ର ଲୋକମାନେ ତୁମ୍ଭମାନଙ୍କର କିଛି କ୍ଷତି କରିପାରିବେ ନାହିଁ ।

ତାପରେ ଯେତେବେଳେ ମୂସା ଆମ୍ଭର ପ୍ରକାଶ୍ୟ ନିଦର୍ଶନମାନଙ୍କ ସହିତ ସେମାନଙ୍କ ନିକଟ ଆସିଥିଲେ, ସେତେବେଳେ ସେମାନେ କହିଥିଲେ, "ଏହା କୃତ୍ରିମ ଯାଦୁ ବ୍ୟତୀତ ଅନ୍ୟ କିଛି ନୁହେ ଏବଂ ଆମ୍ଭେମାନେ ଆମ୍ଭମାନଙ୍କର ପୂର୍ବବର୍ତ୍ତୀ ପୂର୍ବପୁରୁଷମାନଙ୍କ ନିକଟରୁ ଏହା କଦାପି ଶୁଣି ନାହୁଁ"।୩୬।

ଏବଂ ମୂସା କହିଥିଲେ, "ଆମ୍ଭର ପାଳନକର୍ତ୍ତା ଜାଣନ୍ତି ଯେ ତାଙ୍କ ନିକଟରୁ କିଏ ସଦୁପଦେଶ ଆଣିଅଛି ଏବଂ ପରକାଳରେ କାହାର ପରିଣାମ ଭଲ ହେବ; ନିଶ୍ଚୟ ଅତ୍ୟାଗୃହୀମାନେ ସୁଫଳ ପ୍ରାପ୍ତ ହେବେ ନାହିଁ"।୩୭।

ଏବଂ ଫେରଅଉନ୍ କହିଥିଲା, "ହେ ଆମ୍ଭର ପ୍ରଧାନ ବ୍ୟକ୍ତିମାନେ! ଆମ୍ଭେ ତୁମ୍ଭମାନଙ୍କ ପାଇଁ ଆମ୍ଭ ବ୍ୟତୀତ ଅନ୍ୟ ଉପାସ୍ୟ ଜାଣୁନା: ଅତଏବ ହେ ହାମାନ! ତୁମ୍ଭେ ଆମ୍ଭପାଇଁ ମାଟି ଉପରେ ଅଗ୍ନି ଜଳାଅ, ତାପରେ ଆମ୍ଭ ପାଇଁ ଗୋଟିଏ ଉଚ୍ଚ ଅଟ୍ଟାଳିକା ନିର୍ମାଣ କର, ଯେପରି ଆମ୍ଭେ ସେଥିରେ ଆରୋହଣ କରି ମୂସାର ଉପାସ୍ୟଙ୍କୁ ଅନାଇ ଦେଖି ପାରିବୁଁ; ଏବଂ ନିଶ୍ଚୟ ଆମ୍ଭେ ତାକୁ ମିଥ୍ୟାବାଦୀମାନଙ୍କ ଅନ୍ତର୍ଗତ ମନେ କରୁଅଛୁଁ।୩୮।

ଏବଂ ସେ ଓ ତାହାର ଅନୁଚରମାନେ ପୃଥିବୀରେ ଅନ୍ୟାୟ ଭାବରେ ଅହଙ୍କାର କରିଥିଲେ ଏବଂ ସେମାନେ ମନେ କରିଥିଲେ ଯେ ସେମାନେ ଆମ୍ଭ ନିକଟକୁ (ବିଚାରପାଇଁ) ଫେରିବେ ନାହିଁ।୩୯।

ତାପରେ ଆମ୍ଭେ ତାହାକୁ ଏବଂ ତାହାର ଅନୁଚରମାନଙ୍କୁ ଧରିଥିଲୁଁ, ତାପରେ ଆମ୍ଭେ ସେମାନଙ୍କୁ ସମୁଦ୍ରରେ ନିକ୍ଷେପ କରିଥିଲୁଁ: ଅତଏବ ଦେଖ ଯେ ଅତ୍ୟାଗୃହୀମାନଙ୍କର ପରିଣାମ କିପରି ହୋଇଥିଲା।୪୦।

ଏବଂ ଆମ୍ଭେ ସେମାନଙ୍କୁ ଦଳପତି କରି ଦେଇଥିଲୁଁ: (କିନ୍ତୁ) ସେମାନେ (ନିଜ ଲୋକମାନଙ୍କୁ) ନରକାଗ୍ନି ଆଡକୁ ଆହ୍ୱାନ କରିଥିଲେ: ଏବଂ ପୁନରୁତ୍ଥାନ ଦିବସରେ ସେମାନେ ସାହାଯ୍ୟ ପାଇବେ ନାହିଁ।୪୧।

ଏବଂ ଏହି ପୃଥିବୀରେ ଅଭିଶାପ ସେମାନଙ୍କ ପଛେ ପଛେ ଗୋଡ଼ାଇବ ଏବଂ ପୁନରୁତ୍ଥାନ ଦିବସରେ ସେମାନେ ଦୁର୍ଦ୍ଦଶାପନ୍ନ ଲୋକମାନଙ୍କ ଅନ୍ତର୍ଗତ ହେବେ।୪୨।

## ୫ମ ବିଭାଗ

ଏବଂ ପୂର୍ବବର୍ତ୍ତୀ ଯୁଗମାନଙ୍କର ଲୋକମାନଙ୍କୁ ଧ୍ୱଂସ କଲାପରେ ନିଶ୍ଚୟ ଆମ୍ଭେ ମୂସାଙ୍କୁ ଧର୍ମଗ୍ରନ୍ଥ ଦେଇଥିଲୁଁ, ତାହା ମନୁଷ୍ୟମାନଙ୍କ ପାଇଁ ପ୍ରକାଶ୍ୟ ନିଦର୍ଶନ ଓ ସୁପଥ ଓ କରୁଣାଥିଲା, ଯେପରି ସେମାନେ ମନଯୋଗୀ ହେବେ।୪୩।

---

୩୬। ଏହା କଦାପି ଶୁଣିନାହୁଁ—ପରମେଶ୍ୱରଙ୍କ ଏକତ୍ୱ ବିଷୟରେ ତୁମ୍ଭେ ଯେପରି ପ୍ରଚାର କରୁଅଛ ସେପରି କଥା କେବେ ଶୁଣିନାହୁଁ।

୩୮। ମାଟି ଉପରେ ଅଗ୍ନି ଜଳାଅ—ଇଟା ଖଣ୍ଡି ଜାଳି ତାହା ତିଆରି କର।

ଫେରଅଉନ୍ ନିଜକୁ ଉପାସ୍ୟ ମନେ କରୁଥିଲା। ସୁତରାଂ ସେ ମୂସାଙ୍କ ପ୍ରତି ଉପହାସ କରି ଏହିପରି କହିଥିଲା।

୪୧। ସେମାନଙ୍କୁ—ଫେରଅଉନ ଓ ତାଙ୍କର ପ୍ରଧାନ ଲୋକମାନଙ୍କୁ।

ପରମେଶ୍ୱର ସେମାନଙ୍କୁ ପୃଥିବୀରେ ଆଧିପତ୍ୟ ଦେଇଥିଲେ। ମାତ୍ର ସେମାନେ ପରମେଶ୍ୱରଙ୍କ ପ୍ରତି କୃତଜ୍ଞ ନହୋଇ ଅକୃତଜ୍ଞ ଓ ଅବାଧ ହୋଇଥିଲେ। ସୁତରାଂ ସେମାନେ ଇହଲୋକ ଓ ପରଲୋକ ଉଭୟ ଲୋକରେ ଅଭିଶପ୍ତ ହୋଇଥିଲେ।

୪୩-୪୬। ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସମ୍ବୋଧନ କରି କହୁଅଛନ୍ତି, "ହେ ମୋହମ୍ମଦ! ଯେଉଁ ଯୁଗରେ ମୂସା ଜନ୍ମ ଗ୍ରହଣ କରିଥିଲେ ତୁମ୍ଭେ ସେ ସମୟରେ ନଥିଲ। କିମ୍ବା ଆରବ

(ହେ ମୋହମ୍ମଦ) ଯେତେବେଳେ ଆମ୍ଭେ ମୁସାଙ୍କପ୍ରତି ଆଦେଶ ନିର୍ଦ୍ଧାରିତ କରିଥିଲୁ ସେତେବେଳେ ତୁମ୍ଭେ (ତୁର ପାହାଡ଼ର) ପଶ୍ଚିମ ଦିଗରେ ନଥିଲ ଏବଂ ତୁମ୍ଭେ ସାକ୍ଷୀମାନଙ୍କର ଅନ୍ତର୍ଗତ ନଥିଲ ।୪୪।

କିନ୍ତୁ ଆମ୍ଭେ ଆହୁରି ଅନେକ ଯୁଗ ସୃଷ୍ଟି କରିଥିଲୁ, ତାପରେ ସେମାନଙ୍କର ପରମାୟୁ ବଢ଼ିଯାଇଥିଲା, ଏବଂ ତୁମ୍ଭେ ମଦାୟେନ୍‌ର ଅଧିବାସୀମାନଙ୍କ ମଧ୍ୟରେ ନଥିଲ ଯେ ସେମାନଙ୍କ ଆଗରେ ଆମ୍ଭର ନିଦର୍ଶନମାନ ପାଠକରି ଥାଆନ୍ତ. କିନ୍ତୁ ଆମ୍ଭେ ( ପ୍ରେରିତ ପୁରୁଷ ) ପ୍ରେରଣକାରୀ ।୪୫।

ଏବଂ ଯେତେବେଳେ ଆମ୍ଭେ ( ମୁସାଙ୍କୁ ) ଆହ୍ୱାନ କରିଥିଲୁ ସେତେବେଳେ ତୁମ୍ଭେ ତୁରପର୍ବତ ନିକଟରେ ନଥିଲ; କିନ୍ତୁ ଏହା ତୁମ୍ଭର ପାଳନକର୍ତ୍ତାଙ୍କର କରୁଣା ଯେ ତୁମ୍ଭେ ସେହି ସମ୍ପ୍ରଦାୟକୁ ଭୟପ୍ରଦର୍ଶନ କରି ଯେଉଁମାନଙ୍କ ନିକଟ ତୁମ୍ଭ ପୂର୍ବେ କୌଣସି ଭୟ ପ୍ରଦର୍ଶନକାରୀ ଆସିନାହାନ୍ତି, ଯେପରି ସେମାନେ ମନଯୋଗୀ ହେବେ ।୪୬।

ଏବଂ ସେମାନଙ୍କର ହାତସବୁ ପୂର୍ବରୁ ଯାହା ପଠାଇଥିଲା ସେଥିପାଇଁ ନିଶ୍ଚୟ ସେମାନେ ବିପଦଗ୍ରସ୍ତ ହୁଅନ୍ତେ, ସେତେବେଳେ ସେମାନେ କହନ୍ତେ; "ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ତୁମ୍ଭେ କାହିଁକି ଆମ୍ଭମାନଙ୍କ ପ୍ରତି ପ୍ରେରିତପୁରୁଷ ପଠାଇଲ ନାହିଁ, ଯଦ୍ଦ୍ୱାରା ଆମ୍ଭେମାନେ ତୁମ୍ଭର ନିଦର୍ଶନମାନଙ୍କର ଅନୁସରଣ କରିଥାନ୍ତୁ ଏବଂ ଆମ୍ଭେମାନେ ବିଶ୍ୱାସକାରୀମାନଙ୍କର ଅନ୍ତର୍ଗତ ହୋଇଥାନ୍ତୁ ?" ।୪୭।

କିନ୍ତୁ ବର୍ତ୍ତମାନ ଯେତେବେଳେ ଆମ୍ଭନିକଟରୁ ସେମାନଙ୍କ ପାଖରେ ସତ୍ୟ ଉପସ୍ଥିତ ହୋଇଅଛି ସେତେବେଳେ ସେମାନେ କହୁଛନ୍ତି, "ଯେପରି ମୁସାଙ୍କୁ ନିଦର୍ଶନମାନ ଦିଆ ଯାଇଥିଲା ସେପରି କାହିଁକି ତାଙ୍କୁ ଦିଆଯାଇ ନାହିଁ ? ତେବେ ଏହାପୂର୍ବେ ମୁସାଙ୍କୁ ଯାହା ଦିଆ ଯାଇଥିଲା ତାହାପ୍ରତି କଅଣ ସେମାନେ ଅବିଶ୍ୱାସ କରୁନାହାନ୍ତି ? ସେମାନେ କହନ୍ତି ଯେ ସେମାନେ ଉଭୟେ ପରସ୍ପର ସାହାଯ୍ୟକାରୀ ଯାଦୁକର, ଏବଂ ସେମାନେ ଆହୁରି ମଧ୍ୟ କହନ୍ତି ଯେ ଆମ୍ଭେମାନେ ସମସ୍ତଙ୍କୁ ଅବିଶ୍ୱାସକରୁ ।୪୮।

---

ଦେଶରେ ତୁମ୍ଭ ପୂର୍ବେ ଅନ୍ୟ କୌଣସି ପ୍ରେରିତ ପୁରୁଷ ଜନ୍ମ ଗ୍ରହଣ କରି ତାଙ୍କର ବିବରଣ ପ୍ରକାଶ କରି-ନଥିଲେ । ଆମ୍ଭେ ନିଜର ପ୍ରତ୍ୟାଦେଶ ଦ୍ୱାରା ମୁସାଙ୍କ ଉପାଖ୍ୟାନ ତୁମ୍ଭ ନିକଟରେ ପ୍ରକାଶ କରିଅଛୁ, ଯଦ୍ଦ୍ୱାରା ତୁମ୍ଭେ ଆରବବାସୀମାନଙ୍କୁ ଭୟ ପ୍ରଦର୍ଶନ କରିବ, ଯେପରିକି ସେମାନେ ଶିକ୍ଷା ଲାଭ କରିବେ ।"

୪୬ । ମହାପୁରୁଷ ମୋହମ୍ମଦଙ୍କ ଆବିର୍ଭାବ ପୂର୍ବେ କୋରେଶ ସମ୍ପ୍ରଦାୟରେ କୌଣସି ପ୍ରେରିତ ପୁରୁଷ ଆସିନଥିଲେ । ଦେଖ ୩୪ ଅଧ୍ୟାୟର ୪୪ ଶ୍ଳୋକ ଓ ତହିଁର ଟୀକା ।

୪୭ । ଏହି ଶ୍ଳୋକରେ ପରମେଶ୍ୱର ଆରବ ଦେଶର ଅବିଶ୍ୱାସକାରୀ ଲୋକମାନଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି ଯେ ସେମାନଙ୍କ ନିକଟ ପ୍ରେରିତ ପୁରୁଷ ନ ଯାଇଥିଲେ ମଧ୍ୟ ସେମାନଙ୍କର କୃତ ଦୁଷ୍କର୍ମ ନିମନ୍ତେ ସେମାନେ ନିଶ୍ଚୟ ବିପଦଗ୍ରସ୍ତ ହୋଇଥାନ୍ତେ, ସେତେବେଳେ ସେମାନେ କହିଥାନ୍ତେ, "ପରମେଶ୍ୱର କାହିଁକି ଆମ୍ଭମାନଙ୍କ ପ୍ରତି ପ୍ରେରିତ ପୁରୁଷ ପଠାଇଲେ ନାହିଁ । ପ୍ରେରିତ ପୁରୁଷ ଆସିଥିଲେ ଆମ୍ଭେମାନେ ତାଙ୍କର ଅନୁସରଣ କରିଥାନ୍ତୁ ।" ଏଥିପାଇଁ ସେମାନଙ୍କ ନିକଟ ପ୍ରେରିତ ପୁରୁଷ ପଠାଇ ସେମାନଙ୍କୁ ଉପଦେଶ ଦିଆଯାଉଅଛି ଯେପରିକି ସେମାନେ ଉପରୋକ୍ତ ଭାବରେ ଆପତ୍ତି କରିବାର ସୁଯୋଗ ପାଇବେ ନାହିଁ ।

୪୮ । ୪୯ । ୫୦ । ମହାପୁରୁଷ ମୁସାଙ୍କ ପ୍ରତି ଅବତୀର୍ଣ୍ଣ ତଉରାତ ଗ୍ରନ୍ଥ ଏବଂ ମହାପୁରୁଷ ମୋହମ୍ମଦଙ୍କ ପ୍ରତି ଅବତୀର୍ଣ୍ଣ କୋରାନ ଗ୍ରନ୍ଥ ଉଭୟ ସ୍ୱରର ଅଟେ । କୋରେଶ ବଂଶୀୟ ଲୋକମାନେ ମହାପୁରୁଷ ମୁସା କିମ୍ବା ମହାପୁରୁଷ ମୋହମ୍ମଦଙ୍କ ଉପରେ ବିଶ୍ୱାସ କରୁନଥିଲେ । କିନ୍ତୁ ସେମାନେ ମହାପୁରୁଷ ମୋହମ୍ମଦଙ୍କ ବିରୁଦ୍ଧରେ ଆପତ୍ତି ଉତ୍ଥାପନ କରିବା ପାଇଁ ଇହୁଦୀମାନଙ୍କ ଦ୍ୱାରା ଉତ୍ତେଜିତ ହୋଇଥିଲେ । ଫେରଅଉନର ଲୋକମାନେ ମହା-ପୁରୁଷ ମୁସାଙ୍କୁ ଯାଦୁକର ବୋଲି କହିଥିଲେ ଏବଂ କୋରେଶମାନେ ମଧ୍ୟ କୋରାନର ବାକ୍ୟଗୁଡ଼ିକୁ ଯାଦୁ

ତୁମ୍ଭେ କୁହ, "ଯଦି ତୁମ୍ଭେମାନେ ସତ୍ୟବାଦୀ ଥାଅ ତେବେ ପରମେଶ୍ୱରଙ୍କ ନିକଟରୁ ଏପରି ଏକ ଗ୍ରନ୍ଥ ଆଣ ଯାହା ଏ ଦୁଇଟିରୁ ଅଧିକତର ପଥ ପ୍ରଦର୍ଶନକାରୀ ହେବ, ଆମ୍ଭେ ତାହାର ଅନୁସରଣ କରିବୁ" । ୪୯ ।

କିନ୍ତୁ ଯଦି ସେମାନେ ତୁମ୍ଭପାଇଁ ଏଥିରେ ସ୍ୱୀକୃତ ନ ହୁଅନ୍ତି ତେବେ ତୁମ୍ଭେ ଜାଣି ରଖ ଯେ ସେମାନେ ନିଜ କୁପ୍ରବୃତ୍ତିର ଅନୁସରଣ ଛଡ଼ା ଆଉକିଛି କରୁନାହାନ୍ତି; ଏବଂ ପରମେଶ୍ୱରଙ୍କ ସୁପଥଠାରୁ ଯେ ନିଜ କୁପ୍ରବୃତ୍ତିର ଅନୁସରଣ କରେ ତାହା ଅପେକ୍ଷା କିଏ ଅଧିକତର ବିଭ୍ରାନ୍ତ ? ନିଶ୍ଚୟ ପରମେଶ୍ୱର ଅତ୍ୟାଚାରୀ ସମ୍ପ୍ରଦାୟଙ୍କୁ ପଥପ୍ରଦର୍ଶନ କରନ୍ତିନାହିଁ ।୫୦।

## ୭ମ ବିଭାଗ

ଏବଂ ନିଶ୍ଚୟ ଆମ୍ଭେ ସେମାନଙ୍କପାଇଁ ଏହିବାକ୍ୟ କ୍ରମାନ୍ୱୟରେ ପଠାଇଅଛୁକି ଯେପରି ସେମାନେ ତାହାକୁ ହୃଦୟଙ୍ଗମ କରିପାରିବେ ।୫୧।

ଆମ୍ଭେ ଯେଉଁମାନଙ୍କୁ ଏଥିପୂର୍ବେ ଗ୍ରନ୍ଥ ଦେଇଥିଲୁଁ ସେମାନେ ଏହା ପ୍ରତି ବିଶ୍ୱାସ ସ୍ଥାପନ କରନ୍ତି ।୫୨।

ଏବଂ ଯେତେବେଳେ ସେମାନଙ୍କ ଆଗରେ ଏହା ପାଠ କରାହୁଏ ସେତେବେଳେ ସେମାନେ କହନ୍ତି, "ଆମ୍ଭେମାନେ ଏହାକୁ ବିଶ୍ୱାସକରୁଁ, ନିଶ୍ଚୟ ଏହା ଆମ୍ଭମାନଙ୍କର ପାଳନକର୍ତ୍ତାଙ୍କଠାରୁ (ପ୍ରେରିତ) ସତ୍ୟ, ନିଶ୍ଚୟ ଏଥିପୂର୍ବେ ମଧ୍ୟ ଆମ୍ଭେମାନେ ଆତ୍ମସମର୍ପଣକାରୀ ଥିଲୁଁ" ।୫୩।

ଏହିମାନଙ୍କୁ ଦୁଇ ଗୁଣ ପୁରସ୍କାର ଦିଆଯିବ, କାରଣ ସେମାନେ ଧୈର୍ଯ୍ୟଧାରଣ କରନ୍ତି ଏବଂ ଭଲକାର୍ଯ୍ୟ ଦ୍ୱାରା ମନ୍ଦକାର୍ଯ୍ୟକୁ ଦୂର କରନ୍ତି ଏବଂ ଆମ୍ଭେ ଦେଇଥିବା ଜୀବିକାରୁ (ସତ୍‌କାର୍ଯ୍ୟରେ) ବ୍ୟୟ କରନ୍ତି ।୫୪।

ଏବଂ ଯେତେବେଳେ ସେମାନେ ଅଯଥା କଥା ଶ୍ରବଣ କରନ୍ତି, ସେତେବେଳେ ସେମାନେ ସେଠାରୁ ଫେରିଯାଇ କହନ୍ତି, "ଆମ୍ଭମାନଙ୍କର କାର୍ଯ୍ୟମାନ ଆମ୍ଭମାନଙ୍କ ପାଇଁ ଏବଂ ତୁମ୍ଭମାନଙ୍କର କାର୍ଯ୍ୟମାନ ତୁମ୍ଭମାନଙ୍କ ପାଇଁ; ତୁମ୍ଭମାନଙ୍କୁ (ଦୂରରୁ) ଜୁହାର, ଆମ୍ଭେମାନେ ମୂର୍ଖମାନଙ୍କୁ ଗ୍ରହୁଁନା" ।୫୫।

ନିଶ୍ଚୟ ତୁମ୍ଭେ ଯାହାକୁ ଭଲ ପାଅ ତାହାକୁ ପଥ ଦେଖାଇ ପାରିବନାହିଁ, କିନ୍ତୁ ପରମେଶ୍ୱର ଯାହାକୁଇଚ୍ଛା ପଥ ଦେଖାନ୍ତି ଏବଂ ସେ ସୁପଥଗାମୀ ମାନଙ୍କୁ ଭଲରୂପେ ଜାଣନ୍ତି ।୫୬।

---

ବୋଲି କହୁଥିଲେ । କୋରାନ ମହାପୁରୁଷ ମୂସାଙ୍କ ପ୍ରତି ଅବତୀର୍ଣ୍ଣ ତୌରିତ ଗ୍ରନ୍ଥକୁ ସମର୍ଥନ କରିଥିଲା, ସୁତରାଂ କୋରେଶମାନେ କହୁଥିଲେ ସେମାନେ ପରସ୍ପର ସକ୍ଷା କରିଛନ୍ତି । କୋରେଶମାନେ ପରମେଶ୍ୱରଙ୍କ ଅବତୀର୍ଣ୍ଣ ଗ୍ରନ୍ଥ ଉପରେ ଆଦୌ ବିଶ୍ୱାସ କରୁନଥିଲେ । ଏହାଠାରୁ ଉତ୍କୃଷ୍ଟତର ଗ୍ରନ୍ଥ ଦର୍ଶାଇବା ପାଇଁ ସେମାନଙ୍କୁ ଆହ୍ୱାନ କରାଯାଇଥିଲା; ମାତ୍ର ସେମାନେ ତାହା କରିପାରିଲେ ନାହିଁ । ସେମାନେ କୁପ୍ରବୃତ୍ତି ଦ୍ୱାରା ଚାଳିତ ହୋଇ ସତ୍ୟ ଗ୍ରହଣରୁ ବିମୁଖ ହୋଇଥିଲେ ଏବଂ ଅବିଶ୍ୱାସରେ ଏତେ ଦୂର ଦୃଢ଼ ରହିଥିଲେ ଯେ ସୁପଥ ଆଡ଼କୁ ଆସିବାର ପ୍ରବୃତ୍ତି ସେମାନେ ହରାଇଥିଲେ ।

୫୧ । ଏହି ବାକ୍ୟ—କୋରାନ ଗ୍ରନ୍ଥ । ସମୁଦାୟ କୋରାନ ଗ୍ରନ୍ଥ ଏକ ସଙ୍ଗେ ଅବତୀର୍ଣ୍ଣ ନ ହୋଇ ଆବଶ୍ୟକ ମତେ କ୍ରମେ-କ୍ରମେ ଅବତୀର୍ଣ୍ଣ ହୋଇଥିଲା ଯେପରି ଲୋକମାନେ ସହଜରେ ହୃଦୟଙ୍ଗମ କରିପାରିବେ ଏବଂ ମନେରଖି ପାରିବେ । ତାହାହେଲେ ଉପଦେଶମାନ ଅନୁସରଣ କରିବା ସହଜ ହେବ ।

ଏବଂ ସେମାନେ କହନ୍ତି, "ଯଦି ଆମ୍ଭେମାନେ ତୁମ୍ଭ ସହିତ ସୁପଥର ଅନୁସରଣକରୁଁ, ତେବେ ଆମ୍ଭେମାନେ ଆମ୍ଭମାନଙ୍କ ଦେଶରୁ ବିତାଡ଼ିତ ହେବୁଁ; ତେବେ" ଆମ୍ଭେ କଅଣ ସେମାନଙ୍କୁ ଶାନ୍ତିପୂର୍ଣ୍ଣ ପବିତ୍ର ସ୍ଥାନ (ମକ୍‌କା)ରେ ସ୍ଥାନ ଦେଇନାହୁଁ. ଯେଉଁଠାରେ ଆମ୍ଭ ନିକଟରୁ ଜୀବିକା ସ୍ୱରୂପ ସର୍ବପ୍ରକାର ଫଳମାନ ଆଣାହୁଏ ? କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅବଗତ ନୁହନ୍ତି ।୫୭।

ଏବଂ ଆମ୍ଭେ ଏପରି ଅନେକ ନଗର (ବାସୀଙ୍କୁ) ଧ୍ୱଂସକରି ଦେଇଅଛୁଁ ଯେଉଁଠାରେ ଆମ୍ଭେ ଜୀବନ ଧାରଣର ଉପକରଣମାନ ବହୁ ପରିମାଣରେ ଅବତୀର୍ଣ୍ଣ କରିଥିଲୁଁ; ଏହାହିଁ ସେମାନଙ୍କର ବାସ-ସ୍ଥାନଥିଲା: ସେମାନଙ୍କ ପରେ ଅତିଅଳ୍ପ ସମୟ ଏହା ବାସଭୂମି ହୋଇଥିଲା; ଏବଂ ଆମ୍ଭେହିଁ ଉତ୍ତରାଧିକାରୀ ହୋଇଥିଲୁଁ ।୫୮।

ଏବଂ ତୁମ୍ଭର ପାଳନକର୍ତ୍ତା ନଗରମାନଙ୍କ କେନ୍ଦ୍ରସ୍ଥଳୀରେ ପ୍ରେରିତ ପୁରୁଷଙ୍କୁ ଆବିର୍ଭୂତକରି ତାଙ୍କଦ୍ୱାରା ନଗରବାସୀମାନଙ୍କ ପ୍ରତି ପରମେଶ୍ୱରଙ୍କ ନିଦର୍ଶନମାନ ପାଠ ନକରିବା ପର୍ଯ୍ୟନ୍ତ ସେ ଏହି ନଗର-

---

୫୨-୫୫ । ଏହି ଶ୍ଳୋକମାନଙ୍କରେ ଧର୍ମଗ୍ରନ୍ଥଧାରୀ ଇହୁଦୀ ଓ ଖ୍ରୀଷ୍ଟାନମାନଙ୍କ ମଧ୍ୟରୁ ଯେଉଁମାନେ କୋରାନ ଉପରେ ବିଶ୍ୱାସ କରି ଇସଲାମ ଧର୍ମ ଗ୍ରହଣ କରିଅଛନ୍ତି ସେମାନଙ୍କ ବିଷୟ ଉଲ୍ଲେଖ କରାଯାଇଅଛି ।

୫୬ । ଟୀକାକାରମାନଙ୍କ ମତରେ ଏହି ଶ୍ଳୋକରେ ମହାପୁରୁଷ ମୋହମ୍ମଦଙ୍କ ପୃଷ୍ଠପୋଷକ ତାଙ୍କର ପିତୃବ୍ୟ ଅବୁ-ତାଲେବଙ୍କୁ ଲକ୍ଷ୍ୟ କରାଯାଇଅଛି । ଅବୁତାଲେବଙ୍କ ଅନ୍ତିମ ସମୟରେ ମହାପୁରୁଷ ମୋହମ୍ମଦ ତାଙ୍କ ନିକଟରେ ଉପସ୍ଥିତ ହୋଇ ପରମେଶ୍ୱରଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ପାଇଁ ଅନୁରୋଧ କରିଥିଲେ, ମାତ୍ର ଅବୁ-ଜହେଲ୍ ସେଥିରେ ବାଧା ଦେଇଥିଲା ଏବଂ ସେହି ଅବସ୍ଥାରେ ତାଙ୍କର ପ୍ରାଣ ବିୟୋଗ ଘଟିଥିଲା । ଏଥିରେ ମହାପୁରୁଷ ମୋହମ୍ମଦ ଅତ୍ୟନ୍ତ ଦୁଃଖିତ ହେବାରୁ ତାଙ୍କୁ ସାନ୍ତ୍ୱନା ଦେବା ପାଇଁ ଏହି ଶ୍ଳୋକ ଅବତୀର୍ଣ୍ଣ ହୋଇ-ଥିଲା । ମାତ୍ର ଏହି ଶ୍ଳୋକର ଅର୍ଥ ସାଧାରଣ ଭାବରେ ନିଆଯାଇପାରେ ।

୫୭ । ଦୁର୍ବଳ ପ୍ରକୃତି ଅର୍ଦ୍ଧ ବିଶ୍ୱାସୀ ମକ୍‌କାବାସୀ ଲୋକମାନେ ଭୟ କରୁଥିଲେ ଯେ ପ୍ରକାଶ୍ୟ ଭାବରେ ଇସଲାମ ଧର୍ମ ଗ୍ରହଣ କଲେ ସେମାନଙ୍କୁ ନିର୍ବାସନ ଦଣ୍ଡ ଏବଂ ତଜ୍ଜନିତ ଦୁଃଖ କଷ୍ଟ ଭୋଗ କରିବାକୁ ହେବ । ଏହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, ଏପରି ଭୟ କରିବା ସମ୍ପୂର୍ଣ୍ଣ ଭିତ୍ତିହୀନ ଏବଂ ଦୁର୍ବଳତାର ପରିଚାୟକ । କାରଣ ମକ୍‌କା ନଗରୀ ଓ କାବା ମନ୍ଦିର ପବିତ୍ର ଶାନ୍ତିପୂର୍ଣ୍ଣ ସ୍ଥାନ ଅଟେ ଏବଂ ନିକଟ ଭବିଷ୍ୟତରେ ଏହା ସମସ୍ତ ମୁସଲମାନମାନଙ୍କ ପାଇଁ ନିରାପଦ ସ୍ଥାନ ଓ ଜୀବିକା ଅର୍ଜନ ପାଇଁ •ସର୍ବପ୍ରକାର ଫଳର ବାଣିଜ୍ୟ କେନ୍ଦ୍ର ହୋଇଯିବ ।

୫୮-୬୦ । ମକ୍‌କା ନଗରର ଧନୀ ଲୋକମାନେ ପାର୍ଥିବ ସମ୍ପଦର ଗର୍ବରେ ଉନ୍ମତ୍ତ ହୋଇ ପ୍ରେରିତ ପୁରୁଷଙ୍କ ଉପରେ ବିଶ୍ୱାସ କରିବା ପରିବର୍ତ୍ତେ ତାଙ୍କ ପ୍ରତି ଅତ୍ୟାଚାର କରୁଥିଲେ । ପରମେଶ୍ୱର ସେମାନଙ୍କୁ ସାବଧାନ କରାଇ ଦେଇ କହୁଅଛନ୍ତି, ଏଥିପୂର୍ବେ ସେ ଅନେକ ଧନ ସମ୍ପଦପୂର୍ଣ୍ଣ ନଗରମାନଙ୍କୁ ସେମାନଙ୍କ ଅଧିବାସୀମାନଙ୍କ ଅତ୍ୟାଚାର ଯୋଗୁଁ ଧ୍ୱଂସ କରିଦେଇ ଅଛନ୍ତି । ପାର୍ଥିବ ଧନ ସମ୍ପଦ କ୍ଷଣସ୍ଥାୟୀ, ମାତ୍ର ପରଲୋକର ସୁଖ ଚିର-ସ୍ଥାୟୀ । ସୁତରାଂ କ୍ଷଣସ୍ଥାୟୀ ପାର୍ଥିବ ସମ୍ପଦର ଗର୍ବରେ ଉନ୍ମତ୍ତ ହୋଇ ଚିରସ୍ଥାୟୀ ପାରଲୌକିକ ସୁଖରୁ ବଞ୍ଚିତ ହେବା ଜ୍ଞାନୀ ଲୋକର କାର୍ଯ୍ୟ ନୁହେ ।

୫୮ । ଏହା ବାସ ଭୂମି ହୋଇଥିଲା—ସେମାନଙ୍କ ଧ୍ୱଂସ ପରେ ସେମାନଙ୍କ ଘର ସବୁ ଭଗ୍ନାବସ୍ଥାରେ ଖାଲି ପଡି ରହିଥିଲା । କେବଳ ବାଟୋଇମାନେ ସେଥିରେ ଦିନେ ଅଧେ ରହିଥିଲେ ।

ଆମ୍ଭେ ହିଁ ଉତ୍ତରାଧିକାରୀ ହୋଇଥିଲୁ—ସେମାନଙ୍କ ପରିତ୍ୟକ୍ତ ଧନ ସମ୍ପତ୍ତି ଉପଭୋଗ କରିବାକୁ କେହି ନଥିଲା ।

ମାନଙ୍କୁ ଧ୍ୱଂସ କରି ନଥିଲେ; ଏବଂ କୌଣସି ନଗରର ଅଧିବାସୀମାନେ ଅତ୍ୟାଗ୍ରହୀ ନହେବା ପର୍ଯ୍ୟନ୍ତ ଅମ୍ଭେ କଦାପି ସେମାନଙ୍କୁ ଧ୍ୱଂସ କରୁନାହୁଁ ।୫୯।

ଏବଂ ତୁମ୍ଭମାନଙ୍କୁ ଯେଉଁବିଷୟମାନ ଦିଆଯାଇଅଛି ତାହା ବାସ୍ତବରେ ପାର୍ଥିବ ଜୀବନର ସମ୍ପଦ ଓ ତାହାର ସୌନ୍ଦର୍ଯ୍ୟ, ଏବଂ ପରମେଶ୍ୱରଙ୍କ ନିକଟରେ ଯାହା ଅଛି ତାହା ଉତ୍କୃଷ୍ଟତର ଓ ଚିରସ୍ଥାୟୀ; ତେବେ କି କଅଣ ତୁମ୍ଭେମାନେ ହୃଦୟଙ୍ଗମ କରିପାରୁନାହିଁ ? ୬୦।

## ୭ମ ବିଭାଗ

ଅମ୍ଭେ ଯାହାକୁ ଉତ୍ତମ ଅଙ୍ଗୀକାରର ଅଙ୍ଗୀକାର କରିଅଛୁଁ ତାହାସହିତ କଅଣ ସେ ସମାନ ଭାବରେ ଗଣିପାରେ ଯାହାକୁ ଅମ୍ଭେ କେବଳ ପାର୍ଥିବ ଜୀବନର ସୁଖ ସମ୍ପଦ ଦେଇଅଛୁଁ, ତାପରେ ତାକୁ ପୁନରୁତ୍ଥାନ ଦିବସରେ ଉପସ୍ଥିତ କରାହେବ ? ୬୧।

ଏବଂ ଯେଉଁଦିନ ସେ ସେମାନଙ୍କୁ ଆହ୍ୱାନ କରିବେ, ତାପରେ କହିବେ, "ତୁମ୍ଭେମାନେ ଯେଉଁମାନଙ୍କୁ ଅମ୍ଭର ଅଂଶୀ ଉପାସ୍ୟ ସ୍ୱରୂପ କଳ୍ପନା କରୁଥିଲ ସେମାନେ କାହାନ୍ତି" ? ୬୨।

ଯେଉଁମାନଙ୍କ ପ୍ରତି ( ଶାସ୍ତିର ) ବାକ୍ୟ ପ୍ରମାଣିତ ହେବ ସେମାନେ କହିବେ; "ହେ ଆମ୍ଭମାନଙ୍କର ପାଳନକର୍ତ୍ତା ! ଏହିମାନଙ୍କୁ ହିଁ ଆମ୍ଭେମାନେ ଭ୍ରାନ୍ତ କରିଥିଲୁଁ; ଆମ୍ଭେମାନେ ନିଜେ ଯେପରି ଭ୍ରାନ୍ତ ହୋଇଥିଲୁଁ, ସେମାନଙ୍କୁ ମଧ୍ୟ ସେହିପରି ପଥଭ୍ରଷ୍ଟ କରିଥିଲୁଁ, ଆମ୍ଭେମାନେ ( ସେମାନଙ୍କ ପ୍ରତି ) ଦାୟିତ୍ୱ ଶୂନ୍ୟ ଥିବାର ତୁମ୍ଭ ନିକଟ ପ୍ରକାଶକରୁଅଛୁଁ; ସେମାନେ କଦାପି ଆମ୍ଭମାନଙ୍କୁ ଉପାସନା କରୁ ନଥିଲେ" ।୬୩

ଏବଂ ସେମାନଙ୍କୁ କୁହାହେବ "ତୁମ୍ଭେମାନେ ତୁମ୍ଭମାନଙ୍କର ଅଂଶୀ ଉପାସ୍ୟମାନଙ୍କୁ ଆହ୍ୱାନକର" ସେତେବେଳେ ସେମାନେ ସେମାନଙ୍କୁ ଆହ୍ୱାନ କରିବେ; କିନ୍ତୁ ସେମାନେ ସେମାନଙ୍କୁ ଉତ୍ତର ଦେବେନାହିଁ ଏବଂ ସେମାନେ ଶାସ୍ତି ଦେଖିବେ; ( ସେମାନେ ଇଚ୍ଛାକରିବେ ) ଯଦି ସେମାନେ ସୁପଥଗାମୀ ହୋଇ ଥାଆନ୍ତେ । ୬୪।

---

୫୯ । ନଗରମାନଙ୍କ କେନ୍ଦ୍ରସ୍ଥଳୀ—ଅକ୍ଷରିକ ଅନୁବାଦ 'ନଗରମାନଙ୍କ ମାତା' । ଧର୍ମୋପଦେଷ୍ଟା ପ୍ରତିନଗର ବା ଗ୍ରାମରେ ଅବତୀର୍ଣ୍ଣ ହୁଅନ୍ତି ନାହିଁ । ସେ କୌଣସି ପ୍ରସିଦ୍ଧ କେନ୍ଦ୍ରସ୍ଥଳୀରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ତାଙ୍କ ପ୍ରତିନିଧିମାନେ ଦୂରବର୍ତ୍ତୀ ସ୍ଥାନମାନଙ୍କୁ ଯାଇଁ ସେଠାରେ ତାଙ୍କ ଧର୍ମ ପ୍ରଚାର କରନ୍ତି । ୨୫ ଅଧ୍ୟାୟ ୫୧ ଶ୍ଲୋକର ଟୀକା ଦେଖ ।

୬୧ । ଏହି ଶ୍ଳୋକରେ ବିଶ୍ୱାସକାରୀ ପୁଣ୍ୟବାନ ଲୋକ ସହିତ ଅବିଶ୍ୱାସକାରୀ ପାପାଗ୍ରହୀର ତୁଳନା କରାଯାଇଅଛି । ବିଶ୍ୱାସକାରୀମାନେ ପରଲୋକରେ ଚିରସ୍ଥାୟୀ ସୁଖ ଭୋଗ କରିବେ ବୋଲି ପରମେଶ୍ୱର ଅଙ୍ଗୀକାର କରିଅଛନ୍ତି । ଅବିଶ୍ୱାସକାରୀମାନେ କ୍ଷଣସ୍ଥାୟୀ ପାର୍ଥିବ ସୁଖ ଭୋଗ କଲେ ମଧ୍ୟ ପରଲୋକରେ ସେମାନେ ଶାସ୍ତି ଭୋଗ କରିବେ । ସୁତରାଂ ଏ ଦୁହେଁ ସମାନ ହୋଇ ନପାରନ୍ତି ।

୬୨-୬୪ । ଏହି ଶ୍ଲୋକମାନଙ୍କରେ ଶେଷ ବିଚାର ଦିନ ଅଂଶୀବାଦୀମାନଙ୍କର ଦୁର୍ଦ୍ଦଶାର ବିଷୟ ବର୍ଣ୍ଣିତ ହୋଇଅଛି । ଯେଉଁମାନଙ୍କଠାରୁ ସେମାନେ ସାହାଯ୍ୟ ପାଇବେ ବୋଲି ଭରସା କରିଅଛନ୍ତି ସେ ଦିନ ସେମାନେ ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବେ ଏବଂ ସେମାନଙ୍କୁ ଡାକିଲେ ମଧ୍ୟ ଶୁଣିବେ ନାହିଁ । ସୁତରାଂ ସେମାନେ ଶାସ୍ତି ଭୋଗ କରିବେ । ଏକଥା ସ୍ମରଣ ରଖି ପାର୍ଥିବ ଜୀବନରେ ସୁପଥଗାମୀ ହେବା ଆବଶ୍ୟକ ଏବଂ ଏକ ଅଦ୍ୱିତୀୟ ପରମେଶ୍ୱରଙ୍କୁ ଆରାଧନା କରିବା ଉଚିତ ।

ଏବଂ ଯେଉଁଦିନ ପରମେଶ୍ୱର ସେମାନଙ୍କୁ ଆହ୍ୱାନ କରି କହିବେ, "ତୁମ୍ଭେମାନେ ପ୍ରେରିତପୁରୁଷ-ମାନଙ୍କୁ କି ଉତ୍ତର ଦେଇଥିଲ" ? ୬୫।

ବାସ୍ତବରେ ସେଦିନ ସେମାନଙ୍କ ପକ୍ଷରେ ସମ୍ବାଦସବୁ ଅଦୃଶ୍ୟ ହୋଇଯିବ; ସୁତରାଂ ସେମାନେ ପରସ୍ପର ମଧ୍ୟରେ ପ୍ରଶ୍ନ ମଧ୍ୟ କରିପାରିବେ ନାହିଁ ।୬୬।

କିନ୍ତୁ ଯେ ଅନୁତାପ କରିଅଛି ଓ ବିଶ୍ୱାସ ସ୍ଥାପନ କରିଅଛି ଓ ସତ୍‌କାର୍ଯ୍ୟ କରୁଅଛି, ସମ୍ଭବତଃ ସେ ସୁଫଳପ୍ରାପ୍ତମାନଙ୍କର ଅନ୍ତର୍ଗତ ହେବ ।୬୭।

ଏବଂ ତୁମ୍ଭର ପାଳନକର୍ତ୍ତା ଯାହାଇଚ୍ଛା ସୃଷ୍ଟିକରନ୍ତି ଓ ମନୋନୀତ କରନ୍ତି; ସେମାନଙ୍କର ମନୋନୀତକରିବାର ଅଧିକାର ନାହିଁ; ପରମେଶ୍ୱର ପରମ ପବିତ୍ର ଏବଂ ସେମାନଙ୍କର ଅଂଶୀ ସ୍ଥାପନଠାରୁ ଅତି ଉନ୍ନତ ।୬୮।

ଏବଂ ସେମାନଙ୍କର ଅନ୍ତର ଯାହା ଗୋପନ କରେ ଓ ସେମାନେ ଯାହା ପ୍ରକାଶ କରନ୍ତି ପରମେଶ୍ୱର ତାହା ଜାଣନ୍ତି ।୬୯।

ଏବଂ ସେହି ପରମେଶ୍ୱର,ତାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ କେହି ନାହିଁ,ଇହଲୋକରେ ଓ ପରଲୋକରେ ସମସ୍ତ ପ୍ରଶଂସା ତାଙ୍କର ପାଇଁ, ଏବଂ ଆଦେଶ ତାଙ୍କରିଠାରେ ଏବଂ ତାଙ୍କରି ଆଡ଼କୁ ସମସ୍ତଙ୍କୁ ଫେରି ଯିବାକୁ ହେବ ।୭୦।

ତୁମ୍ଭେ କୁହ, "ତୁମ୍ଭେମାନେ ଲକ୍ଷ୍ୟ କରୁନାହଁ ଯେ ଯଦି ପରମେଶ୍ୱର ପୁନରୁତ୍‌ଥାନ ଦିବସ ପର୍ଯ୍ୟନ୍ତ ତୁମ୍ଭମାନଙ୍କ ଉପରେ ରାତ୍ରିକୁ ଚିରସ୍ଥାୟୀ କରନ୍ତି ତେବେ ପରମେଶ୍ୱରଙ୍କ ବ୍ୟତୀତ କେଉଁ ଉପାସ୍ୟ ଅଛି ଯେ ତୁମ୍ଭମାନଙ୍କ ଉପରେ ଆଲୋକ ଆଣି ପାରିବ ? ତଥାପି କଅଣ ତୁମ୍ଭେମାନେ ଶୁଣିବ ନାହିଁ ?" ୭୧।

ତୁମ୍ଭେ କୁହ,"ତୁମ୍ଭେମାନେ କଅଣ ଲକ୍ଷ୍ୟ କରୁ ନାହଁ ଯେ ଯଦି ପରମେଶ୍ୱର ପୁନରୁତ୍‌ଥାନ ଦିବସ-ପର୍ଯ୍ୟନ୍ତ ତୁମ୍ଭମାନଙ୍କ ଉପରେ ଦିନକୁ ଚିରସ୍ଥାୟୀ କରନ୍ତି ତେବେ ପରମେଶ୍ୱରଙ୍କ ବ୍ୟତୀତ କେଉଁ ଉପାସ୍ୟ ଅଛି ଯେ ତୁମ୍ଭମାନଙ୍କ ଉପରେ ରାତ୍ରି ଆଣି ପାରିବ ଯେଉଁଥିରେ ତୁମ୍ଭେମାନେ ବିଶ୍ରାମ କରିବ ? ତଥାପି କଅଣ ତୁମ୍ଭେମାନେ ଦେଖି ପାରୁନାହଁ ?" ୭୨।

ଏବଂ ସେ ନିଜ ଅନୁଗ୍ରହରୁ ତୁମ୍ଭମାନଙ୍କ ପାଇଁ ରାତ୍ରି ଓ ଦିନ ସୃଷ୍ଟି କରି ଅଛନ୍ତି ଯେପରି ତୁମ୍ଭେମାନେ ରାତ୍ରିରେ ବିଶ୍ରାମ କରି ପାରିବ ଏବଂ ଯେପରି ତୁମ୍ଭେମାନେ ଦିନରେ ତାଙ୍କର ଅନୁଗ୍ରହ ସମ୍ପଦ ଅନୁସନ୍ଧାନ କରିପାରିବ ଏବଂ ଯେପରି ତୁମ୍ଭେମାନେ କୃତଜ୍ଞ ହେବ ।୭୩।

---

୬୫-୬୬ । ଶେଷବିଚାର ଦିନ ପରମେଶ୍ୱର ଯେତେବେଳେ ଅବିଶ୍ୱାସକାରୀମାନଙ୍କୁ ପ୍ରଶ୍ନ କରିବେ ଯେ ସେମାନେ କାହିଁକି ପ୍ରେରିତ ପୁରୁଷମାନଙ୍କର ଉପଦେଶ ଗ୍ରହଣ କରି ନଥିଲେ, ସେତେବେଳେ ସେମାନେ କୌଣସି ଉତ୍ତର ଦେଇପାରିବେ ନାହିଁ । ଏପରିକି ସେମାନଙ୍କ ମୁହଁରୁ କଥା ମଧ୍ୟ ବାହାରିବ ନାହିଁ ।

୬୬ । ସମ୍ବାଦ ସବୁ ଅଦୃଶ୍ୟ ହୋଇଯିବ—ପରମେଶ୍ୱରଙ୍କୁ କଣ ଉତ୍ତର ଦେବେ ତାହା ଠିକ କରିପାରିବେ ନାହିଁ ।

୬୮ । ମନୋନୀତ କରନ୍ତି—ପରମେଶ୍ୱର ଯାହାକୁ ଉପଯୁକ୍ତ ମନେ କରନ୍ତି କୌଣସି ବିଶିଷ୍ଟ କାର୍ଯ୍ୟ ନିମନ୍ତେ ମନୋନୀତ କରନ୍ତି । ମାତ୍ର ଅଂଶୀ ରୂପ ସ୍ୟମାନଙ୍କର ଏପରି ମନୋନୀତ କରିବାର ଅଧିକାର ନାହିଁ ।

୭୧-୭୩ । ପରମେଶ୍ୱର ଲୋକମାନଙ୍କ ବିଶ୍ରାମ ନିମନ୍ତେ ରାତ୍ରିକୁ ଏବଂ ଜୀବିକା ଅର୍ଜ୍ଜନ ପାଇଁ ଦିନକୁ ସୃଷ୍ଟି କରିଅଛନ୍ତି ଯେପରି ସେମାନେ ତାଙ୍କ ପ୍ରତି କୃତଜ୍ଞ ହେବେ । ମାତ୍ର ପରମେଶ୍ୱର ଇଚ୍ଛା କଲେ ରାତ୍ରିକୁ ଚିରସ୍ଥାୟୀ କରିପାରନ୍ତି

ଏବଂ ଯେଉଁଦିନ ପରମେଶ୍ୱର ସେମାନଙ୍କୁ ଆହ୍ୱାନ କରି କହିବେ, "ତୁମ୍ଭେମାନେ ଯେଉଁମାନଙ୍କୁ ଆମ୍ଭର ଅଂଶୀ ଉପାସ୍ୟ ସ୍ୱରୂପ କଳ୍ପନା କରୁଥିଲ ସେମାନେ କାହାନ୍ତି ?" ୭୪।

ଏବଂ ଆମ୍ଭେ ପ୍ରତ୍ୟେକ ସମ୍ପ୍ରଦାୟର ସାକ୍ଷୀ ଉପସ୍ଥିତ କରିବୁଁ ଏବଂ କହିବୁଁ, "ତୁମ୍ଭମାନଙ୍କର ପ୍ରମାଣ ଅଗତ କର", ସେତେବେଳେ ସେମାନେ ଜାଣିପାରିବେ ଯେ ନିଶ୍ଚୟ ପରମେଶ୍ୱରଙ୍କ ପାଇଁ ସତ୍ୟ ଏବଂ ସେମାନେ ଯାହା ରଚନା କରିଥିଲେ ସେମାନଙ୍କ ନିକଟରୁ ତାହା ଦୂରିଭୂତ ହୋଇଯିବ । ୭୫ ।

## ୮ମ ବିଭାଗ

ନିଶ୍ଚୟ କାରୁନ ମୂସାଙ୍କ ସମ୍ପ୍ରଦାୟର ଅନ୍ତର୍ଗତ ଥିଲ, କିନ୍ତୁ ସେ ସେମାନଙ୍କ ପ୍ରତି ବିଦ୍ରୋହାଚରଣ କରିଥିଲ; ଏବଂ ଆମ୍ଭେ ତାହାକୁ ଧନଭଣ୍ଡାରମାନ ଏପରି ଦାନ କରିଥିଲୁଁ ଯେ ତାହାର ଗୃହକାଠିମାନ ଏକ ଶକ୍ତିଶାଳୀ ଦଳ ପକ୍ଷରେ ବୋହିବା କଷ୍ଟକର ଥିଲ; ଯେତେବେଳେ ତାହାର ସମ୍ପ୍ରଦାୟ ତାକୁ କହିଥିଲେ "ଆନନ୍ଦରେ ଫୁଲି ଉଠନା, ନିଶ୍ଚୟ ପରମେଶ୍ୱର ଆନନ୍ଦରେ ଫୁଲି ଉଠିବା ଲୋକମାନଙ୍କୁ ଭଲ ପାଆନ୍ତି ନାହିଁ । ୭୬ ।

"ଏବଂ ପରମେଶ୍ୱର ତୁମ୍ଭକୁ ଯାହା ଦେଇ ଅଛନ୍ତି ତଦ୍ୱାରା ପରଲୋକର ବାସସ୍ଥାନ ଅନୁସନ୍ଧାନ କର ଏବଂ ଇହ ଲୋକର ମଧ୍ୟ ତୁମ୍ଭର ଅଂଶ ଭୁଲନା, ଏବଂ ପରମେଶ୍ୱର ତୁମ୍ଭପ୍ରତି ଯେପରି ଅନୁଗ୍ରହ କରି ଅଛନ୍ତି ତୁମ୍ଭେମଧ୍ୟ ସେହିପରି ପରୋପକାର କର, ଏବଂ ପୃଥିବୀରେ ଅଶାନ୍ତି ଜାତ କରନା, ନିଶ୍ଚୟ ପରମେଶ୍ୱର ଅଶାନ୍ତି ଜାତକାରୀମାନଙ୍କୁ ଭଲ ପାଆନ୍ତି ନାହିଁ" ।୭୭।

ସେ କହିଥିଲ, "ଆମ୍ଭ ନିକଟରେ ଯେଉଁ ବିଦ୍ୟାଅଛି କେବଳ ତାହାର ବଳରେ ଏହା ଆମ୍ଭକୁ ଦିଆଯାଇଅଛି;" ସେ କଅଣ ଜାଣି ନଥିଲ ଯେ ନିଶ୍ଚୟ ପରମେଶ୍ୱର ତାହା ପୂର୍ବେ ବହୁଯୁଗର (ଲୋକମାନଙ୍କୁ) ଧ୍ୱଂସ କରି ଦେଇଥିଲେ, ଯେଉଁମାନେ ତାହା ଅପେକ୍ଷା ଅଧିକତର ଶକ୍ତିଶାଳୀ ଏବଂ ଯଥେଷ୍ଟ ସଞ୍ଚୟକାରୀ ଥିଲେ ? ଏବଂ ଅପରାଧୀମାନଙ୍କୁ (ସଙ୍ଗେ ସଙ୍ଗେ) ସେମାନଙ୍କ ଅପରାଧମାନଙ୍କ ସମ୍ବନ୍ଧରେ ପ୍ରଶ୍ନ କରା ହୁଏ ନାହିଁ ।୭୮।

---

କମ୍ବା ଦନକୁ ମଧ୍ୟ ଚିରସ୍ଥାୟୀ କରିପାରନ୍ତି । ତାଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବା କୌଣସି ଅଂଶୀ ଉପାସ୍ୟର ଶକ୍ତି ନାହିଁ ।

୭୩ । ଅନୁଗ୍ରହ ସମ୍ପଦ—ଜୀବିକା ।

୭୫ । ୪ର୍ଥ ଅଧ୍ୟାୟର ୪୧ ଶ୍ଲୋକ ଦେଖ । ବିଭିନ୍ନ ସମ୍ପ୍ରଦାୟର ଲୋକମାନେ ସେମାନଙ୍କ ପ୍ରେରିତମହାପୁରୁଷଙ୍କ ପ୍ରତି କିପରି ବ୍ୟବହାର କରିଥିଲେ, ସେ ବିଷୟରେ ପ୍ରତ୍ୟେକ ପ୍ରେରିତ ପୁରୁଷ ପରମେଶ୍ୱରଙ୍କଠାରେ ଶେଷ ବିଚାର ଦିନ ସାକ୍ଷ୍ୟ ଦେବେ । ଯେଉଁମାନେ ତାଙ୍କପ୍ରତି ଅବିଶ୍ୱାସକାରୀ ହୋଇଥିଲେ ଏବଂ ତାଙ୍କ ଉପଦେଶ ଅଗ୍ରାହ୍ୟ କରିଥିଲେ, ସେମାନଙ୍କୁ କୁହାଯିବ ଯେ ତୁମ୍ଭେମାନେ ଅବିଶ୍ୱାସ କରିବାର କାରଣ ବା ପ୍ରମାଣ ଅଗତ କର ।

୭୬-୮୧ । ଏହି ଶ୍ଲୋକମାନଙ୍କରେ ଧନ କୁବେର କାରୁନଙ୍କ ବିଷୟ ବର୍ଣ୍ଣିତ ହୋଇଅଛି । ପରମେଶ୍ୱର ତାକୁ ଏତେ ଧନ ଦେଇଥିଲେ ଯେ ତାହାର ଗୃହକାଠିମାନ ଦଳେ ଶକ୍ତିଶାଳୀ ଲୋକ ପକ୍ଷରେ ବୋହିବା କଷ୍ଟକର ଥିଲ । ସେ ମହାପୁରୁଷ ମୂସାଙ୍କ ସମ୍ପ୍ରଦାୟ ଭୁକ୍ତ ଥିଲ । ଧନ ଗର୍ବରେ ଉନ୍ମତ୍ତ ହୋଇ ଦାନ ଧ୍ୟାନ ଆଦି ପୁଣ୍ୟ କାର୍ଯ୍ୟ ନକରି ପୃଥିବୀରେ ଅଶାନ୍ତି ଜାତ କରିବାକୁ ଲାଗିଲା । ତାହାର ଅତ୍ୟାଚାର ସୀମା ଲଘନ କରିବାରୁ

ତାପରେ କାରୁନ ନିଜ ସମ୍ପ୍ରଦାୟ ଆଗରେ ନିଜ ଆଡ଼ମ୍ବର ସହିତ ବାହାରିଥିଲା; ଯେଉଁମାନେ ପାର୍ଥିବ ଜୀବନ ଆକାଂକ୍ଷା କରନ୍ତି ସେମାନେ କହିଥିଲେ, "କାରୁନ୍‌କୁ ଯେପରି ଦାନ କରାଯାଇଅଛି ଯଦି ଆମ୍ଭମାନଙ୍କୁ ମଧ୍ୟ ସେହିପରି ଦିଆଯାଇ ଥାନ୍ତା କି ! ନିଶ୍ଚୟ ସେ ଅତିଶୟ ଭାଗ୍ୟବାନ୍" ।୭୯।

ଏବଂ ଯେଉଁମାନଙ୍କୁ ଜ୍ଞାନ ଦାନ କରାଯାଇଥିଲା ସେମାନେ କହିଥିଲେ, "ତୁମ୍ଭମାନଙ୍କୁ ଧିକ ! ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି, ଏବଂ ସତ୍‌କାର୍ଯ୍ୟ କରନ୍ତି ସେମାନଙ୍କ ପାଇଁ (ପରଲୋକରେ) ପରମେଶ୍ୱରଙ୍କ ପୁରସ୍କାର ଶ୍ରେଷ୍ଠତର; ଏବଂ ଧୈର୍ଯ୍ୟଶୀଳମାନଙ୍କ ବ୍ୟତୀତ ଏହା ଅନ୍ୟ କାହାକୁ ଦିଆଯାଏ ନାହିଁ" ।୮୦।

ତାପରେ ଆମ୍ଭ ଆଦେଶରେ ପୃଥିବୀ ତାକୁ ଓ ତାହାର ବାସସ୍ଥାନକୁ ଗର୍ଭସାତ୍ କରି ଦେଇଥିଲା; ସୁତରାଂ ପରମେଶ୍ୱରଙ୍କ ବିରୁଦ୍ଧରେ କୌଣସି ଦଳ ତାହାପାଇଁ ସାହାଯ୍ୟକାରୀ ହୋଇନଥିଲେ, ଏବଂ ସେ ନିଜକୁ ମଧ୍ୟ ସାହାଯ୍ୟ କରି ପାରିନଥିଲା ।୮୧।

ଏବଂ ଯେଉଁମାନେ ଗତକାଲି ତାହାର ମର୍ଯ୍ୟାଦାର ଆକାଂକ୍ଷା କରୁଥିଲେ, ସେହିମାନେ ପ୍ରଭାତରୁ ଉଠି କହିବାକୁ ଲାଗିଲେ, "କି ଆଶ୍ଚର୍ଯ୍ୟ ! ପରମେଶ୍ୱର ତାଙ୍କର ସେବକମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାହାପାଇଁ ତାହାର ଜୀବିକା ପ୍ରଶସ୍ତ କରି ଦିଅନ୍ତି ଓ ସଙ୍କୁଚିତ କରିଦିଅନ୍ତି । ଯଦି ପରମେଶ୍ୱର ଆମ୍ଭମାନଙ୍କ ପ୍ରତି ଅନୁଗ୍ରହ କରି ନଥାଆନ୍ତେ ତେବେ ଆମ୍ଭମାନଙ୍କୁ ମଧ୍ୟ ପୃଥିବୀ ଗିଳିଦେଇ ଥାନ୍ତା ! କି ଆଶ୍ଚର୍ଯ୍ୟ ! ଅବିଶ୍ୱାସକାରୀମାନେ କଦାପି ସୁଫଳ ପ୍ରାପ୍ତ ହୁଅନ୍ତି ନାହିଁ" ।୮୨।

## ୯ମ ବିଭାଗ

ପରଲୋକର ସେହି ବାସସ୍ଥାନ ଆମ୍ଭେ ସେହିମାନଙ୍କ ପାଇଁ ନିର୍ଦ୍ଧାରଣ କରିଅଛୁଁ ଯେଉଁମାନେ ପାର୍ଥିବ ବଡ଼ିମା ଆକାଂକ୍ଷା କରନ୍ତି ନାହିଁ ଏବଂ ଅଶାନ୍ତି ଜାତ କରନ୍ତି ନାହିଁ; ଏବଂ ପରକାଳ (ର ପୁରସ୍କାର) କେବଳ ସଂଯମୀମାନଙ୍କ ପାଇଁ ଅଟେ ।୮୩।

ଯେଉଁଲୋକ (ପୁନରୁତ୍‌ଥାନଦିନ) ସତ୍‌କାର୍ଯ୍ୟ ସହିତ ଆସିବ, ବାସ୍ତବରେ ତାହା ପାଇଁ ତଦପେକ୍ଷା ଉତ୍କୃଷ୍ଟତର (ପୁରସ୍କାର) ରହିଅଛି, ଏବଂ ଯେଉଁଲୋକ ଅସତ୍‌କାର୍ଯ୍ୟ ସହିତ ଆସିବେ ତାକୁ ତାହାର ସେହି କୃତକର୍ମ ଛଡ଼ା ଅନ୍ୟ କିଛି ପ୍ରତିଦାନ ଦିଆଯିବ ନାହିଁ ।୮୪।

---

ପରମେଶ୍ୱରଙ୍କ ଆଦେଶରେ ପୃଥିବୀ ଫାଟିଗଲା ଏବଂ କାରୁନ ଓ ତାହାର ଧନ ଭଣ୍ଡାର ଓ ତାହାର ପ୍ରାସାଦମାନ ପୃଥିବୀ ମଧ୍ୟରେ ଲୀନ ହୋଇଗଲା ।

କାରୁନ—ମହାପୁରୁଷ ମୂସାଙ୍କ ଦାଦା ପୁଅ ଭାଇ ଥିଲେ । ସେ ଇସରାଇଲୀୟମାନଙ୍କ ବିରୁଦ୍ଧାଚାରୀ ହୋଇଥିଲେ । ଇହଲୋକରେ ତୁମ୍ଭର ଅଂଶ ଭୁଲନା—ଅର୍ଥାତ୍ କୃପଣତା କରନା । ଅପରାଧୀମାନଙ୍କୁ ସଙ୍ଗେ ସଙ୍ଗେ ପ୍ରଶ୍ନ କରାହୁଏ ନାହିଁ—ଅର୍ଥାତ୍ ସେମାନଙ୍କୁ ଅବସର ଦିଆହୁଏ, କାଳେ ସେମାନେ ଅନୁତାପ କରି ନିଜକୁ ସଂଶୋଧନ କରିବେ ।

୮୨ । ଏହି ଅଲୌକିକ ଘଟନା ଦେଖି ଯେଉଁମାନେ ତାହାର ଧନଭଣ୍ଡାରର ପ୍ରଶଂସା କରୁଥିଲେ ନିଜର ଭ୍ରମ ବୁଝିପାରି ପରମେଶ୍ୱରଙ୍କଠାରେ କୃତଜ୍ଞତା ପ୍ରକାଶ କରିବାକୁ ଲାଗିଲେ ।

ନିଶ୍ଚୟ ଯେ ତୁମ୍ଭପ୍ରତି କୋରାନ (ପ୍ରଚାର)କୁ ଅବଶ୍ୟ କର୍ତ୍ତବ୍ୟ ବୋଲି ନିର୍ଦ୍ଦିଷ୍ଟ କରିଅଛନ୍ତି ସେ ଅବଶ୍ୟ ତୁମ୍ଭଙ୍କୁ ପ୍ରତ୍ୟାବର୍ତ୍ତନ ସ୍ଥଳ (ମକ୍କାନଗରୀକୁ) ଫେରାଇ ଆଣିବେ; ତୁମ୍ଭେ କୁହ, "ଆମ୍ଭର ପାଳନକର୍ତ୍ତା ଭଲରୂପେ ଜାଣନ୍ତି କିଏ ସୁପଥ ସହିତ ଆସିଅଛି ଏବଂ କିଏ ପ୍ରକାଶ୍ୟଭ୍ରାନ୍ତି ମଧ୍ୟରେ ରହିଅଛି" ।୮୫।

ଏବଂ ତୁମ୍ଭ ପ୍ରତି ଯେ ଗ୍ରନ୍ଥ ଅବତୀର୍ଣ୍ଣ ହେବ ଏହା ତୁମ୍ଭେ କଦାପି ଆଶା କରି ନ ଥିଲ, କିନ୍ତୁ ଏହା ତୁମ୍ଭ ପ୍ରତି ତୁମ୍ଭ ପାଳନକର୍ତ୍ତାଙ୍କର ଅନୁଗ୍ରହ; ଅତଏବ ତୁମ୍ଭେ ଅବିଶ୍ୱାସକାରୀମାନଙ୍କର ପୃଷ୍ଠପୋଷକ ହୁଅନା ।୮୬।

ଏବଂ ତୁମ୍ଭ ପ୍ରତି ପରମେଶ୍ୱରଙ୍କ ନିଦର୍ଶନମାନ ଅବତୀର୍ଣ୍ଣ ହେବାପରେ ସେମାନେ ଯେପରି ତୁମ୍ଭଙ୍କୁ ଏହାର (ପ୍ରଚାରରେ) ବାଧା ଦେଇ ନ ପାରନ୍ତି, ଏବଂ ତୁମ୍ଭେ ତୁମ୍ଭର ପାଳନକର୍ତ୍ତାଙ୍କ ପ୍ରତି ଲୋକମାନଙ୍କୁ ଆହ୍ୱାନକର ଏବଂ ଅଂଶୀବାଦୀମାନଙ୍କର ଅନ୍ତର୍ଗତ ହୁଅନା ।୮୭।

ଏବଂ ପରମେଶ୍ୱରଙ୍କ ସହିତ ଅନ୍ୟ ଉପାସ୍ୟ ଆହ୍ୱାନ କରନା; ତାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ କେହି ନାହିଁ, ତାଙ୍କର ସତ୍ତା ଛଡ଼ା ଅନ୍ୟ ସମସ୍ତ ବିଷୟ ନାଶଶୀଳ; ଆଦେଶ ତାଙ୍କର ଠାରେ, ଏବଂ ତାଙ୍କର ଆଡ଼କୁ ତୁମ୍ଭମାନଙ୍କୁ ଫେରିଯିବାକୁ ହେବ ।୮୮।

—※—

---

୮୫ । ମହାପୁରୁଷ ମୋହମ୍ମଦ ଯେତେବେଳେ ନିଜ ଜନ୍ମଭୂମି ମକ୍କାନଗରୀକୁ ତ୍ୟାଗ କରି ମଦିନା ଅଭିମୁଖରେ ଯାତ୍ରା କରୁଥିଲେ ପଥମଧ୍ୟରେ ଜନ୍ମଭୂମିତ୍ୟାଗ ହେତୁ ତାଙ୍କ ମନରେ ଦୁଃଖ ଜାତ ହୋଇଥିଲା । ସେଥିପାଇଁ ପରମେଶ୍ୱର ତାଙ୍କୁ ସାନ୍ତ୍ୱନା ଦେଇ କହିଅଛନ୍ତି, "ପରମେଶ୍ୱର ତୁମ୍ଭଙ୍କୁ ଧର୍ମପ୍ରବର୍ତ୍ତକ ମନୋନୀତ କରି ପବିତ୍ର କୋରାନ ଗ୍ରନ୍ଥର ପ୍ରଚାର ତୁମ୍ଭର କର୍ତ୍ତବ୍ୟ ବୋଲି ସ୍ଥିର କରିଅଛନ୍ତି । ସୁତରାଂ ଜନ୍ମଭୂମି ତ୍ୟାଗ ନିମନ୍ତେ ହୃଦୟରେ ଦୁଃଖ ଅନୁଭବ କରିବା ଉଚିତ ନୁହେ । ନିକଟ ଭବିଷ୍ୟତରେ ସେ ତୁମ୍ଭକୁ ତୁମ୍ଭର ଶତ୍ରୁମାନଙ୍କ ଉପରେ ଜୟଯୁକ୍ତ କରି ତୁମ୍ଭଙ୍କୁ ତୁମ୍ଭର ପ୍ରିୟ ଜନ୍ମଭୂମିର ଆଧିପତ୍ୟ ଫେରାଇ ଦେବେ । ସୁତରାଂ ଶତ୍ରୁମାନଙ୍କର ଅଯଥା ବ୍ୟଙ୍ଗୋକ୍ତିରେ ଦୁଃଖିତ ହେବା ଉଚିତ ନୁହେ ।"

୮୬ । ମହାପୁରୁଷ ମୋହମ୍ମଦଙ୍କ ପ୍ରତି ଯେ ଐଶୀଗ୍ରନ୍ଥ ଅବତୀର୍ଣ୍ଣ ହେବ ଏ କଥା ସେ ପୂର୍ବରୁ ଜାଣି ନ ଥିଲେ । ପରମେଶ୍ୱର ନିଜ ଅନୁଗ୍ରହରୁ ତାଙ୍କୁ ଧର୍ମପ୍ରବର୍ତ୍ତକରୂପେ ମନୋନୀତ କରି ତାଙ୍କ ପ୍ରତି ଗ୍ରନ୍ଥ ଅବତୀର୍ଣ୍ଣ କରିଅଛନ୍ତି । ସୁତରାଂ ପରମେଶ୍ୱରଙ୍କ ଉପରେ ନିର୍ଭର କରି ନିଜର କର୍ତ୍ତବ୍ୟ ପାଳନ କରିବା ଆବଶ୍ୟକ ଏବଂ ଅବିଶ୍ୱାସକାରୀମାନଙ୍କର ପରିହାସ ଓ ବ୍ୟଙ୍ଗୋକ୍ତିରେ ଦୁଃଖିତ ନ ହୋଇ ସେମାନଙ୍କ ପ୍ରତି ନିର୍ଲିପ୍ତ ରହିବା ଉଚିତ ।

୮୭ । ଅବିଶ୍ୱାସକାରୀମାନେ ତାଙ୍କର ଉପଦେଶ ଶ୍ରବଣ କଲେ ନାହିଁ ବୋଲି ନିରାଶ ହୋଇ ଉପଦେଶ ପ୍ରଦାନ କାର୍ଯ୍ୟରୁ କ୍ଷାନ୍ତ ହେବା ଉଚିତ ନୁହେ ଏବଂ ସେମାନଙ୍କୁ ପରମେଶ୍ୱରଙ୍କ ପ୍ରତି ଆହ୍ୱାନ କରିବା ଉଚିତ ଏବଂ ନିଜର କର୍ତ୍ତବ୍ୟ ପାଳନରେ ସ୍ଥିର ହୋଇ ରହି ଅଂଶୀବାଦୀମାନଙ୍କ ପ୍ରତି ନିର୍ଲିପ୍ତ ରହିବା ଉଚିତ ।

## ୨୯ଶ ଅଧ୍ୟାୟ

ନାମ—ଅନ୍‌କବୂତ (ମାକଡ଼ସା) ।
ମକ୍‌କାରେ ଅବତୀର୍ଣ୍ଣ । ଏଥିରେ ଗୋ୭ଟି ବିଭାଗ ଏବଂ ଗୋ୬୯ଟି ଶ୍ଳୋକଅଛି ।
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ (ଆରମ୍ଭ)

### ୧ମ ବିଭାଗ

ଅଲିଫ୍, ଲାମ୍, ମୀମ୍ ।୧।

ତେବେ କଅଣ ଲୋକମାନେ ମନେ କରୁଅଛନ୍ତି ଯେ, 'ଅମ୍ଭେମାନେ ବିଶ୍ୱାସ ସ୍ଥାପନ କରିଅଛୁଁ', ମୁହଁରେ କେବଳ ଏତିକିମାତ୍ର କହିଦେଲେ ସେମାନଙ୍କୁ ଛାଡ଼ି ଦିଆଯିବ ଏବଂ ସେମାନଙ୍କୁ ପରୀକ୍ଷା କରାହେବନାହିଁ ? ୨ ।

ଏବଂ ନିଶ୍ଚୟ ଅମ୍ଭେ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନଙ୍କୁ ମଧ୍ୟ ପରୀକ୍ଷା କରିଥିଲୁଁ; ସୁତରାଂ ନିଶ୍ଚୟ ପରମେଶ୍ୱର ଜାଣିବେ କେଉଁମାନେ ସତ୍ୟବାଦୀ ଏବଂ ଜାଣିବେ କେଉଁମାନେ ମିଥ୍ୟାବାଦୀ ।୩।

ତେବେ କଅଣ ଦୁଷ୍କର୍ମକାରୀମାନେ ମନେ କରୁଅଛନ୍ତି ଯେ ସେମାନେ ଅମ୍ଭଠାରୁ ପଳାୟନ କରିପାରିବେ ? ସେମାନେ ଏପରି ଯେଉଁ ଧାରଣା କରିଅଛନ୍ତି ତାହା ମନ୍ଦ ଅଟେ ।୪।

ଏବଂ ଯେଉଁ ଲୋକ ପରମେଶ୍ୱରଙ୍କ ସହିତ ସାକ୍ଷାତ କାମନା କରେ ସେ ଅନ୍ତରରେ ବିଶ୍ୱାସ ସ୍ଥାପନ କରୁ; କାରଣ ଅବଶ୍ୟ ପରମେଶ୍ୱରଙ୍କ ନିର୍ଦ୍ଦିଷ୍ଟକାଳ ଉପସ୍ଥିତ ହେବ; ଏବଂ ସେ ଶ୍ରବଣକାରୀ ମହାଜ୍ଞାନୀ ।୫।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋ୪୧କରେ ଅବିଶ୍ୱାସକାରୀ ଅଂଶୀବାଦୀମାନଙ୍କର ଭ୍ରାନ୍ତଧାରଣାକୁ ମାକଡ଼ସାଦ୍ୱାରା ପ୍ରସ୍ତୁତ ଜାଲ ପରି ଭଙ୍ଗୁର ଓ କ୍ଷଣସ୍ଥାୟୀ ବୋଲି ତୁଳନା କରାଯାଇଅଛି । ସତ୍ୟ ସନାତନ ଧର୍ମର ଶରସ୍ଥାୟୀ ଆଲୋକ ନିକଟରେ ଅଂଶୀବାଦୀତାର କୁସଂସ୍କାର ଓ ଭ୍ରାନ୍ତଧାରଣା ଟିକି ରହିବା ସମ୍ଭବ ନୁହେ । ଏଥିପାଇଁ ଏ ଅଧ୍ୟାୟର ଏପରି ନାମକରଣ ହୋଇଅଛି ।

୧ । ସାଙ୍କେତିକ ବର୍ଣ୍ଣମାନଙ୍କ ସମ୍ବନ୍ଧରେ ଦେଖ ଟୀକା ୨ୟ ଅଧ୍ୟାୟ ୧ମ ଶ୍ଳୋକ ।

୨।୪ । ଇସଲାମଧର୍ମ ପ୍ରଚାରର ପ୍ରାଥମିକ ଅବସ୍ଥାରେ ମୁସଲମାନମାନେ ଶତ୍ରୁମାନଙ୍କର ଅତ୍ୟାଚାର ଓ ଅସହ୍ୟ ଉତ୍ପୀଡ଼ନରେ ଦୁଃଖିତ ଓ ମର୍ମାହତ ହେବାକୁ ଲାଗିଲେ । ସେମାନଙ୍କୁ ସାନ୍ତ୍ୱନାଦେବା ପାଇଁ ପରମେଶ୍ୱର କହୁଅଛନ୍ତି, "କେବଳ ମୁଖରେ ବିଶ୍ୱାସ କଲୁଁ ବୋଲି କହିବା ଦ୍ୱାରା ଲୋକମାନେ ପରମେଶ୍ୱରଙ୍କ ପ୍ରକୃତ ଭକ୍ତ ହୋଇ ନ ପାରନ୍ତି । ପରମେଶ୍ୱରଙ୍କ ପ୍ରକୃତଭକ୍ତ ହେବାପାଇଁ ସେମାନଙ୍କୁ ଭୀଷଣ ଅଗ୍ନି ପରୀକ୍ଷା ମଧ୍ୟ ଦେଇଯିବାକୁ ହେବ । ତେବେଯାଇ ଜଗତବାସୀମାନେ ଜାଣିପାରିବେ ଯେ ପ୍ରକୃତ ଖାଣ୍ଟି ଭକ୍ତ କିଏ ଏବଂ କପଟବିଶ୍ୱାସୀ ଭଣ୍ଡ କିଏ । ତୁମ୍ଭମାନଙ୍କର ପୂର୍ବବର୍ତ୍ତୀ ଲୋକମାନଙ୍କୁ ମଧ୍ୟ ସତ୍ୟ ସନାତନ ଧର୍ମର ପ୍ରଚାର ନିମନ୍ତେ ଏହିପରି ଅତ୍ୟାଚାର ଓ ଉତ୍ପୀଡ଼ନ ଭୋଗ କରିବାକୁ ପଡ଼ିଥିଲା । ଏବଂ ଯେଉଁମାନେ ତୁମ୍ଭମାନଙ୍କ ପ୍ରତି ଅତ୍ୟାଚାର କରୁଅଛନ୍ତି ସେମାନେ ନିଶ୍ଚୟ ଶାସ୍ତି ଭୋଗ କରିବେ । ସୁତରାଂ ହତାଶ ନ ହୋଇ ଧୈର୍ଯ୍ୟଧାରଣ କରିବା ଆବଶ୍ୟକ ।"

୪ । ଅମ୍ଭଠାରୁ ପଳାୟନକରିପାରିବେ=ଅମ୍ଭ ଶାସ୍ତିରୁ ଏଡ଼େଇ ପାରିବେ ।

୫ । ପରମେଶ୍ୱରଙ୍କ ନିର୍ଦ୍ଦିଷ୍ଟକାଳ=ପରମେଶ୍ୱରଙ୍କ ଦ୍ୱାରା ନିର୍ଦ୍ଧାରିତ ମୃତ୍ୟୁ ସମୟ ।

ଏବଂ ଯେଉଁଲୋକ ଯତ୍ନକରେ ସେ କେବଳ ନିଜପାଇଁ ଯତ୍ନକରେ; ନିଶ୍ଚୟ ପରମେଶ୍ୱର ସମସ୍ତ ଜଗତରୁ ଅସ୍ଥାପ୍ରାନ ।୬।

ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି, ତେବେ ନିଶ୍ଚୟ ଅମ୍ଭେ ସେମାନଙ୍କଠାରୁ ସେମାନଙ୍କର ଅସତ୍‌କାର୍ଯ୍ୟମାନ ଦୂର କରିଦେବୁଁ ଏବଂ ସେମାନେ ଯାହା କରିଥିଲେ ଅମ୍ଭେ ସେମାନଙ୍କୁ ତଦନୁଯାୟୀ ଉତ୍କୃଷ୍ଟତର ପୁରସ୍କାର ଦେବୁଁ ।୭।

ଏବଂ ଅମ୍ଭେ ମନୁଷ୍ୟଙ୍କୁ ତାହାର ପିତାମାତା ସହିତ ସଦ୍‌ବ୍ୟବହାର କରିବାକୁ ଆଦେଶ କରିଅଛୁଁ; କିନ୍ତୁ ଯଦି ସେମାନେ ତୁମ୍ଭସହିତ ଏବିଷୟରେ କଳହ କରନ୍ତି ଯେ ତୁମ୍ଭେ ଅମ୍ଭସହିତ ଅଂଶୀ ସ୍ଥିର କର, ଯେଉଁବିଷୟରେ ତୁମ୍ଭର କୌଣସି ଜ୍ଞାନ ନାହିଁ, ତେବେ ସେମାନଙ୍କର ଅନୁଗତ ହୁଅନା; ଅମ୍ଭର ଆଡ଼କୁ ତୁମ୍ଭମାନଙ୍କୁ ଫେରି ଆସିବାକୁ ହେବ ଏବଂ ତୁମ୍ଭେମାନେ ଯାହା କରିଥିଲ ଅମ୍ଭେ ତୁମ୍ଭମାନଙ୍କୁ ତାହା ଜଣାଇଦେବୁଁ ।୮।

ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଓ ସତ୍‌କାର୍ଯ୍ୟ କରନ୍ତି ନିଶ୍ଚୟ ଅମ୍ଭେ ସେମାନଙ୍କୁ ସତ୍‌କର୍ମଶୀଳମାନଙ୍କର ଅନ୍ତର୍ଗତ କରିବୁଁ ।୯।

ଏବଂ ଲୋକମାନଙ୍କ ମଧ୍ୟରୁ କେହି କେହି କହନ୍ତି, ଅମ୍ଭେ ପରମେଶ୍ୱରଙ୍କ ପ୍ରତିବିଶ୍ୱାସ ସ୍ଥାପନ କରିଅଛୁଁ; ତାପରେ ଯେତେବେଳେ ସେ ପରମେଶ୍ୱରଙ୍କ ପଥରେ କଷ୍ଟଭୋଗ କରେ, ସେତେବେଳେ ସେ ସେହି ମାନବପ୍ରଦତ୍ତ କଷ୍ଟକୁ ପରମେଶ୍ୱରଙ୍କ ଶାସ୍ତି ମନେକରେ; ଏବଂ ହେ ମୋହମ୍ମଦ, ଯଦି ତୁମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ସାହାଯ୍ୟ ଉପସ୍ଥିତ ହୁଏ ତେବେ ସେମାନେ କହିବେ ଯେ ନିଶ୍ଚୟ ଅମ୍ଭେମାନେ ତୁମ୍ଭମାନଙ୍କ ସଙ୍ଗେ ଥିଲୁଁ; ତେବେ କଅଣ ପରମେଶ୍ୱର ବିଶ୍ୱବାସୀମାନଙ୍କ ଅନ୍ତରରେ ଯାହାଅଛି ତାହା ଅବଗତ ନୁହନ୍ତି ? ୧୦।

ଏବଂ ନିଶ୍ଚୟ ପରମେଶ୍ୱର ଜାଣିବେ କେଉଁମାନେ ବିଶ୍ୱାସକାରୀ ଏବଂ ଜାଣିବେ କେଉଁମାନେ କପଟବିଶ୍ୱାସୀ ।୧୧।

ଏବଂ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, "ତୁମ୍ଭେମାନେ ଅମ୍ଭମାନଙ୍କର ପଥ ଅନୁସରଣ କର ଏବଂ ଅମ୍ଭେମାନେ ତୁମ୍ଭମାନଙ୍କର ଅପରାଧମାନ ବହନ କରିବୁଁ, କିନ୍ତୁ ସେମାନେ ସେମାନଙ୍କର ଅପରାଧମାନଙ୍କରୁ କିଛିମାତ୍ର ବହନ କରିପାରିବେ ନାହିଁ, ନିଶ୍ଚୟ ସେମାନେ ମିଥ୍ୟାବାଦୀ ।୧୨।

---

।୬-୭। ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ବିଶ୍ୱାସକାରୀମାନଙ୍କୁ ଇହଲୋକ ଓ ପରଲୋକର ପୁରସ୍କାର ବିଷୟରେ ସୁସମ୍ବାଦ ଦେଇ ସେମାନଙ୍କୁ ସାନ୍ତ୍ୱନା ଦେଇଅଛନ୍ତି ।

୮। ପିତାମାତାଙ୍କ ପ୍ରତି ସଦ୍‌ବ୍ୟବହାର କରିବାପାଇଁ ଏବଂ ସେମାନଙ୍କ ମନରେ କଷ୍ଟ ନଦେବା ପାଇଁ କୋରାନ ଗ୍ରନ୍ଥରେ ଆଦେଶ କରାଯାଇଅଛି । (ଦେଖ ୧୭ଶ ଅଧ୍ୟାୟ ଶ୍ଳୋ୨୩-୨୪କ) । ମାତ୍ର ସେମାନେ ଯଦି ଧର୍ମବିରୁଦ୍ଧ କୌଣସି କାର୍ଯ୍ୟ କରିବା ପାଇଁ ଆଦେଶକରନ୍ତି ତେବେ ସନ୍ତାନ ପକ୍ଷରେ ତାହା ପାଳନୀୟ ନୁହେ ।
ସେମାନେ—ଅର୍ଥାତ୍ ପିତାମାତା

୧୦-୧୧। ଏହି ଦୁଇଶ୍ଳୋକରେ ପ୍ରକୃତ ବିଶ୍ୱାସୀ ଓ କପଟ ବିଶ୍ୱାସୀ ଲୋକମାନଙ୍କର ପ୍ରକୃତିର ତୁଳନା କରାଯାଇଅଛି ।

୧୨-୧୩। ଅବିଶ୍ୱାସକାରୀମାନେ ବିଶ୍ୱାସ କାରୀମାନଙ୍କୁ କହୁଥିଲେ, "ତୁମ୍ଭେମାନେ ଇସଲାମ ଧର୍ମତ୍ୟାଗ କରି ଅମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର ଅଚରିତ ଧର୍ମର ଅନୁସରଣ କର, ଏଥିରେ ଯଦି ତୁମ୍ଭମାନଙ୍କର କିଛି

ଏବଂ ନିଶ୍ଚୟ ସେମାନେ ନିଜର ଭାର ଏବଂ ସେମାନଙ୍କ ଭାର ସହିତ ଅନ୍ୟ ଭାରମାନ ବହନ କରିବେ; ଏବଂ ନିଶ୍ଚୟ ସେମାନେ ଯାହା ରଚନା କରିଥିଲେ ସେ ବିଷୟରେ ପୁନରୁତ୍ଥାନ ଦିବସରେ ପ୍ରଶ୍ନ କରାହେବେ ।୧୩।

## ୨ୟ ବିଭାଗ

ଏବଂ ନିଶ୍ଚୟ ଅମ୍ଭେ ନୁହଙ୍କୁ ତାଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରଣ କରିଥିଲୁଁ; ସୁତରାଂ ସେ ସେମାନଙ୍କ ମଧ୍ୟରେ ପଚାଶ କମ ହଜାରେବର୍ଷ ବାସ କରିଥିଲେ; ଏବଂ ମହାପ୍ଲାବନ ସେମାନଙ୍କୁ ଅକ୍ରମଣ କରିଥିଲା ଏବଂ ସେମାନେ ଅତ୍ୟାଚାରୀ ଥିଲେ ।୧୪।

ତାପରେ ଅମ୍ଭେ ତାଙ୍କୁ ଓ ନୌକାରେ ଅରୋହଣ କରିଥିବା ଲୋକମାନଙ୍କୁ ଉଦ୍ଧାର କରିଥିଲୁଁ ଏବଂ ଏହାକୁ ଅମ୍ଭେ ଜଗତ୍‌ବାସୀମାନଙ୍କପାଇଁ ନିଦର୍ଶନ କରିଥିଲୁଁ ।୧୫।

ଏବଂ ଇବ୍ରାହିମ(ଙ୍କୁ ପଠାଇଥିଲୁଁ), ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ କହିଥିଲେ "ତୁମ୍ଭେମାନେ ପରମେଶ୍ୱରଙ୍କ ଉପାସନା କର ଏବଂ ତାଙ୍କୁହିଁ ଭୟକର, ଏହାହିଁ ତୁମ୍ଭମାନଙ୍କ ପାଇଁ ମଙ୍ଗଳଜନକ ଯଦି ତୁମ୍ଭେମାନେ ଜାଣିଥାଅ ।୧୬।

"ତୁମ୍ଭେମାନେ ପରମେଶ୍ୱରଙ୍କ ପରିବର୍ତ୍ତିରେ କେବଳ ପ୍ରତିମାମାନଙ୍କୁ ପୂଜା କରୁଅଛ ଏବଂ ଅସତ୍ୟ ରଚନା କରୁଅଛ; ନିଶ୍ଚୟ ତୁମ୍ଭେମାନେ ପରମେଶ୍ୱରଙ୍କ ପରିବର୍ତ୍ତିରେ ଯେଉଁମାନଙ୍କର ଉପାସନା କରୁଅଛ ସେମାନେ ତୁମ୍ଭମାନଙ୍କର ଜୀବିକାର ଅଧିକାରୀ ନୁହନ୍ତି; ଅତଏବ ତୁମ୍ଭେମାନେ ପରମେଶ୍ୱରଙ୍କ ନିକଟରୁ ଜୀବିକା ଅନୁସନ୍ଧାନ କର ଏବଂ ତାଙ୍କୁହିଁ ଉପାସନା କର ଏବଂ ତାଙ୍କର କୃତଜ୍ଞତା ସ୍ୱୀକାର କର ଏବଂ ତାଙ୍କର ଅଡକୁ ତୁମ୍ଭମାନଙ୍କୁ ଫେରିଯିବାକୁ ହେବ ।୧୭।

"ଏବଂ ଯଦି ତୁମ୍ଭେମାନେ (ଅମ୍ଭପ୍ରତି) ମିଥ୍ୟାରୋପକର, ତେବେ ନିଶ୍ଚୟ ତୁମ୍ଭମାନଙ୍କର ପୂର୍ବେ ମଧ୍ୟ ବହୁ ସମ୍ପ୍ରଦାୟ (ସେମାନଙ୍କ ଧର୍ମପ୍ରଚାରକମାନଙ୍କ ପ୍ରତି) ମିଥ୍ୟାରୋପ କରିଥିଲେ ଏବଂ ପ୍ରେରିତପୁରୁଷଙ୍କ ଉପରେ ପ୍ରକାଶ୍ୟ ପ୍ରଚାର ଛଡ଼ା ଅନ୍ୟକିଛି ଭାର ନାହିଁ" ।୧। ।

---

ପାପ ହୁଏ ତେବେ ତାହାର ଦାୟିତ୍ୱ ଅମ୍ଭେମାନେ ବହନ କରିବୁଁ ।" ଏହାର ଉତ୍ତରରେ ପରମେଶ୍ୱର କହୁଅଛନ୍ତି, "ସେମାନେ ମିଥ୍ୟାବାଦୀ; ଅନ୍ୟଲୋକର ପାପର ଦାୟିତ୍ୱ ବହନ କରିବାର ଅଧିକାର ସେମାନଙ୍କର ନାହିଁ । ଯେ ଦୋଷ କରିବ ସେ ସେଥିପାଇଁ ଦଣ୍ଡଭୋଗ କରିବ । ଜଣକର ଦୋଷପାଇଁ ଅନ୍ୟଜଣେ ଦଣ୍ଡଭୋଗ କରିବ ନାହିଁ । ମାତ୍ର ଅବିଶ୍ୱାସକାରୀମାନେ ଦ୍ୱିଗୁଣ ଦଣ୍ଡଭୋଗ କରିବେ । ନିଜେ ପଥଭ୍ରଷ୍ଟ ହେବା ଦ୍ୱାରା ଦୋଷ କରିଅଛନ୍ତି ସେଥିପାଇଁ ଦଣ୍ଡଭୋଗ କରିବେ ଏବଂ ନିଜର କୁମନ୍ତ୍ରଣାଦ୍ୱାରା ଅନ୍ୟଲୋକଙ୍କୁ ଯେ ପଥଭ୍ରଷ୍ଟ କରାଉଅଛନ୍ତି ସେଥିପାଇଁ ମଧ୍ୟ ସେମାନେ ଦଣ୍ଡଭୋଗ କରିବେ ।"

୧୪।୧୫ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ନୁହଙ୍କ ବିଷୟ ସଂକ୍ଷେପରେ ଦିଆଯାଇଅଛି । ସେ ବହୁକାଳ ଜୀବିତ ଥିଲେ । ତାଙ୍କର ବିସ୍ତୃତ ବିବରଣ ପୂର୍ବ ଅଧ୍ୟାୟମାନଙ୍କରେ ଦିଆଯାଇଅଛି ।

ଏହାକୁ=ଏହି ଘଟଣାକୁ ।

୧୬।୧୮ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଇବ୍ରାହିମଙ୍କ ବିଷୟ ସଂକ୍ଷେପରେ ଦିଆଯାଇଅଛି । ତାଙ୍କର ବିସ୍ତୃତ ବିବରଣ ପୂର୍ବ ଅଧ୍ୟାୟମାନଙ୍କରେ ଦିଆଯାଇଅଛି ।

ତେବେ କଅଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ, ପରମେଶ୍ୱର କିପରି ଏହି ସୃଷ୍ଟିକୁ ଆରମ୍ଭ କରିଅଛନ୍ତି, ତାପରେ ଏହାକୁ ପୁନଃ ପୁନଃ ସୃଷ୍ଟି କରୁଅଛନ୍ତି ? ନିଶ୍ଚୟ ଏହା ପରମେଶ୍ୱରଙ୍କ ପାଇଁ ଅତି ସହଜ । ୧୯ ।

ତୁମ୍ଭେ କୁହ, "ତୁମ୍ଭେମାନେ ପୃଥିବୀରେ ଭ୍ରମଣକରି ଦେଖ, କିପରି ସେ ଏହି ସୃଷ୍ଟିକୁ ଆରମ୍ଭ କରିଥିଲେ, ତାପରେ ପରମେଶ୍ୱର ପରବର୍ତ୍ତୀ ସୃଷ୍ଟିକୁ ସୃଜନ କରିବେ, ନିଶ୍ଚୟ ପରମେଶ୍ୱର ସର୍ବ ବିଷୟ ଉପରେ ଶକ୍ତିଶାଳୀ । ୨୦ ।

"ସେ ଯାହାକୁ ଇଚ୍ଛା ଦଣ୍ଡ ଦେଇଥାନ୍ତି ଏବଂ ଯାହାକୁ ଇଚ୍ଛା ଅନୁଗ୍ରହ କରିଥାଆନ୍ତି, ଏବଂ ତାଙ୍କରି ନିକଟକୁ ତୁମ୍ଭେମାନେ ଫେରିଯିବ । ୨୧ ।

"ଏବଂ ତୁମ୍ଭେମାନେ ପୃଥିବୀରେ କିମ୍ବା ଆକାଶରେ ପ୍ରତିରୋଧକାରୀ ହୋଇ ପାରିବ ନାହିଁ ଏବଂ ପରମେଶ୍ୱରଙ୍କ ବ୍ୟତୀତ ତୁମ୍ଭମାନଙ୍କ ପାଇଁ କେହି ଅଭିଭାବକ ବା ସାହାଯ୍ୟକାରୀ ନାହିଁ" । ୨୨ ।

## ୩ୟ ବିଭାଗ

ଏବଂ ଯେଉଁମାନେ ପରମେଶ୍ୱରଙ୍କର ନିଦର୍ଶନମାନଙ୍କରେ ଏବଂ ତାଙ୍କ ସହିତ ସାକ୍ଷାତ ବିଷୟରେ ଅବିଶ୍ୱାସ କରନ୍ତି, ସେହିମାନେ ଆମ୍ଭର ଅନୁଗ୍ରହରୁ ନିରାଶ ହେବେ ଏବଂ ସେହି ମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି । ୨୩ ।

ତାପରେ ତାଙ୍କର ସମ୍ପ୍ରଦାୟ ନିକଟରେ ଏହାଛଡ଼ା ଅନ୍ୟ କୌଣସି ଉତ୍ତର ନଥିଲା ଯେ ସେମାନେ କହିଥିଲେ, "ହୁଏତ ଏହାକୁ ହତ୍ୟାକର ଅଥବା ଏହାକୁ ଦଗ୍ଧ କର"; ତାପରେ ପରମେଶ୍ୱର ତାଙ୍କୁ ଅଗ୍ନିରୁ ରକ୍ଷା କରିଥିଲେ; ନିଶ୍ଚୟ ଏଥିରେ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି । ୨୪ ।

ଏବଂ ଇବ୍ରାହିମ କହିଥିଲେ, "ତୁମ୍ଭେମାନେ କେବଳ ପାର୍ଥିବ ଜୀବନରେ ପରସ୍ପର ବନ୍ଧୁତା ପାଇଁ ପରମେଶ୍ୱରଙ୍କ ପରିବର୍ତ୍ତିରେ ପ୍ରତିମାମାନଙ୍କୁ ଗ୍ରହଣ କରିଅଛ; ତାପରେ ପୁନରୁତ୍ଥାନ ଦିବସରେ ତୁମ୍ଭେମାନେ ପରସ୍ପରକୁ ଅସ୍ୱୀକାର କରିବ ଏବଂ ତୁମ୍ଭେମାନେ ପରସ୍ପରକୁ ଅଭିଶାପ କରିବ, ଏବଂ ନରକାଗ୍ନି ତୁମ୍ଭମାନଙ୍କର ବାସସ୍ଥାନ ହେବ ଏବଂ ତୁମ୍ଭମାନଙ୍କ ପାଇଁ କେହି ସାହାଯ୍ୟକାରୀ ହେବେ ନାହିଁ" । ୨୫ ।

ଏବଂ ଲୁତ ତାଙ୍କ ପ୍ରତି ବିଶ୍ୱାସ କରିଥିଲେ ଏବଂ କହିଥିଲେ, "ନିଶ୍ଚୟ ଆମ୍ଭେ ନିଜ ପାଳନକର୍ତ୍ତାଙ୍କ ଉଦ୍ଦେଶ୍ୟରେ ଦେଶ ତ୍ୟାଗ କରୁଅଛୁଁ; ନିଶ୍ଚୟ ସେ ମହାପରାକ୍ରାନ୍ତ ଓ ବିଜ୍ଞାନୀ" । ୨୬ ।

---

୧୯।୨୩ । ମହାପୁରୁଷ ନୁହ ଓ ମହାପୁରୁଷ ଇବ୍ରାହିମଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣନାକରି ପରମେଶ୍ୱର ଏହି ଶ୍ଳୋକମାନଙ୍କରେ ମକ୍କାବାସୀ ବିଧର୍ମୀମାନଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି, "ସର୍ବଶକ୍ତିମାନ ପରମେଶ୍ୱର ସଂସାରକୁ ସୃଷ୍ଟିକରିଅଛନ୍ତି ଏବଂ ମହାପ୍ରଳୟ ପରେ ଏହାକୁ ପୁନର୍ବାର ସୃଷ୍ଟିକରିବେ । ସେ ଯାହାକୁ ଇଚ୍ଛା ଦଣ୍ଡଦେଇ ପାରନ୍ତି ଏବଂ ଯାହାକୁ ଇଚ୍ଛା କ୍ଷମା କରିପାରନ୍ତି । ତାଙ୍କର ଇଚ୍ଛାର ବିରୁଦ୍ଧାଚରଣ କରିବାର କ୍ଷେତ୍ର ପୃଥିବୀରେ କିମ୍ବା ଆକାଶରେ କାହାରି ନାହିଁ । ଯେଉଁମାନେ ଅବିଶ୍ୱାସକରିବେ ସେମାନେ ପରଲୋକରେ କଠୋର ଶାସ୍ତି ଭୋଗ କରିବେ ।"

୨୪।୨୫ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଇବ୍ରାହିମଙ୍କ ଅବଶିଷ୍ଟ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି ।

୨୬ । ମହାପୁରୁଷ ଲୁତ ଇବ୍ରାହିମଙ୍କ ପୁତୁରା ଓ ସମସାମୟିକ ଥିଲେ । ସେ ଇବ୍ରାହିମଙ୍କ ଉପଦେଶ ଅନୁଯାୟୀ ପରମେଶ୍ୱରଙ୍କ ଉପରେ ବିଶ୍ୱାସସ୍ଥାପନ କରିଥିଲେ ଏବଂ ନିଜର ଦେଶ ତ୍ୟାଗ କରି ଯେଉଁ ସମ୍ପ୍ରଦାୟର ଲୋକମାନଙ୍କୁ ଉପଦେଶ ଦେବାପାଇଁ ପରମେଶ୍ୱର ତାଙ୍କୁ ଆଦେଶ କରିଥିଲେ ସେ ସ୍ଥାନକୁ ପ୍ରସ୍ଥାନ କରିଥିଲେ ।

ଏବଂ ଅମ୍ଭେ ତାଙ୍କୁ ଇସହାକ ଓ ୟାକୁବ୍ (ପୁତ୍ର ଓ ପୌତ୍ରରୂପେ) ଦାନ କରିଥିଲୁଁ ଏବଂ ତାଙ୍କର ବଂଶଧରମାନଙ୍କ ମଧ୍ୟରେ ଧର୍ମୋପଦେଷ୍ଟାର ପଦ ଓ ଧର୍ମଗ୍ରନ୍ଥ ପ୍ରଦାନ କରିଥିଲୁଁ ଏବଂ ଅମ୍ଭେ ଏହି ପୃଥିବୀରେ ତାଙ୍କୁ ତାଙ୍କର ପୁରସ୍କାର ଦେଇଥିଲୁଁ, ଏବଂ ନିଶ୍ଚୟ ସେ ପରଲୋକରେ ପୁଣ୍ୟବାନ ଲୋକମାନଙ୍କର ଅନ୍ତର୍ଗତ ହେବେ ।୨୭।

ଏବଂ ଲୂତ୍ ଯେତେବେଳେ ତାଙ୍କର ସମ୍ପ୍ରଦାୟକୁ କହିଥିଲେ, "ନିଶ୍ଚୟ ତୁମ୍ଭେମାନେ ଅଶ୍ଳୀଳ କାର୍ଯ୍ୟ କରୁଅଛ ଯାହା ତୁମ୍ଭମାନଙ୍କ ପୂର୍ବେ ଏହି ଜଗତରେ କେହି କରିନାହିଁ ।୨୮।

"ତେବେ କଅଣ ତୁମ୍ଭେମାନେ ପୁରୁଷମାନଙ୍କ ଉପରେ ଉପସ୍ଥିତ ହେଉଅଛ ଏବଂ ଡକାୟତି କରୁଅଛ ଏବଂ ତୁମ୍ଭେମାନେ ତୁମ୍ଭମାନଙ୍କ ସଭାରେ ଅସିଦ୍ଧକାର୍ଯ୍ୟ କରୁଅଛ"? କିନ୍ତୁ ତାଙ୍କ ସମ୍ପ୍ରଦାୟର ଏହାଛଡ଼ା ଅନ୍ୟ କୌଣସି ଉତ୍ତର ନଥିଲା ଯେ ସେମାନେ କହିଥିଲେ, "ଯଦି ତୁମ୍ଭେ ସତ୍ୟବାଦୀମାନଙ୍କର ଅନ୍ତର୍ଗତ ଥାଅ ତେବେ ଅମ୍ଭମାନଙ୍କ ଉପରେ ପରମେଶ୍ୱରଙ୍କ ଶାସ୍ତି ଅଣ"।୨୯।

ସେ କହିଥିଲେ, "ହେ ଅମ୍ଭର ପାଳନକର୍ତ୍ତା। ତୁମ୍ଭେ ଦୁଷ୍କର୍ମକାରୀ ସମ୍ପ୍ରଦାୟର ଅଶ୍ଳୀଳତା ଓ ଅନାଗୃହରୁ ରକ୍ଷାପାଇଁ ଅମ୍ଭକୁ ସାହାଯ୍ୟ କର" ।୩୦।

## ୪ର୍ଥ ବିଭାଗ

ଏବଂ ଯେତେବେଳେ ଅମ୍ଭର ପ୍ରେରିତ ଦୂତମାନେ ସୁସମ୍ବାଦ ସହିତ ଇବ୍ରାହିମଙ୍କ ନିକଟ ଅସି କହିଥିଲେ, "ଅମ୍ଭେମାନେ ନିଶ୍ଚୟ ଏହି ନଗରର ଅଧିବାସୀମାନଙ୍କୁ ଧ୍ୱଂସ କରିବାକୁ ଅସିଅଛୁଁ; ନିଶ୍ଚୟ ଏହାର ଅଧିବାସୀମାନେ ଅତ୍ୟାଗୃହୀ" ।୩୧।

ଇବ୍ରାହିମ୍ କହିଥିଲେ, "ନିଶ୍ଚୟ ଏହାମଧ୍ୟରେ ଲୂତ୍ ରହି ଅଛନ୍ତି;" ସେମାନେ କହିଥିଲେ, "ସେ ଯେ ଏହା ମଧ୍ୟରେ ଅଛନ୍ତି ତାହା ଅମ୍ଭେମାନେ ଭଲରୂପେ ଜାଣୁଁ; ଅମ୍ଭେମାନେ ତାଙ୍କର ସ୍ତ୍ରୀ ବ୍ୟତୀତ ତାଙ୍କୁ ଓ ତାଙ୍କର ପରିବାରମାନଙ୍କୁ ଉଦ୍ଧାର କରିନେବୁଁ, ସେ ସ୍ତ୍ରୀ ପଶ୍ଚାତବର୍ତ୍ତୀମାନଙ୍କ ମଧ୍ୟରେ ରହିବ" ।୩୨।

ଏବଂ ଯେତେବେଳେ ଅମ୍ଭର ଦୂତମାନେ ଲୂତ୍‌ଙ୍କ ନିକଟ ଅସିଥିଲେ ସେତେବେଳେ ଲୂତ୍ ସେମାନଙ୍କ ପାଇଁ ଦୁଃଖିତ ହୋଇଥିଲେ ଏବଂ ସେମାନଙ୍କ କାର୍ଯ୍ୟ ସମ୍ବନ୍ଧରେ ସେ ସଙ୍କୁଚିତ ହୋଇଥିଲେ, ଏବଂ ସେମାନେ କହିଥିଲେ, "ତୁମ୍ଭେ ଭୀତ ହୁଅନା ଓ ଦୁଃଖିତ ହୁଅନା, ନିଶ୍ଚୟ ଅମ୍ଭେମାନେ ତୁମ୍ଭର ସ୍ତ୍ରୀ ବ୍ୟତୀତ ତୁମ୍ଭକୁ ଓ ତୁମ୍ଭର ପରିବାରମାନଙ୍କୁ ଉଦ୍ଧାର କରିନେବୁଁ, ସେ ସ୍ତ୍ରୀ ପଶ୍ଚାତବର୍ତ୍ତୀମାନଙ୍କ ମଧ୍ୟରେ ରହିବ ।୩୩।

---

୨୭ । ତାଙ୍କୁ-ଇବ୍ରାହିମଙ୍କୁ । ଇସହାକ ଇବ୍ରାହିମଙ୍କ ପୁତ୍ର । ୟାକୁବ-ଇସହାକଙ୍କ ପୁତ୍ର; ୟାକୁବଙ୍କୁ ଇସରାଇଲ ମଧ୍ୟ କହନ୍ତି ।

୨୮।୩୦ । ଏହି ଶ୍ଳୋକମାନଙ୍କରେ ମହାପୁରୁଷ ଲୂତଙ୍କ ବିଷୟ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ପୂର୍ବ ଅଧ୍ୟାୟ ମାନଙ୍କରେ ତାଙ୍କର ବିସ୍ତୃତ ବିବରଣ ଦିଆଯାଇଅଛି ।

୨୯ । ପୁରୁଷମାନଙ୍କ ଉପରେ ଉପସ୍ଥିତ=ପୁରୁଷମାନଙ୍କ ସଙ୍ଗେ ପୁରୁଷର ବ୍ୟବହାର ।

୩୧ । ପ୍ରେରିତ ଦୂତମାନେ—ପରମେଶ୍ୱରଙ୍କ ଦ୍ୱାରା ପ୍ରେରିତ ସ୍ୱର୍ଗଦୂତମାନେ । ସୁସମ୍ବାଦ—ଏହି ଅଧ୍ୟାୟ ୨୭ଶ୍ଳୋକରେ ବର୍ଣ୍ଣିତ ଇସହାକ ଓ ୟାକୁବଙ୍କ ଜନ୍ମବିଷୟ । ଏହିନଗର—ସଦମନଗର ।

୩୨ । ଏହାମଧ୍ୟରେ ଲୂତ ରହିଅଛନ୍ତି=ଏହି ସଦମ ନଗରରେ ଅମ୍ଭର ପୁରୁଷ ଲୂତ ରହିଅଛନ୍ତି; ମାତ୍ର ସେତ ଅତ୍ୟାଗୃହୀ ନୁହନ୍ତି । ସେ ସ୍ତ୍ରୀ ପଶ୍ଚାତବର୍ତ୍ତୀମାନଙ୍କ ମଧ୍ୟରେ ରହିବ—ଲୂତଙ୍କ ସ୍ତ୍ରୀ ଦୁରାଗୃହୀ ଲୋକମାନଙ୍କ ସଙ୍ଗରେ ପଛରେ ରହି ଧ୍ୱଂସ ପ୍ରାପ୍ତ ହେବ ।

"ନିଶ୍ଚୟ ଅମ୍ଭେମାନେ ଏହି ନଗରର ଅଧିବାସୀମାନଙ୍କ ଉପରେ ଅକାଶରୁ ଶାସ୍ତି ଅବତରଣକାରୀ, କାରଣ ସେମାନେ ଦୁଷ୍କର୍ମ କରିଥାଆନ୍ତି ।୩୪।

ଏବଂ ନିଶ୍ଚୟ ଅମ୍ଭେ ବୁଦ୍ଧିମାନ ସମ୍ପ୍ରଦାୟ ପାଇଁ ଏହା ମଧ୍ୟରେ ପ୍ରକାଶ୍ୟ ନିଦର୍ଶନ ରଖି ଦେଇଅଛୁଁ ।୩୫।

ଏବଂ ମଦାୟେନବାସୀମାନଙ୍କ ପ୍ରତି ସେମାନଙ୍କ ଭାଇ ଶୋଏବ (ପ୍ରେରିତ ହୋଇ ଥିଲେ), ସେ କହିଥିଲେ, "ହେ ଅମର ସମ୍ପ୍ରଦାୟ ! ତୁମ୍ଭେମାନେ ପରମେଶ୍ୱରଙ୍କର ଉପାସନା କର ଏବଂ ପାରଲୌକିକ ଶୁଭ କାମନା କର ଏବଂ ପୃଥିବୀରେ ଅଶାନ୍ତି ଜାତ କରନା" ।୩୬।

କିନ୍ତୁ ସେମାନେ ତାଙ୍କପ୍ରତି ମିଥ୍ୟାରୋପ କରିଥିଲେ; ସେଥିପାଇଁ ସେମାନଙ୍କୁ ଭୂମିକମ୍ପ ଆକ୍ରମଣ କରିଥିଲା, ସୁତରାଂ ପ୍ରଭାତରେ ସେମାନେ ନିଜ ନିଜ ଘରେ ମୁହଁ ମାଡ଼ି କାଳଗ୍ରାସରେ ପତିତ ହୋଇଥିଲେ ।୩୭।

ଏବଂ ଆଦ୍ ଓ ସମୁଦ୍ (ସମ୍ପ୍ରଦାୟକୁ ଆମ୍ଭେ ଧ୍ୱଂସ କରିଥିଲୁଁ) ଏବଂ ନିଶ୍ଚୟ ସେମାନଙ୍କର ବାସସ୍ଥାନ ମାନ (ର ଭଗ୍ନାବଶେଷ) ତୁମ୍ଭମାନଙ୍କ ଜାଣିବା ପାଇଁ ପ୍ରକାଶିତ ରହିଅଛି, ଏବଂ ସଏତାନ ସେମାନଙ୍କ ପାଇଁ ସେମାନଙ୍କର କୃତକାର୍ଯ୍ୟମାନ (ମନୋରମ) କରିଥିଲା, ତା ପରେ ସେ ସେମାନଙ୍କୁ ସୁପଥରୁ ପ୍ରତିରୋଧ କରିଥିଲା, ଯଦିଚ ସେମାନେ ଦୃଷ୍ଟିଶକ୍ତି ସମ୍ପନ୍ନ ଥିଲେ ।୩୮।

ଏବଂ (ସେହିପରି ଅମ୍ଭେ) କାରୁନ ଓ ଫେରଅଉନ୍ ଓ ହାମାନ୍ (କୁ ଧ୍ୱଂସ କରିଥିଲୁ,) ଏବଂ ନିଶ୍ଚୟ ମୂସା ସେମାନଙ୍କ ନିକଟ ପ୍ରକାଶ୍ୟ ପ୍ରମାଣ ସହିତ ଉପସ୍ଥିତ ହୋଇଥିଲେ, କିନ୍ତୁ ସେମାନେ ପୃଥିବୀରେ ଅହଙ୍କାର କରିଥିଲେ, ଏବଂ ସେମାନେ ଆମ୍ଭକୁ ବଳି ଯାଇ ପାରି ନଥିଲେ ।୩୯।

ତାପରେ ଅମ୍ଭେ ସେମାନଙ୍କର ପ୍ରତ୍ୟେକକୁ ତାହାର ଅପରାଧ ପାଇଁ ଧରିଥିଲୁଁ; ସେମାନଙ୍କ ମଧ୍ୟରୁ କାହାରି ଉପରେ ଶିଳାବର୍ଷଣ କରିଥିଲୁଁ ଏବଂ ସେମାନଙ୍କ ମଧ୍ୟରୁ କାହାକୁ ବଜ୍ରଧ୍ୱନି ଆକ୍ରମଣ କରିଥିଲା ଏବଂ ସେମାନଙ୍କ ମଧ୍ୟରୁ କାହାକୁ ପୃଥିବୀ ଗର୍ଭସାତ କରି ଦେଇଥିଲା ଏବଂ ସେମାନଙ୍କ ମଧ୍ୟରୁ କାହାରିକୁ ଜଳମଗ୍ନ କରି ଦେଇଥିଲୁଁ, ଏବଂ ପରମେଶ୍ୱର ଏପରି ନୁହନ୍ତି ଯେ ସେ ସେମାନଙ୍କ ପ୍ରତି ଅତ୍ୟାଚାର କରିଥିଲେ, କିନ୍ତୁ ସେମାନେ ନିଜପ୍ରତି ଅତ୍ୟାଚାର କରିଥିଲେ ।୪୦।

ଯେଉଁମାନେ ପରମେଶ୍ୱରଙ୍କ ପରିବର୍ତ୍ତିରେ ଅନ୍ୟ ଅଭିଭାବକ ଗ୍ରହଣ କରନ୍ତି ସେମାନଙ୍କର ଉପମା ମାଙ୍କଡସା ପରି ଯେ ନିଜ ପାଇଁ ଘରଟିଏ କରେ, ଏବଂ ନିଶ୍ଚୟ ସମସ୍ତଘର ଅପେକ୍ଷା ମାଙ୍କଡସାର ଘର ଅଧିକତର ଭଙ୍ଗୁର, ଯଦି ସେମାନେ ଏହା ଜାଣନ୍ତେ ।୪୧।

---

୩୬।୪୦ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱର ମହାପୁରୁଷ ଶୋଏବ ଓ ତାଙ୍କର ସମ୍ପ୍ରଦାୟ ମଦାୟେନ ଏବଂ ଅଦ ଓ ସମୁଦ ସମ୍ପ୍ରଦାୟ ଏବଂ ମହାପୁରୁଷ ମୂସା ଓ ତାଙ୍କର ସମସାମୟିକ କାରୁନ, ଫେରଅଉନ ଓ ହାମାନର ବିଷୟ ସଂକ୍ଷେପରେ ବର୍ଣ୍ଣନା କରି ସେମାନଙ୍କର ଅବାଧ୍ୟତା ହେତୁ ଶାସ୍ତି ପ୍ରଦାନ କରିଥିବା ଉଲ୍ଲେଖ କରିଅଛନ୍ତି । ସେମାନଙ୍କର ବିସ୍ତୃତ ବିବରଣ ପୂର୍ବ ଅଧ୍ୟାୟମାନଙ୍କରେ ଦିଆ ଯାଇଅଛି ।

୩୯ । ହାମାନ=ଫେରଅଉନଙ୍କ ମନ୍ତ୍ରୀ । ବଳିଯାଇ ପାରି ନଥିଲେ=ଅମ୍ଭ ଶାସ୍ତିରୁ ରକ୍ଷା ପାଇ ଯାଇ ନ ଥିଲେ ।

୩୮ । ଦୃଷ୍ଟିଶକ୍ତି ସମ୍ପନ୍ନଥିଲେ=ସେମାନଙ୍କ ଚକ୍ଷୁ ଥାଇ ମଧ୍ୟ ଅନ୍ଧ ହୋଇ ଥିଲେ । କାରଣ ସେମାନେ ସତ୍ୟପଥ ଦେଖୁଥିଲେ ନାହିଁ କିମ୍ବା ତାହା ଅବଲମ୍ବନ କଲେ ନାହିଁ ।

୪୧ । ପୂର୍ବବର୍ତ୍ତୀ ଅବିଶ୍ୱାସକାରୀମାନଙ୍କର ଅବାଧ୍ୟତା ହେତୁ ସେମାନଙ୍କର ଶୋଚନୀୟ ପରିଣାମ ବିଷୟ ସ୍ମରଣ କରାଇଦେଇ ପରମେଶ୍ୱର ଏହି ଶ୍ଳୋକରେ ଅବିଶ୍ୱାସକାରୀ ଅଂଶୀବାଦୀମାନଙ୍କର ଭ୍ରାନ୍ତଧାରଣାକୁ ମାଙ୍କଡସାର

ସେମାନେ ପରମେଶ୍ୱରଙ୍କ ପରିବର୍ତ୍ତରେ ଯେଉଁସବୁ ବିଷୟକୁ ଆହ୍ୱାନ କରି ଥାଆନ୍ତି ପରମେଶ୍ୱର ତାହା ଜାଣନ୍ତି, ଏବଂ ସେ ମହା ପରାକ୍ରାନ୍ତ ଓ ବିଜ୍ଞାନୀ ।୪୨।

ଏବଂ ଆମ୍ଭେ ମନୁଷ୍ୟମାନଙ୍କ ପାଇଁ ଏହି ଉପମା ସବୁ ବର୍ଣ୍ଣନା କରିଅଛୁଁ, ଏବଂ ଜ୍ଞାନବାନ ବ୍ୟକ୍ତିଛଡ଼ା ଅତି କେହି ଏହାକୁ ହୃଦୟଙ୍ଗମ କରି ପାରେନାହିଁ ।୪୩।

ପରମେଶ୍ୱର ସତ୍ୟସହିତ ଆକାଶ ଓ ପୃଥିବୀକୁ ସୃଷ୍ଟିକରି ଅଛନ୍ତି, ନିଶ୍ଚୟ ଏଥିରେ ବିଶ୍ୱାସକାରୀ-ମାନଙ୍କ ପାଇଁ ନିଦର୍ଶନ ରହିଅଛି ।୪୪।

## ଏକବିଂଶ ଭାଗ

### ୫ମ ବିଭାଗ

( ହେ ମୋହମ୍ମଦ ) ଗ୍ରନ୍ଥରୁ ଯାହା ତୁମ୍ଭପ୍ରତି ଅବତୀର୍ଣ୍ଣ ହୋଇଅଛି ତୁମ୍ଭେ ତାହା ପାଠକର ଏବଂ ଆରାଧନା ପ୍ରତିଷ୍ଠିତ କର; ନିଶ୍ଚୟ ଆରାଧନା ଅଶ୍ଳୀଳ କାର୍ଯ୍ୟ ଓ ମନ୍ଦକାର୍ଯ୍ୟରୁ ରକ୍ଷାକରେ; ଏବଂ ନିଶ୍ଚୟ ପରମେଶ୍ୱରଙ୍କୁ ସ୍ମରଣ କରିବା ସର୍ବୋତ୍କୃଷ୍ଟ କାର୍ଯ୍ୟଅଟେ; ଏବଂ ତୁମ୍ଭେମାନେ ଯାହାକର ପରମେଶ୍ୱର ତାହା ଜାଣନ୍ତି ।୪୫।

ଏବଂ (ହେ ମୁସଲମାନମାନେ) ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଯେଉଁମାନେ ଅତ୍ୟାଚାର କରି ଅଛନ୍ତି ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ସହିତ ସର୍ବୋତ୍କୃଷ୍ଟ ଉପାୟ ଛଡ଼ା ଯୁକ୍ତିତର୍କ କରନା ଏବଂ ତୁମ୍ଭେମାନେ କୁହ, "ଆମ୍ଭେମାନେ ସେହି ବସ୍ତୁ ଉପରେ ବିଶ୍ୱାସ କରିଅଛୁଁ ଯାହା ଆମ୍ଭମାନଙ୍କ ଉପରେ ଅବତୀର୍ଣ୍ଣ ହୋଇଅଛି ଏବଂ ତୁମ୍ଭମାନଙ୍କ ଉପରେ ଅବତୀର୍ଣ୍ଣ ହୋଇଅଛି ଏବଂ ଆମ୍ଭମାନଙ୍କର ଉପାସ୍ୟ ଓ ତୁମ୍ଭମାନଙ୍କର ଉପାସ୍ୟ ଏକ ଏବଂ ଆମ୍ଭେମାନେ ତାଙ୍କନିକଟରେ ଆତ୍ମସମର୍ପଣ କରିଅଛୁଁ ।୪୬।

---

ଛଅରି ଜାଲ ସଙ୍ଗେ ତୁଳନା କରି ପ୍ରକାଶ କରୁଅଛନ୍ତି, ଯେପରି ମାଙ୍କଡ଼ଶା ନିଜପାଇଁ ପ୍ରସ୍ତୁତ କରିଥିବା ଘର ନିତାନ୍ତ ଦୁର୍ବଳ, ଭଙ୍ଗପ୍ରବଣ, ଭିତ୍ତିହୀନ ଓ କ୍ଷଣସ୍ଥାୟୀ ଏବଂ ସାମାନ୍ୟ ପବନର ଆଘାତରେ କିମ୍ବା ସୂର୍ଯ୍ୟର ଆଲୋକରେ ନଷ୍ଟ ହୋଇଯାଏ, ସେହିପରି ଅବିଶ୍ୱାସକାରୀ ଅଂଶୀବାଦୀମାନଙ୍କର ଭ୍ରାନ୍ତଧାରଣା ଓ କୁସଂସ୍କାରମାନ ସମ୍ପୂର୍ଣ୍ଣ ମିଥ୍ୟା ଓ ଭିତ୍ତିହୀନ ଏବଂ ସତ୍ୟ ସନାତନ ଧର୍ମର ଆଲୋକ ନିକଟରେ ତାହା ଛିଡ଼ିରହିବା ସମ୍ଭବ ନୁହେଁ । ମାତ୍ର ସାଧାରଣ ଲୋକମାନେ ଏ ବିଷୟରେ ଚିନ୍ତା କରନ୍ତି ନାହିଁ ।

୪୩ । ଜ୍ଞାନୀଲୋକମାନେ ପରମେଶ୍ୱରଙ୍କ ଦ୍ୱାରା ବର୍ଣ୍ଣିତ ଉପମାମାନଙ୍କ ବିଷୟରେ ଚିନ୍ତା କରି ତାହା ହୃଦୟଙ୍ଗମ କରି ସତ୍ୟ ଗ୍ରହଣ କରନ୍ତି । ସୁତରାଂ ଏହି ଉପମାମାନଙ୍କ ବିଷୟରେ ଚିନ୍ତା କରିବା ଏବଂ ସତ୍ୟ ଗ୍ରହଣ କରିବା ଲୋକମାନଙ୍କର କର୍ତ୍ତବ୍ୟ ଅଟେ ।

୪୫ । ପରମେଶ୍ୱରଙ୍କୁ ଆରାଧନା ଆରାଧନାକାରୀକୁ ଅଶ୍ଳୀଳ ଓ ମନ୍ଦ କାର୍ଯ୍ୟରୁ ରକ୍ଷା କରେ । ଏଥିପାଇଁ ଆରାଧନା କରିବାର ଆଦେଶ କରାଯାଇଅଛି ।

୪୬ । ଏହି ଶ୍ଳୋକରେ ଗ୍ରନ୍ଥଧାରୀ ଇହୁଦୀ ଓ ଖ୍ରୀଷ୍ଟାନମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସ କରି ପ୍ରକାଶ୍ୟ ଅତ୍ୟାଚାର କରୁଅଛନ୍ତି ସେମାନଙ୍କ ଛଡ଼ା ଯେଉଁମାନେ ନ୍ୟାୟପରାୟଣ ସେମାନଙ୍କ ସହିତ ଭଦ୍ର ଭାବରେ ଯୁକ୍ତିତର୍କ କରିବା ପାଇଁ ଆଦେଶ କରାଯାଇଅଛି ଯେପରି ସେମାନେ ସବୁ ବିଷୟ ହୃଦୟଙ୍ଗମ କରିପାରିବେ ।

ଏବଂ (ହେ ମୋହମ୍ମଦ) ଏହିପରି ଅମ୍ଭେ ତୁମ୍ଭ ନିକଟରେ ଗ୍ରନ୍ଥ ଅବତୀର୍ଣ୍ଣ କରି ଅଛୁଁ ସୁତରାଂ ଅମ୍ଭେ ଯେଉଁମାନଙ୍କୁ ଗ୍ରନ୍ଥ ଦେଇଅଛୁଁ ସେମାନେ ଏଥିରେ ବିଶ୍ୱାସ କରୁଅଛନ୍ତି, ଏବଂ ଏମାନଙ୍କ ମଧ୍ୟରୁ କେହି କେହି ଏହାପ୍ରତି ବିଶ୍ୱାସ କରୁ ଅଛନ୍ତି; ଏବଂ ଅବିଶ୍ୱାସକାରୀମାନଙ୍କ ଛଡ଼ା ଅଉ କେହି ଅମ୍ଭର ନିଦର୍ଶନମାନଙ୍କୁ ଅସ୍ୱୀକାର କରନ୍ତି ନାହିଁ ।୪୭।

ଏବଂ ତୁମ୍ଭେ ଏଥିପୂର୍ବେ କୌଣସି ପୁସ୍ତକ ପାଠ କରି ନାହଁ କିମ୍ବା ତୁମ୍ଭର ଡାହାଣ ହାତ ଦ୍ୱାରା ମଧ୍ୟ ଲେଖିନାହଁ, ତାହା ହୋଇଥିଲେ ମିଥ୍ୟାବାଦୀମାନେ ସନ୍ଦେହ କରି ପାରନ୍ତେ ।୪୮।

ବରଂ ଯେଉଁମାନଙ୍କୁ ଜ୍ଞାନ ଦିଆଯାଇଅଛି ସେମାନଙ୍କ ହୃଦୟରେ ଏହା ପରିଷ୍କାର ଅଦେଶ ବାଣୀ ସ୍ୱରୂପ; ଏବଂ ଅତ୍ୟାଚାରୀମାନଙ୍କ ଛଡ଼ା ଅମ୍ଭର ନିଦର୍ଶନମାନଙ୍କୁ ଅଉ କେହି ଅସ୍ୱୀକାର କରନ୍ତି ନାହିଁ ।୪୯।

ଏବଂ ସେମାନେ କହନ୍ତି,"ତାଙ୍କ ପାଳନକର୍ତ୍ତାଙ୍କ ନିକଟରୁ କାହିଁକି ତାଙ୍କ ଉପରେ ନିଦର୍ଶନମାନ ଅବତୀର୍ଣ୍ଣ ହେଉ ନାହିଁ ?" ତୁମ୍ଭେ କୁହ; "ନିଦର୍ଶନମାନ କେବଳ ପରମେଶ୍ୱରଙ୍କ ନିକଟରେ ଏବଂ ଅମ୍ଭେ କେବଳ ଜଣେ ପ୍ରକାଶ୍ୟ ଭୟ ପ୍ରଦର୍ଶନକାରୀ" ।୫୦।

ଏହା କଅଣ ସେମାନଙ୍କ ପାଇଁ ଯଥେଷ୍ଟ ହୋଇନାହିଁ ଯେ ଅମ୍ଭେ ତୁମ୍ଭ ପ୍ରତି ଗ୍ରନ୍ଥ ଅବତୀର୍ଣ୍ଣକରିଅଛୁଁ ଯାହା ସେମାନଙ୍କ ନିକଟରେ ପଢ଼ାଯାଉଅଛି ? ନିଶ୍ଚୟ ଯେଉଁମାନେ ବିଶ୍ୱାସ ସ୍ଥାପନ କରି ଅଛନ୍ତି ସେହି ସମ୍ପ୍ରଦାୟ ପାଇଁ ଏଥିରେ ଦୟା ଓ ଉପଦେଶ ରହିଅଛି ।୫୧।

## ଷଷ୍ଠ ବିଭାଗ

ତୁମ୍ଭେ କୁହ,"ଅମ୍ଭ ମଧ୍ୟରେ ଓ ତୁମ୍ଭମାନଙ୍କ ମଧ୍ୟରେ ପରମେଶ୍ୱର ସାକ୍ଷୀ ସ୍ୱରୂପ ଯଥେଷ୍ଟ, ଅକାଶ ଓ ପୃଥିବୀ ମଧ୍ୟରେ ଯାହା କିଛି ଅଛି ସେ ତାହା ଜାଣନ୍ତି, ଏବଂ ଯେଉଁମାନେ ମିଥ୍ୟା ଉପରେ ବିଶ୍ୱାସ କରନ୍ତି ଏବଂ ପରମେଶ୍ୱରଙ୍କ ଉପରେ ଅବିଶ୍ୱାସ କରନ୍ତି ସେହିମାନେହିଁ କ୍ଷତିଗ୍ରସ୍ତ ।" ୫୨।

ଏବଂ ସେମାନେ ଶାସ୍ତି ଶୀଘ୍ର ହେବାପାଇଁ ତୁମ୍ଭକୁ କହୁ ଅଛନ୍ତି, କିନ୍ତୁ ଯଦି ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ନିର୍ଦ୍ଧାରିତ ହୋଇ ନ ଥାଆନ୍ତା ତେବେ ନିଶ୍ଚୟ ସେମାନଙ୍କ ନିକଟ ଶାସ୍ତି ଅସନ୍ତା; ଏବଂ ନିଶ୍ଚୟ ସେମାନଙ୍କ ନିକଟ ଶାସ୍ତି ହଠାତ୍ ଉପସ୍ଥିତ ହେବ ଏବଂ ସେମାନେ ଏହା ଜାଣି ପାରିବେ ନାହିଁ ।୫୩।

---

୪୭ । ଏହିପରି—ଅର୍ଥାତ୍ ପୂର୍ବ ଗ୍ରନ୍ଥମାନଙ୍କର ସତ୍ୟତା ସମ୍ପାଦନ କରି ।
ଯେଉଁମାନଙ୍କୁ ଗ୍ରନ୍ଥ ଦେଇଅଛୁଁ—ଇହୁଦୀ ଓ ଖ୍ରୀଷ୍ଟାନ ସମ୍ପ୍ରଦାୟ ।
ଏମାନଙ୍କ ମଧ୍ୟରୁ—ମକ୍କାବାସୀ ଅଂଶୀବାଦୀମାନଙ୍କ ମଧ୍ୟରୁ, ଯେଉଁମାନଙ୍କ ନିକଟରେ ପୂର୍ବେ କୌଣସି ଗ୍ରନ୍ଥ ଅବତୀର୍ଣ୍ଣ ହୋଇନଥିଲା ।

୪୮ । ମହାପୁରୁଷ ମୋହମ୍ମଦ ଲେଖା ପଢ଼ା ଜାଣି ନଥିଲେ । ସୁତରାଂ କୋରାନ ଗ୍ରନ୍ଥକୁ ସେ ନିଜେ ରଚନା କରିଅଛନ୍ତି ଏପରି କହିବାନିତାନ୍ତ ଅଳୀକ ଓ ଅନ୍ୟାୟ ।

୫୦ । ପରମେଶ୍ୱରଙ୍କ ନିକଟରେ—ପରମେଶ୍ୱରଙ୍କ ଇଚ୍ଛାଧୀନ ।

୫୩ ପରମେଶ୍ୱର ଶାସ୍ତି ଦେବାରେ ତର ତର ହୁଅନ୍ତି ନାହିଁ । ସେ ପ୍ରଥମେ ଲୋକମାନଙ୍କୁ ଅବକାଶ ଦେଇଥାନ୍ତି । ୨୨ ଅଧ୍ୟାୟ ୪୭ ଶ୍ଳୋକ ଦେଖ ।

ସେମାନେ ଶାସ୍ତି ଶୀଘ୍ର ହେବା ପାଇଁ ତୁମ୍ଭଙ୍କୁ କହୁ ଅଛନ୍ତି; ଏବଂ ନିଶ୍ଚୟ ନରକାଗ୍ନି ଅବିଶ୍ୱାସକାରୀମାନଙ୍କୁ ବେଷ୍ଟନ କରିବ ।୫୪।

ଯେଉଁଦିନ ଶାସ୍ତି ସେମାନଙ୍କ ଉପରୁ ଏବଂ ସେମାନଙ୍କ ପାଦ ତଳୁ ସେମାନଙ୍କୁ ବେଷ୍ଟନ କରିବ ଏବଂ ସେ କହିବେ, "ତୁମ୍ଭେମାନେ ଯାହା କରୁଥିଲ ତାହା ଆସ୍ୱାଦନ କର" ।୫୫।

ହେ ଆମ୍ଭର ସେବକମାନେ, ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛ, ନିଶ୍ଚୟ ଆମ୍ଭର ପୃଥିବୀ ପ୍ରଶସ୍ତ ରହିଅଛି, ସୁତରାଂ ତୁମ୍ଭେମାନେ (ଯେଉଁଠାରେ ଥାଅ) ଆମ୍ଭର ଉପାସନା କର ।୫୬।

ପ୍ରତ୍ୟେକ ଜୀବ ମୃତ୍ୟୁ ଆସ୍ୱାଦନ କରିବ; ତାପରେ ତୁମ୍ଭେମାନେ ଆମ୍ଭ ନିକଟକୁ ଫେରିଯିବ ।୫୭।

ଏବଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଏବଂ ଭଲକାର୍ଯ୍ୟ କରୁଅଛନ୍ତି ଆମ୍ଭେ ଅବଶ୍ୟ ସେମାନଙ୍କୁ ସ୍ୱର୍ଗୋଦ୍ୟାନରେ ଉନ୍ନତ ବାସସ୍ଥାନମାନ ଦେବୁ ଯାହାର ନିମ୍ନରେ ନଦୀମାନ ବହୁଅଛି ସେମାନେ ସେଠାରେ ସବୁଦିନ ରହିବେ; ଏହା ଉତ୍ତମ ପୁରସ୍କାର ସେହି ସାଧକମାନଙ୍କ ପାଇଁ ।୫୮।

ଯେଉଁମାନେ ଧୈର୍ଯ୍ୟଧାରଣ କରନ୍ତି ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କ ଉପରେ ନିର୍ଭର କରନ୍ତି ।୫୯।

ଏବଂ (ପୃଥିବୀରେ) ବହୁ ବିଚରଣକାରୀ ଜୀବ ଅଛନ୍ତି ଯେଉଁମାନେ ନିଜର ଜୀବିକା ବହନ କରନ୍ତି ନାହିଁ, ପରମେଶ୍ୱର ସେମାନଙ୍କୁ ଏବଂ ତୁମ୍ଭମାନଙ୍କୁ ଜୀବିକା ଦେଉଅଛନ୍ତି; ଏବଂ ସେ ଶ୍ରବଣକାରୀ ଓ ଅଭିଜ୍ଞ ।୬୦।

ଏବଂ ଯଦି ତୁମ୍ଭେମାନେ ସେମାନଙ୍କୁ ପ୍ରଶ୍ନ କର ଯେ କିଏ ଆକାଶକୁ ଓ ପୃଥିବୀକୁ ସୃଷ୍ଟିକରିଅଛି ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଆଜ୍ଞାବହ କରିଅଛି, ସେମାନେ ନିଶ୍ଚୟ କହିବେ ଯେ ପରମେଶ୍ୱର କରିଅଛନ୍ତି, ତେବେ ସେମାନେ କାହିଁକି (ସତ୍ପଥରୁ) ଫେରିଯାଉଅଛନ୍ତି ? ୬୧ ।

ପରମେଶ୍ୱର ନିଜ ସେବକମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛାକରନ୍ତି ତାହାର ଜୀବିକା ପ୍ରଶସ୍ତ କରନ୍ତି ଏବଂ ଯାହାକୁ ଇଚ୍ଛା କରନ୍ତି ତାହାର ଜୀବିକା ସଙ୍କୀର୍ଣ୍ଣ କରନ୍ତି; ନିଶ୍ଚୟ ପରମେଶ୍ୱର ସମସ୍ତ ବିଷୟରେ ଅଭିଜ୍ଞ ।୬୨।

---

୫୫। ସେମାନଙ୍କ ଉପରୁ ଏବଂ ସେମାନଙ୍କ ପାଦ ତଳୁ—ଆପାଦ ମସ୍ତକ । ସେ କହିବେ—ପରମେଶ୍ୱର କହିବେ ।

୫୬। ଅବିଶ୍ୱାସକାରୀ ବିଧର୍ମୀମାନଙ୍କ ଅତ୍ୟାଚାରରୁ ନିଷ୍କୃତିରେ ରହି ପରମେଶ୍ୱରଙ୍କ ଉପାସନା କରିବା ଉଦ୍ଦେଶ୍ୟରେ ପ୍ରକୃତ ବିଶ୍ୱାସକାରୀ ଭକ୍ତମାନଙ୍କୁ ଜନ୍ମଭୂମି ତ୍ୟାଗ କରି ଅନ୍ୟତ୍ର ଯାତ୍ରା କରିବାପାଇଁ ଉପଦେଶ ଦିଆଯାଇଅଛି, କାରଣ ପୃଥିବୀ ପ୍ରଶସ୍ତ ରହିଅଛି, ସବୁ ସ୍ଥାନରେ ଅତ୍ୟାଚାର ହେବା ସମ୍ଭବ ନୁହେଁ ।

୬୦। ଜନ୍ମଭୂମି ତ୍ୟାଗ କରିବା ହେତୁ ଜୀବିକାର ଅଭାବରେ ପଡ଼ିବାର ଆଶଙ୍କା କରିବା ଉଚିତ ନୁହେଁ । କାରଣ ଏପରି ଅନେକ ଜୀବ ଅଛନ୍ତି ଯେଉଁମାନେ ଭବିଷ୍ୟତ ପାଇଁ ଖାଦ୍ୟ ସଂଗ୍ରହ କରି ରଖନ୍ତି ନାହିଁ, ଅଥଚ ପରମେଶ୍ୱର ସେମାନଙ୍କୁ ଦୈନିକ ଖାଦ୍ୟ ଯୋଗାଉଅଛନ୍ତି । ପ୍ରତ୍ୟେକ ଜୀବକୁ ଖାଦ୍ୟ ଯୋଗାଇବା ପରମେଶ୍ୱରଙ୍କ କର୍ତ୍ତବ୍ୟ ଅଟେ । (ଦେଖ ୧୧ ଅଧ୍ୟାୟ ଶ୍ଳୋ ୬କ) । ସୁତରାଂ ଖାଦ୍ୟାଭାବର ଭୟ କରି ସତ୍ୟ ସନାତନ ଧର୍ମକୁ କ୍ଷାନ୍ତ ରହିବା ଉଚିତ ନୁହେଁ ।

୬୧। ଆଜ୍ଞାବହ କରିଅଛି—ପରମେଶ୍ୱରଙ୍କ ଆଦେଶରେ ସୂର୍ଯ୍ୟ ଓ ଚନ୍ଦ୍ର ନିୟମିତ ଭାବରେ ଚଳୁଅଛନ୍ତି ଏବଂ ଆଲୋକ ଦେଉଅଛନ୍ତି ।

ଏବଂ ଯଦି ସେମାନଙ୍କୁ ପ୍ରଶ୍ନ କର ଯେ କିଏ ଆକାଶରୁ ଜଳବର୍ଷଣ କରନ୍ତି, ତାପରେ ତାହାଦ୍ୱାରା ପୃଥିବୀକୁ ତାହାର ମୃତ୍ୟୁପରେ ପୁଣି ଜୀବିତ କରନ୍ତି, ସେମାନେ ଅବଶ୍ୟ କହିବେ ଯେ ପରମେଶ୍ୱର କରନ୍ତି; ତୁମ୍ଭେ କୁହ, "ପରମେଶ୍ୱରଙ୍କ ପାଇଁ ସମସ୍ତ ପ୍ରଶଂସା," କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ବୁଝି ପାରନ୍ତି-ନାହିଁ ।୬୩।

## ୭ମ ବିଭାଗ

ଏବଂ ଏହି ପାର୍ଥିବ ଜୀବନ କ୍ରୀଡ଼ା ଓ କୌତୁକ ଭିନ୍ନ ଆଉ କିଛି ନୁହେଁ; ଏବଂ ନିଶ୍ଚୟ ପରକାଳର ବାସସ୍ଥାନହିଁ ପ୍ରକୃତ ଜୀବନ ଅଟେ; ଯଦି ସେମାନେ ଏହାମଧ୍ୟ ଜାଣନ୍ତେ । ୬୪ ।

ଏବଂ ଯେତେବେଳେ ସେମାନେ ନୌକାରେ ଆରୋହଣ କରନ୍ତି ସେତେବେଳେ ସେମାନେ ଖାଣ୍ଟି ଆରାଧନା କରି ପରମେଶ୍ୱରଙ୍କୁ ଡାକୁ ଥାଆନ୍ତି, କିନ୍ତୁ ସେ ଯେତେବେଳେ ସେମାନଙ୍କୁ ସ୍ଥଳଭାଗକୁ ଉଦ୍ଧାର କରି ଆଣନ୍ତି ସେମାନେ ସେତେବେଳେ ଅଂଶୀ ସ୍ଥାପନ କରନ୍ତି ।୬୫।

ସୁତରାଂ ଆମ୍ଭେ ସେମାନଙ୍କୁ ଯାହା ଦେଇଅଛୁଁ ସେଥିପାଇଁ ସେମାନେ ଅକୃତଜ୍ଞ ହୁଅନ୍ତି ଯେପରି ସେମାନେ ( ଜଗତରେ ) ସୁଖ ଭୋଗ କରି ପାରିବେ, ସୁତରାଂ ସେମାନେ ଶୀଘ୍ର ( ଏହାର ପରିଣାମ ) ଜାଣିପାରିବେ ।୬୬।

ସେମାନେ କଅଣ ଲକ୍ଷ୍ୟକରୁ ନାହାନ୍ତି ଯେ ଆମ୍ଭେ ପବିତ୍ରଭୂମି (ମକ୍କା) କୁ ନିରାପଦ କରିଅଛୁଁ ଅଥଚ ସେମାନଙ୍କ ଚତୁଃପାର୍ଶ୍ୱରୁ ଲୋକମାନଙ୍କୁ ବଳପୂର୍ବକ ବୋହି ନିଆଯାଉଅଛି ? ତେବେ ସୁଦ୍ଧା କଅଣ ସେମାନେ ମିଥ୍ୟା ଉପରେ ବିଶ୍ୱାସ କରିବେ ଏବଂ ପରମେଶ୍ୱରଙ୍କ ଅନୁଗ୍ରହ ଉପରେ ଅବିଶ୍ୱାସ କରିବେ ? ୬୭।

---

୬୩ । ଏହା ବୁଝିପାରନ୍ତି ନାହିଁ—ପ୍ରମାଣ ହେଲା ଯେ ପରମେଶ୍ୱରଙ୍କ ଛଡ଼ା ଆଉ କେହି ଉପାସ୍ୟ ନାହିଁ । ଏହି ସାମାନ୍ୟ କଥାଟି ସେମାନେ ବୁଝନ୍ତି ନାହିଁ ।

୬୪ । ପାର୍ଥିବ ଜୀବନ ପିଲାମାନଙ୍କର ଧୂଳି ଖେଳ ପରି ଅସାର ଓ ଅସ୍ଥାୟୀ । ପରଲୋକର ବାସସ୍ଥାନ ଚିରସ୍ଥାୟୀ ଏବଂ ତାହାହିଁ ପ୍ରକୃତ ଜୀବନ । ମାତ୍ର ଲୋକମାନେ ବୁଝିନପାରି କ୍ଷଣସ୍ଥାୟୀ ପାର୍ଥିବ ସୁଖରେ ଲିପ୍ତ ରହି ଚିରସ୍ଥାୟୀ ପାରଲୌକିକ ସୁଖରୁ ବଞ୍ଚିତ ହୁଅନ୍ତି । ମାତ୍ର ଯେଉଁମାନେ ପୃଥିବୀରେ ସତ୍‌କର୍ମ କରିବା ଦ୍ୱାରା ପରଲୋକର ସୁଖ ଅର୍ଜନ କରନ୍ତି ସେମାନଙ୍କର ପାର୍ଥିବ ଜୀବନ ସାର୍ଥକ ହୁଏ ।

୬୫-୬୬ । ଲୋକମାନେ ଦୁଃଖରେ ପଡ଼ିଲେ ପରମେଶ୍ୱରଙ୍କୁ ଡାକନ୍ତି; ମାତ୍ର ପରମେଶ୍ୱର ସେମାନଙ୍କୁ ଦୁଃଖରୁ ମୁକ୍ତ କଲାପରେ ସେମାନେ ତାଙ୍କୁ ଭୁଲିଯାଇ ପାର୍ଥିବ ସୁଖ ଭୋଗ ଆଶାରେ ଅଂଶୀ ଉପାସ୍ୟମାନଙ୍କୁ ଡାକନ୍ତି । ସେମାନେ କେତେ ଅକୃତଜ୍ଞ । ସେଥିପାଇଁ ସେମାନେ ଶାସ୍ତି ଭୋଗ କରିବେ ।

୬୭ । ଦେଖ ଟୀକା ୨୮ ଅଧ୍ୟାୟ ଶ୍ଳୋକ ୫୭ର ।
ଲୋକମାନଙ୍କୁ ବଳପୂର୍ବକ ବୋହି ନିଆଯାଉଅଛି—ଅର୍ଥାତ୍ ଲୋକମାନେ ଅତ୍ୟାଚାରିତ ହେଉଅଛନ୍ତି ।

ଏବଂ ଯେ ପରମେଶ୍ୱରଙ୍କ ସମ୍ବନ୍ଧରେ ମିଥ୍ୟାରଚନା କରେ ଅଥବା ସତ୍ୟ ଯେତେବେଳେ ତାହାଙ୍କ ନିକଟକୁ ଆସେ ତାକୁ ମିଥ୍ୟାମନେ କରେ, ତାହା ଅପେକ୍ଷା ଅଧିକ ଅତ୍ୟାଚାରୀ କିଏ ? ଅବିଶ୍ୱାସକାରୀମାନଙ୍କ ପାଇଁ କଅଣ ନରକରେ ବାସସ୍ଥାନ ହେବନାହିଁ ? ୬୮।

ଏବଂ ଯେଉଁମାନେ ଆମ୍ଭର (ଧର୍ମ ପ୍ରଚାର) ପାଇଁ ଯତ୍ନକରନ୍ତି ଆମ୍ଭେ ଅବଶ୍ୟ ସେମାନଙ୍କୁ ଆମ୍ଭର ପଥମାନ ଦେଖାଇଦେବୁଁ ; ଏବଂ ନିଶ୍ଚୟ ପରମେଶ୍ୱର ସତ୍କର୍ମଶୀଳମାନଙ୍କର ସଙ୍ଗୀ ।୬୯।

---

୬୯ । ଆମ୍ଭର ପଥମାନ ଦେଖାଇଦେବୁଁ—ଆମ୍ଭେ ସେମାନଙ୍କୁ ଏପରି ପଥରେ ଚାଲିବାର ଶକ୍ତି ଦେବୁ ଯାହାଦ୍ୱାରା ସେମାନେ ଆମ୍ଭର ସନ୍ତୁଷ୍ଟି ଲାଭ କରିପାରିବେ ।

## ୩୦ଶ ଅଧ୍ୟାୟ

ନାମ—ଅର୍ ରୁମ ( ରୋମବାସୀଗଣ )
ମକ୍କାରେ ଅବତୀର୍ଣ୍ଣ । ଏଥିରେ ମୋଟ ୬ ଟି ବିଭାଗ ଏବଂ ମୋଟ ୬୦ଟି ଶ୍ଳୋକଅଛି ।
ଦୟାମୟ ଓ କରୁଣାସାଗର ପରମେଶ୍ୱରଙ୍କ ନାମରେ ( ଆରମ୍ଭ )

### ୧ମ ବିଭାଗ

ଅଲଫ୍, ଲାମ୍ , ମୀମ୍ ।୧।

ରୋମବାସୀମାନେ ପରାଜିତ ହୋଇଅଛନ୍ତି ।୨।

ନିକଟବର୍ତ୍ତୀ ସ୍ଥାନରେ, ଏବଂ ସେମାନେ ନିଜର ପରାଜୟ ପରେ ଅବଶ୍ୟ ଜୟଲାଭ କରିବେ, ।୩।

କେତେକବର୍ଷ ମଧ୍ୟରେ; ପରମେଶ୍ୱରଙ୍କରହିଁ ଆଦେଶ, ପୂର୍ବେ ଓ ପରେ, ଏବଂ ସେଦିନ ବିଶ୍ୱାସକାରୀମାନେ ଆନନ୍ଦିତ ହେବେ,—୪।

ପରମେଶ୍ୱରଙ୍କ ସାହାଯ୍ୟରେ; ସେ ଯାହାଙ୍କୁ ଇଚ୍ଛା ସାହାଯ୍ୟ କରନ୍ତି ଏବଂ ସେ ପରାକ୍ରାନ୍ତ ଓ ଦୟାଶୀଳ ।୫।

ଏହା ପରମେଶ୍ୱରଙ୍କ ଅଙ୍ଗୀକାର; ପରମେଶ୍ୱର ନିଜ ଅଙ୍ଗୀକାରର ଅନ୍ୟଥା କରନ୍ତି ନାହିଁ, କିନ୍ତୁ ଅଧିକାଂଶ ଲୋକେ ଏବିଷୟ ଜାଣନ୍ତି ନାହିଁ ।୬।

---

ନାମକରଣ—ଏହି ଅଧ୍ୟାୟର ଶ୍ଳୋ ୨ । ୩-ରେ ରୋମବାସୀମାନଙ୍କ ବିଷୟ ଉଲ୍ଲେଖ ଥିବାରୁ ଏହାର ଏପରି ନାମକରଣ ହୋଇଅଛି ।

୧ । ସାଙ୍କେତିକ ବର୍ଣ୍ଣମାନଙ୍କ ସମ୍ବନ୍ଧରେ ଦେଖ ୨ୟ ଅଧ୍ୟାୟ ୧ମ ଶ୍ଳୋକ ଓ ତହିଁର ଟୀକା ।

୨ । ଖ୍ରୀଷ୍ଟାବ୍ଦ ୬୧୩ ଓ ୬୧୪ରେ ପାରସ୍ୟର ରାଜା ଦ୍ୱିତୀୟ ଖୁସରୁ ରୋମ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କରି ସେ ରାଜ୍ୟ ଅନ୍ତର୍ଗତ ଦାମସ୍କସ୍ ଏବଂ ଜେରୁଜାଲେମ ନଗର ଦ୍ୱୟ ଜୟ କରିଥିଲେ । ଏହି ବିଜୟ ବାର୍ତ୍ତା ଶ୍ରବଣ କରି ମକ୍କାବାସୀ ବିଧର୍ମୀମାନେ ଆନନ୍ଦିତ ହୋଇଥିଲେ, କାରଣ ପୌତ୍ତଳିକ ଆରବ ଦେଶବାସୀମାନେ ଅଗ୍ନି ଉପାସକ ପାରସ୍ୟ ଦେଶବାସୀମାନଙ୍କ ସହିତ ସହାନୁଭୂତି ଦେଖାଉଥିଲେ ଏବଂ ଖ୍ରୀଷ୍ଟ ଧର୍ମାବଲମ୍ବୀ ରୋମବାସୀମାନଙ୍କୁ ମୁସଲମାନମାନଙ୍କର ସମଧର୍ମୀ ମନେ କରି ସେମାନଙ୍କୁ ଘୃଣା କରୁଥିଲେ ।

୩-୪ । ସୁତରାଂ ପରମେଶ୍ୱର ପ୍ରେରିତ ପୁରୁଷ ମୋହମ୍ମଦଙ୍କ ଦ୍ୱାରା ଏହି ଭବିଷ୍ୟତ ବାଣୀ ପ୍ରଚାର କରିଥିଲେ କି ଏହି ପରାଜୟର କେତେକ ବର୍ଷ ମଧ୍ୟରେ ପରମେଶ୍ୱରଙ୍କ ଆଦେଶରେ ରୋମବାସୀମାନେ ପାରସ୍ୟବାସୀମାନଙ୍କ ଉପରେ ଜୟ ଲାଭ କରିବେ, ଏବଂ ସେତେବେଳେ ବିଶ୍ୱାସକାରୀ ମୁସଲମାନମାନେ ଆନନ୍ଦିତ ହେବେ, କାରଣ ପରମେଶ୍ୱର ନିଜର ଅଙ୍ଗୀକାର ରକ୍ଷା କରି ତାଙ୍କର ପ୍ରେରିତ ପୁରୁଷଙ୍କ ଦ୍ୱାରା ପ୍ରଚାରିତ ଭବିଷ୍ୟତ ବାଣୀକୁ ସତ୍ୟ କରିଅଛନ୍ତି । ଏହି ଭବିଷ୍ୟତ ବାଣୀ ପ୍ରକୃତରେ ସତ୍ୟ ହୋଇଥିଲା । କାରଣ ଖ୍ରୀ ୬୨୪ ଅବ୍ଦରେ ରୋମ ସମ୍ରାଟ ହେରକ୍ଲିଅସ୍ ପାରସ୍ୟ ଦେଶ ଆକ୍ରମଣ କରି ପାରସ୍ୟ ରାଜାଙ୍କୁ ପରାଜିତ କରିଥିଲେ ।

୫-୬ । ଏ ଦୁଇ ଶ୍ଳୋକରେ ପରମେଶ୍ୱର ମୁଷ୍ଟିମେୟ ଅସହାୟ ମୁସଲମାନମାନଙ୍କ ଦ୍ୱାରା ତାଙ୍କ ସାହାଯ୍ୟରେ ପ୍ରବଳ ପରାକ୍ରାନ୍ତ ବିଧର୍ମୀ ମକ୍କାବାସୀମାନଙ୍କର ପରାଜୟର ଭବିଷ୍ୟତ ବାଣୀ ପ୍ରଚାର କରି ଅଛନ୍ତି । ସେହି ୬୨୪

ସେମାନେ ପାର୍ଥିବ ଜୀବନର ପ୍ରକାଶ୍ୟ ବିଷୟ ଜାଣନ୍ତି, ଏବଂ ସେମାନେ ପରକାଳ ବିଷୟରେ ସମ୍ପୂର୍ଣ୍ଣ ଅମନଯୋଗୀ ।୭।

ସେମାନେ କଅଣ ଆପଣା ମନରେ ଭାବୁ ନାହାନ୍ତି ଯେ ପରମେଶ୍ୱର ଆକାଶମଣ୍ଡଳକୁ ଓ ଭୂମଣ୍ଡଳକୁ ଏବଂ ଏଦୁହିଙ୍କ ମଧ୍ୟରେ ଯାହା କିଛିଅଛି ତାକୁ ସତ୍ୟ ସହିତ ଏବଂ ଏକ ନିର୍ଦ୍ଦିଷ୍ଟ କାଳପାଇଁ ସୃଷ୍ଟି କରିଅଛନ୍ତି ? ଏବଂ ନିଶ୍ଚୟ ଅଧିକାଂଶଲୋକ ସେମାନଙ୍କର ପାଳନକର୍ତ୍ତାଙ୍କର ସାକ୍ଷାତ ସମ୍ବନ୍ଧରେ ଅବିଶ୍ୱାସକାରୀ ।୮।

ସେମାନେ କଅଣ ପୃଥିବୀରେ ଭ୍ରମଣ କରୁନାହାନ୍ତି ଏବଂ ସେମାନଙ୍କ ପୂର୍ବେ ଯେଉଁମାନେଥିଲେ ସେମାନଙ୍କ ପରିଣାମ କିପରି ହୋଇଅଛି ଲକ୍ଷ୍ୟ କରୁ ନାହାନ୍ତି ? ସେମାନେ ଏମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀଥିଲେ, ଏବଂ ଭୂମି ଚଷି ଏମାନେ ଯେତେଦୂର ଆବାଦ କରିଅଛନ୍ତି ସେମାନେ ତାହା ଅପେକ୍ଷା ଅଧିକ ଆବାଦ କରିଥିଲେ; ଏବଂ ସେମାନଙ୍କର ପ୍ରେରିତପୁରୁଷମାନେ ସେମାନଙ୍କ ନିକଟକୁ ପ୍ରକାଶ୍ୟ ପ୍ରମାଣ ସହିତ ଆସିଥିଲେ; ପରମେଶ୍ୱର ଏପରି ନୁହନ୍ତି ଯେ ସେମାନଙ୍କ ଉପରେ ଅତ୍ୟାଚାର କରନ୍ତେ, ବରଂ ସେହିମାନେ ନିଜ ଉପରେ ଅତ୍ୟାଚାର କରିଥିଲେ ।୯।

ତାପରେ ଯେଉଁ ଲୋକମାନେ ମନ୍ଦକାର୍ଯ୍ୟ କରୁଥିଲେ ସେମାନଙ୍କର ପରିଣାମ ମନ୍ଦ ହୋଇଥିଲା, କାରଣ ସେମାନେ ପରମେଶ୍ୱରଙ୍କ ନିଦର୍ଶନମାନଙ୍କ ପ୍ରତି ମିଥ୍ୟାରୋପ କରିଥିଲେ ଏବଂ ସେ ସବୁକୁ ହସରେ ଉଡ଼ାଇ ଦେଉଥିଲେ ।୧୦।

## ୨ୟ ବିଭାଗ

ପରମେଶ୍ୱର ପ୍ରଥମଥର ସୃଷ୍ଟି କରନ୍ତି, ତାପରେ ତାକୁ ପୁନର୍ବାର ସୃଷ୍ଟି କରିଥାନ୍ତି, ତାପରେ ତାଙ୍କରି ଆଡକୁ ତୁମ୍ଭମାନଙ୍କୁ ଫେରିଯିବାକୁ ହେବ ।୧୧।

ଏବଂ ଯେଉଁଦିନ ସେହି ସମୟ ଉପସ୍ଥିତ ହେବ, ସେଦିନ ଅପରାଧୀମାନେ ହତାଶ ହୋଇ ପଡ଼ିବେ ।୧୨।

ଏବଂ ସେମାନଙ୍କର ଅଂଶୀ ଉପାସ୍ୟମାନଙ୍କ ମଧ୍ୟରୁ କେହି ସେମାନଙ୍କ ପାଇଁ ସୁପାରିସକାରୀ ହେବେନାହିଁ ଏବଂ ସେମାନେ ସେମାନଙ୍କର ଅଂଶୀ ଉପାସ୍ୟମାନଙ୍କୁ ଅସ୍ୱୀକାର କରିବେ ।୧୩।

ଏବଂ ଯେଉଁଦିନ ସେହି ସମୟ ଉପସ୍ଥିତ ହେବ ସେଦିନ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯିବେ ।୧୪।

କିନ୍ତୁ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛନ୍ତି ଏବଂ ଭଲକାର୍ଯ୍ୟ କରିଅଛନ୍ତି ସେମାନେ ସ୍ୱର୍ଗୋଦ୍ୟାନ ମଧ୍ୟରେ ସୁଖ ଭୋଗ କରିବେ ।୧୫।

---

ଖ୍ରୀଷ୍ଟାବ୍ଦରେ ୩୧୩ ଜଣ ଅସହାୟ ମୁସଲମାନମାନେ ସହସ୍ରାଧିକ ସୁସଜ୍ଜିତ ମକ୍କାବାସୀମାନଙ୍କୁ ବଦର ଯୁଦ୍ଧରେ ପରାଜୟ କରିଥିଲେ ଏବଂ ଏହି ଭବିଷ୍ୟତ ବାଣୀ ସତ୍ୟ ବୋଲି ପ୍ରମାଣିତ ହୋଇଥିଲା ।

୭-୧୦ । ପୂର୍ବବର୍ତ୍ତୀ ଅବିଶ୍ୱାସକାରୀ ଅବାଧ୍ୟ ଲୋକମାନଙ୍କର ଶୋଚନୀୟ ପରିଣାମ ବିଷୟ ଚିନ୍ତା କରି ପରମେଶ୍ୱରଙ୍କ ଉପରେ ଏବଂ ପରଲୋକରେ ବିଶ୍ୱାସ କରିବା ଲୋକମାନଙ୍କର କର୍ତ୍ତବ୍ୟ ।

୯ । ନିଜ ଉପରେ ଅତ୍ୟାଚାର କରିଥିଲେ—ନିଜର ମନ୍ଦ କାର୍ଯ୍ୟ ହେତୁ ଧ୍ୱଂସ ପାଇଥିଲେ ।

୧୧ । ସୃଷ୍ଟିର ଆରମ୍ଭରେ ପରମେଶ୍ୱର ପ୍ରଥମେ ସୃଷ୍ଟିର ଉପାଦାନମାନ ସୃଷ୍ଟି କରିଥିଲେ । ତାପରେ ସେହି ଉପାଦାନମାନଙ୍କ ଦ୍ୱାରା ସୃଷ୍ଟି କାର୍ଯ୍ୟ ବରାବର ଚାଲିଅଛି ।

୧୨ । ୧୪ । ସେହି ସମୟ—ଶେଷ ବିଚାର ଦିନ ।

କିନ୍ତୁ ଯେଉଁମାନେ ଅବିଶ୍ୱାସ କରିଅଛନ୍ତି ଏବଂ ଆମ୍ଭର ନିଦର୍ଶନମାନଙ୍କ ପ୍ରତି ଓ ପରକାଳରେ ଆମ୍ଭର ସାକ୍ଷାତ ପ୍ରତି ମିଥ୍ୟାରୋପ କରିଅଛନ୍ତି ସେହିମାନେ ଦଣ୍ଡଭୋଗ କରିବେ ।୧୬।

ସୁତରାଂ ତୁମ୍ଭେମାନେ ସନ୍ଧ୍ୟା ସମୟରେ ଏବଂ ପ୍ରଭାତ ସମୟରେ ପରମେଶ୍ୱରଙ୍କର ପବିତ୍ରତା କୀର୍ତ୍ତନ କର ।୧୭।

ଏବଂ ଆକାଶରେ ଓ ପୃଥିବୀରେ ତାଙ୍କର ପାଇଁ ସମସ୍ତ ପ୍ରଶଂସା, ଏବଂ ଅପରାହ୍ନରେ ଓ ମଧ୍ୟାହ୍ନ ସମୟରେ ।୧୮।

ସେ ମୃତରୁ ଜୀବିତକୁ ବାହାର କରନ୍ତି ଏବଂ ଜୀବିତରୁ ମୃତକୁ ବାହାର କରନ୍ତି ଏବଂ ପୃଥିବୀକୁ ତାହାର ମୃତ୍ୟୁପରେ ଜୀବିତ କରନ୍ତି; ଏବଂ ଏହିପରି ତୁମ୍ଭମାନଙ୍କୁ ( ମୃତ୍ୟୁପରେ ) ପୁନର୍ଜୀବିତ କରାହେବ ।୧୯।

## ୩ୟ ବିଭାଗ

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଏହି ଯେ ସେ ତୁମ୍ଭମାନଙ୍କୁ ମାଟିରୁ ସୃଷ୍ଟି କରିଅଛନ୍ତି, ତାପରେ ତୁମ୍ଭେମାନେ ମନୁଷ୍ୟରୂପରେ ବିଚରଣ କରୁଅଛ ।୨୦।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଏହି ଯେ ସେ ତୁମ୍ଭମାନଙ୍କ ମଧ୍ୟରୁ ତୁମ୍ଭମାନଙ୍କ ପାଇଁ ଦମ୍ପତି ରୂପେ ଯୁଗଳ ସୃଷ୍ଟି କରିଅଛନ୍ତି ଯେପରି ତୁମ୍ଭେମାନେ ସେମାନଙ୍କ ( ସଙ୍ଗଲାଭ) ଦ୍ୱାରା ଶାନ୍ତି ଲାଭକର ଏବଂ ସେ ତୁମ୍ଭମାନଙ୍କ ମଧ୍ୟରେ ପ୍ରେମ ଓ ଦୟା ସୃଷ୍ଟି କରିଅଛନ୍ତି, ନିଶ୍ଚୟ ଏଥିରେ ଚିନ୍ତାଶୀଳ ଲୋକମାନଙ୍କପାଇଁ ନିଦର୍ଶନମାନ ରହିଅଛି ।୨୧।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଆକାଶମଣ୍ଡଳ ଓ ଭୂମଣ୍ଡଳର ସୃଷ୍ଟି ଏବଂ ତୁମ୍ଭମାନଙ୍କର ଭାଷା ଓ ବର୍ଣ୍ଣର ବିଭିନ୍ନତା ଅଟେ; ନିଶ୍ଚୟ ଏଥିରେ ଜ୍ଞାନୀଲୋକମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୨୨।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ତୁମ୍ଭମାନଙ୍କର ରାତିରେ ବିଶ୍ରାମ ଏବଂ ଦିନ ମଧ୍ୟରେ ତାଙ୍କର ଅନୁଗ୍ରହର ଅନୁସନ୍ଧାନ, ନିଶ୍ଚୟ ଏଥିରେ ଶ୍ରବଣକାରୀ ଲୋକମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୨୩।

---

୧୭ । ୧୮ । ଏହି ଶ୍ଳୋକମାନଙ୍କରେ ଦିନ ମଧ୍ୟରେ ପାଞ୍ଚ ଥର ପରମେଶ୍ୱରଙ୍କୁ ଅର୍ଚ୍ଚନା କରିବାର ଆଦେଶ ଦିଆଯାଇଅଛି । ଦେଖ ଟୀକା ୨ୟ ଅଧ୍ୟାୟ ୨୩୮ ଶ୍ଳୋକ ।

୧୯ । ଜନ୍ମଲାଭ ପୂର୍ବରୁ ମନୁଷ୍ୟ, ପଶୁଆଦି ଭ୍ରୂଣରେ ମୃତବତ୍ ଥାନ୍ତି; ପରମେଶ୍ୱର ସେମାନଙ୍କୁ ଜୀବନଦାନ କରନ୍ତି । ଜୀବିତ ପକ୍ଷୀରୁ ମୃତବତ୍ ଅଣ୍ଡା ଏବଂ ମୃତବତ୍ ଅଣ୍ଡାରୁ ଜୀବନ୍ତ ପକ୍ଷୀଶାବକ ବାହାରେ । ଜୀବ ଦାନ ଓ ମୃତ୍ୟୁ ସଂଘଟନ ପରମେଶ୍ୱରଙ୍କ ଅଧିକାରରେ ଅଛି । ଗ୍ରୀଷ୍ମ ଋତୁରେ ପୃଥିବୀ ମୃତବତ୍ ହୋଇଥାଏ, ବର୍ଷା ଋତୁରେ ସଜୀବ ହୋଇଉଠେ । ସେହିପରି ମନୁଷ୍ୟମାନେ ମୃତ୍ୟୁପରେ ପରଲୋକରେ ପୁନର୍ଜୀବିତ କରାହେବେ ।

୨୦-୨୭ । ଏହି ଶ୍ଳୋକମାନଙ୍କରେ ପରମେଶ୍ୱରଙ୍କ ଅଦ୍ଭୁତ ସୃଷ୍ଟି କୌଶଳ ଓ ତାଙ୍କର ଅପାର ମହିମାର କେତେଗୁଡ଼ିଏ ଉଦାହରଣ ଦିଆଯାଇ ପ୍ରମାଣ କରାଯାଇଅଛି ଯେ ପରଲୋକରେ ଲୋକମାନଙ୍କୁ ପୁନର୍ଜୀବିତ କରିବା ତାଙ୍କ ପକ୍ଷରେ ଅତି ସହଜ ।

୨୩ । ଅନୁଗ୍ରହର ଅନୁସନ୍ଧାନ—ଉପଜୀବିକା ଲାଭ ଯାହା ପରମେଶ୍ୱରଙ୍କ ଅନୁଗ୍ରହରୁ ପ୍ରଦତ୍ତ ହୁଏ ।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଏହି ଯେ, ତୁମ୍ଭମାନଙ୍କର ଭୟ ଓ ଆଶା ପାଇଁ ବିଦ୍ୟୁତ ଦେଖାନ୍ତି ଏବଂ ଆକାଶରୁ ଜଳବର୍ଷଣ କରନ୍ତି, ତାପରେ ତାହାଦ୍ୱାରା ପୃଥିବୀକୁ ତାହାର ମୃତ୍ୟୁପରେ ଜୀବିତ କରନ୍ତି; ନିଶ୍ଚୟ ଏଥିରେ ବୁଦ୍ଧିମାନ ଲୋକମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।୨୪।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଏହି ଯେ ଆକାଶ ଓ ପୃଥିବୀ ତାଙ୍କର ଆଦେଶରେ ସୁପ୍ରତିଷ୍ଠିତ ରହି ଅଛି; ତାପରେ ଯେତେବେଳେ ସେ ତୁମ୍ଭମାନଙ୍କୁ ପୃଥିବୀରୁ ଗୋଟାଏ ଡାକଦ୍ୱାରା ଡାକିବେ, ସେତେବେଳେ ତୁମ୍ଭେମାନେ (ନିଜ ନିଜ କବରରୁ) ବାହାରି ଆସିବ ।୨୫।

ଏବଂ ଯାହା କିଛି ଆକାଶରେ ଓ ପୃଥିବୀରେ ଅଛି ସେ ସମସ୍ତ ତାଙ୍କର ପାଇଁ; ସମସ୍ତେ ତାଙ୍କର ଆଜ୍ଞାକାରୀ ।୨୬।

ଏବଂ ସେହି ପ୍ରଥମଥର ସୃଷ୍ଟି କରନ୍ତି ଏବଂ ତାପରେ ତାକୁ ପୁନରାୟ ସୃଷ୍ଟିକରନ୍ତି ଏବଂ ଏହା ତାଙ୍କ ପାଇଁ ସହଜ; ଏବଂ ଆକାଶରେ ଓ ପୃଥିବୀରେ ତାଙ୍କ ପାଇଁ ଉଚ୍ଚ ଗୁଣମାନ ଅଛି ଏବଂ ସେ ପରାକ୍ରାନ୍ତ ଓ ବିଜ୍ଞାନୀ ।୨୭।

## ୪ର୍ଥ ବିଭାଗ

(ହେ ଅଂଶୀବାଦୀମାନେ) ସେ ତୁମ୍ଭମାନଙ୍କ ପାଇଁ ତୁମ୍ଭମାନଙ୍କ ମଧ୍ୟରୁ ଉପମା ବର୍ଣ୍ଣନା କରୁଅଛନ୍ତି; ତୁମ୍ଭମାନଙ୍କର ଡାହାଣ ହାତ ଯେଉଁମାନଙ୍କର ଅଧିକାରୀ ସେହି ଦାସମାନେ କଅଣ ଆମ୍ଭେ ତୁମ୍ଭମାନଙ୍କୁ ଯାହା ଜୀବିକା ଦେଇ ଅଛୁଁ ସେଥିରେ ଅଂଶୀଦାର ହୋଇଥାନ୍ତି ଯେପରିକି ତୁମ୍ଭେମାନେ ସେଥିରେ (ସେମାନଙ୍କ ସହିତ) ସମାନ ହୋଇଯାଅ ? ତୁମ୍ଭେମାନେ ପରସ୍ପର ମଧ୍ୟରେ ଯେପରି ଭୟ କରିଥାଅ ସେମାନଙ୍କୁ କଅଣ ସେହିପରି ଭୟ କରିଥାଅ ? ଏହିପରି ଭାବରେ ଆମ୍ଭେ ବୁଦ୍ଧିମାନ ଲୋକମାନଙ୍କ ପାଇଁ ନିଦର୍ଶନମାନ ସ୍ପଷ୍ଟଭାବରେ ବର୍ଣ୍ଣନା କରିଥାଉଁ ।୨୮।

---

୨୪ । ଭୟ ଓ ଆଶା—ବିଜୁଳି ଚମକିବାର ଦେଖି ଲୋକମାନେ ଭୀତ ହୁଅନ୍ତି କାଳେ ତାହାର ଉପରେ ପଡ଼ିବ ଓ ସେ ଲୋକ ମରିଯିବ । ବିଜୁଳି ଚମକିବା ପରେ ବର୍ଷା ହୋଇଥାଏ । ସୁତରାଂ ଯେଉଁମାନେ ବର୍ଷା ଖୋଜୁଥାନ୍ତି ସେମାନଙ୍କ ପାଇଁ ବିଜୁଳିର ଚମକ ଆଶା ଅଟେ ।
ତାହାଦ୍ୱାରା—ବର୍ଷା ଜଳଦ୍ୱାରା ।

୨୭ । ସମସ୍ତ ଆକାଶ ଓ ପୃଥିବୀରେ ତାଙ୍କଠାରୁ ଉଚ୍ଚତର ଓ ତାଙ୍କଠାରୁ ଅଧିକ କ୍ଷମତାଶାଳୀ ଆଉ କେହି ନାହିଁ । ପ୍ରଥମ ସୃଷ୍ଟି ସମ୍ବନ୍ଧରେ ଏହି ଅଧ୍ୟାୟ ୧୧ଶ ଶ୍ଳୋକ ଦେଖ ।

୨୮ । ତୁମ୍ଭମାନଙ୍କ ମଧ୍ୟରୁ—ଲୋକମାନଙ୍କ ଦୈନନ୍ଦିନ ଘଟଣା ମଧ୍ୟରୁ । ଏହି ଶ୍ଳୋକରେ ପରମେଶ୍ୱର ଲୋକମାନଙ୍କ ଦୈନିକ ଜୀବନର ଘଟଣାମାନଙ୍କ ମଧ୍ୟରୁ ଗୋଟିଏ ଉଦାହରଣ ଦେଇ ଅଂଶୀବାଦର ଅଯୌକ୍ତିକତା ବୁଝାଇ ଅଛନ୍ତି । ଲୋକମାନେ ନିଜର ଖାଦ୍ୟପେୟ ଓ ଗ୍ରାସାଚ୍ଛାଦନ ଓ ପରସ୍ପର ବ୍ୟବହାରରେ ସେମାନଙ୍କ କ୍ରୀତଦାସମାନଙ୍କ ସହିତ ସମାନ ବ୍ୟବହାର କରନ୍ତି ନାହିଁ, ବରଂ ସେମାନଙ୍କୁ ଘୃଣାଚକ୍ଷୁରେ ଦେଖନ୍ତି । ସୁତରାଂ ବିଶ୍ୱସଂସାରର ସୃଷ୍ଟି ସ୍ଥିତିଲୟର ଅଧିକାରୀ ପରମାତ୍ମା ପରମେଶ୍ୱରଙ୍କ ସହିତ ତାଙ୍କର ସୃଷ୍ଟ ମନୁଷ୍ୟ ଅଥବା ଇତର ଜୀବଜନ୍ତୁ ଓ ଜଡ଼ପଦାର୍ଥକୁ କିପରି ସମାନ ଆସନରେ ରଖି ଉପାସ୍ୟରୂପେ ଗ୍ରହଣ କରାଯାଇପାରେ ? ଏ ବିଷୟରେ ଚିନ୍ତାକରି ବୁଦ୍ଧିମାନ ଲୋକପରି ସତ୍‌ପଥ ଅବଲମ୍ବନ କରିବା ଆବଶ୍ୟକ ।

ବରଂ ଅତ୍ୟାଚାରୀ ଲୋକମାନେ ଅଜ୍ଞାନତା ହେତୁ ନିଜକୁପ୍ରବୃତ୍ତିର ଅନୁସରଣ କରନ୍ତି, ସୁତରାଂ ପରମେଶ୍ୱର ଯାହାକୁ ପଥଭ୍ରାନ୍ତ କରନ୍ତି ତାକୁ କିଏ ସୁପଥ ଦେଖାଇବ ? ଏବଂ ସେମାନଙ୍କ ପାଇଁ କେହି ସାହାଯ୍ୟକାରୀ ନାହିଁ ।୨୯।

ଅତଏବ (ହେ ମୋହମ୍ମଦ) ତୁମ୍ଭେ ସନାତନ ଧର୍ମରେ ଅଟଳ ରହି ନିଜର ମୁଖକୁ ସିଧାକର, ତୁମ୍ଭେ ପରମେଶ୍ୱରଙ୍କ ସେହି ପ୍ରକୃତିକୁ ଧରିଥାଅ ଯାହା ଉପରେ ସେ ଲୋକମାନଙ୍କୁ ସୃଷ୍ଟି କରିଅଛନ୍ତି, ପରମେଶ୍ୱରଙ୍କ ପ୍ରକୃତିର ପରିବର୍ତ୍ତନ ନାହିଁ, ଏହାହିଁ ପ୍ରତିଷ୍ଠିତ ଧର୍ମ, କିନ୍ତୁ ଅଧିକାଂଶ ଲୋକେ ଏହା ଜାଣନ୍ତି ନାହିଁ ।୩୦।

ତୁମ୍ଭେମାନେ ତାଙ୍କ ଆଡ଼କୁ ପ୍ରତ୍ୟାବର୍ତ୍ତନକାରୀ ହୁଅ, ଏବଂ ତାଙ୍କୁ ଭୟକର ଏବଂ ଆରାଧନା ପ୍ରତିଷ୍ଠିତ କର ଏବଂ ଅଂଶୀବାଦୀମାନଙ୍କର ଅନ୍ତର୍ଗତ ହୁଅନା ।୩୧।

ଯେଉଁମାନେ ନିଜ ଧର୍ମକୁ ବିଭକ୍ତ କରିଅଛନ୍ତି ଏବଂ ଭିନ୍ନ ଭିନ୍ନ ଦଳରେ ବିଭକ୍ତ ହୋଇଅଛନ୍ତି, ପ୍ରତ୍ୟେକ ଦଳ ସେମାନଙ୍କ ନିକଟରେ ଯାହାଅଛି ସେଥିରେ ସନ୍ତୁଷ୍ଟ ।୩୨।

ଏବଂ ଯେତେବେଳେ ଲୋକମାନଙ୍କୁ ଦୁଃଖ ସ୍ପର୍ଶ କରେ ସେତେବେଳେ ସେମାନେ ନିଜ ପାଳନକର୍ତ୍ତାଙ୍କ ଆଡ଼କୁ ଆକୃଷ୍ଟ ହୋଇ ତାଙ୍କୁ ଆହ୍ୱାନ କରନ୍ତି, ତାପରେ ଯେତେବେଳେ ସେ ନିଜପକ୍ଷରୁ ସେମାନଙ୍କୁ ଦୟା ଆସ୍ୱାଦନ କରାନ୍ତି ସେତେବେଳେ ସେମାନଙ୍କ ମଧ୍ୟରୁ ଏକଦଳ ସେମାନଙ୍କ ପାଳନକର୍ତ୍ତାଙ୍କ ସହିତ ଅଂଶୀସ୍ଥାପନ କରନ୍ତି ।୩୩।

ଯେପରିକି ଆମ୍ଭେ ସେମାନଙ୍କୁ ଯାହା ଦେଇଅଛୁଁ ସେଥିପାଇଁ ଅକୃତଜ୍ଞତା ପ୍ରକାଶ କରିବେ; ସୁତରାଂ (ଅସ୍ଥାୟୀ ପାର୍ଥିବ ସୁଖ) ଉପଭୋଗ କରୁଥାଅ, କିନ୍ତୁ ଶୀଘ୍ର ତୁମ୍ଭେମାନେ (ଏହାର ଫଳ) ଜାଣି ପାରିବ ।୩୪।

ଅଥବା ଆମ୍ଭେ କଅଣ ସେମାନଙ୍କ ପ୍ରତି କୌଣସି ପ୍ରମାଣ ଅବତୀର୍ଣ୍ଣ କରିଅଛୁଁ ଯାହାକି ସେମାନଙ୍କ ଅଂଶୀ ସ୍ଥାପନ ବିଷୟରେ ଶିକ୍ଷା ଦେଉଅଛି ? ।୩୫।

---

୨୯ । କିନ୍ତୁ ଲୋକମାନେ ନିଜ ପ୍ରବୃତ୍ତିଦ୍ୱାରା ଚାଳିତ ହୋଇ ଚିନ୍ତା ନକରି ଅଜ୍ଞାନ ଲୋକପରି ଅଂଶୀଉପାସ୍ୟ ଗ୍ରହଣ କରନ୍ତି ଏବଂ ଏଥିରେ ଦୃଢ଼ରହିବା ହେତୁ ସେମାନଙ୍କର ସତ୍ୟଗ୍ରହଣ କରିବାର ଶକ୍ତି ଲୋପ ପାଇଯାଏ ଏବଂ ସେମାନେ ସତ୍‌ପଥ ପାଇପାରନ୍ତି ନାହିଁ ।

୩୦ । ସନାତନ ଧର୍ମ—ଇସଲାମ ଧର୍ମ । ମୁଖକୁ ସିଧାକର—ଏକାଗ୍ରଚିତ୍ତରେ ଏହି ଧର୍ମର ଅନୁସରଣକରନ୍ତୁ ।

ପରମେଶ୍ୱର ମନୁଷ୍ୟର ପ୍ରକୃତିକୁ ଏପରି ଭାବରେ ସୃଷ୍ଟି କରିଅଛନ୍ତି ଯେ ଯଦି ସେ ସତ୍‌କାର୍ଯ୍ୟ ପ୍ରତି ତାହାର ମନକୁ ନିଯୁକ୍ତ କରେ ତେବେ ସତ୍‌କାର୍ଯ୍ୟ କରିବାର ଶକ୍ତି ତାହାର କ୍ରମଶଃ ବଢ଼ିଯାଏ, ମାତ୍ର ଯଦି ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ଅସତ୍‌କାର୍ଯ୍ୟ ପ୍ରତି ମନକୁ ନିଯୁକ୍ତ କରେ ତେବେ ତାହାର ସତ୍‌କାର୍ଯ୍ୟ କରିବାର ଶକ୍ତି ଏପରିକି ସତ୍ୟ ଗ୍ରହଣ କରିବାର ଶକ୍ତି ମଧ୍ୟ ଲୋପ ପାଇଯାଏ । ମନୁଷ୍ୟର ପ୍ରକୃତି ସବୁଦିନ ଏହିପରି, ଏହାର ପରିବର୍ତ୍ତନ ନାହିଁ । ସୁତରାଂ ଏହି ପ୍ରକୃତିର ନିୟମର ଅନୁସରଣ କରିବାହିଁ ସତ୍ୟ ସନାତନ ଧର୍ମ । ମାତ୍ର ଅଧିକାଂଶ ଲୋକ ଏବିଷୟରେ ଚିନ୍ତା କରନ୍ତି ନାହିଁ । ଦେଖ ଟୀକା ୨ୟ ଅଧ୍ୟାୟ ଶ୍ଳୋ ୭ କ ।

୩୨ । ସତ୍ୟ ସନାତନ ଧର୍ମ ଏକରୁଅଧିକ ଭିନ୍ନ ଭିନ୍ନ ହୋଇ ନପାରେ । ମାତ୍ର ଲୋକମାନେ ନିଜର ଅଜ୍ଞତା ହେତୁ ଭିନ୍ନ ଭିନ୍ନ ପନ୍ଥା ଅବଲମ୍ବନ କରି ସତ୍ୟକୁ ପରିତ୍ୟାଗ କରିଅଛନ୍ତି ଏବଂ ପ୍ରତ୍ୟେକ ଦଳ ସେମାନଙ୍କର ଅଜ୍ଞତା ହେତୁ ନିଜ ନିଜ ପନ୍ଥାରେ ସନ୍ତୁଷ୍ଟ ଅଛନ୍ତି ।

୩୩-୩୪ । ଲୋକମାନେ ଯେତେବେଳେ ଦୁଃଖରେ ପଡ଼ନ୍ତି ସେତେବେଳେ ସେମାନେ ଜଗତର ପାଳନକର୍ତ୍ତା ପରମେଶ୍ୱରଙ୍କୁହିଁ ଡାକନ୍ତି । ଏଥିରୁ ଜଣା ଯାଉଅଛି ପରମେଶ୍ୱରଙ୍କୁ ଉପାସନା କରିବା ମନୁଷ୍ୟର ପ୍ରକୃତିଗତ

ଏବଂ ଯେତେବେଳେ ଅମ୍ଭେ ମନୁଷ୍ୟମାନଙ୍କୁ ଦୟା ଆସ୍ୱାଦନ କରାଉଁ ସେମାନେ ତହିଁରେ ଆନନ୍ଦିତ ହୁଅନ୍ତି; କିନ୍ତୁ ସେମାନେ ନିଜ ହାତରେ ଯାହା ଅର୍ଜ୍ଜନ କରିଅଛନ୍ତି ସେଥିପାଇଁ ଯଦି ସେମାନଙ୍କ ନିକଟରେ ବିପଦ ଉପସ୍ଥିତ ହୁଏ ତେବେ ସେମାନେ ନିରାଶ ହୋଇଯାଆନ୍ତି ।୩୬।

ସେମାନେ କଅଣ ଲକ୍ଷ୍ୟ କରୁ ନାହାନ୍ତି ଯେ ପରମେଶ୍ୱର ଯାହା ପାଇଁ ଇଚ୍ଛା କରନ୍ତି ତାହାର ଜୀବିକା ପ୍ରଶସ୍ତ କରିଦିଅନ୍ତି ଏବଂ ସଙ୍କୁଚିତ କରି ଦିଅନ୍ତି ? ନିଶ୍ଚୟ ଏଥିରେ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି ।୩୭।

ସୁତରାଂ ସ୍ୱଜନମାନଙ୍କୁ ଓ ଦରିଦ୍ରମାନଙ୍କୁ ଓ ପଥିକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦାନ କର, ଏହା ସେହି ଲୋକମାନଙ୍କ ପାଇଁ ଅତି ଉତ୍ତମ ଯେଉଁମାନେ ପରମେଶ୍ୱରଙ୍କ ସନ୍ତୁଷ୍ଟି ଇଚ୍ଛା କରନ୍ତି ଏବଂ ଏହିମାନେହିଁ କଲ୍ୟାଣପ୍ରାପ୍ତ ହେବେ ।୩୮।

ଏବଂ ଲୋକମାନଙ୍କର ଧନ ବୃଦ୍ଧି ହେବ ବୋଲି, ତୁମ୍ଭେମାନେ ସୁଧ ରୂପରେ ଯାହା ଦେଇଥାଅ, ତାହା ପରମେଶ୍ୱରଙ୍କ ନିକଟରେ ବୃଦ୍ଧି ପାଏ ନାହିଁ; ଏବଂ ପରମେଶ୍ୱରଙ୍କ ସନ୍ତୁଷ୍ଟିଲାଭ ଇଚ୍ଛାରେ ଯେଉଁମାନେ ଯାହା ଜକାତ୍ ସ୍ୱରୂପ ଦିଅନ୍ତି ସେହିମାନେହିଁ ତାହାର ଦୁଇଗୁଣ ପାଇବେ ।୩୯।

ପରମେଶ୍ୱର ସେହି ଯେ ତୁମ୍ଭମାନଙ୍କୁ ସୃଷ୍ଟି କରିଅଛନ୍ତି, ତାପରେ ତୁମ୍ଭମାନଙ୍କୁ ଜୀବିକା ଦେଇଅଛନ୍ତି, ତାପରେ ତୁମ୍ଭମାନଙ୍କୁ ମୃତ୍ୟୁ ଦେଉଅଛନ୍ତି, ତାପରେ ତୁମ୍ଭମାନଙ୍କୁ ପୁଣି ଜୀବିତ କରିବେ; ତୁମ୍ଭମାନଙ୍କର ଅଂଶୀ ଉପାସ୍ୟମାନଙ୍କ ମଧ୍ୟରେ କେହି ଅଛି ଯେ କି ଏଥିମଧ୍ୟରୁ କିଛି କରିପାରେ ? ସେ ମହାପବିତ୍ର ଏବଂ ସେମାନେ ଯାହା ଅଂଶୀ ସ୍ଥାପନ କରୁଅଛନ୍ତି ସେଥିରୁ ସେ ଅତି ଉଚ୍ଚ ।୪୦।

## ୫ମ ବିଭାଗ

ମନୁଷ୍ୟମାନେ ନିଜହାତରେ ଯାହା ଅର୍ଜ୍ଜନ କରିଅଛନ୍ତି ସେଥିପାଇଁ ସ୍ଥଳଭାଗରେ ଓ ଜଳ ଭାଗରେ (ସର୍ବତ୍ର) ଉତ୍ପାତ ବିସ୍ତୃତ ହୋଇଅଛି; ଏଥିପାଇଁ ସେମାନେ ଯାହା କରିଅଛନ୍ତି ତାହାର କିଛି ସ୍ୱାଦ ସେମାନଙ୍କୁ ଚଖାଇବାକୁ ହେବ, ଯେପରିକି ସେମାନେ (କୁପଥରୁ) ଫେରି ଆସିବେ ।୪୧।

ତୁମ୍ଭେ କୁହ, "ତୁମ୍ଭେମାନେ ପୃଥିବୀରେ ଭ୍ରମଣ କର ଏବଂ ଦେଖ ସେହି ଲୋକମାନଙ୍କର ପରିଣାମ କିପରି ହୋଇଅଛି ଯେଉଁମାନେ ଏଥିପୂର୍ବେ ଥିଲେ; ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଂଶୀବାଦୀ ଥିଲେ" ।୪୨।

---

ଅଟେ । ମାତ୍ର ଯେତେବେଳେ ଦୁଃଖରୁ ମୁକ୍ତ ହୋଇ ସୁଖ ଭୋଗକରନ୍ତି ସେତେବେଳେ ପରମେଶ୍ୱରଙ୍କୁ ଭୁଲିଯାଇ ଅଂଶୀ ଉପାସ୍ୟମାନଙ୍କୁ ଉପାସନା କରନ୍ତି । ଏଥିରୁ ଜଣାଯାଉଅଛି ଅଂଶୀ ଉପାସ୍ୟ ଗ୍ରହଣ କରିବା ପାର୍ଥିବ ଲୋଭ ହେତୁ ବୁଦ୍ଧିବୃତ୍ତିର ପ୍ରବୋଚନାରେ ହୋଇଥାଏ । କାରଣ ସୁଖ ଦୁଃଖ ଉଭୟ ଅବସ୍ଥାରେ ପରମେଶ୍ୱରଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ମନୁଷ୍ୟମାନଙ୍କ କର୍ତ୍ତବ୍ୟ ଅଟେ ।

୩୯ । ଏହି ଶ୍ଳୋକରେ ସୁଧ ଦେବା ପାଇଁ ନିଷେଧ କରାଯାଇଅଛି ଏବଂ ଜକାତ୍ ବା ବଖିସ୍ ଦାନ ଦେବା ପାଇଁ ଆଦେଶ କରାଯାଇଅଛି ।

୪୧ । ଅର୍ଜ୍ଜନ କରିଅଛନ୍ତି=ପାପକାର୍ଯ୍ୟ କରିଅଛନ୍ତି । ଲୋକମାନେ ଯେଉଁ ପାପକାର୍ଯ୍ୟ କରିଅଛନ୍ତି ତାହାର ଫଳ ସ୍ୱରୂପ କିଛି ଶାସ୍ତିଭୋଗ କରିବେ, ତାହାହେଲେ ସେମାନେ ସଂଶୋଧିତ ହେବେ ।

ସୁତରାଂ ପରମେଶ୍ୱରଙ୍କ ନିକଟରୁ ସେହି ଅପରିହାର୍ଯ୍ୟ ଦିନ ଅସିବା ପୂର୍ବରୁ ସେହି ସନାତନ ଧର୍ମ ପାଇଁ ତୁମ୍ଭର ମୁଖକୁ ସିଧାକର, ସେହି ଦିନ ସେମାନେ ଭିନ୍ନ ଭିନ୍ନ ହୋଇଯିବେ ।୪୩।

ଯେ ଅବିଶ୍ୱାସ କରିବ ତାହାର ଅବିଶ୍ୱାସ ପାଇଁ ସେ ଦାୟୀ ହେବ; ଏବଂ ଯେ ଭଲ କାର୍ଯ୍ୟ କରିବ ସେ ନିଜ ପାଇଁ (ପରଲୋକରେ) ଭଲସ୍ଥାନ ପ୍ରସ୍ତୁତ କରିବ ।୪୪।

ସୁତରାଂ ଯେଉଁମାନେ ବିଶ୍ୱାସ ସ୍ଥାପନ କରିବେ ଏବଂ ଭଲକାର୍ଯ୍ୟ କରିବେ ସେ ସେମାନଙ୍କୁ ନିଜ କୃପାରୁ ପୁରସ୍କାର ଦେବେ; ନିଶ୍ଚୟ ସେ ଅବିଶ୍ୱାସକାରୀମାନଙ୍କୁ ଭଲପାଆନ୍ତି ନାହିଁ ।୪୫।

ଏବଂ ତାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଏହି ଯେ ସେ ପବନକୁ ସୁସମ୍ବାଦ ଦାତାରୂପେ ପଠାଇ ଥାଆନ୍ତି ଯେପରିକି ସେ ତଦ୍ୱାରା ତୁମ୍ଭମାନଙ୍କୁ ନିଜର ଦୟା ଅସ୍ୱାଦନ କରାଇବେ ଏବଂ ଯେପରିକି ନୌକାମାନ ତାଙ୍କ ଅଜ୍ଞାରେ ପରିଚାଳିତ ହେବ ଏବଂ ଯେପରିକି ତୁମ୍ଭେମାନେ ତାଙ୍କର ଅନୁଗ୍ରହ ଲାଭପାଇଁ ଚେଷ୍ଟା କରିବ ଏବଂ ଯେପରିକି ତୁମ୍ଭେମାନେ କୃତଜ୍ଞ ହେବ । ୪୬ ।

ଏବଂ ନିଶ୍ଚୟ ଅମ୍ଭେ ତୁମ୍ଭର ପୂର୍ବେ ପ୍ରେରିତ ପୁରୁଷମାନଙ୍କୁ ସେମାନଙ୍କ ସମ୍ପ୍ରଦାୟ ନିକଟକୁ ପଠାଇ ଥିଲୁଁ ଏବଂ ସେମାନେ ପ୍ରକାଶ୍ୟ ପ୍ରମାଣମାନଙ୍କ ସହିତ ସେମାନଙ୍କ ନିକଟକୁ ଅସିଥିଲେ ଏବଂ ଯେଉଁମାନେ ଅପରାଧୀ ହୋଇଥିଲେ ଅମ୍ଭେ ସେମାନଙ୍କୁ ଦଣ୍ଡ ଦେଇଥିଲୁଁ; ଏବଂ ବିଶ୍ୱାସକାରୀମାନଙ୍କୁ ସାହାଯ୍ୟ କରିବା ଅମ୍ଭର କର୍ତ୍ତବ୍ୟ ଅଟେ । ୪୭ ।

ପରମେଶ୍ୱର ସେହି ଯେ ପବନକୁ ପଠାନ୍ତି, ତାପରେ ସେ ମେଘକୁ ଉଠାଏ, ତାପରେ ସେ ନିଜ ଇଚ୍ଛାଅନୁଯାୟୀ ତାକୁ ଅକାଶରେ ବିକ୍ଷିପ୍ତ କରନ୍ତି ଏବଂ ତାକୁ ଖଣ୍ଡ ଖଣ୍ଡ କରି ଦିଅନ୍ତି, ତାପରେ ତୁମ୍ଭେ ଦେଖ ଯେ ତାହା ମଧ୍ୟରୁ ବର୍ଷା ବାହାରେ; ତାପରେ ଯେତେବେଳେ ସେ ତାଙ୍କର ସେବକମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାହା ପ୍ରତି ବୃଷ୍ଟି ପହଞ୍ଚାଇ ଥାନ୍ତି, ସେମାନେ ଅନନ୍ଦିତ ହୁଅନ୍ତି । ୪୮ ।

ଏବଂ ନିଶ୍ଚୟ ସେମାନେ ଏଥିପୂର୍ବେ, ସେମାନଙ୍କ ଉପରେ ଜଳବର୍ଷଣ ହେବା ପୂର୍ବେ, ନିରାଶ ହୋଇ ପଡ଼ିଥିଲେ । ୪୯ ।

ତାପରେ ତୁମ୍ଭେ ପରମେଶ୍ୱରଙ୍କ ଦୟାର ନିଦର୍ଶନମାନଙ୍କ ପ୍ରତି ଦୃଷ୍ଟିପାତ କର, କିପରି ସେ ପୃଥିବୀକୁ ତାହାର ମୃତ୍ୟୁ ପରେ ଜୀବିତ କରନ୍ତି; ନିଶ୍ଚୟ (ଏହିପରି) ସେ ମୃତମାନଙ୍କୁ ଜୀବିତ କରିବେ; ଏବଂ ସେ ସମସ୍ତ ବିଷୟ ଉପରେ କ୍ଷମତାଶାଳୀ । ୫୦ ।

---

୪୩ । ଅପରିହାର୍ଯ୍ୟ ଦିନ—ଶେଷ ବିଚାର ଦିନ ।
ସନାତନ ଧର୍ମ—ଦେଖ ଟୀକା ଶ୍ଳୋ ୩୦ କ ।
ମୁଖକୁ ସିଧାକର—୩୦ ଶ୍ଳୋକ ଦେଖ ।
ଭିନ୍ନ ଭିନ୍ନ ହୋଇଯିବେ—କେତେକେ ସ୍ୱର୍ଗକୁ ଯିବେ ଏବଂ କେତେକେ ନରକକୁ ଯିବେ ।
୪୬ । ବୃଷ୍ଟିର ପୂର୍ବକ୍ଷଣରେ ପବନ ପ୍ରବାହିତ ହୁଏ । ସୁତରାଂ ଏହା ବୃଷ୍ଟିପାତର ପୂର୍ବାଭାସ । ଏଥିପାଇଁ ପବନକୁ ସୁସମ୍ବାଦଦାତା କୁହାଯାଇଅଛି ।
ଅନୁଗ୍ରହ ଲାଭ—ଉପଜୀବିକା ଅର୍ଜନ ଯାହା ପରମେଶ୍ୱରଙ୍କ ଅନୁଗ୍ରହରୁ ପ୍ରଦତ୍ତ ହୁଏ ।

ଏବଂ ଯଦି ଅମ୍ଭେ ଏକ (ଅନିଷ୍ଟକର) ପବନ ପଠାଉଁ, ତାପରେ ସେମାନେ ତାହାକୁ ହଳଦିଆ ବର୍ଣ୍ଣ ଦେଖନ୍ତି, ତାହାହେଲେ ନିଶ୍ଚୟ ସେମାନେ ତାହା ପରେ (ଅମ୍ଭର ପୂର୍ବ ଅନୁଗ୍ରହ ପ୍ରତି) ଅକୃତଜ୍ଞ ହୋଇ ରହିବେ । ୫୧ ।

କାରଣ ନିଶ୍ଚୟ ତୁମ୍ଭେ ମୃତମାନଙ୍କୁ (ତୁମ୍ଭର ଡାକ) ଶୁଣାଇ ପାରିବ ନାହିଁ ଏବଂ ବଧିରମାନଙ୍କୁ ତୁମ୍ଭର ଡାକ ଶୁଣାଇ ପାରିବ ନାହିଁ ଯେତେବେଳେ ସେମାନେ ପଛ ଫେରାଇ ଚାଲି ଯାଆନ୍ତି । ୫୨ ।

ଏବଂ ତୁମ୍ଭେ ଅନ୍ଧମାନଙ୍କୁ ସେମାନଙ୍କ ଭ୍ରାନ୍ତ ପଥରୁ ସୁପଥକୁ ଫେରାଇ ଆଣି ପାରିବ ନାହିଁ; ଯେଉଁମାନେ ଅମ୍ଭର ନିଦର୍ଶନମାନଙ୍କ ଉପରେ ବିଶ୍ୱାସ କରିଅଛନ୍ତି ସେମାନଙ୍କ ଛଡ଼ା ତୁମ୍ଭେ ଅନ୍ୟ କାହାକୁ (ତୁମ୍ଭର ଡାକ) ଶୁଣାଇ ପାରିବ ନାହିଁ; ସେହିମାନେହିଁ ଆତ୍ମସମର୍ପଣକାରୀ ହେବେ । ୫୩ ।

## ୬ଷ୍ଠ ବିଭାଗ

ପରମେଶ୍ୱର ସେହି, ଯେ ତୁମ୍ଭମାନଙ୍କୁ ଦୁର୍ବଳତା ମଧ୍ୟରେ ସୃଷ୍ଟି କରିଅଛନ୍ତି, ତାପରେ ଦୁର୍ବଳତା ପରେ ଶକ୍ତି ଦେଇଅଛନ୍ତି, ତାପରେ ଶକ୍ତି ପରେ ଦୁର୍ବଳତା ଓ ବୃଦ୍ଧାବସ୍ଥା ଦେଇଅଛନ୍ତି; ସେ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି ଏବଂ ସେ ଜ୍ଞାନୀ ଓ କ୍ଷମତାଶାଳୀ । ୫୪ ।

ଏବଂ ଯେଉଁଦିନ ସେହି ସମୟ ଉପସ୍ଥିତ ହେବ ସେହିଦିନ ଅପରାଧୀମାନେ ଶପଥ କରିବେ ଯେ ସେମାନେ ଏକଦଣ୍ଡ ଭିନ୍ନ (ପୃଥିବୀରେ) ଅଧିକ ସମୟ ରହି ନାହାନ୍ତି; ଏହିପରି ଭାବରେ ସେମାନେ (ସତ୍ୟରୁ) ଫେରି ଯାଉଥିଲେ । ୫୫ ।

ଏବଂ ଯେଉଁମାନଙ୍କୁ ଜ୍ଞାନ ଓ ବିଶ୍ୱାସ ଦିଆଯାଇଅଛି ସେମାନେ (ଉତ୍ତରରେ) କହିବେ, "ନିଶ୍ଚୟ ତୁମ୍ଭେମାନେ ପରମେଶ୍ୱରଙ୍କ ଆଦେଶ ଅନୁଯାୟୀ ପୁନରୁତ୍ଥାନ ଦିବସ ପର୍ଯ୍ୟନ୍ତ ରହିଥିଲ; ଏବଂ ଆଜି ସେହି ପୁନରୁତ୍ଥାନ ଦିବସ, କିନ୍ତୁ ତୁମ୍ଭେମାନେ ଜାଣି ନ ଥିଲ" । ୫୬ ।

ସେଦିନ ଅତ୍ୟାଚାରୀମାନଙ୍କର ଆପତ୍ତି ସେମାନଙ୍କର କୌଣସି ଉପକାରରେ ଆସିବ ନାହିଁ ଏବଂ ସେମାନଙ୍କର ଅନୁତାପ ଗ୍ରହଣ କରାହେବ ନାହିଁ । ୫୭ ।

---

୫୧ । ତାହାକୁ ହଳଦିଆ ବର୍ଣ୍ଣ ଦେଖନ୍ତି=ପୃଥିବୀପୃଷ୍ଠରେ ଥିବା ଶସ୍ୟ ଇତ୍ୟାଦିକୁ ଝାଉଁଳି ପଡ଼ିବାର ଦେଖନ୍ତି । ଅନିଷ୍ଟକର ପବନଦ୍ୱାରା ଶସ୍ୟହାନି ବିଷୟରେ କୁହାହୋଇଅଛି ।

୫୨-୫୩ । ଯେଉଁମାନେ ହଠକାରୀ ଅବିଶ୍ୱାସରେ ଦୃଢ଼ ରହନ୍ତି ସେମାନଙ୍କୁ ସତ୍‌ପଥକୁ ଆଣିବା ସମ୍ଭବ ନୁହେଁ । ସେମାନଙ୍କୁ ମୃତ, ବଧିର ଓ ଅନ୍ଧ ସଙ୍ଗେ ତୁଳନା କରାଯାଇଅଛି ।

୫୪ । ଦୁର୍ବଳତା ମଧ୍ୟରୁ ସୃଷ୍ଟି=ମାତୃଗର୍ଭରେ ଜରାୟୁରେ ଅବସ୍ଥାନ କାଳ।ଜନ୍ମପରେ ଦୁର୍ବଳ ଶିଶୁ, ତାପରେ ବଳିଷ୍ଠ ଯୁବକ ଏବଂ ପରେ ଦୁର୍ବଳ ବୃଦ୍ଧ ।

୫୫ । ଶେଷ ବିଚାର ଦିନ ଅପରାଧୀମାନେ ଆପତ୍ତି କରିବେ ଯେ ସେମାନେ ପୃଥିବୀରେ ଦଣ୍ଡେମାତ୍ର ଅର୍ଥାତ୍ ଅତି ଅଳ୍ପ ସମୟ ରହିଥିଲେ, ସୁତରାଂ ସେମାନେ ସତ୍କାର୍ଯ୍ୟ କରିବାକୁ ସମୟ ପାଇନଥିଲେ । ପୃଥିବୀରେ ରହିଥିବା ବେଳେ ମଧ୍ୟ ସେମାନେ, 'ସଂସାରରେ କେଇଟା ଦିନ ରହିବା ଯେ ସେଥିପାଇଁ ଏତେ କଷ୍ଟ କରିବା' ଏହିପରି ଅଯଥା କଥା କହି ସତ୍କାର୍ଯ୍ୟ କରିବାକୁ ଅବହେଳା କରୁଥିଲେ ।

୫୬ । ମାତ୍ର ସେମାନଙ୍କ ଆପତ୍ତି ଅଯଥା ଅଟେ, ପ୍ରକୃତରେ ସେମାନେ ପୃଥିବୀରେ ପରମାୟୁ ଶେଷ ପର୍ଯ୍ୟନ୍ତ ଅନେକ ଦିନ ରହିଥିଲେ, ମାତ୍ର ପରଲୋକରେ ସେମାନଙ୍କର ବିଶ୍ୱାସ ନ ଥିବାରୁ ସେମାନେ ସତ୍କାର୍ଯ୍ୟ କରିବାକୁ ଅବହେଳା କରିଥିଲେ ।

ଏବଂ ନିଶ୍ଚୟ ଅମ୍ଭେ ଏହି କୋରାନରେ ମନୁଷ୍ୟମାନଙ୍କ ପାଇଁ ସମସ୍ତ ପ୍ରକାର ଉପମା ବର୍ଣ୍ଣନା କରିଅଛୁଁ; ଏବଂ ଯଦି ତୁମ୍ଭେ ସେମାନଙ୍କ ନିକଟରେ କୌଣସି ନିଦର୍ଶନ ଉପସ୍ଥିତକର ଅବିଶ୍ୱାସକାରୀମାନେ ନିଶ୍ଚୟ କହିବେ, "ତୁମ୍ଭେମାନେ ମିଥ୍ୟାବାଦୀ ଛଡ଼ା ଅନ୍ୟ କିଛି ନୁହଁ" । ୫୮ ।

ଏହିପରି ଭାବରେ ପରମେଶ୍ୱର ଯେଉଁମାନେ ବୁଝି ପାରନ୍ତି ନାହିଁ, ସେମାନଙ୍କର ହୃଦୟରେ ମୋହର ମାରି ଦିଅନ୍ତି । ୫୯ ।

ଅତଏବ (ହେ ମୋହମ୍ମଦ) ତୁମ୍ଭେ ଧୈର୍ଯ୍ୟ ଧର, ନିଶ୍ଚୟ ପରମେଶ୍ୱରଙ୍କ ଅଙ୍ଗୀକାର ସତ୍ୟ ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନେ ତୁମ୍ଭଙ୍କୁ ତୁଚ୍ଛ ଜ୍ଞାନ କରିବା ଉଚିତ ନୁହେଁ । ୬୦ ।

---

୬୦ । ପରମେଶ୍ୱର ମହାପୁରୁଷ ମୋହମ୍ମଦଙ୍କୁ ସାନ୍ତ୍ୱନା ଦେଇ କହୁଅଛନ୍ତି, "ପରମେଶ୍ୱର ନିଶ୍ଚୟ ତୁମ୍ଭଙ୍କୁ ଶକ୍ତିଶାଳୀ ଓ ବିଜୟୀ କରିବେ ଏବଂ ଅବିଶ୍ୱାସକାରୀମାନଙ୍କୁ ହୀନବଳ ଓ ପରାସ୍ତ କରାଇଦେବେ, ଏହାହିଁ ପରମେଶ୍ୱରଙ୍କ ଅଙ୍ଗୀକାର, ଏହା ନିଶ୍ଚୟ ସତ୍ୟ ହେବ, ସୁତରାଂ ତୁମ୍ଭେ ଅଧୈର୍ଯ୍ୟ ହେବା ଉଚିତ ନୁହେ କିମ୍ବା ଅବିଶ୍ୱାସକାରୀମାନେ ତୁମ୍ଭଙ୍କୁ ତୁଚ୍ଛ ମନେ କରିବା ଉଚିତ ନୁହେ ।"

## କୋରାନର ଆଲୋକ ୨ୟ ଖଣ୍ଡ

# ଶୁଦ୍ଧିପତ୍ର

| ପୃଷ୍ଠା | ବିଷୟ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୭୩ | ୧୦ମ ଅଧ୍ୟାୟ ୧୫ଶ୍ଳୋକ ୧ମ ଧାଡ଼ି | ଉଜ୍ଜଳ | ଉଜ୍ଜ୍ୱଳ |
| ୨୭୬ | ୧୦ମ ଅଧ୍ୟାୟ ୩୧ଶ୍ଳୋକ ୨ୟ ଧାଡ଼ି | ଦଶନ | ଦର୍ଶନ |
| ୨୭୭ | ୧୦ମ ଅଧ୍ୟାୟ ୩୨ଶ୍ଳୋକ ୧ମ ଧାଡ଼ି | ଧ୍ରାନ୍ତ | ଭ୍ରାନ୍ତ |
| ୨୮୮ | ୧୦ମ ଅଧ୍ୟାୟ ୧୦୭ ଶ୍ଳୋକ ୨ୟ ଧାଡ଼ି | କେବେ | ଯେବେ |
| ୨୯୪ | ୧୧ଶ ଅଧ୍ୟାୟ ୩୬ ଶ୍ଳୋକ ୧ମ ଧାଡ଼ି | କହୁଥିଲେ | କହୁଥିଲେ |
| ,, | ,, ୩୧ ଶ୍ଳୋକ ଟୀକା | ନ ଚ | ନୀଚ |
| ୨୯୭ | ,, ୬୦ ଶ୍ଳୋକ ୩ୟଧାଡ଼ି | ଅଜ ଜାତର | ଅଦ୍‌ଜାତର |
| ୩୦୫ | ,, ୧୧୪ ଶ୍ଳୋକ ଟୀକା ୩ୟଧାଡ଼ି | ଏଣା | ଏଣା |
| ୩୦୭ | ୧୨ଶ ,, ୧ମ ଶ୍ଳୋକ ଉପରେ | × | ୧ମ ରୁକୁ |
| ,, | ,, ,, ୩ୟ ଶ୍ଳୋକ ୨ୟଧାଡ଼ି | ପୁନଶ୍ଚ | ନିଶ୍ଚୟ |
| ୩୧୦ | ,, ,, ୨୧ ଶ୍ଳୋକ ୪ର୍ଥ ଧାଡ଼ି | ଗାଢ଼ | ଦୃଢ଼ |
| ୩୧୭ | ,, ,, ୬୫ ,, ୧ମ ଧାଡ଼ି | ଫଟାଇଥିଲେ | ପିଟାଇଥିଲେ |
| ୩୩୦ | ୧୩ଶ ଅଧ୍ୟାୟ ୨୭ ,, ୨ୟଧାଡ଼ି | ଇଚ୍ଛାଦ ଭ୍ରାନ୍ତ | ଇଚ୍ଛା ବିଭ୍ରାନ୍ତ |
| ୩୩୩ | ,, ୪୩ ,, ୩ୟ ଧାଡ଼ି | ସେମାଙ୍କଙ୍କ | ସେମାନଙ୍କ |
| ୩୪୧ | ୧୪ଶ ଅଧ୍ୟାୟ ୪୧ ଶ୍ଳୋକ ଟୀକା ୩ୟ ଧାଡ଼ି | ଦେୟ | × |
| ୩୫୧ | ୧୫ଶ ,, ୯୬ ଶ୍ଳୋକ ୨ୟଧାଡ଼ି | ଭମ | ଭ୍ରମ |
| ୩୫୩ | ୧୬ଶ ,, ୫ ଶ୍ଳୋକ ୨ୟଧାଡ଼ି | ହୁରଅଛୁ | ରହୁଅଛୁ |
| ୩୫୮ | ୧୬ଶ ଅଧ୍ୟାୟ ୪୪ ଶ୍ଳୋକ ୧ମ ଧାଡ଼ି | ପଣାଇଥିଲେଁ | ପଠାଇଥିଲେଁ |
| ୩୬୦ | ,, ,, ୧୧୬ ,, ଟୀକା ୧ମଧାଡ଼ି | ବବୈଧ | ବୈଧ ବା |
| ୩୭୨ | ୧୭ଶ ,, ୫୪ ,, ଟୀକା | ପ୍ରତଭୂ | ଜାମିନ |
| ୩୮୧ | ,, ୬୪ ,, ୧ମଧାଡ଼ି | ବଭାନ୍ତ | ବିଭ୍ରାନ୍ତ |
| ୩୮୨ | ,, ୭୧ ,, ୩ୟ ,, | ସଢା | ସୁଢା |
| ୩୮୩ | ,, ୭୬ ,, ୨ୟ ,, | ବାହାଲ | ବାହାର |
| ,, | ,, ୭୮ ,, ୧ମ ,, | ପ ଭାତରେ | ପ୍ରଭାତରେ |
| ,, | ,, ୭୯ ଶ୍ଳୋକ ଟୀକା ୫ମ ,, | (ଜଫଲ୍) | (ନଫଲ୍) |
| ,, | ,, ,, ୬ଷ୍ଠ ଧାଡ଼ି | (ମକ୍କାମେ ମହେମୁଦା) | (ମୋକାମେ ମହେମୁଦା) |
| ୩୮୬ | ,, ୯୭ ,, ୨ୟ ଧାଡ଼ି | ବଭାନ୍ତ | ବିଭ୍ରାନ୍ତ |

| ପୃଷ୍ଠା | ବିଷୟ | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୦୦ | ୧୮ଶ ଅଧ୍ୟାୟ ୭୪ଶ୍ଲୋକ ଟୀକା ୧ମ ଧାଡ଼ି | ବିନାବିନିମୟ | ବିନାଦୋଷରେ |
| ୪୦୨ | ,, ୮୨ ,, [illegible]ୟ ଧାଡ଼ି | ଜୁଲୁକରନଏ | ଜୁଲ୍‌କର୍‌ନଏନ୍‌ |
| ୪୦୪ | ,, ୧୧୦ ,, ,, ୨ୟ ,, | କରିବିବା | କରିବା |
| ୪୧୩ | ୧୯ଶ ଅଧ୍ୟାୟ ୨୧ ,, ୨ୟ ,, | ଅନିବାର୍ଯ | ଅନିବାର୍ଯ |
| ,, | ,, ଟୀକା ୩ୟ ଧାଡ଼ି | ଅନିବାର୍ଯ | ଅନିବାର୍ଯ |
| ୪୨୪ | ,, ୯୭ ଶ୍ଲୋକ ଟୀକା ୧ମ ଧାଡ଼ି | ସ ମେସ୍ତ | ସାମେସ୍ତ |
| ,, | ,, ୯୯ ,, ,, | ବନ | ପବନ |
| ୪୪୦ | ୨୧ ,, ୮୨ ଶ୍ଲୋକ ୧ମ ଧାଡ଼ି | ଖୋତା | ଗୋତା |
| ୪୪୭ | ୨୨ ,, ୧୪ ,, ୨ୟ ଧାଡ଼ି | ଗେଷ୍ଠିଏ | ଗୋଷ୍ଠିଏ |
| ,, | ,, ,, ୩ୟ ,, | ଦେଷ | ଦେଶ |
| ୪୫୦ | ,, ୬୧ ,, ୧ମ ଧାଡ଼ି | ବିଶ୍ବା ସୀମାନେ | ବିଶ୍ବାସକାରୀମାନେ |
| ୪୫୨ | ,, ୪୬ ,, ,, | ବବ୍ରାହ୍ମିମଙ୍କର | ଇବ୍ରାହିମଙ୍କର |
| ୪୬୨ | ୨୩ ଅଧ୍ୟାୟ ୮୩ ,, ୨ୟ ଧାଡ଼ି | କହାଣୀ | କାହାଣୀ |
| ୪୭୩ | ୨୪ ,, ୧୧-୧୭ ଶ୍ଲୋକ ଟୀକା ୧୧ଧାଡ଼ି | ରପସ୍ଥିତ | ଉପସ୍ଥିତ |
| ,, | ,, ,, ,, | ଜଳଯାନ୍ତା | ଦଳ ଯାତ୍ରା |
| ୪୭୪ | ,, ୧୧ ଶ୍ଲୋକ ଟୀକା ୧ମଧାଡ଼ି | ହବନବେୟ | ଇନ୍ ଓବେୟ୍ |
| ,, | ,, ,, ୨ୟ ,, | ଅ°ାତ୍ | ଅର୍ଥାତ୍ |
| ୪୮୯ | ୨୪ ,, ୧୫ ଶ୍ଲୋକ ୧ମ ଧାଡ଼ି | ଅଂବା | ଅଥବା |
| ,, | ,, ୧୯ ,, ୩ୟ ,, | ‘ପରସ୍ପର’ ଶବ୍ଦ ଏହି ଧାଡ଼ିର ଆରମ୍ଭରେ ହେବ | |
| ୪୯୨ | ,, ୨୪ ,, ୨ୟ ,, | ଅନିବାର୍ଯ | ଅନିବାର୍ଯ୍ୟ |
| ୫୦୪ | ୨୨ ଅଧ୍ୟାୟ ୧୦୨ ,, ୧ମ ଧାଡ଼ି | ସେମାନନଙ୍କ | ସେମାନଙ୍କ |
| ୫୦୨ | ,, ୧୧୨ ,, ,, | ସେମାତେ | ସେମାନେ |
| ୫୨୦ | ୨୭ ,, ୮୨ଶ୍ଲୋକ ଟୀକା ୨ୟ ଧାଡ଼ି | ସୋଲେମନଙ୍କ | ସୋଲେମାନଙ୍କ |
| ୫୩୮ | ୨୮ ,, ୨୩ ଶ୍ଲୋକ ୨ୟ ଧାଡ଼ି | ଭିନ୍ତ | ଭ୍ରାନ୍ତ |
| ୫୪୨ | ,, ୮୨ ଶ୍ଲୋକ ଟୀକା ୩ୟ ଧାଡ଼ି | ସ୍ଥିରଚିତ୍ତ | ସ୍ଥିରଚିତ୍ତ |
| ୫୫୧ | ୨୯ ,, ୫୮ ଶ୍ଲୋକ ୨ୟ ଧାଡ଼ି | ସେମାନନଙ୍କ | ସେମାନଙ୍କ |
| ୫୫୨ | ୩୦ ,, ୨୨ ଶ୍ଲୋକ ଟୀକା ୨ୟ ଧାଡ଼ି | ସନ୍ଧି | ସୃଷ୍ଟି |
| ୫୫୯ | ,, ,, ୪୧ ଶ୍ଲୋକ ୧ମ ଧାଡ଼ି | ସେଥିପେଇଁ | ସେଥିପାଇଁ |
| ୫୬୦ | ,, ,, ୪୨ ,, ୩ୟ ଧାଡ଼ି | ଛିଶ୍ବାସକାରୀମାନେ | ବିଶ୍ବାସକାରୀମାନଙ୍କ |
| ୫୬୧ | ,, ,, ୫୪ ଶ୍ଲୋକ ଟୀକା ୧ମ ଧାଡ଼ି | କାଳାଜଳୁପରେ | କାଳ । ଜଳୁପରେ |